ଭକ୍ତକବି ରାମଦାସ ବିରଚିତ

ବୃହତ୍

# ସଚିତ୍ର ଦାର୍ଢ୍ୟତାଭକ୍ତି

ସମ୍ପାଦକ ଏବଂ ପ୍ରକାଶକ

**କଟକ ଟ୍ରେଡିଂ କମ୍ପାନୀ**

ବାଲୁବଜାର, କଟକ-୨

ମୂଲ୍ୟ ଛଅଟଙ୍କା ମାତ୍ର

[illegible]

# ସୂଚୀ

—*—



# ଦାର୍ଢ୍ୟତାଭକ୍ତି

## ରସାମୃତ

### ପ୍ରଥମ ଅଧ୍ୟାୟ

ବଳୀରାଜା ଚରିତ

ନମଇଁ ଗଉରୀ ନନ୍ଦନ । ସକଳ ବିଘ୍ନ ବିନାଶନ ॥
ଶ୍ରୀଚନ୍ଦ୍ରଶେଖର କୁମର । ଅଶେଷ ବିଦ୍ୟାର ଭଣ୍ଡାର ॥
ସଦା ଆନନ୍ଦ ସଦାଭୋଗୀ । ଓଁକାର ବ୍ରହ୍ମ ଅନୁରାଗୀ ॥
ଅଶେଷ ମହିମା ତୋହର । ବ୍ରହ୍ମାଦି ସୁରେ ଅଗୋଚର ॥
ଭକତ ଆରତ ନ ସହୁ । ଚିତ୍ତ ବାଞ୍ଛିତ ଫଳ ଦେଉ ॥
ଯେ ପ୍ରାଣୀ ଆଶ୍ରେ କରେ ତୋତେ । ମୂର୍ଖ ସେ ନୋହେ କଦାଚିତେ
ମୁହିଁ ପାମର ରାମଦାସ । ତୋ ପଦ୍ମ ପାଦେ କଲି ଆଶ ॥
ଅଶେଷ ଜନ୍ମ ଦୁର୍ବାସନା । ଖଣ୍ଡି ମୁଁ ହୋଇବି ସୁମନା ॥
ମୂର୍ଖପଣରୁ ହେବି ପାର । ହେ ଗଜାନନ କୃପାକର ॥
ଶ୍ରୀଦେବୀ ଶାରଦା ଚରଣେ । ଶରଣ ମାଗେ ଅନୁକ୍ଷଣେ ॥
ବୁଡ଼ିଅଛି ମୂର୍ଖ-ଜଳେ । ଉଦ୍ଧରି ଧର ଜ୍ଞାନ-କୂଳେ ॥
ତୋ କୃପା ରବି ଉଦେ କର । ମୋ ଅଜ୍ଞ ଅନ୍ଧକାର ହର ॥
ହେ ମାତ ପଦ୍ମପାଦେ ତୋର । ଶରଣ ନିରନ୍ତରେ ମୋର ॥

ନମସ୍ତେ ରାମ କୃଷ୍ଣ ହରି । ଏ ମହା ମନ୍ତ୍ରଟି ସରୁଚି ॥
ସକଳ ପ୍ରାଣୀ ହୃଦେ ବାସ । ଏଣୁ ଶରଣ ରାମଦାସ ॥
ତୁମ୍ଭ କୃପାରେ ଆଦିମୂଳ । ମୂକ ଯେ ହୁଅଇ ବାଚାଳ ॥
କର ଚରଣ ପଙ୍ଗୁ ଯାର । ସେ ଲଙ୍ଘି ପାରେ ଗିରିବର ॥
ତେଣୁ ଶରଣ ରାମଦାସ । ପୂରାଅ ମୋର ମନ ଆଶ ॥
ମୋର ବିପତ୍ତି ତରୁବର । ବଢ଼ଇ ଅତି ବଳୀୟାର ॥
ତବ କୃପା କୁଠାର ଧରି । ଛେଦି ପକାଅ ନରହରି ।୨୦। ॥
ତୁମ୍ଭେ ଯେ ପତିତପାବନ । ମୁହିଁ ଅଟଇ ପାପୀଜନ ॥
ଶରଣପଞ୍ଜର ତୋ ବାନା । ଭବଭୟକୁ ବଜ୍ରସେନା ॥
କୃପା ସମୁଦ୍ର ମହାମେରୁ । ଉଦ୍ଧର ଦୁଃଖ-ଜଳଧିରୁ ॥
ଉଦ୍ଧର ନ ଉଦ୍ଧର ମୋତେ । ମାତ୍ର କହୁଛି ତୋ ଅଗ୍ରତେ ॥
ତୁ ଯେବେ ପତିତ ଉଦ୍ଧାର । ମୋର କାହାକୁ ନାହିଁ ଡର ॥
ଦିନେକ ମନ ସୁଖାନନ୍ଦେ । ପୁଚ୍ଛଇ ଚଇତନ ପାଦେ ॥
ଶୁଣ ହେ ଚଇତନବୀର । ପୁଚ୍ଛଇ ତୁମ୍ଭର ଛାମୁର ॥
ତୁମ୍ଭେ ବିବେକ ଚୂଡ଼ାମଣି । ଭୂତ ଭବିଷ୍ୟ ପାର ଜାଣି ॥
ଏଣୁ ପଚାରୁଅଛି ମୁହିଁ । କହ ମୋ ସଂଶୟ ଫିଟାଇ ॥
ଏହି ସଂସାର ମଧ୍ୟଗତେ । ଜନମ ଲଭୁଛନ୍ତି ଯେତେ ॥
ସ୍ଥାବର ଆଦି ଚୌରଖାନି । ଭ୍ରମୁଅଛନ୍ତି ନାନା ଯୋନି ॥
ଏହାଙ୍କ ଦୁଃଖ ସୁଖ ଯେତେ । ସକଳ ଲାଗିଅଛି ମୋତେ ॥
ଏ ଚୌରଖାନି ମଧ୍ୟେ ସାର । ଦୁର୍ଲ୍ଲଭ ନର କଳେବର ॥
ଏହାଙ୍କ ଦେହ ମଧ୍ୟେ ଥାଇ । ମୁଁ ଯେତେ ଗଞ୍ଜଣା ସହଇ ॥
କିସ କହିବି ତୁମ୍ଭଠାରେ । ତୁମ୍ଭେ ତ ଥାଅ ମୋ ସଙ୍ଗରେ ॥
କରନ୍ତି ଯେତେ କର୍ମ ପ୍ରାଣୀ । ଯାତନା ନ ବାଧିବ ପୁଣି ॥
ଏଣୁ ସେ ପ୍ରାଣୀ ସୁଖ ହେତେ । ସୁଚିତ୍ତେ କହ ମୋ ଅଗ୍ରତେ ॥
କେବଣ କର୍ମ କଲେ ପ୍ରାଣୀ । ହେ ଦୁଃଖ ସୁଖର କାରେଣି ॥

ଗୋବିନ୍ଦେ ଭକତି ଲଭିବେ । ଜନ୍ମ ମରଣ ପାଶୋରିବେ ॥
ଏମନ୍ତ ଉପାୟ ଯେ କହ । ମୋ ମନୁ ସଂଶୟ ଫିଟାଅ ॥
ତା ଶୁଣି ଚଇତନ ବୀର । କହଇ ସୁମନ ଆଗର ॥
ତୁ ଯାହା ପଚାରିଲୁ ମୋତେ । କହଇ ଶୁଣ ତୋ ଅଗ୍ରତେ ॥
ଏ ବଡ ଦୁର୍ଲ୍ଲଭ ଚରିତ । ମୁଁ ତାହା କହି କି ସମର୍ଥ ॥
ବ୍ରହ୍ମା ଶିବଙ୍କୁ ଅଗୋଚର । ମୁଁ ଗ୍ୱାର କେତେକ ମାତର ॥
ମାତ୍ର ପୁରାଣମାନଙ୍କରେ । ଶୁଣିଛୁ ଯାହା କାହିଁତରେ ॥
ତାହା ମୁଁ କରୁଛୁ ବଖାଣ । ଶୁଣ ତୁ ହୋଇ ସାବଧାନ ॥
ବ୍ରତ ତୀର୍ଥାଦି କର୍ମ ଯେତେ । ଯଜ୍ଞାଦି ତପସ୍ୟା ସହିତେ ॥
ସକଳ କର୍ମ ମଧ୍ୟେ ସାର । କେବଳ ନାମ ଭଜିବାର ॥
ଆବର ଶୁଣ ପଦଗୋଟି । ମନୁ ସଂଶୟ ଯିବ ମେଣ୍ଟି ॥
ଏ ବେଦ କଥା ମଧ୍ୟେ ସାର । ଦୃଢ଼ତା ମୂଳଟି ଜୀବର ॥
ଦୃଢ ନ ଥାଇ କର୍ମ ଯେତେ । ଫଳ ନ ଫଳେ କଦାଚିତେ ॥
ଏ କଥା ସର୍ବଶାସ୍ତ୍ରେ ସାର । ପଣ୍ଡିତଜନଙ୍କ ପ୍ରଚୁର ॥
ଶୁଣି ହୋଇଲା ମନ ତୋଷ । ପୁଚ୍ଛଇ ଚଇତନ ପାଶ ॥
ଏ ମୃତ୍ୟୁପୁରେ ଦେହ ଧରି । କେ ଅବା ଦୃଢ଼ପଣ କରି ॥
ତରିଣ ଯାଇଛନ୍ତି କହ । ଶୁଣି ତା ଫିଟୁ ମୋ ସନ୍ଦେହ ॥
ତା ଶୁଣି ଚଇତନ ଧୀରେ । କହଇ ସୁମନ ଆଗରେ ॥
ଶୁଣ ସୁମନ ନୃପବର । ସତ୍ୟ ତ୍ରେତୟା ଯେ ଦ୍ୱାପର ॥
ଆବର କଳିଯୁଗ ଗତେ । ତରି ଅଛନ୍ତି ଯେତେ ଯେତେ ॥
ସକଳ ଲୋକଙ୍କ ଚରିତ । କହି ମୁଁ ନୁହଇ ସମର୍ଥ ॥
ଧାତାଙ୍କୁ ନୁହଇ ଗୋଚର । ମୁଁ ପୁଣି କେତେକ ମାତର ॥
କେବଳ ଜଣେ ଜଣେ କରି । ଶୁଣ କହିବି କଥା ଚାରି ॥
ସତ୍ୟଯୁଗରେ ଦାତାବଂଶ । ଥିଲା ନୃପତି ଗୁରୁ ହଂସ ॥
ନାମ ତା ବଳୀ ନୃପବର । ସପତଦ୍ୱୀପେ ସେ ଈଶ୍ୱର ॥

କେ କହୁ ତାର ଦାତାପଣ । ଦାନେ ଜିଣିଲ ସୁରଗଣ ॥
କେବଳ ଦାତାପଣେ ତାର । ବଶ ହୋଇଲେ ଚିନ୍ତ୍ୟପୁର ॥
ଦେଖିଣ ଦାତାପଣ ତାର । ସ୍ୱର୍ଗେ କମ୍ପିଲେ ବଜ୍ରଧର ॥
ତାହା ଜାଣିଣ ଚକ୍ରଧର । ହେଲେ ବାମନ ଅବତାର ॥
ସେ ବଳୀରାଜା ଦ୍ୱାରେ ଗଲେ । ଅପୂର୍ବ ବେଦଧ୍ୱନି କଲେ ॥
ତା ଜାଣି ବଳୀ ନୃପବର । ମିଳିଲେ ବାମନ ଗୁମୁର ॥
ଦେଖି ସନ୍ତୋଷ ନୃପରାୟେ । ପୁଚ୍ଛିଲେ ବାମନର ପାୟେ ॥
କେଉଁ ନିମନ୍ତେ ମୋର ପୁର । ବିଜୟ କଲ ଦ୍ୱିଜବର ॥
କେବଣ ଦେଶେ ତୁମ୍ଭ ଘର । କେ ତୁମ୍ଭ ଜନନୀ ପିଅର ॥
କହ ତୁମ୍ଭର ନାମ କିସ । ଶୁଣି ମୋ ମନ ହେଉ ତୋଷ ॥
ତୁମ୍ଭ ସୁନ୍ଦର ରୂପ ଦେଖି । ପିଗୁଡ଼ ନୋହେ ମୋର ଆକ୍ଷି ॥
ଯେତେକ ବିପ୍ରେ ମୋର ପୁରେ । ଅଇଲେ ଦାନ ନିମିତ୍ତରେ ॥
ଜଣେ ତୁମ୍ଭର ପ୍ରାୟେ ହୋଇ । ଦିନେ ମୋ ଦେଖିଲର ନାହିଁ ॥
କେଉଁ ନିମନ୍ତେ ଆସିଅଛ । ସ୍ୱରୂପ କହ ବିପ୍ରବର ॥
ଏ ବାଣୀ ଶୁଣି ଦ୍ୱିଜବର । କହନ୍ତି ବଚନ ମଧୁର ॥
ଶୁଣ ରାଜନ ବୀରବର । ଭକ୍ତ ନଗରେ ଆମ୍ଭ ଘର ॥
ହରିଭକତ ଆମ୍ଭ ପିତା । ନାମ ମୋ ଦାମୋଦର ଓତା ॥
ମାତା ଆମ୍ଭର ସତ୍ୟବତୀ । ନାହିଁ ଆମ୍ଭରି ବାଡ଼ ବୃତ୍ତି ॥
ଯେବା ମହତ ସତ୍ୟବାଦୀ । ଜୀବେ ଅହିଂସା ଆତ୍ମଶୁଦ୍ଧି ॥
ଦୟାଳୁ ପରଲୋକପ୍ରିୟ । ତ୍ୟାଗ ନିର୍ମୋହ ସର୍ବସହ ॥
ନିର୍ଲୋଭ ନିର୍ମାୟା ଯା ଚିତ୍ତ । ଶୁଚି ପବିତ୍ର ଦୃଢ଼ବ୍ରତ ॥
କୃଷ୍ଣ ସେବାରେ ଆତୁରିର । ନାମ ଭଜନେ ତତପର ॥
ଏମନ୍ତ ଲୋକଦ୍ୱାରେ ଯାଉ । ଭିକ୍ଷା କରଣ ଆମ୍ଭେ ଖାଉ ॥
ଦାୟା ଯା ଭୁବନେ ନ ଦେଖୁଁ । ଲକ୍ଷେ ଯୋଜନ ସେ ଆମ୍ଭଙ୍କୁ ॥
ଏବେ ତୋହର କୀର୍ତ୍ତି ଶୁଣି । ଅଇଲୁଁ ଶୁଣ ନୃପମଣି ॥



ଦାନଦେବା ପୂର୍ବରୁ ବଳିରାଜା ବାମନ ହସ୍ତରେ ପାଣି ଦେଉଛନ୍ତି । ଶୁକ୍ର ତାଙ୍କୁ ଦାନ ନଦେବାକୁ ବୁଝାଉଛନ୍ତି ।

ତତ୍ ସନ୍ତୋଷେ ଦାନ ଦେବୁ । ଜଗତେ ଯଶ ଅରଜିବୁ ॥
ପ୍ରଥମ ଭିକ୍ଷା ଏ ଆମ୍ଭର । ଏଥୁ ନ ଯିବୁଁ ଆନ ଦ୍ୱାର ॥
ତାହା ଶୁଣିଣ ବଳୀରାଜା । କଲେ ବିପ୍ରଙ୍କ ପାଦପୂଜା ॥
ମାଗ ହେ ବିପ୍ରଙ୍କ କୁମର । ଯେ ଇଚ୍ଛା ଅଛଇ ତୁମ୍ଭର ॥
ଧନ ରତନ ବାଡ଼ି ବୃତ୍ତି । ଗଜତୁରଙ୍ଗ ଆଦି କ୍ଷିତି ॥
ବସ୍ତ୍ରାଦି ଅଳଙ୍କାରମାନ । ଗୋରୁ ମହିଷି ମେଷ ଧେନ ॥
ରାଜପଦହିଁ ଆଦି ମୋର । ଯେ ଇଚ୍ଛା ମାଗ ଦ୍ୱିଜବର ॥
ଶୁଣି ବାମନ ଦିବ୍ୟ ମୂର୍ତ୍ତି । ନୃପତି ଆଗରେ କହନ୍ତି ॥
ଅଧିକ ଲୋଭ ନାହିଁ ମୋର । ମାଗୁଛି ଶୁଣ ନୃପବର ॥
ଆମ୍ଭର ପାଦରେ ରାଜନ । ତ୍ରିପାଦ ଭୂମି ଦେବୁ ଦାନ ॥
ଏହା ଶୁଣିଣ ନୃପନାଥ । ସିଞ୍ଚାଡ଼ି ଦେଲେ ବେନି ହସ୍ତ ॥
ତୁମ୍ଭର ବୁଦ୍ଧି ଅଟେ ସାନ । ତେଣୁ ମାଗିଲ ଅଳ୍ପଦାନ ॥
ତୁମ୍ଭ କର୍ମରେ ଅଛି ଯାହା । ଅନ୍ୟଥା କେ କରିବ ତାହା ॥
ଏମନ୍ତ ବୋଲି ନୃପମଣି । ଶଙ୍ଖେ ଧଇଲେ ଜଳପାଣି ॥
ଧର ହେ ବ୍ରାହ୍ମଣ ଗୋସାଇଁ । ତ୍ରିବାର ସତ୍ୟ କଲି ମୁହିଁ ॥
ଶୁଣି ଉଠିଲେ ଦ୍ୱିଜବର । ସଂକଳ୍ପ ପଢ଼ିଲେ ସତ୍ୱର ॥
ଶ୍ରୀହସ୍ତ ପ୍ରସାରନ୍ତେ ହରି । ଶୁକ୍ର ଉଠିଲେ ବେଗକରି ॥
ରାଜାଙ୍କୁ ଅନେକ ପ୍ରକାରେ । ଗୁପତ ବଚନେ ଭିଆରେ ॥
ଦାନ ନ ଦିଅ ଏହୁ ହରି । ନିଶ୍ଚେ ହରିବେ ତୁମ୍ଭ ସିରି ॥
ରାଜାର ଗୁରୁ ଯେ ଯୁକତେ । ନାସ୍ତି ଯେ କଲେ ନାନାମତେ ॥
ଶୁଣି କୋପିଲେ ବଳୀରାଜା । ତୁହି ମୋହର ପାଶୁ ଯା ଯା ॥
ସତ୍ୟ ତୁ ନ ଭାଙ୍ଗ ମୋହର । ନିଅନ୍ତୁ ପଛେ ରାଜ୍ୟଘର ॥
ପ୍ରାଣହିଁ ନେଉ ସେ ମୋହର । ସତ୍ୟ ମୋ ଅନ୍ୟଥା ନ କର ॥
ସତ୍ୟ ଲଙ୍ଘିବା ଫଳେ ମୁହିଁ । ନରକେ ସଞ୍ଚରିବି ଯାଇ ॥
ଅବଶ୍ୟ ଥରେ ତ ମରିବି । ସତ୍ୟ ମୁଁ କିପାଇଁ ଛାଡ଼ିବି ॥

ସେ ଯେବେ ଅଟେ ଭଗବାନ । ସୁଫଳ ହେଲା ମୋର ଦାନ ॥
ଏମନ୍ତ ବୋଲି ନୃପମଣି । ବାମନ ହସ୍ତେ ଦେଲେ ପାଣି ॥
ଦେଲା ତ୍ରିପାଦ ଭୂମିଦାନ । ତୁମ୍ଭ ଇଚ୍ଛାଏ ଏବେ ଘେନ ॥
ତା ଶୁଣି ଦେବ ଶିଖିପଚ୍ଛ । ହୋଇଲେ ତ୍ରିବିକ୍ରମ ମୂର୍ତ୍ତି ॥
ପାଦକେ ପୃଥିବୀ ବ୍ୟାପିଲେ । ଆରକେ ପାଦେ ସ୍ୱର୍ଗ ନେଲେ ॥
ପୁଣି ବୋଇଲେ ଭବଗ୍ରାହୀ । ଆର ପାଦକୁ ପୃଥ୍ୱୀ କାହିଁ ॥
ଶୁଣି ବୋଇଲେ ନୃପବର । ଆଉ ଚରଣ କାହିଁ ତୋର ॥
ଯେବେ ଚରଣ ଅଛି ତୋର । ପୃଥିବୀ ଅଛଇ ମୋହର ॥
ତା ଶୁଣି ତ୍ରୈଲୋକ୍ୟଈଶ୍ୱର । ନାଭିରୁ କାଢ଼ିଲେ ପଦ୍ମର ॥
ଦେଖି ପାତିଲା ବଳୀ ଶିର । ଚୁପିଲେ ବ୍ରହ୍ମାଣ୍ଡ ଠାକୁର ॥
ସେ ରାଜା ନିସ୍ତରିଲା ବୋଲେ । ପାତାଳେ ତାକୁ ଠାବ ଦେଲେ ॥
ହରିଚରଣାମୃତ ପାଇ । ରହିଲା ଅଜ୍ରାମର ହୋଇ ॥
ଶୁଣ ସୁମନ ଏ ଚରିତ । ଦାନର ମହିମା ଏମନ୍ତ ॥
ଶ୍ରୀହରି ହେଲେ ଅନ୍ତର୍ଦ୍ଧାନ । ସୁଜନେ ଭଜ ଭଗବାନ ॥
କହଇ ଦୀନ ରାମ ଦାସ । ମୂଳଟି ଅଟଇ ବିଶ୍ୱାସ ॥
ବାମନ ଅଭୟ ଚରଣେ । ମୋ ଚିତ୍ତ ରହୁ ଅନୁକ୍ଷଣେ ॥

ଇତି ଶ୍ରୀ ଦାର୍ଢ୍ୟତାଭକ୍ତିରସାମୃତେ ମନଚୈତନ୍ୟ ସମ୍ବାଦେ ବଳୀରାଜା ମୋକ୍ଷଣେ ନାମ ପ୍ରଥମୋଽଧ୍ୟାୟଃ ।

---

## ଦ୍ୱିତୀୟ ଅଧ୍ୟାୟ

### ହରିଶ୍ଚନ୍ଦ୍ର ରାଜା ଚରିତ

କହଇ ଚଇତନ ବୀର । ଶୁଣ ସୁମନ କଥା ସାର ॥
ତୁ ଯେ ପଚ୍ଚାରୁଅଛୁ ମୋତେ । ଦାନରେ ତରିଛନ୍ତି ଯେତେ ॥
କହିଲି ବଳୀ ତରିବାର । ଶୁଣ ତୁ ଏଥୁ ଅନନ୍ତର ॥
ନାମ ତାହାର ହରିଶ୍ଚନ୍ଦ୍ର । ତ୍ରେତୟାଯୁଗର ନରେନ୍ଦ୍ର ॥

ସୂର୍ଯ୍ୟବଂଶର ନୃପମଣି । ଦାନୀ ପଣରେ ସେ ଅଗ୍ରଣୀ ॥
ସୁନ୍ଦରପଣେ କାମଦେବ । ଦାତା ଅଂଶରେ ସଦାଶିବ ॥
ସୁଧୀର ପଣେ ମେରୁସମ । ବୀରପଣରେ ବ୍ରିତୀ ଯମ ॥
ତେଜସ୍ୱୀପଣେ ବୈଶ୍ୱାନର । ବୁଦ୍ଧିରେ କିବା ଗଣେଶ୍ୱର ॥
ପଣ୍ଡିତପଣେ ବୃହସ୍ପତ୍ତି । ସହିବା ପଣେ ବସୁମତୀ ॥
ଗମ୍ଭୀରପଣେ ପାରାବାର । ଅପାର ମହିମା ତାହାର ॥୧୦॥
ସପତଦ୍ୱୀପେ ଚକ୍ରବର୍ତ୍ତୀ । ଜଗତେ ବିଖ୍ୟାତ ତା କୀର୍ତ୍ତି ॥
ପାଳଇ ଏକପତ୍ନୀ ବ୍ରତ । ଦୈବେ ତାର ଏକ ସୁତ ॥
ସମ୍ପଦ କୁବେର ଭଣ୍ଡାର । ଦାନହିଁ ଦେବା ମୂଳ ତାର ॥
ସେ ମହାରାଜା ଦାନୀପଣେ । ଦରିଦ୍ର ନ ରହିଲେ ଜଣେ ॥
ଯେ ଯାହା ପ୍ରକାଶିଲେ ପାଇ । ନାହିଁ ବୋଲିବା ପଦ ନାହିଁ ॥
ଦେଇ ତୋଷଇ ମନ ତାର । ଜୀବନ୍ତେ ଖଣ୍ଡେ ଦୁଃଖଭାର ॥
ଦେ ପଦ ନିକଟରେ ଥାଇ । ନୃପତିପଣେ ବିହରଇ ॥
ଏମନ୍ତେ କେତେକାଳ ଗଲା । ତା କୀର୍ତ୍ତି ଜଗତେ ପୂରିଲା ॥
ବିନା କଳଙ୍କ ଚନ୍ଦ୍ରପ୍ରାୟେ । ତା ଯଶ ଜଗତେ ଉଦୟେ ॥
ଏ କଥା ଶୁଣି ସେ ରାଜାର । ସ୍ୱର୍ଗେ କମ୍ପିଲା ବଜ୍ରଧର ॥
ବିଧାତା ଆଗରେ କହିଲା । କି ବୁଦ୍ଧି କରିବ ବୋଇଲା ॥
ଏ ହରିଶ୍ଚନ୍ଦ୍ର ଦାନୀପଣେ । ସ୍ୱର୍ଗେ କମ୍ପିଲେ ସୁରଗଣେ ॥
ଆବର କର୍ମେ ମୋର ପୁର । କି ବୁଦ୍ଧି କହ ବେଦବର ॥
ତାହା ଶୁଣିଣ ବେଦବର । ହୃଦରେ କଲେକ ବିଚାର ॥
ବଶିଷ୍ଠ ମିଶ୍ରଙ୍କୁ ଡକାଇଲେ । ମର୍ତ୍ତ୍ୟକୁ ଯାଅ ହେ ବୋଇଲେ ॥
ହରିଶ୍ଚନ୍ଦ୍ରର ଦାନୀପଣ । ବୁଝିଣ ଆସ ହୋ ବହନ ॥
କଥାଳ କର ନାନାମତେ । ବୁଝିବା ଦାନୀପଣ କେତେ ॥
ଶୁଣି ଚଳିଲେ ମୁନିବର । ପ୍ରବେଶ ହେଲେ ମର୍ତ୍ତ୍ୟପୁର ॥
ମାୟାରେ ହେଲେ ଦିବ୍ୟରୂପ । କି ବ୍ରହ୍ମ ଦେବତାସ୍ୱରୂପ ॥

ରାଜାର ସିଂହଦ୍ୱାରେ ଗଲେ । ଅନେକ ବେଦଧ୍ୱନି କଲେ ॥
ସହି ନ ପାରି ନୃପବର । ମିଳିଲେ ମୁନିଙ୍କ ଛାମୁର ॥
ଦେଖିଣ ପ୍ରଣମିତ ହେଲେ । ତାଙ୍କର ପାଦପୂଜା କଲେ ॥
ଆଜ ପବିତ୍ର ମୋର ପୁର । ତୁମ୍ଭ ଦର୍ଶନେ ମୁନିବର ॥
କିପାଁ ମୋ ପୁରକୁ ଆଗତ । ମିଥ୍ୟା ନ କହି କହ ସତ ॥
ଶୁଣି କହନ୍ତି ମହାଯତି । ସ୍ୱରୂପ ଶୁଣ ହୋ ନୃପତି ॥
ଆମ୍ଭେ ଆଇଲୁ ଯହିଁ ପାଇଁ । କହୁଛୁଁ ସଂଶୟ ପିଟାଇ ॥
ତୁମ୍ଭର ଯଶକୀର୍ତ୍ତିମାନ । ପୂରିଲା ଚଉଦ ଭୁବନ ॥
ଯେ ଅଷ୍ଟଦିଗ ବସୁମତୀ । ବ୍ରହ୍ମ କ୍ଷତ୍ରିୟ ଗୃହ ଜାତି ॥
ଯହିଁ ଶୁଣିଲେ ତୋର କୀର୍ତ୍ତି । ଶୁଭାଇ ଶୁଣ ହୋ ନୃପତି ॥
ତେଣୁ ଆଇଲୁଁ ତୋର ତହିଁ । କିଛିହିଁ ମାଗିବାର ପାଇଁ ॥
ଶୁଣି ବୋଲଇ ସେ ରାଜନ । ଭୋ ମୁନି ଶୁଣ ମୋ ବଚନ ॥
ଯାହା ଅଛଇ ତୁମ୍ଭ ଚିତ୍ତେ । ରାଜଭଣ୍ଡାର ଆଦି ଯେତେ ॥
ମାଗ ହୋ ସଂଶୟ ନ କର । ଅବଶ୍ୟ ଦେବି ସତ୍ୟ ମୋର ॥
ଶୁଣି କହନ୍ତି ମୁନି ଇନ୍ଦ୍ର । ସ୍ୱରୂପ ଶୁଣ ହୋ ନରେନ୍ଦ୍ର ॥
ଦେବାର ଛନ୍ଦ ଯେବେ ତୋର । ସୁହୃଦେ ତୋଳି ଦିଅ ଶିର ॥
ପଛେ ନାସ୍ତି ହେଲେ ତୁହି । ଆଉ ମୁଁ ଛାଡ଼ିବଇଁ ନାହିଁ ॥
ପୁତ୍ର ଭାରିଯା ତୁଲେ ତୋର । ପ୍ରାଣ ମନ୍ତ୍ରୀଙ୍କୁ ଯେ ପରୁର ।
ଶୁଣି ଭାବଇ ରାଜା ଚିତ୍ତେ । କିସ ମାଗିବ ଏହୁ ମୋତେ ॥
ସବୁହିଁ ପ୍ରାଣ ସିନା ବଡ଼ । ମାଗିଲେ ଦେବି ମୋର ଦୃଢ଼ା ।
ଏମନ୍ତ ବୋଲି ନୃପମଣି । ଖଡ୍ଗେ ଧଇଲେ ଛଳପାଣି ॥
ମୁନିଙ୍କ ହସ୍ତେ ଦେଲେ ନେଇ । ଯେ ଇଚ୍ଛା ମାଗ ହେ ଗୋସାଇଁ ॥
ଦେବାର ସତ୍ୟ କଲି ମୁହିଁ । ଦେବି ସଂଶୟ ଏଥି ନାହିଁ ॥
ତାହା ଶୁଣିଣ ମହାମୁନି । କଲେ ଯେ ମହାଘୋର ଧ୍ୱନି ॥
ସାକ୍ଷୀ ଏଥିକୁ ଦିଗପାଳ । ରବି ଶଶାଙ୍କ ଆଖଣ୍ଡଳ ॥

କୁବେର ବରୁଣ ସହିତେ । ସମସ୍ତେ ସାକ୍ଷୀ ଥାଅ ଏଥେ ॥
ମାଗୁଛି ଦୋଷ ନାହିଁ ମୋର । ବୋଲି ଧରିଲେ ତଳ ନୀର ॥
ଜଳ ପକାଇ ମୁନିବର । ବୋଇଲେ ଶୁଣ ନୃପବର ॥
ତୋ ରାଜପଣ ମୋତେ ଦେବୁ । ଲେଙ୍ଗଡ଼ା କନାଏ ପିନ୍ଧିବୁ ॥
ପୁତ୍ର ଭାରିଯା ଘେନି ତୋର । ରାଜ୍ୟରୁ ହୋଇବୁ ବାହାର ॥
ଭୁଞ୍ଜିବ ରାଜ୍ୟଭୋଗ ମୁହିଁ । ଏଥେ ତୋ ଅଧିକାର ନାହିଁ ॥
ତା ଶୁଣି ନୃପତି ଆନନ୍ଦ । ମୁଖ ବିକାଶେ ପୂର୍ଣ୍ଣଚନ୍ଦ୍ର ॥
ମୁନିଙ୍କି ନୃପ ସିଂହାସନେ । ରାଜା କରାଇ ତୋଷମନେ ॥
ଆପଣେ ବାନ୍ଧିଦେଲେ ଶାଢ଼ୀ । ପୁଣି ମୁନିଙ୍କ ପାଦେ ପଡ଼ି ॥
ଉଠି କପାଳେ ଦେଲେ କର । ବୋଇଲେ ନମୋ ମୁନିବର ॥
ପାତ୍ର ମନ୍ତ୍ରୀଙ୍କି ଡକାଇଲେ । ମୁନିଙ୍କି ସମର୍ପିଣ ଦେଲେ ॥
ଆଜହୁଁ ତୁମ୍ଭର ଏହୁ ରାଜା । କର ଏହାଙ୍କ ପାଦପୂଜା ॥
ଏମନ୍ତ ବୋଲି ନୃପବର । ବିଜେ ସେ କଲେ ଅନ୍ତଃପୁର ॥
ବଡ଼ବେ ବୋଲି ରାଣୀ ମନ । ଦୁଃଖିତ ହୋଇଣ ରାଜନ ॥
ଭିତରପୁରେ ବିଜେ କଲେ । ତା ଦେଖି ଶୈବ୍ୟାରାଣୀ ବୋଲେ
ମନ ତ କରିଅଛ ଦୁଃଖ । କିପାଇଁ ଶୁଖିଅଛି ମୁଖ ॥
ବିପ୍ରଙ୍କୁ ଦେବାପାଇଁ ଦାନ । କି ଅବା ନ ମିଳିଲା ଧନ ॥
ଆଉ କି ବିପତ୍ତି ପଡ଼ିଲା । ମୋତେ ତ ସନ୍ଦେହ ଲାଗିଲା ॥
ବିଳମ୍ବ ନ କରିଣ କହ । ଦେଖି ନ ସହେ ମୋର ଦେହ
ତା ଶୁଣି କହନ୍ତି ନୃପତି । ଶୁଣ ସୁମନେ ପ୍ରିୟବତୀ ॥
କାହୁଁ ଅଇଲେ ଏକ ମୁନି । ମୋ ଆଗେ କଲେ ବେଦଧ୍ୱନି
ଦେଖି ମୋହର ତୋଷମନ । ମୁନିଙ୍କି ଯାଚିଲି ମୁଁ ଧନ ॥
ରାଜ୍ୟ ସମ୍ପଦ ଯେତେ ମୋର । ସବୁ ଘେନିଲେ ମୁନିବର ॥
ପୁତ୍ର ଭାରିଯାକୁ ଘେନିଣ । ଏକଇ ବସ୍ତ୍ର ମୁଁ ପିନ୍ଧିଣ ॥
ଛାଡ଼ିଣ ଯିବି ନିଜ ଦେଶ । ତେଣୁ ଅଇଲି ତୁମ୍ଭ ପାଶ ॥

ଶୁଣି ଆନନ୍ଦ ରାଣୀ ମନ । ଏହି ସମୟେ ତା ନନ୍ଦନ ॥
ବାହାର ଅବକାଶେ ଥିଲା । ପିତାଙ୍କ ସମ୍ମୁଖରେ ମିଳିଲା ॥
ଦେଖି ପିତାଙ୍କ ଆଗଭର । ପୁଚ୍ଛଇ ନୃପତି କୁମର ॥
ମାତା ପୁତ୍ରଙ୍କୁ ବୁଝାଇଲେ । ଶୁଣି କୁମରମଣି ବୋଇଲେ ॥
ଏଥକୁ ଚିନ୍ତା କିପାଁ କର । ତପସ୍ୟା ପୂରିଲା ଆମ୍ଭର ॥
ଏମନ୍ତ ବୋଲି ତିନିଜଣ । ତିନିଖଣ୍ଡି ବସ୍ତ୍ର ପିନ୍ଧିଣ ॥
କାଢି ସକଳ ଅଳଙ୍କାର । ନଗରୁ ହୋଇଲେ ବାହାର ॥
ପ୍ରବେଶି ମୁନିବର ପାଶ । ବୋଲନ୍ତି ଛାଡ଼ିଗଲୁ ଦେଶ ॥
ରଖ ତୁମ୍ଭର ପ୍ରଜାକୁଳ । ରାଜ୍ୟ ସମ୍ପଦାଦି ସମ୍ଭାଳ ॥
କହନ୍ତି ବିଶ୍ୱାମିତ୍ର ମୁନି । ଶୁଣ ରାଜନ ମହାଦାନୀ ॥
ପିତାକୁ ପୁତ୍ରଟି ଯେମନ୍ତ । ଦାନକୁ ଦକ୍ଷିଣା ତେମନ୍ତ ॥
ପୁତ୍ର ବିହୀନେ ନର୍କେ ଯାଇ । ଦକ୍ଷିଣା ବିନା ଫଳ ନାହିଁ ॥
ସୁବର୍ଣ୍ଣ ତିନିଲକ୍ଷ ମାତ୍ର । ଆଣି ମୋ ଆଗେ କର କୁଢ଼ ॥
ତେବେ ନିଷ୍ଟେ ନେ ଚଳିଯାଅ । ନୋହିଲେ ଦାନ ତୋର ନାଅ ॥
ଏହା ଶୁଣିଣ ନୃପମଣି । ଚିତ୍ତେ ଚିନ୍ତିଲେ ଚକ୍ରପାଣି ॥
ଦେବି ମୁଁ ଦକ୍ଷିଣା ତୁମ୍ଭର । ଆମ୍ଭ ବିକ୍ରୟ କରି ମୋର ॥
ଏମନ୍ତ ବୋଲି ତିନିଜଣ । ମଥାରେ ଲଦିଣ ତୃଣ ॥
କାଶୀ ନଗର ବୁଲି ଗଲେ । ମୁନି ଅଛନ୍ତି ତାଙ୍କ ତୁଳେ ॥
ସେହି ନଗରେ ବୁଲି ବୁଲି । ଡାକନ୍ତି ଆମ୍ଭ ବିକ୍ରୀ ବୋଲି ॥
ବ୍ରହ୍ମ କ୍ଷତ୍ରିୟ ବୈଶ୍ୟଜନ । ଅପରେ ଯେତେ ଜାତି ଶୁଣ ॥
ଆବର ଚଣ୍ଡାଳ ସହିତେ । ଯେ ଅବା କିଣିବଟି ମୋତେ ॥
ପୁତ୍ର ଭାରଯାର ସହିତେ । ବିକାବ ଦକ୍ଷିଣା ନିମନ୍ତେ ॥
ଯେ ଧନ ଦେବ ତା ଶରଣ । ହେବୁଁ ପୁତ୍ରାଦି ତିନିଜଣ ॥
ଏରୂପେ କେତେହେଁ ଡାକିଲେ । କିଣିମା କ୍ଷମ କେ ନୋହିଲେ ॥
ଏଥୁଅନ୍ତରୁ ଶୁଣ ମନ । ବିଧାତା ଘଟି ସୂତ୍ରମାନ ॥



ହରିଶ୍ଚନ୍ଦ୍ର ଶ୍ମଶାନରେ ଆସି ଦେଖନ୍ତି, ଜଣେ ଯୁବତୀ ଗୋଟିଏ ପିଲାର ଶବକୁ ଧରି କାନ୍ଦି କାନ୍ଦି ଗଡ଼ି ଖୋଜୁଛନ୍ତି ।

ମାୟାରେ ବିପ୍ରରୂପ ହୋଇ । ଅଗ୍ନି ଦେବତା ଥିଲେ ରହି ॥
ଦ୍ୱିଲକ୍ଷ ମାଡ଼ ସୁନା ଦେଲେ । ପୁତ୍ର ଭାର୍ଯ୍ୟାଙ୍କୁ କିଣିଲେ ॥
ରାଜାର ଏକଇ କୁମର । ଦାଇବେ ଅତି ସୁକୁମାର ॥
ସେ ପତିବ୍ରତା ଶିରୋମଣି । ସୁନ୍ଦରୀ ବିପ୍ରରକୁ କିଣି ॥
ଦୁହିଙ୍କ ହସ୍ତ ରାଜା ଧରି । ବିପ୍ରକୁ ସମର୍ପଣ କରି ॥
ହେ ବିପ୍ର ଯାହା ଇଚ୍ଛା କର । ଏ ଦୁହେଁ ହୋଇଲେ ତୁମ୍ଭର ॥
ଏମନ୍ତ କହି ନୃପ ଗଲେ । ଧନ ମୁନିଙ୍କି ସମର୍ପିଲେ ॥
ପୁଣି କେତେହେଁ ଦୂର ଯାନ୍ତେ । ଚଣ୍ଡାଳରୂପେ ଜନ୍ମୁନାଥେ ॥
ମନ୍ଦିର କରି ତହିଁ ଥିଲେ । ରାଜାଙ୍କୁ କିଣି ଧନ ଦେଲେ ॥
ମୁନିଙ୍କି ବୋଇଲେ ରାଜନ । ନିଅ ହେ ଦକ୍ଷିଣାର ଧନ ॥
ଯେତେ କଥାଳ ମୁନି କଲେ । ରାଜା ଧର୍ମକୁ ନ ଲଙ୍ଘିଲେ ॥
ଶେଷ ମୁନି ଧନ ଘେନି ଗଲେ । ନୃପତିପଣେ ବିହରିଲେ ॥
ଏଥେଁ ରହିଲେ ନୃପନାଥ । ଚଣ୍ଡାଳ ଘରେ ହୋଇ ଭୃତ୍ୟ ॥
ପ୍ରିସତେ ଦାଣ୍ଡ ପହରନ୍ତି । ଦିବସେ ଘୁଷୁରି ଚରାନ୍ତି ॥
ରାତେହି ଜଗନ୍ତି ଶମଶାନ । କେ କହୁ ତାଙ୍କ ଦୁଃଖମାନ ॥
କାନନୁ ପୁଣି ପୁଷ୍ପ ଆଣେ । ରାଣୀ ରହିଲେ ଦାସୀପଣେ ॥
ସେ ତିନି ପ୍ରାଣୀଙ୍କ କଷଣ । କେ କହୁ ଶରୀର ଧରଣ ॥
ଯେତେତେହେଁ କଷ୍ଟ ସେ ପାଇଲେ । କେହି ଧର୍ମକୁ ନ ଲଙ୍ଘିଲେ ॥
ଏମନ୍ତେ କେତେଦିନ ଗଲା । ସ୍ୱର୍ଗରେ ବିଗ୍ରହ ପଡ଼ିଲା ॥
ବ୍ରହ୍ମା ଇନ୍ଦ୍ରାଦି ସୁରଗଣ । ସମସ୍ତେ କଲେ ବିଗ୍ରହଣ ॥
ହରିଶ୍ଚନ୍ଦ୍ରର ତପଫଳେ । ସ୍ୱର୍ଗ ପଡ଼ିବ ରସାତଳେ ॥
ଏଥିକୁ ତାଙ୍କୁ ଘେନି ଆସ । ନୋହିଲେ ସର୍ବେ ଯିବା ନାଶ ॥
ଏମନ୍ତେ ସର୍ବେ ଭୟ କଲେ । ତକ୍ଷକ ରାଇ ଆଜ୍ଞା ଦେଲେ ॥
ହେ ସର୍ପ ତୁହି ବେଗେ ଯିବୁ । ରାଜାର ପୁତ୍ରକୁ ଦଂଶିବୁ ॥
ଆଜ୍ଞାପ୍ରମାଣେ ସର୍ପ ଗଲା । ମଞ୍ଚରେ ପ୍ରବେଶ ହୋଇଲା ॥

ରୋହିତ କୁମରକୁ ଦଂଶି । ପୁଣି ମିଳିଲା ସ୍ୱର୍ଗେ ଆସି ॥
ଏଥୁ ଅନ୍ତରେ ଶୈବ୍ୟାରଣୀ । ପୁତ୍ର ମରିବା କଥା ଶୁଣି ॥
ଅନେକ ସନ୍ତାପ ସେ କଲା । ତା ଦେଖି ବ୍ରାହ୍ମଣ କହିଲା ॥
ତୁ ଏବେ କରୁଛୁ ରୋଦନ । କାହୁଁ ତୁ ଲଗାଇବୁ ଧନ ॥
କାଟିଲେ ମଡ଼ା ଚଣ୍ଡିଆଏ । ମୋଠାରୁ ନେବେ ସୁନାଆଁଏ ॥
ବେଗେ ତୁ ଶବ ଘେନିଯାଅ । ନ ପୋଡ଼ି ପୋତଣ ପକାଅ ॥
ମଡ଼ାଚଣ୍ଡିଆ ଧନ ଆସି । ମାଗିଲେ ହୁଅ ତାର ଦାସୀ ॥
ବିପ୍ର ନିଷ୍ଠୁର ବାଣୀ ଶୁଣି । ପୁତ୍ରକୁ ଧରି ଏକା ରାଣୀ ॥
ଘୋର ଅନ୍ଧାର ନିଶାକାଳେ । ଘେନିଣ ଶ୍ମଶାନେ ମିଳେ ॥
ଶବ ପକାଇ ମହାସତୀ । ଆପଣେ ଖଦାଏ ଖୋଳନ୍ତି ॥
ଜଗିବା ପାଇଁ ଶ୍ମଶାନ । ଏମନ୍ତେ ବାହାର ରାଜନ ॥
ଆପଣେ ହରିଶ୍ଚନ୍ଦ୍ର ରାୟେ । ଆସିଣ ମିଳିଲେ ସେଠାଏ ॥
ଦେଖିଲେ ଶମଶାନ ସ୍ଥାନ । ଏକଇ ଯୁବତୀ ରତନ ॥
କାନ୍ଦିଣ ଖୋଳୁଅଛି ଗାତ । ଦେଖିଣ ନୃପତି ଚକିତ ॥
ଧାଇଁ ଧଇଲେ କେଶ ତାର । ବୋଇଲେ ଅଟୁ ତୁ କାହାଁର ॥
ମରିବୁ ତୋ ଇଷ୍ଟ ସୁମର । ଶୁଣି ବୋଲଇ ନାରୀବର ॥
ମୋ ଇଷ୍ଟ ହରିଶ୍ଚନ୍ଦ୍ର ରାଜା । ମୁଁ ଅଟେ ତାହାଙ୍କ ଭାରିଯା ॥
ସ୍ୱାମୀ ମୋ ନୃପପଦ ଯେତେ । ଦାନ ବହିଲେ ମୁନି ହସ୍ତେ ॥
ଦକ୍ଷିଣା ନିମନ୍ତରେ ପୁଣ । ପୁତ୍ର ଭାରିଯାଙ୍କୁ ବିକଣ ॥
ସେ ଧନ ମୁନି ହସ୍ତେ ଦେଲେ । ଆପଣେ କେଉଁଣେ ଅବା ଗଲେ ॥
ଏମନ୍ତେ କେତେ ଦିନ ଗଲା । ସର୍ପାଘାତରେ ପୁତ୍ର ମଲା ॥
ତେଣୁ ସେ ପୁତ୍ରକୁ ଆଣିଣ । ପୋତିବି ବୋଲି ଶ୍ମଶାନ ॥
ଏକାନ୍ତେ ଗାତ ଖୋଳୁଛଇଁ । ଯେଣୁ ମୋହର ସଖା ନାହିଁ ॥
ଏମନ୍ତ ଶୁଣି ନରଈଶ । ଛାଡ଼ିଲେ ନିଜ ପ୍ରିୟା କେଶ ॥
ହେ ସଖି ! ମୁଁ ତୋ ପ୍ରାଣସଖା । କାହିଁ ମୋ ରୋହିତକୁ ଦେଖା ॥

ଶୁଣିଣ ସ୍ୱାମୀର ଉତ୍ତର । ଉଠିଲା ଘୋର ଅନ୍ଧକାର ॥
ଦ୍ୱିଗୁଣେ ସନ୍ତାପ ବଢ଼ିଲା । ପତିର ଚରଣେ ପଡ଼ିଲା ॥
ଉଠି ସ୍ୱାମୀକି ଘେନିଗଲା । ପୁତ୍ରକୁ ଦେଖାଇଣ ଦେଲା ॥
ବୋଇଲା ସ୍ୱାମୀ ତୁମ୍ଭେ ଶୁଣ । ମୁହିଁ ଏ ପୁତ୍ରକୁ ଘେନିଣ ॥
ଅନଳେ ପଶି ଝାସ ଦେବ । ଏ ପ୍ରାଣ କେବେ ନ ରଖିବ ॥
ଶୁଣି ବୋଇଲେ ନୃପବର । ପୁତ୍ର ଭାରିଯା ମଲେ ମୋର ॥
ମୁଁ ଥାଇ କରିବଇଁ କିସ । ଗୃହ ସମସ୍ତେ ଦେବା ଝାସ ॥
ଏମନ୍ତ ବୋଲି ଚଳିଗଲେ । ପ୍ରଚଣ୍ଡ ଅନଳ ଜାଳିଲେ ॥
ସ୍ନାନ ସେ କରାଇ ପୁତ୍ରକୁ । ଅନଳେ ପଶିବା ବେଳକୁ ॥
ଏମନ୍ତ ସମୟେ ମାତଳି । ସ୍ୱର୍ଗରୁ ରଥ ଘେନି ଚଳି ॥
ରାଜାର ନିକଟେ ହୋଇଲା । ଅନଳେ ନ ପଶ ବୋଇଲା ॥
ତା ଶୁଣି ନୃପତି ଚକିତ । ଦେଖି ମାତଳି ଦେବରଥ ॥
ବୋଇଲା ଦେବଙ୍କ ଆଦେଶ । ସ୍ୱର୍ଗକୁ ଯିବା ରଥେ ବସ ॥
ଶୁଣି କହନ୍ତି ନୃପବର । ମଲା ମୋ ଏକଇ କୁମର ॥
କେମନ୍ତେ ସ୍ୱର୍ଗକୁ ଯିବଇଁ । କହ ମୁଁ ଅପୁତ୍ରିକ ହୋଇ ॥
ଏଣୁ ମୋ ମରିବାର ସତ । ମାତଳି ଘେନି ଯାଅ ରଥ ॥
ମାତଳି ବୋଇଲା ବଚନ । ଅନଳେ ନ ପଶ ରାଜନ ॥
ମୋର ଅଇଲାଯାଏ ଥିବୁ । ନୋହିଲେ ଦେବଦ୍ରୋହୀ ହେବୁ ॥
ଏମନ୍ତ ବୋଲି ଚଳିଗଲା । ଦେବଙ୍କ ଆଗରେ ମିଳିଲା ॥
ରାଜା କହିବା ଜଣାଇଲା । ଅମୃତ ସଞ୍ଜୀବନୀ ନେଲା ॥
ପୁଣି ସ୍ୱର୍ଗରୁ ଲେଉଟିଲା । ରାଜା ନିକଟେ ପ୍ରବେଶିଲା ॥
ପୁତ୍ରର ମୁଖେ ସୁଧା ଦେଇ । କର୍ଣ୍ଣରେ ସଞ୍ଜୀବନୀ କହି ॥
ତକ୍ଷଣେ ଜୀଇଲା କୁମର । ପାଶେ ଦେଖିଲା ରତ୍ନବର ॥
ଆବର ଜନନୀ ପିଅର । ଦେଖିଣ ବୋଇଲା କୁମର ॥
ପୁଚ୍ଛିଲା ଏ କି ବିପରୀତ । ସମସ୍ତ ବୁଝାଇଲେ ମାତ ॥

ସ୍ୱର୍ଗକୁ ଯିବା ଏବେ ଭଲ । କୁମର ବୋଇଲା କି ବୋଲ ॥
ଆମ୍ଭର ରାଜ୍ୟ ପ୍ରଜାକୁଳ । ଛାଡ଼ି କେଁ ଯିବ ସ୍ୱର୍ଗପୁର ॥
ସମସ୍ତେ ଗଲେ ଯିବ ମୁହିଁ । ନୋହିଲେ ଯାଅ ତୁମ୍ଭେ ଦୁଇ ॥
ଶୁଣି ବୋଇଲେ ନୃପନାଥ । ମାତଳି ଘେନିଯାଅ ରଥ ॥
ନ ଗଲେ ରାଜ୍ୟଜନ ଯେତେ । ଆମ୍ଭେ ନ ଯିବୁଁ କଦାଚିତେ ॥
ଶୁଣି ମାତଳି ଚଳିଗଲା । ବିଧାତା ଆଗରେ କହିଲା ॥
ସ୍ୱରୂପ ଶୁଣ ବେଦବର । ନଇଲେ ପ୍ରଜାକୁଳ ତାର ॥
କେବେ ନ ଆସେ ନୃପବର । ବିଚାର ମୋତେ ଆଜ୍ଞା କର ॥
ତା ଶୁଣି ବ୍ରହ୍ମା ଇନ୍ଦ୍ର ସୁର । ସମସ୍ତେ କଲେକ ବିଚାର ॥
ଯାଇ ରାଜାକୁ ଘେନି ଆସ । ନୋହିଲେ ସ୍ୱର୍ଗଯିବ ନାଶ ॥
ହରିଶ୍ଚନ୍ଦ୍ରର ତପଫଳେ । ଆସନ୍ତୁ ତାର ପ୍ରଜାକୁଳେ ॥
ତା ଶୁଣି ମାତଳି ହରଷ । ଲେଉଟି ଗଲେ ରାଜା ପାଶ ॥
ଦେବେ ଦୁନ୍ଦୁଭି ବଜାଇଲେ । ସକଳ ଲୋକେ ଗୋଷ୍ଠୀ କଲେ ॥
ପଶୁ ମନୁଷ୍ୟ ଚାରି ଜାତି । ଅପରେ ଯେତେ ଲୋକ ଛନ୍ତି ॥
ସମସ୍ତ ରଥେ ବସାଇଲେ । ଆପଣେ ରାଜା ବିଜେକଲେ ॥
ପୁତ୍ର ଭାରିଯା ସଙ୍ଗେ ଘେନି । ଆନନ୍ଦେ କଲେ ଜୟଧ୍ୱନି ॥
ଚଳିଲା ରଥ ଶୂନ୍ୟମାର୍ଗେ । ଦେବେ ଅନାଇଛନ୍ତି ସ୍ୱର୍ଗେ ॥
ଯହୁଁ ନିକଟ ସ୍ୱର୍ଗ ଆସି । ଦେବେ ମାୟାକୁ ଦେଲେପେଷି ॥
ରାଜାର ହୃଦରେ ପଶିଲା । ବଡ଼ିମା ପଣ ପ୍ରକାଶିଲା ॥
ଗର୍ବ ବହିଲା ରାଜା ମନ । ନ ଚଳେ ପୁଷ୍ପକ ବିମାନ ॥
ଯହୁଁ ସେ ନିଶ୍ଚଳେ ରହିଲେ । ସକଳ ଦେବତା ଅଇଲେ ॥
ବିଶ୍ୱକର୍ମାକୁ ଆଜ୍ଞାଦେଲେ । ତହିଁ ପୁରେକ ନିର୍ମାଣିଲେ ॥
ଶ୍ରୀ ହରିଶ୍ଚନ୍ଦ୍ର ସ୍ୱର୍ଗପୁର । ନାମ ବହିଲେ ବେଦବର ॥
ସେ ପୁରେ ରହିଲେ ନୃପତି । ଅଛଇ ଯୁଗେ ଯୁଗେ କାର୍ତ୍ତି ॥
ଦେବାଦୟାର ଫଳ ଏତେ । ପୁରାଣ ବିଖ୍ୟାତ ଜଗତେ ॥

ଭଣେ ଅଧମ ରାମଦାସ । ଶ୍ରୀହରି ପାଦପଦ୍ମେ ଆସ ॥
ଶୁଣ ସୁମନ କର୍ଣ୍ଣପୁଟେ । ନ ପଡ଼ ସଂସାର ସଙ୍କଟେ ॥

ଇତି ଶ୍ରୀଦାର୍ଢ଼୍ୟତାଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ
ହରିଶ୍ଚନ୍ଦ୍ର ରାଜା ମୋକ୍ଷଣେ ନାମ ଦ୍ୱିତୀୟୋଽଧ୍ୟାୟଃ ।

---

# ତୃତୀୟ ଅଧ୍ୟାୟ

## କର୍ଣ୍ଣରାଜା ଚରିତ

### ମନ ଉବାଚ

ପୁଣି ପୁଚ୍ଛଇ ମନରାୟେ । ଚୈତନ୍ୟ ଦେବଙ୍କର ପାୟେ
ତୁମ୍ଭେ ଯା କଲଟି ପ୍ରକାଶ । ପଦ ପଦକେ ସୁଧାରସ
ସତ୍ୟ ହେତୟାର ଚରିତ । ଶୁଣି ମୁଁ ହୋଇଲି ପବିତ୍ର
କହ ଦ୍ୱାପର ଯୁଗ କଥା । ଶୁଣି ମୋ ମନୁ ଯାଉ ବ୍ୟଥା
ତା ଶୁଣି କହେ ଚଇତନ । ହେ ମନ ହୁଅ ସାବଧାନ
ଦ୍ୱାପର ଯୁଗେ ମହାବୀର । କର୍ଣ୍ଣ ନୃପତି ନାମ ତାର
ସୋମବଂଶରେ ଅବତାର । ଅଟଇ ମହାଧନୁର୍ଦ୍ଧର
କ୍ଷତ୍ରିୟ ଗରବ ଗଞ୍ଜନ । ଦଇବେ ରବିର ନନ୍ଦନ
ଚରଣ ସମ୍ଭାଳିବା ଅର୍ଥେ । ବାଟେ ବାନ୍ଧଣ ଥାଇ ନେଟେ
ସତ୍ୟ ଅଭଙ୍ଗ କୁଳବନ୍ତ । ଶାନ୍ତ ସୁଶୀଳ ସେ ମହନ୍ତ
କ୍ଷତ୍ରିୟକୁଳେ ସେ ନିଃଶଙ୍କ । ସର୍ବଦାକାଳେ ରଣରଙ୍କ
ଗୃଳନ୍ତେ କମ୍ପେ ବସୁମତୀ । ସୁର ଅସୁରେ ଡରିଥାନ୍ତି
ଏମନ୍ତେ କର୍ଣ୍ଣ ମହାରାଜା । ସୁଖେ ପାଳଇ ଜନ ପ୍ରଜା
ତାହାର ଏକଇ କୁମର । ବଶିକେଶନ ନାମ ତାର
ଭାରିଯା ନାମ ଚନ୍ଦ୍ରାବଳୀ । ସତୀ ସାଧବୀ ସେହୁ ବାଳୀ
ଏମନ୍ତେ କର୍ଣ୍ଣ ଯେ ରାଜନ । ଦାନେ ମୋହିଲେ ସର୍ବଜନ

ନିତ ସୁବର୍ଣ୍ଣ ଶତେ ଭର । ପ୍ରମାଣ ଦାନ ଦେବା ତାର ॥
ଏଥିବଢ଼ନ୍ତୁ ଯେତେବେ ଜନ । ମାଗନ୍ତି ଅନ୍ନ ବସ୍ତ୍ର ଦାନ ॥
ମନ ସନ୍ତୋଷେ ତାଙ୍କୁ ଦେଇ । ବାକ୍ୟ କହନ୍ତି ତୁଷ୍ଟୁଆଇ ॥
ଦୁଃଖୀ ବ୍ରାହ୍ମଣ ଯେବେ ଦେଖି । ଜୀବନ୍ତେ ଦିଏ ଅନ୍ନ ଲେଖି ॥
ଏମନ୍ତେ କେତେ ଦିନ ଗଲା । ତା କୀର୍ତ୍ତି ଜଗତେ ପୂରିଲା ॥
ଜାଣିଲେ ପ୍ରଭୁ ଭଗବାନ । ବଞ୍ଚିବା ପାଇଁ ତାର ମନ ॥
ଜଗନ୍ମୋହନ ପୀତବାସ । ମାୟାରେ ହେଲେ ବିପ୍ରବେଶ ॥
କନ୍ଧରେ ଶୋଭଇ ପଇତା । ଧରିଣ ପାହୀ ଗଡ଼ୁ ଛତା ॥
ଲଲାଟେ ଶ୍ରୀହରିମନ୍ଦିର । ପୁସ୍ତକ ଯାଉଁଳ କନ୍ଧର ॥
ଅତି ସୁନ୍ଦର ଯୁବାବେଶ, । ବଚନେ ଜନମନ ତୋଷ ॥
ଏମନ୍ତ ବେଶେ ଦାମୋଦର । ବିଜୟ କର୍ଣ୍ଣ ସିଂହଦ୍ୱାର ॥
ଉଚ୍ଚାର କଲେ ସାମବେଦ । ଆକାଶେ ଘୋଷିଲା ଶବଦ ॥
କଣ୍ଠ କୋକିଳ ସ୍ୱର ଜିଣି । ପାଷାଣ ତରିଲେ ତା ଶୁଣି ॥
ତା ଶୁଣି କର୍ଣ୍ଣ ମହାବୀର । ପ୍ରବେଶ ବିପ୍ରଙ୍କ ଛାମୁର ॥
ଦେଖିଣ ନମସ୍କାର କଲେ । ତକ୍ଷଣେ ପାଦ ଧୋଇଦେଲେ ॥
ଆସନେ ତାହାଙ୍କୁ ବସାଇ । ବିନୟ ବଚନେ ପୁଚ୍ଛଇ ॥
କେଉଁ କାରଣେ ମୋର ପୁର । ବିଜୟ କଲ ଦ୍ୱିଜବର ॥
କହ ହେ ସ୍ୱରୂପ ଉତ୍ତର । ଦେବ ମୁଁ ସଂଶୟ ନ କର ॥
ଧନ ରତନ ଅଲଙ୍କାର । କି ଅବା ସୁବର୍ଣ୍ଣ ଭଣ୍ଡାର ॥
ଯେବା ବାଞ୍ଛିତ ତୁମ୍ଭ ଚିତ୍ତେ । ସମ୍ଭାଳ କାଲ ପରିଯନ୍ତେ ॥
ଯେତେକ ଇଚ୍ଛା ତୋତେ ଦେବ । ଦରିଦ୍ର ପଣ ଛଡ଼ାଇବ ॥
ଭୋଜନ କର ମୋର ପୁର । ଆଜକ ରହ ଏଥିଠାର ॥
ଶୁଣି କହନ୍ତି ଦ୍ୱିଜବର । ଶୁଣ ତୁ କର୍ଣ୍ଣ ମହାବୀର ॥
ତୋ ଦାନପଣ ଶୁଣି କର୍ଣ୍ଣେ । ଅତି ଆନନ୍ଦ ମୋର ମନେ ॥
ତେଣୁ ଅଇଲି ତୋର ପାଶ । କରିଣ ଅଛୁ ପ୍ରତିଆଶ ॥

ବାଞ୍ଛିତ ଧନ ଦେଲେ ନେବୁ । ନୋହିଲେ ଲେଉଟିଣ ଯିବୁଁ ॥
ଉଚିତେ ଦେଲେ ମହାପୁଣ୍ୟ । କହିଅଛନ୍ତି ଋଷିଗଣ ॥
ତୁ ବୋଲୁ କାଲି ପରଯନ୍ତେ । ଆମ୍ଭେ ନ ରହୁ କଦାଚନ୍ତେ ॥
ନାହିଁ ବୋଇଲେ ଆମ୍ଭେ ଯିବୁଁ । ଏଠାରେ କପାଁ ବସିଥିବୁଁ ॥
ଶୁଣି ବୋଲଇ କର୍ଣ୍ଣବୀର । ପବିତ୍ର କର ମୋର ପୁର ॥
ଆଜ ମୋ ପୁରରେ ରନ୍ଧନ । କଲେ ମୋ ସଫଳ ଜୀବନ ॥
ତା ଶୁଣି କହନ୍ତି ଶ୍ରୀହରି । ଶୁଣ ତୁ କର୍ଣ୍ଣ ଦଣ୍ଡଧାରୀ ॥
ଭୋଜନ ଯାଚୁଅଛୁ ମୋତେ । ଦେଇ ନ ପାରୁ କଦାଚିତେ ॥
ତା ଶୁଣି ବୋଲେ ମହାରଥୀ । କହିଲ ବିପରୀତ କଥା ॥
କି ଜା ଭୁଞ୍ଜିବ ବିପ୍ର ତୁମ୍ଭେ । ଦେଇ ଯେ ନ ପାରିବୁଁ ଆମ୍ଭେ
ଯାହା ମାଗିବ ତାହା ଦେବି । ନ ଦେଲେ ଅପରାଧୀ ହେବି ॥
ପ୍ରଭୁ ବୋଇଲେ ସତ୍ୟକର । ମୋ ହସ୍ତେ ତୋଳ ଦିଅ ନୀର
ଶୁଣି ନୃପତି ସତ୍ୟ କଲା । ବ୍ରାହ୍ମଣ ହସ୍ତେ ନୀର ଦେଲା ॥
ବୋଇଲା ମାଗ ବିପ୍ରବର । ତିନିବାର ସତ୍ୟ ସତ୍ୟ ମୋର ॥
କର୍ଣ୍ଣର ଦୃଢ଼ ବାକ୍ୟ ଶୁଣି । କହନ୍ତି ପ୍ରଭୁ ଚକ୍ରପାଣି ॥
ମନୁଷ୍ୟ ମାଂସେ ମୋ ଭୋଜନ । ଶୁଣି ବୋଇଲେ ଦାନୀକର୍ଣ୍ଣ ॥
କେତେକ ଜନ ଦେବ ଆଣି । ସ୍ୱରୂପ କହ ବିପ୍ରମଣି ॥
ତା ଶୁଣି ବୋଲନ୍ତି ଗୋସାଇଁ । ଅନ୍ୟ ମନୁଷ୍ୟେ କାର୍ଯ୍ୟ ନାହିଁ ॥
ତୋ ପୁତ୍ର ବୃଷକେତନକୁ । ମାରଣ ଦେବୁ ହୋ ଆମ୍ଭଙ୍କୁ ॥
ଆପଣେ ସ୍ୱହସ୍ତେ ମାରିବୁ । ଘରଣୀ ହସ୍ତେ ରନ୍ଧାଇବୁ ॥
ତେବେ ମୁଁ ଭୋଜନ କରିବି । ନାସ୍ତି ବୋଇଲେ ଚଳିଯିବି ॥
ଶୁଣି ବିସ୍ମରେ ରାଜା ଚିନ୍ତେ । ପୁତ୍ରକୁ ମାରିବି କେମନ୍ତେ ॥
ନ ଦେଲେ ସତ୍ୟଭଗ୍ନ ହେବ । ମଲେ ନରକେ ପିତା ଯିବ ॥
ଏଣୁ ମୋ ପୁତ୍ର ପଛେ ଯାଉ । ନୋହିବ ସତ୍ୟ ଭଗ୍ନ ଆଉ ॥
ଏମନ୍ତ ମନେ ବିଚାରିଲା । ଶୁଣ ହେ ବ୍ରାହ୍ମଣ ବୋଇଲା ॥

ତୁମ୍ଭେ ତ ବିପ୍ରକୁଳେ ଜାତ । ଆମ୍ଭେ ଯେ କ୍ଷତ୍ରିୟ ସମ୍ଭୂତ ॥
କପଟ ମୋ ପାଖେ ଭୁଞ୍ଜିବ । ତୁମ୍ଭର ଜାତ ନଷ୍ଟ ହେବ ॥
ତା ଶୁଣି ବ୍ରାହ୍ମଣ ଗୋସାଇଁ । ବୋଇଲେ ଶୁଣ ବୀର ତୁହି ॥
ଆମ୍ଭର ଶାସ୍ତ୍ରେ ଅଛି ଯାହା । ଶୁଣ ତୁମ୍ଭଙ୍କୁ କହୁଁ ତାହା ॥
ଯେ ଅବା ଶ୍ରୀହରି ଭଜଇ । ବ୍ରତରେ ନିଷ୍ଠା ଯାର ଥାଇ ॥
ଯେ କରେ ପର ଉପକାର । ସତ୍ୟ ନ ଲଙ୍ଘେ ଯେଉଁ ନର ॥
ଯେ ଅବା ସାଧୁସଙ୍ଗ କରେ । ବଞ୍ଚଇ ନାମ ଭଜନରେ ॥
ରଣରଙ୍ଗରେ ଆଗୁଁ ସାର । ଦେବା ଦୟାରେ ନିରନ୍ତର ॥
ନାରୀ ହୋଇଣ ପତିବ୍ରତା । ନ ଲଙ୍ଘେ ନିଜ ସ୍ୱାମୀ କଥା ॥
ଏମନ୍ତ ଲୋକଙ୍କର ଘର । ନ ପୁଚ୍ଛୁଁ ଜାତି ଗୋତ୍ର ତାର ॥
ଭୁଞ୍ଜିବା ସତ୍ୟଟି ଆମ୍ଭର । ଶୁଣି ଚକିତ ନୃପବର ॥
ନବରେ ହୋଇଲେ ପ୍ରବେଶ । ନିଜ ପତ୍ନୀକି ଗଇ ପାଶ ॥
କହିଲେ ଗମ୍ଭୀର ବଚନ । ଶୁଣ ରେ ଯୁବତୀ ରତନ ॥
କେବଣ ଦେଶୁଁ ବିପ୍ରବର । ଆସି ମିଳିଲେ ସିଂହଦ୍ୱାର ॥
ଅନେକ ବେଦଧ୍ୱନି କଲେ । ଭୋଜନ ଦେବୁ କି ବୋଇଲେ ॥
ତାଙ୍କ ବଚନେ କଲି ସତ୍ୟ । ଏବେ ବୋଲନ୍ତି ମାର ପୁତ୍ର ॥
ନୋହିଲେ ସତ୍ୟଭଗ୍ନ ହୁଅ । ଆମ୍ଭଙ୍କୁ ଯାଅ ବୋଲି କହ ॥
ଏଥକୁ କହ ତୁ ବିଚାର । ଦେବା କି ନାହିଁ ପୁତ୍ର ମାର ॥
ଶୁଣି ବୋଲନ୍ତି ମହାରାଣୀ । ଦିଅ ହେ ନିଜ ପୁତ୍ର ଆଣି ॥
ନ ଦେଲେ ସତ୍ୟଭଗ୍ନ ହୋଇ । ନରକେ ପଡ଼ିବ ହେ ଯାଇ ॥
ସ୍ୱାମୀକି କହନ୍ତେ ଏମନ୍ତ । ଆସି ମିଳିଲା ନିଜ ସୁତ ॥
ଦ୍ୱାଦଶ ବରଷର ବାଳ । ଦେହ ତା ଦିଶଇ ଉଜ୍ଜ୍ୱଳ ॥
ସୁନ୍ଦର ପଣେ ତାକୁ ସରି । କେହି ନ ଥିବେ ତିନିପୁରୀ ॥
ଚତୁର ବିବେକ ସିହାଣ । ପୁଚ୍ଛଇ ମାତାଙ୍କ ଚରଣ ॥
କି ବୋଲି ବିଚାର ହେଉଛ । ମୋତେ କପାଇଁ ଲୁଚାଉଛ ॥



କର୍ଣ୍ଣରାଜା ନିଜ ପୁତ୍ରର ଶିରଚ୍ଛେଦନ କରିବାକୁ ଯାଉଛନ୍ତି ।

କର୍ଣ୍ଣ ଚଳନ୍ତି ଦଣ୍ଡଧାରୀ । ହେ ମାତା କହ ସତ୍ୟ କରି ॥
ଶୁଣି କହନ୍ତି ନାଜ ମାତ । ଶୁଣ କୁମର କହେ ସତ୍ୟ ॥
ପିତା ତୋ ବିପ୍ରେ କଲେ ସତ । ତୋତେ ମାରଣ ଦେବେ ଘାତ ॥
ଶୁଣିଣ ରାଜାର କୁମର । କେ କହୁ ଆନନ୍ଦ ତାହାର ॥
ହେ ତାତ ମାତ ତୁମ୍ଭେ ଶୁଣ । ଜନ୍ମିଲେ ଅବଶ୍ୟ ମରଣ ॥
ଯେବେ ଏ ଦେହୁ ଜୀବ ଯିବ । ଅବଶ୍ୟ ମାଟିରେ ମିଶିବ ॥
ଶାଗୁଣା ଶୃଗାଳଙ୍କ ଗ୍ରାସ । ନୋହିଲେ ହେବ ଧୂଳିପାଂଶ ॥
ଏଥୁ ବା ଅନ୍ୟ କାର ଦେହ । ମଲେ ହୁଅଇ ଏହା କହ ॥
ବିପ୍ର ଭୁଞ୍ଜିବ ମୋର ମାଂସ । ଏଥିରୁ ଭଲ ଭାଗ୍ୟ କିସ ॥
ବହନ କରି ମତେ ମାର । ହେ ତାତ ବିଳମ୍ବ ନ କର ॥
ପୁତ୍ରର ମୁଖୁଁ ଏହା ଶୁଣି । ବହନ ଗଲେ ନୃପମଣି ॥
ବିପ୍ରଙ୍କୁ ଡାକି ଘେନିଗଲେ । ମନ୍ଦିରେ ପ୍ରବେଶ ହୋଇଲେ ॥
ପୁତ୍ରକୁ ଧରି ଧାଡିକାରେ । ଭଣ୍ଡ କରାଇଲେ ଗ୍ରାମୁରେ ॥
ଶ୍ରୀକର୍ଣ୍ଣ ହସ୍ତେ ପାଠଖଣ୍ଡା । ଧରିଣ ଅତି ପରଚଣ୍ଡା ॥
ଗୋବିନ୍ଦ ଜାଣି ତାର ମନ । ଉହାଣ୍ଡ କଲେ ସୁଦର୍ଶନ ॥
ତହିଁ ପୁତ୍ରକୁ ଘେନିଗଲେ । ମାୟା କୁମର ଭଣ୍ଡ କଲେ ॥
ଯା ମାୟା ଦେବେ ଅଗୋଚର । ମନୁଷ୍ୟ କେତେକ ମାତର ॥
ରାଜା ଧରିଣ କରବାଳ । କାଟିଲେ ଶିର ସେ ତତ୍କାଳ ॥
ରାଣୀ ହସ୍ତରେ ନେଇ ଦେଲେ । ରନ୍ଧନ କରସି ବୋଇଲେ ॥
ରାଜା ହସ୍ତରୁ ରାଣୀ ଧରି । କାଟିଲେ ଗୁଳା ପ୍ରାୟେ କରି ॥
ମୁଣ୍ଡ ମାନିକ ଲୁଚାଇଲେ । କାନ୍ଦିବେ ବୋଲି ବିପ୍ରଗଲେ ॥
ଆବର ଯେତେକ ମାଉଁସ । ସଜାଡ଼େ ମନର ହରଷ ॥
ଘୃତ ମରିଚଗୁଣ୍ଡା ଭୁଲେ । ହଳଦୀ ପକାଇ ଦଳିଲେ ॥
ଜୀରା ମରିଚ ହିଙ୍ଗୁ ଧାର । ପକାଇ କଲେକ ମଧୁର ॥
ଥୋକାଏ ସଙ୍ଗତେ ତନ୍ତୁଳି । ପକାଇ କଲେକ ଆମ୍ବିଳ ॥

ଭଜା ସାକରାନ୍ଧ ପାଚଲ । ରନ୍ଧଣା ଏକୁ ଏକ ଭଲ ॥
ଦ୍ରବ୍ୟ ଅରୁଆ ଅନ୍ନମାନ । ବହୁତ କଲେକ ରନ୍ଧନ ॥
ବିପ୍ରଙ୍କୁ ଡାକି ନୃପ ଗଲେ । ଭୋଜନ କରିବ ବୋଇଲେ ॥
ଶୁଣି ବୋଇଲେ ବିପ୍ରମଣି । କପଟ କଲ ତୋର ରାଣୀ ॥
ଲୁଚାଇ ଥୋଇଅଛି ଶିର । ଆମ୍ଭ ଅଯୋଗ୍ୟ ସେ ଆହାର ॥
ଶୁଣି ନୃପତି ବେଗେ ଗଲେ । କେଉଁ ସଖୀ କି କଲୁ ବୋଇଲେ ॥
ତୁ ପୁଣି ଲୁଚାଇଲୁ ମୁଣ୍ଡ । ବିପ୍ର ତ ରାଗରେ ପ୍ରଚଣ୍ଡ ॥
ଶୁଣି ଜାଣିଲେ ମହାସତୀ । ନିଶ୍ଚେ ସେ ଅଟେ ମହାଯତି ॥
ଏମନ୍ତ ବୋଲି ମୁଣ୍ଡ ଧରି । ଛେଦିଲେ ଖଣ୍ଡ ଖଣ୍ଡ କରି ॥
ରନ୍ଧଣାବଧି ବେଗେ କଲେ । ବିପ୍ରଙ୍କୁ ଡାକିଣ ଆଣିଲେ ॥
ଆସନ ପାଦାସନ ଦେଇ । କଦଳୀ ପତ୍ରେକ ବିଛାଇ ॥
ଆପଣେ କର୍ଣ୍ଣ ମହାରାଣୀ । ସୁପକ୍ୱ ପରଷିଲେ ଆଣି ॥
ଦେଖି ବୋଲନ୍ତି ବ୍ରହ୍ମବନ୍ଧୁ । ଏକପତ୍ରକେ ବାଢ଼ିଅଛ ॥
ଏଥେ କି ବସି ଅଛ ଭରି । ମୋତେ ମାରିବ ବୋଲି କରି ॥
ଏ ଘରେ ଅଛ ଯେତେ ଜନ । ସମସ୍ତେ କରିବା ଭୋଜନ ॥
ନୋହିଲେ ଲେଉଟିଣ ଯିବ । ମୁଁ କପାଁ ଏକାକୀ ଭୁଞ୍ଜିବ ॥
ଶୁଣି ଚକିତ ରାଜା ରାଣୀ । ଆବର ବେନି ପତ୍ର ଆଣି ॥
ଅନ୍ନ ବ୍ୟଞ୍ଜନ ଯେ ବାଢ଼ିଲେ । ଭୁଞ୍ଜିବା ପରି ଆରମ୍ଭିଲେ ॥
ପ୍ରଭୁ ଜାଣିଲେ ତାଙ୍କ ମନ । ବୋଇଲେ ଶୁଣ ହେ ରାଜନ ॥
ଆଉର ପତ୍ରେକ ପକାଅ । ଭୁଞ୍ଜିବ ପରା ତୋର ପୁଅ ॥
ଶୁଣି ବୋଇଲେ କର୍ଣ୍ଣବୀର । କାହୁଁ ପାଇବ ପୁତ୍ର ମୋର ॥
ଭ୍ରମର ଦେଖୁ ଦେଖୁ ଏଥେ । ହାଣିଲ ପରା ମୋର ହସ୍ତେ ॥
ତା ମାଂସ କଲଇ ରନ୍ଧନ । ଆଉ କି ଅଛି ମୋ ନନ୍ଦନ ॥
ଶୁଣି ବୋଲନ୍ତି ନରହରି । ଶୁଣ ତୁ କର୍ଣ୍ଣ ଦଣ୍ଡଧାରୀ ॥
ଯେଡ଼େ ବିଶ୍ୱାସ ଅଛି ତୋର । କାହୁଁ ମରିବ ତୋ କୁମର ॥

ଆମ୍ଭେ ଯେ ଦେଉଛୁଁ କଲ୍ୟାଣ । ଲଭ ତୁ ଆପଣା ନନ୍ଦନ ॥
ହୋ ପୁତ୍ର ଚିରଂଜୀବୀ ହେଉ । ଅନ୍ତେ ଗୋବିନ୍ଦପଦ ପାଉ ॥
ତୋ ରାଣୀ ତୁହ୍ମ ବେନି ଜନ । ଲଭ ହୋ ବୈକୁଣ୍ଠ ଭୁବନ ॥
ଆମ୍ଭ କଲ୍ୟାଣେ ଏହା ହେଉ । ତୋ କୀର୍ତ୍ତି ଯୁଗେ ଯୁଗେ ରହୁ ॥
ଏବେ ତୁ ଯାଅ ଦଣ୍ଡଧାରୀ । ଡାକ ହୋ ପୁତ୍ର ନାମ ଧରି ॥
ରାଣୀ ସହିତେ ତୁହ୍ମେ ଯାଅ । ଦେଖି ଆସିବ ତୋର ପୁଅ ॥
ଶୁଣିଣ ରାଜା ରାଣୀ ଗଲେ । ଶ୍ରୀକୃଷ୍ଣ ମାୟା ନ ଜାଣିଲେ ॥
ଡାକିଲେ ଆସ ରେ କୁମର । ଭୁଞ୍ଜିବା ହେଉଛି ଉଛୁର ॥
ମାତା ପିତାଙ୍କ ଡାକ ଶୁଣି । ଧାଇଁ ଅଇଲା ପୁତ୍ରମଣି ॥
ପୁତ୍ର ଦେଖିଣ ବାପ ମାଏ । ଅଇଲେ ଘେନିଣ ତନୟେ ॥
ଘରେ ପ୍ରବେଶ ହେଲେ ଯାଇଁ । ଦେଖିଲେ ବିପ୍ର ଆଉ ନାହିଁ ॥
ବିଚାର କଲେ ମନେ ମନ । ନିଶ୍ଚୟ ପ୍ରଭୁ ଭଗବାନ ॥
ଘୋର ପୁତ୍ରର ପାଇଁ ଗଲୁ । ଅମୂଲ୍ୟ ଧନ ହରାଇଲୁ ॥
ଆନନ୍ଦ ବଳେ କି ଏ କଥା । ମରିଲା ଜୀବ କି ଜୀଅନ୍ତା ॥
ଏମନ୍ତ ବୋଲି ତିନି ଜଣ । ଚିତ୍ତେ ଚିନ୍ତିଲେ ନାରାୟଣ ॥
ପ୍ରଭୁ ଶୂନ୍ୟରେ ଡାକ ଦେଲେ । ମୁହିଁ ଟି ଶ୍ରୀହରି ବୋଇଲେ ॥
ଆଉ କେ ମାଗିଲେ ଭୋଜନ । ନ ଦେବୁ ପୁତ୍ରକୁ ମାରିଣ ॥
ଶୂନ୍ୟ ଶବଦ ଏହା ଶୁଣି । ଆନନ୍ଦେ କର୍ଣ୍ଣ ବୀରମଣି ॥
ପୁତ୍ର ଭାରିଯା ତିନିଜଣ । କରିଲେ ଗୋବିନ୍ଦ ଭଜନ ॥
କାଳେ ବୈକୁଣ୍ଠ ପଦ୍ମାପତି । ଶୁଣ ହୋ ମନ ନୃପନାଥ ॥
ଦାନର ମହିମା ଏମନ୍ତ । କେବଳ ଥିବ ଦୃଢ଼ଚିତ୍ତ ॥
ଏ ମନ ଚୈତନ୍ୟ ସମ୍ବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥
ଯେ ପ୍ରାଣୀ ଶ୍ରଦ୍ଧାରେ ଶୁଣିବ । ହେଲେ ତରିବ ଭବାର୍ଣ୍ଣବ ॥
ସୁଜନେ କୃଷ୍ଣ ଚିନ୍ତା କର । ଦେହ ସଂସାର ନୋହେ ସ୍ଥିର ॥
ହରି ପଦାରବିନ୍ଦ ଗତି । ମୋ ଚିତ୍ତ ରହୁ ଭୃଙ୍ଗ ମତି ॥

ସାଧୁ ଶ୍ରୀକୃଷ୍ଣ ପାଦ ଦୁଇ । ଅନ୍ୟ ଶରଣ ମୋର ନାହିଁ ॥
ସାଧୁ ପାପହିଁ ନାମ ନାବ । ମୋତେ ଏ ଦୁଇ ଆଜ୍ଞା ହେବ ॥
ହେ ପ୍ରଭୁ ଏତେ ମାନ କର । ଶରଣ ଜନ୍ମେ ଜନ୍ମେ ମୋର ॥

ଇତି ଶ୍ରୀ ଦାଢ଼୍ୟଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ
କର୍ଣ୍ଣରାଜା ତୃତ ମୋକ୍ଷଣେ ନାମ ତୃତୀୟୋଽଧ୍ୟାୟଃ ।

---

## ଚତୁର୍ଥ ଅଧ୍ୟାୟ

### ଦୀନବନ୍ଧୁ ଦାସ ସମ୍ବାଦ

### ମନ ଉବାଚ

ମନ ବୋଲଇ ଚଇତନ । ଶୁଣିଲ କର୍ଣ୍ଣର ବଧାନ ॥
ମୋର କଲ୍ମଷ ଯେତେ ଥିଲା । ଶ୍ରବଣ ମାତ୍ରେ ଦୂରେ ଗଲା ॥
କଳି ଯୁଗରେ ଏହିମତେ । ତରଣ ପାଇଛନ୍ତି ଯେତେ ॥
ଜାଣିଣ ଥିଲେ କହ କିଛି । ଶୁଣିବା ମୋର ଶ୍ରଦ୍ଧା ଅଛି ॥
ତା ଶୁଣି ବୋଲେ ଚଇତନ । ଏବେ ତୁ ଶୁଣ ହେ ରାଜନ ॥
କଳିଯୁଗରେ ଯେ ବ୍ୟବସ୍ଥା । ଅଶ୍ରୁତ ଅଗୋଚର କଥା ॥
ଯାହା ଶୁଣିଛି ସାଧୁ ମୁଖୁ । ତାହା ମୁଁ କହିବି ତୁମ୍ଭଙ୍କୁ ॥
ଅବନ୍ତୀ ନଗରେ ତା ଘର । ଜାତରେ ଅଟଇ ଦ୍ୱିଜବର ॥
ନାମ ତା ଦୀନବନ୍ଧୁ ଦାସ । କୃଷ୍ଣ କଥାରେ ତାର ଆଶ ॥
ହରିଚରଣ ବିନା ଅନ୍ୟେ । ଶ୍ରଦ୍ଧା ନ ବଳେ ତାର ମନେ ॥
ତାହାର ସୁତ ବେନି ଗୋଟି । ପତ୍ନୀର ନାମ ତା ମାଳତୀ ॥
ଅଛନ୍ତି ଏକ ବଧୂ ତାର । ସାଧବୀ ଚତୁରୀ ସୁନ୍ଦର ॥
କୁଟୁମ୍ବ ପାଞ୍ଚଜଣ ତାର । ଏକକୁ ଆରେକ ଅନ୍ତର ॥
ପ୍ରଭୁଙ୍କ ଯଶ ଗୁଣ ଯେତେ । ନିତ୍ୟେ ଚିନ୍ତନ୍ତି ହୃଦଗତେ ॥
ସାଧୁଙ୍କ ମୁଖୁ ରସ ବାଣୀ । ନିରତେ କର୍ଣ୍ଣପୁଟେ ଶୁଣି ॥
ବଦନେ ପ୍ରଭୁ ନାମ ଭଜି । ଅସତ୍ୟ ସଙ୍ଗ ଦୂରେ ତେଜି ॥

ମିଥ୍ୟା ବଚନ ନ ଭାଷନ୍ତି । ନିରତେ ପରହିତେ ଥାନ୍ତି ॥
ସର୍ବଦା ସାଧୁଙ୍କ ଚରଣ । ସେବାରେ ଥାନ୍ତି ପାଞ୍ଚଜଣ ॥
ଦୁଃଖୀ ଦରିଦ୍ରଙ୍କୁ ଦେଖିଲେ । ଦିଅନ୍ତି ଅନ୍ନ ବସ୍ତ୍ର ଭଲେ ॥
ଯୋଗୀ ସନ୍ନ୍ୟାସୀ ବ୍ରହ୍ମଚାରୀ । ବ୍ରାହ୍ମଣ ବୈଷ୍ଣବ ଭିକାରୀ ॥
ଏମାନେ ପ୍ରକାଶିଲେ ଯେତେ । ନାହିଁ ନ ବୋଲେ କଦାଚିତେ ॥
ଶରୀର ଅନୁକ୍ରମେ ଦେଇ । ନ ଥିଲେ କହଇ ବିନୟୀ ॥
ଦୁଆରୁ ନିରସ ହୋଇଣ । ଲେଉଟେ ନାହିଁ ଏକ ଜଣ ॥
ଏମନ୍ତେ କେତେ ଦିନ ଗଲା । ତା କୀର୍ତ୍ତି ଜଗତେ ପୂରିଲା ॥
ଜାଣିଲେ ପ୍ରଭୁ ଭଗବାନ । ବୁଝିବା ପାଇଁ ତାର ମନ ॥
ମାୟା-ସନ୍ନ୍ୟାସୀ ରୂପ ଧରି । ବିଜୟ କଲେ ନରହରି ॥
ହସ୍ତରେ ଦଣ୍ଡ କମଣ୍ଡଳ । ତୁଳସୀମାଳ ବକ୍ଷସ୍ଥଳ ॥
କଷାବସନ ପରିଧାନ । ସର୍ବାଙ୍ଗେ ବିଭୂତି ଭୂଷଣ ॥
ଏମନ୍ତ ବେଶେ ଦାମୋଦର । ମିଳିଲେ ଅବନ୍ତୀନଗର ॥
ତକ୍ଷକ ରାଜ ଆଜ୍ଞା ଦେଲେ । ହେ ସର୍ପ ଯିବୁ ତୁ ବୋଇଲେ ॥
ଯେ ଦୀନବନ୍ଧୁ ଦାସ ପୁଅ । ତାକୁ ଦଂଶିବୁ ବେଗେ ଯାଅ ॥
ଆଜ୍ଞା ପ୍ରମାଣେ ସର୍ପ ଗଲା । ଦାସଙ୍କ ପୁତ୍ରକୁ ଦଂଶିଲା ॥
ତା ଜ୍ୟେଷ୍ଠ ପୁତ୍ର ପ୍ରାଣ ହାରି । ତକ୍ଷଣେ ଗଲା ଯମପୁରୀ ॥
ଏଥିଉତ୍ତାରୁ ପିତାମାତା । ଜାଣିଲେ ପୁତ୍ର ମଲା କଥା ॥
ଭାଇ ଭଉଣୀ ଆଦି ତାର । ବେଢ଼ିଲେ ଗୃହ ପାଖୁଣିର ॥
ମୃତଦେହକୁ ଶୁଆଇଣ । ଅନେକ କରନ୍ତି ରୋଦନ ॥
ନିଜ ସ୍ୱାମୀର ଗୁଣ ଶୁଣି । ଅନେକ କାନ୍ଦେ ତା ତରୁଣୀ ॥
ମାତା ପୁତ୍ରର ଗୁଣମାନ । ଚିନ୍ତିଣ କରଇ ରୋଦନ ॥
ପିତା ଯେ ଅନେକ ପ୍ରକାରେ । ପୁତ୍ରଙ୍କୁ ଧରି ଶୋକ କରେ ॥
ଆବର ଭ୍ରାତା ଗୁଣ ଗୁଣି । କାନ୍ଦଣ ଲୋଟଇ ଧରଣୀ ॥
ଏମନ୍ତ ଗୃହଜଣଯାକ । ଅନେକ କରୁଛନ୍ତି ଶୋକ ॥

ଏହି ସମୟେ ଦାମୋଦର । ପଗୃର ପଗୃର ଦାଣ୍ଡର ॥
ନୀଳାମ୍ବରରେ ବିଜେ କଲେ । ଭକ୍ତର ଦ୍ୱାରେ ସେ ମିଳିଲେ ॥
ଡାକିଲେ ଦୀନବନ୍ଧୁ ଦାସ । ବହନ ଆସ ମୋର ପାଶ ॥
ଶୁଣିଲେ ଅପୂର୍ବ ବଚନ । ସମସ୍ତେ ତେଜିଲେ ବେଦନ ॥
ଦାସେ ଭିତରେ ମୁଖ ଧୋଇ । ପ୍ରଭୁଙ୍କ ଆଗେ ହେଲେ ଯାଇ ॥
ଦେଖିଲେ ସନ୍ନ୍ୟାସୀ ଗୋସାଇଁ । ସାଷ୍ଟାଙ୍ଗେ ପ୍ରଣିପାତ ହୋଇ ॥
ଉଠି କପାଳେ କର ଦେଲେ । କି ଆଜ୍ଞା ହେଉଛି ବୋଇଲେ ॥
ପ୍ରଭୁ ବୋଇଲେ ଦାସେ ଶୁଣ । ଆମ୍ଭେ ତୋ କୀରତ ଶୁଣିଣ ॥
ତେଣୁ ଅଇଲୁ ତୋର ପାଶ । ସୁଚତ୍ତେ ମୋତେ ଦିଅ ଗ୍ରାସ ॥
ତା ଶୁଣି ଦୀନବନ୍ଧୁ ଦାସ । ବୋଇଲେ ପ୍ରଭୁ କ୍ଷଣେ ବସ ॥
ଆସନ ଦେଇ ଚଳିଗଲେ । ମନ୍ଦିରେ ପ୍ରବେଶ ହୋଇଲେ ॥
ପୁତ୍ର ଘରଣୀ ବନ୍ଧୁ ଆଗେ । କହିଲେ ଅତ୍ୟନ୍ତ ସ୍ୱରାଗେ ॥
ଅତିଥି ଭୋଜନ ମାଗୁଛି । ଏଣେ ତ ପୁ· ମରିଅଛି ॥
ଦେବକି ନାହିଁ ଶୁଦ୍ଧ ଚିତ୍ତେ । ବହନ କହ ସତ୍ୟେ ମୋତେ ॥
ଶୁଣି ପୁତ୍ରାଦି ଜନଗଣ । କହନ୍ତି ପିଅର ଆଗେଣ ॥
ମଲେ ତ ନ ଆସଇ ଆଉ । ଅତିଥି ସେବା ଆଗ ହେଉ ॥
ନିଶ୍ଚେ ନ ଯାଉ ସନ୍ନ୍ୟାସ । ତା ଶୁଣି ଦୀନବନ୍ଧୁ ଦାସ ॥
ଅତ୍ୟନ୍ତ ଆନନ୍ଦ ହୋଇଲା । ମସିଣା ଗୋଟିଏ ଆଣିଲା ॥
ମଲା ପୁତ୍ରକୁ ଶୁଆଇଲା । ବନ୍ଧନ କରି ଥୋଇଦେଲା ॥
ଗମ୍ଭୀର ମଧେ ଲୁଗୃଇଲା । ମନ୍ଦିର ଲିପାପୋଛା କଲା ॥
ସ୍ନାନାଦି ଶୁଚିମନ୍ତ ହୋଇ । ରନ୍ଧନ କଲେ ବେଗେ ଯାଇ ॥
ପ୍ରଭୁଙ୍କୁ ଡାକିଣ ଆଣିଲେ । ମନ୍ଦିରେ ବିଜେ କରାଇଲେ ॥
ଦିବ୍ୟ ଆସନେ ବସାଇଲେ । ଅନ୍ନ ବ୍ୟଞ୍ଜନ ପରଷିଲେ ॥
ଦେଖି ବୋଲନ୍ତି ଭଗବାନ । ଆମିଷ ନ କଲ ରନ୍ଧନ ॥
ନିଷ୍ଠୁର ଲୋକଟି ମୁଁ ଯିବ । ଆମିଷ ବିନା ନ ଭୁଞ୍ଜିବ ॥



ସନ୍ୟାସୀ ଦୀନବନ୍ଧୁ ଦାସଙ୍କୁ କହୁଛନ୍ତି, "ପୁଅର ଶବକୁ ଘରେ ପକାଇ
ମାଛ ଭାତ ଖାଇ ବସୁଛ !"

ତା ଶୁଣି ଗନ୍ଧଲେ ଆମିଷ । ବୋଇଲେ ସ୍ୱାମୀ ଭୁଞ୍ଜ ବସ ॥
ଦେଖିଣ ବୋଇଲେ ଶ୍ରୀବତ୍ସ । ଏକପଦେହେ ତ ବାଢ଼ିଅଛ ॥
ଗୃହରେ ଅଛୁ ଯେତେ ଜନ । ସମସ୍ତେ ନ କଲେ ଭୋଜନ ॥
ଆମ୍ଭେ ନ ଭୁଞ୍ଜୁ ଏକା ହୋଇ । ଯାଉଛୁ ଅନ୍ନ ରଖ ତୁହି ॥
ଶୁଣି ଗୃହସ୍ଥେ ଠାଗଠାର । ସମସ୍ତେ ହୃଦରେ ବିଗୃର ॥
ଆମ୍ଭେ ଯଦ୍ୟପି ନ ଭୁଞ୍ଜିବା । ଅତିଥି ସେବା ନ ପାଇବା ॥
ଚଳଇଁଟି ଯିବ ଏ ସନ୍ନ୍ୟାସ । ମନରେ ହୋଇଣ ନିରାଶ ॥
ଏମନ୍ତ ବିଗୃର ଭିତରେ । ବାଢ଼ିଲେ ଗୃହଙ୍କ ନିମନ୍ତେ ॥
ଆମିଷ ମାତ୍ର ନ ବାଢ଼ିଲେ । ଦେଖିଣ ସନ୍ନ୍ୟାସୀ ବୋଇଲେ ॥
ତୁମ୍ଭେ ତ ନ ବାଢ଼ ଆମିଷ । ଏଥେ କି ଭରିଅଛି ବିଷ ॥
ଜାଣିଲି କପଟ ତୁମ୍ଭର । ବୋଲି ଉଠିଲେ ଚକ୍ରଧର ॥
ତା ଶୁଣି ଦୀନବନ୍ଧୁ ଦାସ । ପୁତ୍ର ଭରିଯା ଭାଇ ପାଶ ॥
ଆପଣେ କଲେକ ବିଗୃର । କି ବୁଦ୍ଧି କରିବା ଏଥର ॥
ପୁତ୍ର ମରିବାର ଜାଣିଲେ । ଅତିଥି ନ ଭୁଞ୍ଜିବେ ଭଲେ ॥
ଏମନ୍ତ ବିଗୃର କରିଣ । ବସିଲେ ଆମିଷ ଘେନିଣ ॥
ତାହାଙ୍କ ମନ ପ୍ରଭୁ ଜାଣି । ହସି ବୋଲନ୍ତି ତାଙ୍କୁ ପୁଣି ॥
ଶୁଣ ହୋ ଅନ୍ନଦାତା ତୁହି । ଗ୍ରାମରେ ପଗୃରନ୍ତି ମୁହିଁ ॥
ତୋହର ଜେଷ୍ଠଗୋଟି ସୁତ । ଏକଇ ବଧୂ ତାତ ମାତ ॥
ଏମନ୍ତେ ଅଟ ପାଞ୍ଚଜଣ । କାହିଁ ତୋ ଆଉ ପୁତ୍ର ଅଣ ॥
ତା ଶୁଣି ଦୀନବନ୍ଧୁ ଦାସ । ହୃଦରୁ ଉଡ଼ିଲା ସାହସ ॥
କମ୍ପେ ଶରୀର ଥରହର । ବଦନୁ ନଇଲା ଉତ୍ତର ॥
ତା ଦେଖି ତ୍ରୈଲୋକଗୋସାଇଁ । ବୋଇଲେ ଭୟ କାହିଁ ପାଇଁ ॥
ମାୟା ନ କର ସତ୍ୟ କହ । କାହିଁ ଅଛଇ ତୋର ପୁଅ ॥
ପୁଣି କୁଟୁମ୍ବ ଗୃହଜଣ । ପଡ଼ିଲେ ଅତିଥି ଚରଣ ॥
ହେ ସ୍ୱାମୀ ଶୁଣ ଏବେ ତୁମ୍ଭେ । ସ୍ୱରୂପ କହୁଅଛୁଁ ଆମ୍ଭେ ॥

ସର୍ପାଧାତରେ ପୁତ୍ର ମର । ଲୁଚୁଇ ଥୋଇଛୁ ଗମ୍ଭୀର ॥
ତା ଶୁଣି ବୋଲନ୍ତି ଅଚ୍ୟୁତ । ଦେଖିଲେ ମଣିବା ନା ସତ ॥
ଶୁଣିଣ ମାତା ପିତା ଗଲେ । ପୁତ୍ରଙ୍କୁ ବହନ୍ତେ ଆଣିଲେ ॥
ମର୍ପିଣା ଗୋଟି ଦେଲେ ଫେଇ । ମଲପୁତ୍ର ଯେ ଅଛୁ ତହିଁ ॥
ଦେଖି ବୋଇଲେ ପୀତବାସ । ଶୁଣ ହେ ଦୀନବନ୍ଧୁ ଦାସ ॥
କେ ତୋତେ ବୋଲେ ଜ୍ଞାନବନ୍ତ । ଜାଣିଲି ବଡ଼ ମନ୍ଦ ତୁ ତ ॥
ମଲା ପୁତ୍ରଙ୍କୁ ସ୍ନେହ ଥୋଇ । ବସିଛୁ ମାଛ ଭାତ ଖାଇ ॥
ଦାସେ ବୋଇଲେ ହେ। ଗୋସାଇଁ । ତୁମ୍ଭଙ୍କୁ କ କହିବ ମୁହିଁ ॥
କେ ଅଟେ କାହାର କୁମର । କେ ଅଟେ କାହାର ପିଅର ॥
ଯେସନେ ବୃକ୍ଷ ଥାଇ । ତହିଁ ବଉଳ ବଉଳଇ ॥
କେତେହେଁ କଷିରୁ ଝଡ଼ଇ । କେତେ ବା ବଢ଼ଣ ପଡ଼ଇ ॥
କେତେ ପାଚିଲା ପାଏ ଡାଳେ । ଥାଇଣ ପଡ଼େ ବୃକ୍ଷତଳେ ॥
ସେମନ୍ତେ କେତେ ଝଡ଼ିଯାଇ । ତା ତୁଲେ ବୃକ୍ଷ ନକି ଧାଇଁ ॥
ଏହି ପ୍ରକାରେ ଏ ସଂସାର । ବୃକ୍ଷର ଫଳର ପ୍ରକାର ॥
ତାହାର ସୁଖେ ସେ ଝଡ଼ିଲା । ମୋର ଅତଥିସେବା ହେଲା ॥
ଏଥିରୁ ବଳି ଭାଗ୍ୟ କସ । ଶୁଣି ହସିଲେ ପୀତବାସ ॥
ବୋଇଲେ ଦାସପତ୍ନୀ ଶୁଣ । ତୁହି ତ ବଡ଼ଇ ଦାରୁଣ ॥
ମଲର ପୁତ୍ରଙ୍କୁ ପକାଇ । ବସିଛୁ ମାଛ ଭାତ ଖାଇ ॥
ଶୁଣି ଯୁବତୀ କହେ ଧୀରେ । ଯାହା ବୋଇଲ ମୁନିବରେ ॥
ସ୍ୱରୂପ ଶୁଣ ହେ ଗୋସାଇଁ ମୁଁ କେ ମୋ ପୁତ୍ର କେ ଅଟଇ
ଯେସନେ ଚକ୍ରୀ ଚକ୍ରଖଣ୍ଡ । ମୃତ୍ତିକା ଲଦି ଗଢ଼େ ଭଣ୍ଡ ॥
କେ ଗଢ଼ୁ ଗଢ଼ୁ ଭାଙ୍ଗିଯାଇ । କେବୁ ପୋଡ଼ିବା ଯାଏ ଥାଇ ॥
ଯେବଣ ଭଣ୍ଡ ଭାଙ୍ଗି ଯାଇ । ତା ତୁଲେ ଚକ୍ରୀ ନକି ଧାଇଁ ॥
ସେ ଭଣ୍ଡ ଚକ୍ରୀ ମୁହିଁ ଶୁଣ । ଏ ସବୁ ଗୋବିନ୍ଦ ଭିଆଣ ॥
ଶୁଣି ଆନନ୍ଦ ହୃଷୀକେଶ । ଆଣେ ପୁତ୍ରଙ୍କୁ ବାଇ ପାଶ ॥

ବୋଇଲେ ଶୁଣରେ କୁମର । ଏ ପର ଭ୍ରାତା ଅଟେ ତୋର ॥
ମୃତ ଦେହକୁ ତୁ ପକାଇ । ବସିଛୁ ମାଛ ଭାତ ଖାଇ ॥
ତୋ ଠାରୁ ନାହିଁ ନା ଅଜ୍ଞାନ । ତା ଶୁଣି ବୋଲଇ ନନ୍ଦନ ॥
ଶୁଣ ହେ ସନ୍ନ୍ୟାସୀ ଗୋସାଇଁ । ସେ ମୋର କେତେ ଜନ୍ମେ ଭାଇ
ମୁଁ ତାର କେମନ୍ତେ ସୋଦର । ଏ ସବୁ ମାୟାର ସଂସାର ॥
ଯେସନେ ହାଟେ ବଣିକାର । ପସରା ବସାଇ ଅପାର ॥
ଏକଇ ଭ୍ରାତା ପ୍ରାୟ ହୋଇ । ବସିଣ ବିକୁଥାନ୍ତି ତହିଁ ॥
ବ୍ୟାପାର ସରଇ ଯାହାର । ସେ ବାନ୍ଧି ଚଳେ ତାର ପୁର ॥
ଯାହାର ସରିଣ ନ ଥାଇ । ସେ ନିଜ ତାର ସଙ୍ଗେ ଯାଇ ॥
ସେହି ପ୍ରକାରେ ଏ ସଂସାର । ତାହାର ମୋହର ବ୍ୟାପାର ॥
ବ୍ୟାପାର ସରିଲା ସେ ଗଲା । ମୋର ଅଛଇ ସେବା ହେଲା ॥
ଶୁଣି ଆନନ୍ଦ ଦୟାନିଧି । ବୋଇଲେ ଧନ୍ୟ ଏହା ବୁଦ୍ଧି ॥
ତାହାର ବୋହୂକୁ ଡାକିଲେ । ଶୁଣ ଗୋ କୁମାରୀ ବୋଇଲେ ॥
ଏ ପର ସ୍ୱାମୀ ଅଟେ ତୋର । ତୁ ପତ୍ନୀ ଭରଯା ତାହାର ॥
ନିଜ ପତି ଯେ ତୋର ମଲା । ବିଧବା ଯୋଗ ତୋତେ ହେଲା ॥
ମୃତପିଣ୍ଡକୁ ଘରେ ଥୋଇ । ଆମିଷ ଭୁଞ୍ଜି ଲୋଭ ଥୁଇ ॥
ଧିକ ତୋ ଜୀବନ୍ତ ପଣ । କୁମାରୀ ବୋଲେ ପ୍ରଭୁ ଶୁଣ ॥
କେହୁ ଅଟଇ କାହା ଭର୍ତ୍ତା । କେ ପୁଣି କାହାର ବନିତା ॥
ଯେସନ ଘୋର ବୃଷ୍ଟିକାଳେ । ନଦୀ ପୂରିଣ ବହେ ଜଳେ ॥
ବନସ୍ଥ କାଠ ଖଣ୍ଡ ଦୁଇ । ମିଶିଣ ଭାସି ଯାଉଥାଇ ॥
କେତେହେଁ ଦୂରେ ଭାସିଯାନ୍ତେ । ଲତାଏ ରହାଇଛି ପଥେ ॥
ତହୁଁ ଗୋଟିଏ ଲାଗି ରହି । ଆରକେ ଖଣ୍ଡ ଭାସିଯାଇ ॥
ଯେବଣ କାଠ ଭାସିଯାଇ । ଆରେକ କାଠ କି ଗୋହାଇ ॥
ସେହି ପ୍ରକାରେ ଏ ସଂସାର । ଗୋବିନ୍ଦ ଲୀଳା ଖେଳଘର ॥
ବନା ଆଣିଥିଲେ ସେହି ଗଲା । ମୋର ଅଛଇ ସେବା ହେଲା ॥

ଶୁଣି ବୋଇଲେ ଭଗବାନ । ଧନ୍ୟ ଏ ଗୃହଙ୍କର ମନ ॥
ଏହାଙ୍କ ପରାୟେ ହୋଇଣ । ନ ଥିବେ ବ୍ରହ୍ମାଣ୍ଡ ମଧ୍ୟେଣ ॥
ଏମନ୍ତ ବୋଲି ନରହରି । ଜଳ ତୁଳସୀ କରେ ଧରି ॥
ପୁତ୍ରର ମୁଖରେ ସିଞ୍ଚିଲେ । ଉଠରେ କୁମର ବୋଇଲେ ॥
ତକ୍ଷଣେ କୁମର ଉଠିଲା । ଗୋବିନ୍ଦ ଚରଣେ ଲୋଟିଲା ॥
ପ୍ରଭୁ ବୋଇଲେ ଆରେ ସୁତ । ମୁଁ ତ ଦେଖିଲି ବିପରୀତ ॥
ଦେଖ ତୋ ଜନନୀ ପିଅର । ଆବର ପତ୍ନୀ ସହୋଦର ॥
ତୋର ଅର୍ଜନେ କରି ଆଶ । ଖଟିଣ ଥାନ୍ତି ତୋର ପାଶ ॥
ଏବେ ତୋ ମୃତ୍ୟୁକାଳ ଦେଖି । ଗୁପତ କରି ତୋତେ ରଖି ॥
ବସିଛନ୍ତି ମାଛ ଭାତ ଖାଇ । କେହ୍ନେ ଏହାଙ୍କ ଘରେ ତୁହି ॥
ରହିଣ ଅଛୁ ରେ ନନ୍ଦନ । ଧିକ ଏ ତୋହର ଜୀବନ ॥
ଏହା ଶୁଣି କୁମର ବୋଲଇ । ଶୁଣ ହେ ସନ୍ନ୍ୟାସୀ ଗୋସାଇଁ ॥
କିଏ କାର ଜନନୀ ପିଅର । କେ କାର ଭ୍ରାତା ସହୋଦର ॥
କେ କାର ଅଟଇ ଯୁବତୀ । କେ ପୁଣି ଅଟେ କାହା ପତି ॥
ମିଥ୍ୟା ଅଟଇ ଏ ସଂସାର । କେହି ତ ନୁହଇ କାହାର ॥
ଯେସନେ ଘୋର ଗ୍ରୀଷ୍ମକାଳ । ପଥରେ ପଥିକ ସକଳେ ॥
ପାଞ୍ଚ ପଥିକ ଯାଉଥାନ୍ତି । ବାଟରେ ବୃକ୍ଷେକ ଦେଖନ୍ତି ॥
ଏକ ବୃକ୍ଷର ପ୍ରାନ୍ତ ହୋଇ । ବସନ୍ତି ତାହା ତଳେ ଯାଇଁ ॥
ଶ୍ରମ ସହିଲେ ଯେଝାମତେ । ଚଳନ୍ତି ବୃକ୍ଷ ଥାଇ ପଥେ ॥
ସେହି ପ୍ରକାରେ ଏ ସଂସାର । ଋଣାନୁବନ୍ଧନ ବେଭାର ॥
ଏଥିକୁ ଶ୍ରୀକୃଷ୍ଣ ଭଜନ । ସାଧୁଙ୍କ ସେବା ପ୍ରତିଦିନ ॥
କରି ବଞ୍ଚଇ ଯେଉଁ ନର । ଧନ୍ୟ ଜୀବନ ବୋଲି ତାର ॥
ଶୁଣି ବୋଇଲେ ନାରାୟଣ । ଧନ୍ୟ ଯେ ଅଟ ପାଞ୍ଚଜଣ ॥
ଜୀବନ୍ତେ ସୁଖୀ ହୋଇଥାଅ । ମଲେ ଶ୍ରୀହରି ପାଦ ପାଅ ॥
ଏମନ୍ତ ଆଜ୍ଞା ଦେଲେ ଶୁଣି । ଅତି ଆନନ୍ଦ ପଞ୍ଚପ୍ରାଣୀ ॥

ଅଭୟ ପଦ୍ମପାଦତଳେ । ସବେ ପଡ଼ିଲେ ଏକାବେଳେ ॥
ପ୍ରଭୁ ଅଭୟ ବର ଦେଲେ । ଅଭୟ ହୁଅ ରେ ବୋଇଲେ ॥
ତକ୍ଷଣେ ଉଠି ପାଞ୍ଚଜଣ । ଦେଖିଲେ ନାହାନ୍ତି ଆପଣ ॥
ଆମ୍ଭେ ହିଁ ଜଗତ ଜୀବନ । ବୋଲି ହୋଇଲେ ଅନ୍ତର୍ଦ୍ଧାନ ॥
ବୋଇଲେ ଦୟାଳୁ ଠାକୁର । ଏଡ଼େ ନିଷ୍ଠୁର ହୃଦ ତୋର ॥
ଦେଖାଇ ନିଧି ହରିନେଲୁ । ନେତ୍ର ପିଣ୍ଡ଼ି ନ ଦେଖିଲୁ ॥
ଯା ମାୟା ଦେବେ ଅଗୋଚର । ଆମ୍ଭେ ବା କେତେକ ମାତର ॥
ହେଲେ ତୋ କୃପା ମାତ୍ର ଥାଉ । ଅଧିକ କି କହିବା ଆଉ ॥
ଏମନ୍ତେ ବଞ୍ଚିଲେ ସେ କାଳ । ଭଜିଣ ପ୍ରଭୁ ଆଦିମୂଳ ॥
ସାଧୁଙ୍କ ସଙ୍ଗେ ଦିନ ନେଲେ । ପରମ ପଦ ସେ ଲଭିଲେ ॥
କହଇ ଚଇତନ ଧୀରେ । ମନ ନୃପତିର ଆଗରେ ॥
କଳିଯୁଗର ଭକ୍ତ ବାଣୀ । ଶୁଣି ପବିତ୍ର ହୁଅ ପ୍ରାଣୀ ॥
କହଇ ଦୀନ ରାମଦାସ । ସାଧୁ ଚରଣେ ମୋର ଆଶ ॥
ଶ୍ରୀରାମ ଶ୍ରୀକୃଷ୍ଣ ଶ୍ରୀହରି । ମୁକୁନ୍ଦ ମାଧବ ମୁରାରି ॥
ଭଜ ଗୋବିନ୍ଦ ଆଦିକନ୍ଦ । ଦୀନବାନ୍ଧବ ସଦାନନ୍ଦ ॥
ଅନନ୍ତ ଅଚ୍ୟୁତ ଶ୍ରୀବତ୍ସ । ନାମ ଗୋଟିକେ କୋଟି ମୋକ୍ଷ
ଏ ନାମ ଭଜି ଜୀବ ଯାଉ । ହେ ପ୍ରଭୁ ଏହି ଆଜ୍ଞା ହେଉ ॥

ଇତି ଶ୍ରୀ ଦାର୍ଢ୍ୟଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ
ଦୀନବନ୍ଧୁ ଦାସ ଦୃଢ଼ଭକ୍ତ ଭାବ ବର୍ଣ୍ଣନେ
ଚତୁର୍ଥୋଽଧ୍ୟାୟଃ ।

---

## ପଞ୍ଚମ ଅଧ୍ୟାୟ

ଦାମୋଦର ଦାସ ସମ୍ବାଦ

ମନ ଉବାଚ

ମନ ବୋଲଇ ଚଇତନ । କହିଲ ଅପୂର୍ବ ବଚନ ॥

କଳିଯୁଗର ଭକ୍ତବାଣୀ । କୃତାର୍ଥ ହେଲି ତାହା ଶୁଣି ॥
ଯେସନେ କ୍ଷୁଧାତୁର ଜନ । ପାଇଲେ ଦୁର୍ଲ୍ଲଭ ଭୋଜନ ॥
ଅଳପେ ନ ତୋଷଇ ମନ । ତେସନ ହେଲା ମୋ ଜୀବନ ॥
ଆହୁରି କେତେ ଏହିପରି । କଳିଯୁଗରେ ଗଲେ ତରି ॥
ସମସ୍ତ କହ ମୋର ପ୍ରାଣ । ମୋ ହୃଦୁ କଳୁଷ ବିନାଶ ॥
ଚୈତନ୍ୟ ବୋଲେ ତାହା ଶୁଣି । ଶୁଣ ହେ ମନ ନୃପମଣି ॥
କାଞ୍ଚି ନଗରେ ତାର ବାସ । ତା ନାମ ଦାମୋଦର ଦାସ ॥
ଜାତିରେ ଅଟଇ ବ୍ରାହ୍ମଣ । ପତ୍ନୀ ସହିତେ ଦୁଇଜନ ॥
ପୁତ୍ର ଦୁହିତା ତାର ନାହିଁ । ଭିକ୍ଷା ମାଗିଣ ସେ ବଞ୍ଚଇ ॥
ଅତି ଦରିଦ୍ର ତା ଜୀବନ । ନାହିଁ ତା ବାଡ଼ବୃତ୍ତିମାନ ॥
ସଂସାରେ ଯେତେ ଦେହଧାରୀ । ତା ଠାରୁ ନ ଥିବେ ଭିକାରୀ ॥
ପ୍ରଭାତୁଁ ସ୍ନାନ ସେ ସାରଇ । ଦ୍ୱାଦଶ ତିଳକ ଘେନଇ ॥
କଣ୍ଠେ ତୁଳସୀ ଦଳ ଭରି । ତୁଣ୍ଡେ ବୋଲଇ ରାମହରି ॥
ଭିକ୍ଷାର ଅର୍ଥେ ସେ ନଗରେ । ବୁଲି ମାଗଇ ଦ୍ୱାରେ ଦ୍ୱାରେ ॥
ଏମନ୍ତେ ବୁଲେ ଦଣ୍ଡଦଣେ । ଦିବସ ଶେଷେ ଘରେ ଆସେ ॥
ଯା କିଛି ତାକୁ ମିଳୁଥାଇ । ପ୍ରାଣ ପୋଷଇ ତାହା ଖାଇ ॥
କି ଅବା ଦଇବ ଯୋଗରେ । ଅତିଥେ ମାଗଇ ଦୁଆରେ ॥
ଅଧେକ ଖାଇ ଅଧେ ଦ୍ୟନ୍ତି । ଚିନ୍ତା ନ ଥାଇ ତାଙ୍କ ମତି ॥
କି ଅବା ଦୁର୍ଭିକ୍ଷ ଭିକାରୀ । ଆସି ମିଳିଲେ ପାଞ୍ଚଗୃହି ॥
ସମସ୍ତ ଦେଇ ତାଙ୍କ ପାଶେ । ଆପେ ରହନ୍ତି ଉପବାସେ ॥
ଏମନ୍ତେ ବଞ୍ଚୁଥାନ୍ତି ଦିନ । କରଣ ଗୋବିନ୍ଦ ଭଜନ ॥
ସକଳ ଜୀବେ ଦୟାହୃଦେ । ନ ଶୁଣେ ପର ଅପବାଦେ ॥
ନିରତେ ପ୍ରାଣୀଙ୍କ ମଙ୍ଗଳ । ବାଞ୍ଛା କରଣ ବଞ୍ଚେ କାଳ ॥
ଏମନ୍ତେ କେତେ କାଳ ଗଲା । ତା ଯଶ ଜଗତେ ପୂରିଲା ॥
ଜାଣିଲେ ପ୍ରଭୁ ଚକ୍ରଧର । ବଢ଼ିବା ପାଇଁ ସତ୍ୟ ତାର ॥

ଏକ୍ଷଣେ ପ୍ରଭୁ ପୀତବାସ । ମାୟାରେ ହେଲେ ଯୋଗୀବେଶ
ସର୍ବାଙ୍ଗେ ବିଭୂତି ଭୂଷଣ । କଣ୍ଠେ ରୁଦ୍ରାକ୍ଷମାଳମାନ ।।
ମସ୍ତକେ ଶୋହେ ଜଟାଭାର । କର୍ଣ୍ଣରେ ତମ୍ବାର କୁଣ୍ଡଳ ।।
ତମ୍ବା ଛଡ଼ଏ ଧରି କର । ଚାଲନ୍ତି ଅତି ଧୀର ଧୀର ।।
ଅତି ଦୁର୍ବଳ ବୃଦ୍ଧଦେହୀ । ଚାଲିପିବାକୁ ଶକ୍ତି ନାହିଁ ।।
ଏମନ୍ତ ବେଶେ ଦାମୋଦର । ମିଳିଲେ ଦାସଙ୍କ ମନ୍ଦିର ।।
ତେଣେ ସେ ଦାସ ବୁଲି ଦେଶ । ଆସିଛୁ ହୋଇଣ ନିରାଶ ।।
କାହିଁ ନ ପାଇ ଭିକ୍ଷା କିଛି । ଉପବାସରେ ଶୋଇଅଛି ।।
ସ୍ୱାମୀ ଭାରିଯା ଦୁଇଜଣ । କ୍ଷୁଧାରେ ବିକଳ ହୋଇଣ ।।
ଚିନ୍ତି ଶ୍ରୀହରି ପାଦ ଦୁଇ । ନେତ୍ରୁ ଲୋତକ ଧାର ବହି ।।
ହେ ପ୍ରଭୁ ଦୀନଜନବନ୍ଧୁ । ନାମ କରୁଣାମୟ ସିନ୍ଧୁ ।।
ଅରକ୍ଷ ରକ୍ଷଣ ତୋ ବାନା । ଭୃତ୍ୟ ଦୁରିତ ବଜ୍ରସେନା ।।
ଦୁର୍ଜ୍ଜନ ମଣ୍ଡୁକର ଫଣୀ । ଜଗତ ଜନ ଚିନ୍ତାମଣି ।।
ଗର୍ବିତକରୀର କେଶରୀ । ସକଳ ଜୀବେ ଅଧିକାରୀ ।।
ତେଣୁ ଶରଣ ଗଲି ତୋତେ । ଆତଙ୍କୁ ରକ୍ଷାକର ମୋତେ ।।
ଏତେକେ ନିଷ୍ଠୁର ସମୟରେ । ଯେବେ ଅତିଥି ମୋର ଦ୍ୱାରେ
ଆସିଣ ହୋଇବେ ପ୍ରବେଶ । ତାହାକୁ ଦେବ ମୁହିଁ କିସ ।।
ଏମନ୍ତ ବୋଲି ଚିନ୍ତାକରି । ଦ୍ୱାରେ ଡାକିଲେ ନରହରି ।।
ବୋଇଲେ କେହୁ ଅଛ ଘରେ । ଆମ୍ଭେ ଅତିଥି ତୋ ଦୁଆରେ ।।
ଶୁଣିଣ ଦାମୋଦର ଦାସ । ମିଳିଲା ମହା ଯୋଗୀ ପାଶ ।।
ପ୍ରଭୁଙ୍କୁ କରି ନମସ୍କାର । ବୋଲଇ ଦ୍ୱିଜ ଦାମୋଦର ।।
ହେ ସ୍ୱାମୀ କିପାଇଁ ଆଗତ । ମିଥ୍ୟା ନ କରି କହ ସତ୍ୟ ।।
ଶୁଣି ବୋଲନ୍ତି ଚକ୍ରଧର । କାରଣ ଶୁଣିଲୁଁ ତୋହର ।।
ଆସିଲୁ ଭୋଜନ ନିମନ୍ତେ । ଦେବ କି ନାହିଁ କହ ମୋତେ
ଏହା ଶୁଣି ଦାମୋଦର ଦାସ । ବୋଇଲେ ଦଣ୍ଡେ ମାତ୍ର ବସ ।।

ଅତିଥି ବସାଇ ଚଳିଲେ । ପତ୍ନୀର ପାରୁଶେ ମିଳିଲେ ॥
ବୋଇଲେ ଶୁଣ ଆଗୋ ସତୀ । ଅତିଥି ଭୋଜନ ମାଗଇ ॥
ଏଥକୁ କହ କି ବିଗୃର । ଶୁଣି ବୋଲଇ ପତ୍ନୀ ତାର ॥
ହେ ସ୍ୱାମୀ ମୋତେ କି ପଗୃର । ତୋତେ କି ଅଛଇ ଉବାର ॥
ଘର ବିକିଲେ ସବୁ ଚୋର । ନୋହିବ ପଣେ କଉଡ଼ିର ॥
ବନ୍ଧୁ ଗୋଟିଏ ଥିଲେ ଘରେ । ବନ୍ଧକ୍ୟ କରନ୍ତି କାହାରେ ॥
ଆଜ କି ଅନ୍ନ ତୁମ୍ଭ ଘରେ । ହେ ସ୍ୱାମୀ କହ ମୋ ଆଗରେ
ପତ୍ନୀର ମୁଖଁ ଏହା ଶୁଣି । ବେନି ନୟନୁ ବହେ ପାଣି ॥
ଦ୍ୱାରୁ ଅତିଥି ଲେଉଟିବ । ଏ ପାପୀ ଜୀବ କପା ଥିବ ॥
ସ୍ୱାମୀର ମୁଖଁ ଏ ବଚନ । ଶୁଣିଲ ଯୁବତୀ ରତନ ॥
ଅତି ଆରତେ ସେ ତରୁଣୀ । ଚିନ୍ତିଲ ପ୍ରଭୁ ଚକ୍ରପାଣି ॥
ଆତଙ୍କ ଫେଡ଼ ହେ ଆମ୍ଭର । ବୋଲି ଚିନ୍ତିଲ ଚକ୍ରଧର ॥
ହେ ସ୍ୱାମୀ ନୁହ ହେ ଆରତ । ଆମ୍ଭର ପ୍ରଭୁ ଜଗନ୍ନାଥ ॥
ଅବଶ୍ୟ ମିଳିବ ଭୋଜନ । ଏବେ ହୋ ମୋହଠାରୁ ଶୁଣ ॥
ନାପିତ ଗୃହେ ଯାଇକରି । ବହନ ଆଣ ହେ କତୁରୀ ॥
ତା ଶୁଣି ଦାମୋଦର ଦାସ । ମନରେ ହୋଇଣ ହରଷ ॥
ନାପିତ ଦ୍ୱାରେ ବେଗେ ଗଲେ । କତୁରୀ ବହନ ଆଣିଲେ ॥
ଦେଲା ତା ପତ୍ନୀର ହସ୍ତର । ବୋଇଲ କି କରିବୁ କର ॥
ଶୁଣି ଯୁବତୀ ହସ ହସ । ବୋଇଲା ଦେଖ ମୋର କେଶ
ଅର୍ଦ୍ଧେକ ପକାଅ କତୁରୀ । ବସିଣ ବଳିବ ଚଉଁରୀ ॥
ହାଟରେ ନେଇ ବିକି ଆଣ । ସେବିବା ଅତିଥି ଚରଣ ॥
ଶୁଣି ଆନନ୍ଦ ହେଲେ ଦାସେ । ପତ୍ନୀକି ବସାଇଲେ ପାଶେ ॥
ଗୁରୁ ଦିଗରୁ କେଶ ଥୋଇ । ମଧ୍ୟୁ ଧଇଲେ ମୁଠିଆଇ ॥
ସମୂଳ କରିଣ କତୁରୀ । ବସିଣ ବଳିଲେ ଚଉଁରୀ ॥
ତକ୍ଷଣେ ଗ୍ରାମକୁ ଯାଇଣ । ବିକି ଆଣିଲେ ପାଞ୍ଚପଣ ॥

ଦାମୋଦର ଦାସ

ପୃଷ୍ଠା ୩୨ ଦେଖ



ସକାଳୁ ଦାମୋଦର ଦେଖନ୍ତି ଯେ ତାଙ୍କ ଘର ଧନରତ୍ନରେ ପୂରିଛି
ଏବଂ ତାଙ୍କ ସ୍ତ୍ରୀଙ୍କ କେଶ ବୃଦ୍ଧି ପାଇଛି ।

ସରୁ ଗୃଅଳ ମୁଗଯାଇ । ଘୃତ ନବାତ ଦୁଧଦହି ॥
ନାନାଦ ଦ୍ରବ୍ୟ କଣି ଆଣି । ରନ୍ଧନ କଲକ ତରୁଣୀ ॥
ଡାକ ଆଣିଲେ ନାରାୟଣ । ଆନନ୍ଦେ ଧୋଇଲେ ଚରଣ ॥
ପ୍ରଭୁଙ୍କ ପାଦପଦ୍ମ ବାରି । ସୁଖେ ସେବଲେ ନରନାରୀ ॥
ଥୋକାଏ ମସ୍ତକେ ସିଞ୍ଚିଲେ । ମହା ଆନନ୍ଦ ଦୁହେଁ ହେଲେ ॥
ଦେଖ ହୋ ଭାଗ୍ୟ ତାହାଙ୍କର । ଯାହା ନ ପାଏ ବେଦବର ॥
ଚୌରାଶି କାଠି ଗଙ୍ଗାଜଳ । ଥୋଇଣ ଥିଲ କମଣ୍ଡଳ ॥
ସେବଣ ଚରଣେ ଢାଳିଲ । କାଞ୍ଜିତ ମାନ ନ ପାଇଲ ॥
ଭାବକୁ ନିକଟ ଗୋସାଇଁ । ଅଭାବ ଲୋକେ ଭେଟ ନାହିଁ ॥
ପୀଢ଼ା ଖଣ୍ଡିଏ ରଖିଦେଲେ । ତହିଁ ଅତଥି ବସାଇଲେ ॥
ଆପଣେ ଦାସ ପତ୍ନୀ ଗଲେ । ଅନ୍ନ ବ୍ୟଞ୍ଜନ ପରଷିଲେ ॥
ଗୋବନ୍ଦ ଭୁଞ୍ଜିଲେ ହରଷେ । ବୋଇଲେ ଶୁଣ ଆହେ ଦାସେ ॥
ଆମ୍ଭେ କି ଅନ୍ନ କରୁଁ ଅଛୁ । ତା ଶୁଣି ଗଲ ସେ ମୃଗାକ୍ଷୀ ॥
ବାକୀ ଯେତେକ ଅନ୍ନ ଥିଲ । ପ୍ରଭୁଙ୍କ ପତ୍ରେ ପରଷିଲ ॥
ଭୁଞ୍ଜି ଉଠିଲେ ଭାବଗ୍ରାହୀ । ବସିଲେ କଷାଫଳ ଖାଇ ॥
ଦୁହେଁ ଅତ୍ୟନ୍ତ ଉପବାସ । କେ କହୁ ତାହାଙ୍କ ହରଷ ॥
ପ୍ରଭୁ ବଗୃରୁଛନ୍ତ ମନ । ଧନ୍ୟ ଏ ଦୁହିଙ୍କ ଜୀବନ ॥
ଭଙ୍ଗା ଲୁଡ଼ଆ ଅଛୁ ରହି । ଲେଙ୍କଡ଼ା କନାଠାରୁ ନାହିଁ ॥
ଦାଇବେ ଅନ୍ନ ନାହିଁ କରୁଁ । ଆପଣେ ଉପବାସେ ଅଛୁ ॥
କେବଳ କାଟିଣ ମୋତେ ଦେଲେ । ଆନ କେ ଲକ୍ଷ୍ୟ ଏହା ଭୁଲେ ॥
ଏମନ୍ତ ବୋଲ ନାରାୟଣ । ଦାସକୁ ପାଶକୁ ଡାଇଣ ॥
ଦେଖ ଏ ରଜନୀ ଆଗତ । ଗୃଲ ନ ପାରେ ହେ ଭକତ ॥
ଏ ଓଳି ଅନ୍ନ ମୋତେ ଦେବୁ । ପ୍ରଭାତୁଁ ଆମ୍ଭେ ଚଳିଯିବୁଁ ॥
ତା ଶୁଣି ଦାମୋଦର ଦାସ । କହିଲେ ନିଜ ନାରୀ ପାଶ ॥
ଆଜ ଗୋ ଅତଥି ରହିଲେ । ଗୃଲବା ଶକ୍ତ ନାହିଁ ବୋଲେ ॥

ଶୁଣି ସୁବର୍ଣ୍ଣ କହେ ଧୀର । କପାଇଁ ଚିନ୍ତା ହୋ ଆମ୍ଭର ॥
ବାକି ଯେତେକ କେଶ ଅଛୁ । ସେ ସବୁ କାଟିନିଅ ପୋଛୁ ॥
ସ୍ୱାମୀ ତା ଶୁଣିଣ ଆନନ୍ଦ । ମୁଖ ପ୍ରକାଶେ ପୂର୍ଣ୍ଣଚନ୍ଦ୍ର ॥
ଯେତେକ କେଶ ବାକି ଥିଲା । ସବୁ କାଟିଣ ପକାଇଲା ॥
ନାରୀ ତାହାର ଲଣ୍ଡାମୁଣ୍ଡେ । ବାନ୍ଧିଲା ଛିଣ୍ଡାକନା ଖଣ୍ଡେ ॥
ସ୍ୱାମୀ ଘରଯା ବସିକର । ଆନନ୍ଦେ ବାନ୍ଧିଲେ ଚଉଁରୀ ॥
ପୁଣି ବଢ଼ିଲେ ପାଞ୍ଚପଣ । ନାନାଦି ପଦାର୍ଥ କିଣିଣ ॥
ଯତ୍ନେ ବ୍ରାହ୍ମଣୀ ତାହା କଲେ । ସବୁ ଗୋବିନ୍ଦେ ସମର୍ପିଲେ ॥
କୃଷ୍ଣ ସମସ୍ତ ଦେଲେ ଖାଇ । କହିବା ଠାରେ ଦୟା ନାହିଁ ॥
ଭୋଜନ ସାରି ଭବଗ୍ରାହୀ । ତୃଣ ଗୁଡ଼ିଏ ପାରିଶୋଇ ॥
ଯାର ଆସନ ନାଗରାଜ । ଆଦର ବନିତା ଆତ୍ମଜ ॥
ମୁନିଙ୍କ ହୃଦୟ କମଳ । ରୁଦ୍ର ଦେବତା ବୃଷଭ୍ରାଳ ॥
ସେ ପୁଣି ଭକତ ଘରରେ । ଶୋଇଲେ ତୃଣ ଶଯ୍ୟାପରେ ॥
ଏହି ସମୟେ ଦାସେ ଗଲେ । ପ୍ରଭୁଙ୍କ ଚରଣ ଚୁପିଲେ ॥
ଶିରୀ ପଣତ କରେ ଧରି । ହରିଙ୍କି ବିଞ୍ଚିଲେ ସୁନ୍ଦରୀ ॥
ବୈକୁଣ୍ଠ ସୁଖ ପ୍ରାପ୍ତ ମଣି । ଘରେ ଶୋଇଲେ ଚକ୍ରପାଣି ॥
ପ୍ରଭୁଙ୍କ ନିଦ୍ରା ଯିବା ଜାଣି । ସ୍ୱାମୀକି ବୋଲଇ ତରୁଣୀ ॥
ଅତ୍ୟନ୍ତ ବୃଦ୍ଧ ଏ ଅତଥ । କେମନ୍ତେ ଚାଲିବେଟି ପଥ ॥
ତୁମ୍ଭେ ପ୍ରଭାତୁଁ ମାଗିଯିବ । ଯେ ଆମ୍ଭ ଭାଗ୍ୟରେ ମିଳିବ ॥
ତାହା ଏହାଙ୍କୁ ସମର୍ପିବା । ଆମ୍ଭେ ପଛକେ ଭୋକେ ଥିବା ॥
ଦାସେ ବୋଇଲେ ହେଉହେଉ । ତାହା ଜାଣିଲେ ମହାବାହୁ ॥
ଦୁହିଁଙ୍କ ଭାବ ଦେଖି ଭୋଳା । ହେଲେ ସେ ଶ୍ୱେତପଦ୍ମ ଡୋଳା ॥
ଅଧିକ ନ ପାରିଲେ ସହି । ଦୁହିଁଙ୍କି ନିଦ୍ରାଗଚେ ମୋହି ॥
ଏହି ସମୟେ ଭବଗ୍ରାହୀ । ଉଠିଲେ ଅତି ବେଗ ହୋଇ ॥
ସେ ପତି ପତ୍ନୀ ଜଣ ଦୁଇ । ଚରଣତଳେ ଥିଲେ ଶୋଇ ॥

ଝାଙ୍ଗର ମୁଣ୍ଡେ ହସ୍ତ ଦେଲେ । କେଶ ତା କଅଁ କୁ ବୋଇଲେ ॥
ନାନାରତନ ଅଳଙ୍କାରେ । ପୂରୁ ତୋ ସର୍ବାଙ୍ଗଯାକରେ ॥
ଷୋଡ଼ଶୀତନୁ ତୋର ହେଉ । ତୋ ଘରେ ଧନ ପୂରିଥାଉ ॥
ଜୀବନ୍ତେ ସୁଖୀ ହୋଇଥାଅ । ଅନ୍ତେ ବୈକୁଣ୍ଠଗତ ପାଅ ॥
ଏମନ୍ତ ଆଜ୍ଞା ତାକୁ ଦେଲେ । ଶ୍ରୀହରି ଅନ୍ତର୍ଦ୍ଧାନ ହେଲେ ॥
ଏଥି ଉତ୍ତାରୁ ନିଶି ଶେଷ । ଦିବସ ହେଲା ପରବେଶ ॥
ଅବଳା ନିଦ୍ରା ତେଜି ଉଠି । କେଶ ତା ପଦଯାଏ ଲୋଟି ॥
ସର୍ବାଙ୍ଗେ ଅଳଙ୍କାରମାନ । ମନ୍ଦିରେ ପୂରିଅଛି ଧନ ॥
ଦେଖି ତା ଆଚମ୍ବିତ ନାରୀ । ସ୍ବାମୀର ଭୁଜ ତୋଳିଧରି ॥
ବୋଲଇ ବେଗେ ଶୁଣ ନାଥ । କେଣିକି ଗଲେ ସେ ଅତିଥ ॥
ମନ୍ଦିର ଦେଖ ହେ ସତ୍ୱର । ସେ ନୋହେ ମନୁଷ୍ୟ ଶରୀର ॥
ତା ଶୁଣି ଦାସେ ବେଗେ ଉଠି । ନିଜ ଘରକୁ ଦେଲେ ଦୃଷ୍ଟି ॥
ନାନାଦି ଧନ ଅଛି ପୂରି । ପତ୍ନୀ ତା ସ୍ୱର୍ଗ ଅପସରୀ ॥
ଅଙ୍ଗେ ପୂରିଛି ଅଳଙ୍କାର । କେଶହିଁ ଲୋଟୁଛି ପୟର ॥
ତା ଦେଖି ବିସ୍ମରଇ ମନ । ନିଶ୍ଚେ ସେ ପ୍ରଭୁ ଭଗବାନ ॥
ଆନର ବଳେ କି ଏମାନ । ଘରେ ପୂରିଛି ଏତେ ଧନ ॥
ରତ୍ନେକ ମଧ୍ୟେ କେଶ ତାର । କଅଁ ଳ ଦିଶୁଛି ସୁନ୍ଦର ॥
ମନୁଷ୍ୟ ପ୍ରାୟ ତାକୁ ମଣି । ସେବା ଯେ କଲୁ ବେନିପ୍ରାଣୀ ॥
ବ୍ରହ୍ମା ଇନ୍ଦ୍ରାଦି ସୁରସୁର । ସ୍ତୁତି କରନ୍ତି ଯା ପୟର ॥
କମଳା ଯାର ପରିଚର । ମୁଁ ଛାର କେତେକ ମାତର ॥
ହେ ପ୍ରଭୁ କରୁଣା ସାଗର । ମୋ ଅପରାଧ କ୍ଷମା କର ॥
ଭୃତ୍ୟ ହୋଇଲେ ଅପରାଧୀ । ତୁ ନାଥ କରୁଣାବାରିଧି ॥
ତୁମ୍ଭେ ଯେ ବ୍ରହ୍ମାଣ୍ଡଠାକୁର । ଜୀବଙ୍କ ହୃଦରେ ବିହର ॥
ଏଣୁ ଅପ୍ରାଧ ମୋର ଯେତେ । ପ୍ରଭୁ ନ ଘେନ କଦାଚିତେ ॥
ଏମନ୍ତ ବୋଲି ସ୍ତୁତି ଭଣି । ଆନନ୍ଦ ପୁରୁଷ ତରୁଣୀ ॥

ଆନନ୍ଦେ ଶ୍ରୀହରି ଭଜନ । ସାଧୁଙ୍କ ସଙ୍ଗେ ପ୍ରତିଦିନ ॥
ସକଳ ଜୀବେ ଦୟାଚାର । ଦାନ ପ୍ରସଙ୍ଗେ ନିତ୍ୟ ରତ ॥
ଯୋଗୀ ବୈଷ୍ଣବ ସାଧୁଜନ । ସେବାରେ କଟାଇଲେ ଦିନ ॥
ନୋହିଲେ ଯମ ଅଧିକାର । କାଳେ ବସିଲେ ସ୍ୱର୍ଗପୁର ॥
ପ୍ରଭୁଙ୍କ ଦାସ ଦାସୀ ହେଲେ । ମନକୁ ଚୈତନ୍ୟ କହିଲେ ॥
ସେ ଦାର୍ଢ୍ୟଭକ୍ତି ରସବାଣୀ । ଯେ ପ୍ରାଣୀ କର୍ଣ୍ଣପଥେ ଶୁଣି ॥
ସକଳ ପାପୁଁ ହେବ ପାର । ନ ଯିବ ଯମରାଜା ପୁର ॥
ଅପୁତ୍ରଜନେ ପୁତ୍ର ଦାନ । ଅନ୍ଧ ଲଭିବେ ଚକ୍ଷୁ ପୁଣ ॥
ଇତ୍ୟାଦି ଭୟମାନ ଯେତେ । ଯେ ଗ୍ରହପୀଡ଼ାଦି ସହିତେ ॥
ଲାଗିବ ନାହିଁ କଦାଚିତେ । ଶୁଣି ଶରଧା ଯେବେ ଚିତ୍ତେ ॥
କହଇ ଦ୍ୱିଜ ରାମଦାସ । କେବଳ ମୂଳଟି ବିଶ୍ୱାସ ॥

ଇତି ଶ୍ରୀ ଦାର୍ଢ୍ୟଭକ୍ତିରସାମୃତେ ମନଚୈତନ୍ୟ ସମ୍ବାଦେ
ଦାମୋଦର ଦାସ ପତିପତ୍ନୀ ମୋକ୍ଷଣେ ନାମ
ପଞ୍ଚମୋଽଧ୍ୟାୟଃ ।

---

## ଷଷ୍ଠ ଅଧ୍ୟାୟ

ବିଶ୍ୱମ୍ଭର ଦାସ ସମ୍ବାଦ

ପୁଣି କହନ୍ତି ଚଇତନ୍ୟ । ହେ ମନ ହୁଅ ସାବଧାନ ॥
ଏ ବଡ଼ ଅପୂର୍ବ ଚରିତ । ଶୁଣିଲେ ନ ଛାଡ଼ିବ ଚିତ୍ତ ॥
ଯେ ଭୂତଖଣ୍ଡ ମଧ୍ୟଦେଶ । ଢେଙ୍କାନାଳରେ ତାର ବାସ ॥
ଜାତିରେ ବଣିଆ କରଣ । ତାର କୁଟୁମ୍ବ ତିନିଜଣ ॥
ତାହାର ନାମ ବିଶ୍ୱମ୍ଭର । ଭକତପଣେ ବଳୀୟାର ॥
ଭାରିଯା ନାମ ତା ରେବତୀ । ପତିର ଆଜ୍ଞା ନ ଲଙ୍ଘନ୍ତି ॥
ପୁତ୍ରର ନାମ ରଘୁନାଥ । ପିତାର ଚରଣେ ଭକତ ॥
ଆପଣା ନାମ ବିଶ୍ୱମ୍ଭର । ବିଶ୍ୱସାଗରୁ ଗତି ପାର ॥

ଏମନ୍ତେ ଭକ୍ତଜଣ ଥାନ୍ତି । ଶ୍ରୀକୃଷ୍ଣ ପାଦେ ଦେଇ ମତ ॥
ନାମଭଜନ ଅପ୍ରମିତ । ନିତ୍ୟେ ପଢ଼ନ୍ତି ଭାଗବତ ॥
ଯେ କହେ ପ୍ରଭୁ ବମ ରସ । ତାକୁ ବୋଲନ୍ତି ଦଣ୍ଡେ ବସ ॥
ଯାହାର ମୁଖଁୁ ନାମ ଶୁଣି । ଶ୍ରୀଗୁରୁ ପ୍ରାୟେ ତାକୁ ମଣି ॥
ଯୋଗୀ ସନ୍ୟାସୀ ବ୍ରହ୍ମଚାରୀ । ବ୍ରାହ୍ମଣ ବୈଷ୍ଣବ ଭିକାରୀ ॥
ଯେ ଅଭ୍ୟାଗତ ଅବଧୂତ । ଦ୍ୱାରେ ତା ହେଲେ ଉପଗତ ॥
ତାହାଙ୍କୁ ଅନ୍ନବସ୍ତ୍ର ଦାନେ । ତୋଷନ୍ତି ବିନମ୍ର ବଚନେ ॥
ନାହିଁ ବୋଲିବା ମୁଖଁୁ ତାର । କେବେହେଁ ନୁହଇ ବାହାର ॥
ଏମନ୍ତେ କେତେ ଦିନ ଅନ୍ତେ । ତା କୀର୍ତ୍ତି ପୂରିଲା ଜଗତେ ॥
ସକଳେ କଲେ ଧନ୍ୟ ଧନ୍ୟ । ହୋଇଲେ ସର୍ବଲୋକେ ମାନ୍ୟ ॥
ଏମନ୍ତ ସମୟରେ ପୁଣ । ଦୈବ ଘଟଣା ଶୁଣ ॥
ଅତିଥି ଜମାଉତ ହୋଇ । ଆଇଲେ ତୀର୍ଥ ଯିବାପାଇଁ ॥
ଭିକ୍ଷାର ଅର୍ଥେ ଗ୍ରାମପୁରେ । ମାଗନ୍ତି ବୁଲି ଦ୍ୱାରେ ଦ୍ୱାରେ ॥
ଲୋକେ ବୋଲନ୍ତି ତାଙ୍କୁ ଗୃହୀଁ । ଶୁଣ ହେ ବୈଷ୍ଣବ ଗୋସାଇଁ ॥
କରଣ ନାମେ ବଣ୍ଣମୂର । ବିଜୟ କର ତାର ଘର ॥
ଅବଶ୍ୟ ତୋଷିବେ ଭୋଜନେ । ଶୁଣି ଚଳିଲେ ସାଧୁମାନେ ॥
ଦ୍ୱାରେ ତା ହୋଇଲେ ପ୍ରବେଶ । ଦିବସ ଆସି ହେଲା ଶେଷ ॥
ଡାକିଲେ ଆହେ ବଣ୍ଣମୂର । ଆମ୍ଭ ଚରଣେ ବେଗେ କର ॥
ସାଧୁଙ୍କ ବଚନ ଶୁଣିଣ । ବାହାର ହେଲେ ତତକ୍ଷଣ ॥
ଦେଖିଲା ସାଧୁବୃନ୍ଦ ତୋଳେ । ପ୍ରଣାମ କଲା ପାଦତଳେ ॥
ଉଠି କପାଳେ କର ଦେଲା । କି ଆଜ୍ଞା ହେଉଛି ବୋଇଲା ॥
ଅତଥେ ବୋଇଲେ ହୋ ଶୁଣ । ଆମ୍ଭ ଚରଣେ ବେଗେ ଆଣ ॥
ହାଣ୍ଡି ଗୁଡ଼ଳ ମୁଗଯାଇ । ଘୃତ ନବାତ ଦୁଧ ଦହି ॥
କାଷ୍ଠ ପତ୍ରବା ଆଦି ଯେତେ । ଏ ସବୁ ଆଣ ହେ ତୁରିତେ ॥

ଆମ୍ଭୃ ଚରଣୁ ବେଗେ କର । ପୁଣ୍ୟ ତୁ ପାଇବୁ ଅପାର ॥
ତାହା ଶୁଣିଣ ଚଳିଗଲେ । ମନ୍ଦିରେ ପ୍ରବେଶ ହୋଇଲେ ॥
ପୁତ୍ର ଭାରିଯାଙ୍କୁ ନେଇଣ । ସକଳ କଲେ ଆୟୋଜନ ॥
ସାଧୁଙ୍କ ପାଶେ ନେଇ ଦେଲା । ଘୃତ ମାତ୍ରିକ ନ ପାଇଲା ॥
ବୋଇଲା ସାଧୁ ବୃନ୍ଦେ ଶୁଣ । ତୁମ୍ଭମୁରେ କରୁଛି ଜଣାଣ ॥
ସମସ୍ତ ଦ୍ରବ୍ୟ ଆଣିଦେଲି । ଘୃତ ମାତ୍ରକ ନ ପାଇଲି ॥
ଶୁଣି ବୋଇଲେ ସାଧୁଗଣ । ପବିତ୍ର ନୁହଇ ଭୋଜନ ॥
ଘୃତ ବିହୀନେ ଯେ ଖାଇବ । ପ୍ରଭୁଙ୍କ ଅଯୋଗ୍ୟ ହୋଇବ ॥
ତୋ ଦ୍ରବ୍ୟ ଲେଉଟାଇ ନିଅ । ତା ଶୁଣି ବଣିକ ମୁର୍ଛି ପଡ଼ିଅ ॥
ଅନେକ ବିନୟ ସେ କଲା । ଭୂମିଷ୍ଠ ହୋଇ ଜଣାଇଲା ॥
ହେ ପ୍ରଭୁମାନେ ଶାନ୍ତ ହୁଅ । ବେଗେ ରନ୍ଧନ କର ଯାଅ ॥
ଘୃତ ଆସିବ ଦିନ୍ଧୁ ବନ୍ଧୁ । ଅବଶ୍ୟ ଦେବେ ଦୀନବନ୍ଧୁ ॥
ତା ଶୁଣି ଅତିଥି ସୁଚିତ୍ତେ । ଚଳିଲେ ରାନ୍ଧିବା ନିମନ୍ତେ ॥
ଘରକୁ ପିତା ପୁତ୍ରେ ଗଲେ । ବସିଣ ବିଚାର ସେ କଲେ ॥
ଯେ ସାଧୁ ପର ଉପକାରେ । ମିଥ୍ୟା କହିଣ ଚୋର କରେ ॥
ଏଥିରେ ଦୋଷ ନାହିଁ କିଛି । ବୋଲି ଶାସ୍ତ୍ରରେ କହିଅଛି ॥
ଘୃତ ନ ମିଳିଲା ତ କାହିଁ । ଚୋରାଇ ଯିବା ଏଥିପାଇଁ ॥
ନୋହିଲେ ଅତିଥି ସମସ୍ତେ । ଭୁଞ୍ଜିବେ ନାହିଁ କଦାଚିତେ ॥
ଏମନ୍ତ ବୋଲି ବାପ ପୁଏ । କରେ ଧଇଲେ ଖଣନ୍ତାଏ ॥
ଆଉର କାତି ଗୋଟି ଧରି । ଚଳିଲେ ଗୋବିନ୍ଦ ସୁମରି ॥
ରାତ୍ର ପ୍ରହରକ ଭିତରେ । ଭେଟିଲେ ଭାଗ୍ୟବନ୍ତ ଘରେ ॥
ତକ୍ଷଣେ ସିନ୍ଧ କାଟି ଧରି । ଚଳିଲେ ଗୋବିନ୍ଦ ସୁମରି ॥
ପିଅର ଜଗିଛି ବାହାରେ । ପୁତ୍ର ଖୋଜଇ ପଶି ଘରେ ॥
ଅନେକ ଧନ ରତ୍ନମାନ । ଦେଖି ନ ଛୁଅଇ ନନ୍ଦନ ॥
ଘୃତର ବିନା ଦ୍ରବ୍ୟ ଯେତେ । ହସ୍ତେ ନ ଧରେ କଦାଚିତେ ॥

ଏମନ୍ତେ ଖୋଜନ୍ତେ ଭବନ । ଦେଖିଲ ଘୃତଭାଣ୍ଡମାନ ॥
ବନ୍ଧି ଆଣିଲ ଭାଣ୍ଡ ଦୁଇ । ସିନ୍ଧରେ ଦେଲକ ଗଳାଇ ॥
ଏମନ୍ତ ସମୟେ ସାଧୁସୁତ । ଚେତନା ପାଇଲ ତ୍ୱରିତ ॥
ଦେଖିଲ ସିନ୍ଧ ଗାତ ଘରେ । ଚୋରହିଁ ଗଳୁଛି ସିନ୍ଧରେ ॥
ପବନୁ ବେଗେ ଧାଇଁଗଲ । ଚୋରର ଚରଣ ଧଇଲ ॥
ବେନି ଚରଣ ବେନି ହାତେ । ଧରି ଝିଙ୍କିଲ କୋପ ଚିତ୍ତେ ॥
କୁମର ବୋଇଲ ହେ ତାତ । ଧରା ପଡ଼ିଲ ସିନ୍ଧ ଗାତ ॥
ସାଧୁତ ଝିଙ୍କୁଛି ପ୍ରଚୁର । ତୁମ୍ଭେ ପାରିଲେ ଝିଙ୍କ ଶିର ॥
ଶୁଣି ପିଅର [illegible] । ଟାଣିଲ ଗୋବିନ୍ଦ ସୁମରି ॥
ଦୁହେଁ ଝିଙ୍କିଲେ ଦୁଇ କତ । ପୁତ୍ର ରହିଲ ମଧ୍ୟବର୍ତ୍ତୀ ॥
କୌଣସି ଆଡ଼କୁ ନୋହିଲା । ତା ଦେଖି କୁମର ବୋଇଲା ॥
ସ୍ୱରୂପ ଶୁଣ ଆହେ ତାତ । ଏଥର ସରିଲ ମହତ୍ତ୍ୱ ॥
ରାଜ ଯଦ୍ୟପି ଜାଣିଯିବ । ଚିହ୍ନି ସାଧୁ ତ ଦଣ୍ଡ ଦେବ ॥
ସାଧୁଙ୍କ ସେବାହିଁ ନୋହିବ । ଏତେକ କଷ୍ଟ ବ୍ୟର୍ଥ ହେବ ॥
ଏଥକୁ ବିଚାର ନ କର । କାଟିଣ ନିଅ ମୋର ଶିର ॥
ସାଧୁ ମାନଙ୍କ ସେବା ହେଉ । ଆମ୍ଭର ମହତ୍ତ୍ୱ ନ ଯାଉ ॥
ମୁଣ୍ଡ ନ ଥିଲେ ପିଣ୍ଡେ ଏଥେଁ । ଚିହ୍ନା ନ ଯିବ କଦାଚିତେ ॥
ଏଥିରେ ନ କର ତୁ ହେଳ । ମୋ ମୁଣ୍ଡ ଘୃତ ଘେନି ଚଳ ॥
ଶୁଣି ପିଅର କାତି ଧରି । ମନରେ କୃଷ୍ଣ ଚିନ୍ତାକରି ॥
ଛେଦନ କରି ପୁତ୍ର ଶିର । ଲୁଚାଇ ରଖିଲ କାଖର ॥
ଧରିଣ ଘୃତଭାଣ୍ଡ ହସ୍ତେ । ଘରକୁ ଚଳିଲ ତ୍ୱରିତେ ॥
ମୁଣ୍ଡ ଭାରିଯା ହସ୍ତେ ଦେଲ । ଲୁଚାଇ ରଖ ଗୋ ବୋଇଲ ॥
ବୁଝାଇ କହିଲ ସମସ୍ତ । ଶୁଣି ଆନନ୍ଦ ହେଲ ମାତ ॥
ତିଳ ପ୍ରମାଣେ ଚିନ୍ତା ନାହିଁ । ମୁଣ୍ଡ ଯେ ରଖିଲ ଲୁଚାଇ ॥
ବୋଇଲ ସ୍ୱାମୀ ବେଗେ ଯାଅ । ସାଧୁଙ୍କୁ ଘୃତ ନେଇ ଦିଅ ॥

ତା ଶୁଣି ବିଶ୍ୱମ୍ଭର ଗଲା । ସାଧୁଙ୍କ ହସ୍ତେ ଘୃତ ଦେଲା ॥
ଘୃତ ପାଇଣ ସାଧୁ ବୃନ୍ଦେ । ଭୋଜନ କଲେ ମହାନନ୍ଦେ ॥
ଅନେକ କଲ୍ୟାଣ ବାଞ୍ଛିଲେ । ଘରକୁ ଯାଅ ତୁ ବୋଇଲେ ॥
ତାହା ଶୁଣିଣ ବିଶ୍ୱମ୍ଭର । ଚଳିଣ ଗଲେ ନିଜଘର ॥
ସ୍ୱାମୀ ଭାରିଯା ବେନିଜଣ । ଚିନ୍ତିଲେ ଗୋବିନ୍ଦ ଚରଣ ॥
ପୁତ୍ରର ଭାବ ମନେ ଗୁଣି । ଏମନ୍ତେ ପାହିଲା ରଜନୀ ॥
ଏଥି ଉତ୍ତାରୁ ଶୁଣ ମନ । ଗଣ୍ଡି ଯେ ସାଧୁର ଭବନ ॥
ଖଣ୍ଡିଆ ହୋଇ ପଡ଼ିଥିଲା । ଧନୀ ସେ ଖଣ୍ଡି ଝିଙ୍କି ନେଲା ॥
ଦାଣ୍ଡରେ ପକାଇଲା ନେଇ । ଅନେକ ଲୋକଙ୍କୁ ଚାହାଁଇ ॥
ମୁଣ୍ଡ ବିହୀନେ ପିଣ୍ଡ ତହିଁ । ଚିହ୍ନି ଯେ ନ ପାରିଲେ କେହି
ଗ୍ରାମ ବାହାରେ ଘେନିଗଲେ । ଶୂଳ ଉପରେ ବସାଇଲେ ॥
ଅନେକ ଲୋକ ତହିଁ ମିଳି । ଦେଇଣ କୁହାଟ କୁରାଳି ॥
ଚଳିଣ ଗଲେ ଯେଝାପୁରେ । ଶୁଣ ଯେ ଏଥୁ ଅନନ୍ତରେ ॥
ଅତିଥିବୃନ୍ଦ ଚଳିଗଲେ । ଦାସଙ୍କ ପାଶେ ପ୍ରବେଶିଲେ ॥
ଡାକିଲେ ବିଶ୍ୱମ୍ଭର ଦାସ । ବହନ ଆସ ଆମ୍ଭ ପାଶ ॥
ବଡ଼ ଆନନ୍ଦ ହେଲୁଁ ବାରୁ । ତୋତେ କଲ୍ୟାଣ କରିଯିବୁ ॥
ସାଧୁଙ୍କ ମୁଖୁ ଏହା ଶୁଣି । ଆନନ୍ଦ ପୁରୁଷ ତରୁଣୀ ॥
ବୋଇଲେ ଦାସ ବିଶ୍ୱମ୍ଭର । ଭୋ ସଖି ଶୁଣ ମୋ ଉତ୍ତର ॥
ଯାଉଛନ୍ତି ସାଧୁଙ୍କ ସଙ୍ଗର । ଯାଉଅଛୁ ମୁଁ ଖଣ୍ଡେ ଦୂର ॥
ପୁତ୍ର ଖଣ୍ଡିଆ ମୁଣ୍ଡ ଆଣ । ଧରି ମୁଁ ଥିବି ଲୁଚାଇଣ ॥
ସାଧୁମାନଙ୍କୁ ଦେଖାଇବି । ଏକାନ୍ତ ସ୍ଥାନେ ପକାଇବି ॥
ଶୁଣି ସୁନ୍ଦରୀ ତୋଷଚିତ୍ତେ । ମୁଣ୍ଡ ଯେ ଦେଲା ସ୍ୱାମୀ ହସ୍ତେ
ପୁତ୍ରର ମୁଣ୍ଡ ପିତା ଧରି । କାଖେ ଯାକିଲା ଗୋପ୍ୟ କରି ॥
ଉଦ୍ୟମ କରିଣ ଘୋଡ଼ାଇ । ଚଳିଲେ ଧୀର ଧୀର ହୋଇ ॥
କହିଲେ ବିନୟ ବଚନେ । ବିଜୟ କର ପ୍ରଭୁମାନେ ॥



ସାଧୁମାନେ ବଶ୍ୱମ୍ଭର ଦାସର ପୁଅ ମୁଣ୍ଡକୁ ଦେହ ସହିତ ଯୋଡ଼ି ତାକୁ ଜୀବଦାନ ଦେବାପାଇଁ ଭଗବାନଙ୍କୁ ଡାକୁଛନ୍ତି ।

ଶୁଣି ଚଳିଲେ ଯେ ଅତଥେ । ଦାତାଙ୍କୁ ଘେନାଣ ସଙ୍ଗତେ ॥
କେତେହେଁ ଦୂର ଚଳିଗଲେ । ବଣ୍ଟୁରକୁ ପଚାରିଲେ ॥
କାହିଁ ତୋହର ନିଜସୁତ । ସଙ୍ଗତେ ଆଣିନାହୁଁ ତୁ ତ ॥
କାଲି ଅନେକ ସେବା କଲା । ଆଜ ତ ଦେଖାହିଁ ନ ଦେଲା ॥
ସାଧୁଙ୍କୁ କରନ୍ତା ଦର୍ଶନ । କିମ୍ପା ନଇଲୁ ତୋ ନନ୍ଦନ ॥
ଏବେ ତୁ ଯାଅ ତତପର । ଘେନାଣ ଆସ ତୁ କୁମର ॥
ନୋହିଲେ ଏହିଠାରେ ଥିବୁ । ତାକୁ ନ ଦେଖିଲେ ନ ଯିବୁ ॥
ତାହା ଶୁଣିଣ ବଣ୍ଟୁର । ବେନି ନୟନୁ ବହେ ନୀର ॥
ତା ଦେଖି ସମସ୍ତ ଅତଥ । ବୋଇଲେ କାନ୍ଦୁଅଛୁ କୁ ତ ॥
କି ଅବା ପଡ଼ିଲା ବପତ୍ତି । ସ୍ୱରୂପ କହ କିନା ଏଥି ॥
ମାୟା ନ କର କହ ସତ । ସମସ୍ତ ସାଧୁଙ୍କ ଅଗ୍ରତ ॥
ତାହା ଶୁଣିଣ ବଣ୍ଟୁର । କାଣ୍ଟୁ କାଢ଼ିଲା ପୁତ୍ର ଶିର ॥
ଖଣ୍ଡିଆ ମୁଣ୍ଡ ତଳେ ଥୋଇ । ସାଷ୍ଟାଙ୍ଗେ ଦଣ୍ଡବତ ହୋଇ ॥
ଉଠି କପାଳେ ଦେଇ କର । ବୋଇଲା ଦେଖ ମୋ କୁମର ॥
ଯାହା ଲେଖିଛୁ ବେଦବର । ଆନ କରିବା ଶକ୍ତି କାର ॥
ତା ଦେଖି ସକଳ ଅତଥ । କ୍ଷଣକେ ହୋଇଲେ ସ୍ତମ୍ଭିତ ॥
ବୋଇଲେ ତୋର ପୁତ୍ର ମୁଣ୍ଡ । କହ କେ କଲା ବେନି ଖଣ୍ଡ ॥
ଆମ୍ଭେ ସକଳ ସାଧୁ ଯିବୁଁ । ତା ବଂଶ ନିର୍ବଂଶ କରିବୁଁ ॥
ତା ଶୁଣି ବୋଇଲା ବଣ୍ଟୁର । ଏଥିରେ ଦୋଷ ନାହିଁ କାର ॥
ତୁମ୍ଭର ମନୋଶୋହ ନିମନ୍ତେ । ଘୃତ ଯେ ନ ମିଳିଲା ମୋତେ ॥
ତେଣୁଟି ପିତା ପୁତ୍ରେ ଗଲୁଁ । ସାଧୁର ମନ୍ଦିରେ ପଶିଲୁ ॥
ତା ଘରେ ସିନ୍ଧଗୋଟି ଖୋଳି । ପୁତ୍ର ପଶିଲା ତହିଁ ଗଳି ॥
ଘୃତ ବଢ଼ାଇ ମୋତେ ଦେଲା । ପୁତ୍ର ମୋ ଗଳି ଆସୁଥିଲା ॥
ସାଧୁ ତ ଚେତନା ପାଇଲା । ପୁତ୍ରକୁ ଓଟାରି ଧଇଲା ॥
ମୁହିଁ ଝିଙ୍କିଲି ଧରି ଶିର । ତା ଦେଖି ବୋଇଲା କୁମର ॥

ଚିନ୍ତା ନ କର ତୁ ମୋର ଶିର । କାଟିଣ ନିଅ ହେ ପିଅର ॥
ଘୃତ ଘେନିଣ ବେଗେ ଚଳ । ସାଧୁଙ୍କ ସେବା ଆମ୍ଭ ମୂଳ ॥
ତା ଶୁଣି କାଟିଲି ମୁଁ ମୁଣ୍ଡ । ଘେନି ଅଇଲି ଘୃତ ଭାଣ୍ଡ ॥
ତୁମ୍ଭ ଚରଣେ ସମର୍ପିଲି । ମୁଣ୍ଡ ମୁଁ ଲୁଚାଇ ରଖିଲି ॥
ଏମନ୍ତେ ମଲା ମୋର ସୁତ । ଏ ଦୁଃଖ ମୋହର ଅର୍ଜିତ ॥
ଭାଗ୍ୟେ ମୁଁ ଅରଜିଛି ଯାହା । ଅବଶ୍ୟ ଭୁଞ୍ଜିବଇଁ ତାହା ॥
ଶୁଣି ସକଳ ସାଧୁଜନ । ଭକ୍ତଙ୍କୁ ବୋଇଲେ ବଚନ ॥
ଧନ୍ୟ ରେ ତୋହର ଜୀବନ । ଧନ୍ୟ ତୋ ପତ୍ନୀ ଯେ ନନ୍ଦନ ॥
ଆମ୍ଭ ସକାଶେ ପୁତ୍ର ମଲା । ଏହା ଦଇବ ଭିଆଇଲା ॥
ସକଳ ସାଧୁ ଏକ ହୋଇ । ବୋଲନ୍ତି ଭକ୍ତ ମୁଖ ଚାହିଁ ॥
ତୋ ପୁତ୍ର ଗଣ୍ଡି ଅଛି ଯହିଁ । ଆମ୍ଭଙ୍କୁ ଘେନି ଚଳ ତହିଁ ॥
ଅବଶ୍ୟ ତୋ ପୁତ୍ର ବଞ୍ଚିବ । ତୋ ଯଶ ଯୁଗେ ଯୁଗେ ଥିବ ॥
ଏହା ଶୁଣିଣ ବଣିମ୍ବର । ସାଧୁଙ୍କୁ ଘେନିଣ ସଙ୍ଗର ॥
ପୁତ୍ରର ଗଣ୍ଡି ଥିଲା ଯହିଁ । ସାଧୁଙ୍କୁ ଦେଖାଇଲା ନେଇ ॥
ଦେଖିଲେ ଦାତାର କୁମର । ବସିଛି ଶୂଳର ଉପର ॥
ଶୂଳରୁ ଶବ ଘେନି ଆସି । ମଧ୍ୟେ ପକାଇ ବେଢ଼ ବସି ॥
ଗଣ୍ଡିମୁଣ୍ଡକୁ ଯୋଡ଼ି ଦେଲେ । ତୁଳସୀଦଳ ଘୋଡ଼ାଇଲେ ॥
ବୋଇଲେ ଧର୍ମ ଯେବେ ସତ । ନିଶ୍ଚୟେ ବଞ୍ଚୁ ଏ ବାଳୁତ ॥
ପ୍ରଭୁଙ୍କ ମହିମା ଯେବେ ସତ । ପୁରାଣ ଯେବେ ହେବ ତଥ୍ୟ ॥
ଯେ ପ୍ରାଣୀ ପରଉପକାରେ । କି ଅବା ହରି ଭଜନରେ ॥
କି ଦୀନ ରକ୍ଷଣ ନିମନ୍ତେ । କି ଅବା ସାଧୁ ସେବା ଅର୍ଥେ ॥
ଅନଳେ ପଶିଲୋକ ଯାଇ । ବାଞ୍ଛା କରନ୍ତି ଭବଗ୍ରାହୀ ॥
ସେ କଥାମାନ ଯେବେ ସତ । କିବା ମରବ ଏ ବାଳୁତ ॥
ଶରଣପଞ୍ଜର ତୋ ବାନା । ଭବଭୟକୁ ବଜ୍ରସେନା ॥
ଯେବେ ତୋ ମହିମା ପ୍ରମାଣ । ତେବେ ପାଉ ଏ ପୁତ୍ର ପ୍ରାଣ ॥

ନୋହିଲେ ମରିବୁ ସମସ୍ତେ । ଯେବେ ଏ ମଲ ଆମ୍ଭ ହୁଡେ ॥
ଏମନ୍ତ ସର୍ବ ସାଧୁ ବୃନ୍ଦ । ମନରେ ଚିନ୍ତିଲେ ଗୋବିନ୍ଦ ॥
ଜୟ କରୁଣାମୟ ସିନ୍ଧୁ । ଜୟ ଜଗତଜନ ବନ୍ଧୁ ॥
ଜୟ କୋଦଣ୍ଡକାଣ୍ଡମୂର୍ତ୍ତି । ଜୟ ଜାନକୀ ପ୍ରାଣପତି ॥
ଜୟ ତୁ ଜୟ ଜଗନ୍ନାଥ । ଜୟ ଲକ୍ଷ୍ମଣ ଜ୍ୟେଷ୍ଠ ଭ୍ରାତ ॥
ଜୟ ହେ କୌଶଲ୍ୟା ନନ୍ଦନ । ଜୟ ହେ ମୁନିଙ୍କ ବନ୍ଦନ ॥
ଦଶରଥଙ୍କର ଆତ୍ମଜ । ଜୟ ଦେବାଧିଦେବରାଜ ॥
ହେ ବିଶ୍ୱବାସ ଚରାଚର । ଯାହାର ଆଜ୍ଞାରେ ପ୍ରଚୁର ॥
କୋଟି ବ୍ରହ୍ମାଣ୍ଡ ଯା ଚରଣ । ଜଗତ ସଂହାର କାରଣ ॥
ଯାହା ଆଜ୍ଞାରେ ସିନ୍ଧୁ ଜଳେ । ନ ବୁଡ଼ି ଭାସୁଛି ଶୈଳେ ॥
ଏମନ୍ତେ କଲେ ନାମ ଧ୍ୱନି । ତକ୍ଷଣେ କମ୍ପିଲ ମେଦିନୀ ॥
ତାହା ଜାଣିଲେ ବ୍ରହ୍ମଋଷି । ମାୟାରେ ପୁତ୍ର ପାଶେ ଆସି ॥
ଜୀବନଦାନ ଦେଇଗଲେ । ସେ କଥା କେହି ନ ଜାଣିଲେ ॥
ତକ୍ଷଣେ ଉଠିଲା ନନ୍ଦନ । ଭଜିଲା ଶ୍ରୀମଧୁସୂଦନ ॥
ସାଧୁଙ୍କୁ ପ୍ରଣମିତ ହେଲା । ପିତାଙ୍କ ଚରଣେ ଲୋଟିଲା ॥
ଦେଖିଣ ଏମନ୍ତ ଚରିତ । ସେ ଦେଶଲୋକେ ଆଚମ୍ବିତ ॥
ବୋଇଲେ ଧନ୍ୟ ଏହା ଜୀବ । ଏହା ଦର୍ଶନେ ଅଛି ଲଭ ॥
ତା ଦେଖି ସାଧୁମାନେ ହେଲେ । ଧରି ଆନନ୍ଦ ସୁଖଭୋଳେ ॥
ଯନ୍ତୁ ତା ସୁମନ ଦେଖିଲେ । ସୁମନ ବୋଲି ନାମ ଦେଲେ ॥
ବୋଇଲେ କରନ୍ତୁ କଲ୍ୟାଣ । ଲଭ ତୁ ଶ୍ରୀହରି ଚରଣ ॥
ଏବେ ପିତାକୁ ଘେନି ତୋର । ଯାଅ ତୋ ଜନନୀ ପାଖର ॥
ଏମନ୍ତ କହିଣ ଅତଏ । ଚଳିଣଗଲେ ଯେଝାମତେ ॥
ଏଣେ ଯେ ପିତା ପୁତ୍ର ଗଲେ । ମନ୍ଦିରେ ପ୍ରବେଶ ହୋଇଲେ ॥
ଜନନୀ ପୁତ୍ର ପାଇ କୋଳେ । ବୁଡ଼ିଲା ସ୍ନେହ ଭାବଜଳେ ॥
ଦେଖ ତାହାର ଭାଗ୍ୟ ଗୋଟି । ମଲା ଯେ ଅଇଲା ଲେଉଟି ॥

ଜନନୀ ପିତା ପୁତ୍ର ହୋଇ । ସୁଖେ ଭଜିଲେ ଭବଗ୍ରାହୀ ॥
ସେ ଦେହ ଅନ୍ତେ ତିନିଜଣ । ଲଭିଲେ ଗୋବିନ୍ଦ ଚରଣ ॥
ଶୁଣ ହେ ମନ ନୃପନାଥ । ଦାନର ମହିମା ଏମନ୍ତ ॥
ମୂର୍ଖ ଲୋକଙ୍କୁ ଏହା ମିଛ । ସାଧୁଙ୍କୁ ଅଟଇ ପ୍ରତ୍ୟକ୍ଷ ॥
ଏ ମନ ଚୈତନ୍ୟ ସମ୍ବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥
ଭଣେ ଅଧମ ରାମଦାସ । ସୁଜନଜନଙ୍କର ଦାସ ॥
ଶ୍ରୀରାମ ଅଭୟ ଚରଣେ । ମୋ ଚିତ୍ତ ରହୁ ଅନୁକ୍ଷଣେ ॥
ଏ ଦାର୍ଢ୍ୟଭକ୍ତି ରସବାଣୀ । ସୁଜନେ ତର ଏହା ଶୁଣି ॥
ବୁଡ଼ି ନ ମର ଭବ କୂପେ । କୃଷ୍ଣ ଅଛନ୍ତି ସାଧୁରୂପେ ॥
ତାହାଙ୍କୁ ଭଜ ହୁଅ ପାର । ଏକଥା ସର୍ବଶାସ୍ତ୍ରେ ସାର ॥

ଇତି ଶ୍ରୀଦାର୍ଢ୍ୟଭକ୍ତିରସାମୃତେ ମନଚୈତନ୍ୟ
ସମ୍ବାଦେ ବଣ୍ଠପୁର ଦାସ ପତ୍ନୀ ପୁତ୍ର
ମୋକ୍ଷଣେ ନାମ ଷଷ୍ଠୋଽଧ୍ୟାୟଃ ।

— * —

## ସପ୍ତମ ଅଧ୍ୟାୟ

ରାମଦାସ ସମ୍ବାଦ

ମନ ଉବାଚ

ଶୁଣି ଆନନ୍ଦ ମନ ରାଜା । ଚୈତନ୍ୟ ପାଦେ କଲା ପୂଜା ॥
କହ ହେ ଅପୂର୍ବ ଚରିତ । ଶୁଣି ମୁଁ ହୋଇବି ପବିତ ॥
ଏହି ପ୍ରକାରେ ଭକ୍ତ ଯେତେ । ତରି ଅଛନ୍ତି କହ ମୋତେ ॥
ଅତି ତୃଷିତ ମୋର ମନ । ବେଗେ କରାଅ ସୁଧାପାନ ॥

ଚୈତନ୍ୟ ଉବାଚ

ଶୁଣି ଚୈତନ୍ୟ ଅନୁରାଗେ । କହଇ ମନ ରାଜା ଆଗେ ॥
ହେ ମନ ସାବଧାନେ ଶୁଣ । ଶୁଣିଲେ ପାଇବୁ କାରଣ ॥
ଏ ବଡ଼ ଅପୂର୍ବ ଚରିତ । ଶୁଣି ନିଶ୍ଚଳ କର ଚିତ୍ତ ॥

ଦକ୍ଷିଣଦେଶେ ପୁଣ୍ୟ କ୍ଷେତ୍ର । ଦେଖିଲା ମାତ୍ରକେ ପବିତ୍ର ॥
ଶ୍ରୀଲଛମନଙ୍କ ସହର । ଭକତ ମୁକତ ଦୁଆର ॥
ସ୍ଵର୍ଗର ସମାନ ଅଟଇ । ଯମର ବାଧା ନ ଲଗଇ ॥
ଏମନ୍ତେ ପୁଣ୍ୟଗ୍ରାମେ ବାସ । ନାମ ତାହାର ରାମଦାସ ॥
ଗୃହୀବୈଷ୍ଣବ ଅଟେ ପୁଣ । ତାର କୁଟୁମ୍ବ ତିନିଜଣ ॥
ଏକଇ ପୁତ୍ର ଏକ ନାରୀ । ସେ ଗ୍ରାମେ ଥାନ୍ତି ମଠ କରି ॥
ସର୍ବଦାକାଳେ ତା ଭଜନ । କେବଳ ପ୍ରଭୁ ଲଛମନ ॥
ଶ୍ରୀପାଦପଦ୍ମ ପଦ ଭାବ । ନ ଜାଣେ ଅନ୍ୟ ଦେବାଦେବୀ ॥
କରଣ ଏହିଭାବେ ଧ୍ୟାନ । ସୁଖରେ ବଞ୍ଚୁ ଥାଏ ଦିନ ॥
ଯାହା ମିଳଇ ଭୁଞ୍ଜେ ନିତ୍ୟେ । ଚିନ୍ତା ନ ଥାଇ ତାର ଚିତ୍ତେ ॥
ଧୀର ଚତୁର ମହାଶାନ୍ତ । ପଣ୍ଡିତ ବିବେକ ତା ମତ ॥
ପ୍ରଭୁ ମହିମା ନିତ୍ୟେ ଶୁଣେ । ସଂସାର ଭଲମନ୍ଦ ଜାଣେ ॥
ଦେହ ବହିବା ଯେଉଁ ଲଭ । କେବଳ କରେ ସେହି ଭାବ ॥
ସାଧୁଙ୍କ ସେବା କରେ ନିତ୍ୟେ । ଦିଅଇ ସେହୁ ସଦାବ୍ରତେ ॥
ବୈଷ୍ଣବେ ନାନାଦି ପ୍ରକାରେ । ଆସି ମିଳନ୍ତି ତାର ଦ୍ଵାରେ ॥
ନାଗା ନିର୍ମୋହୀ ଖାଙ୍କୀ ଯେତେ । ବିରକ୍ତ ସଂଯମୀ ସହିତେ ॥
ଗୃହସମ୍ପ୍ରଦା ସାଧୁମାନେ । ଆସି ମିଳନ୍ତି ପ୍ରତିଦିନେ ॥
ଯୋଗୀ ସନ୍ନ୍ୟାସୀ ବ୍ରହ୍ମଚାରୀ । ବାନପ୍ରସ୍ଥ ଗୃହୀ ଭିକାରୀ ॥
ସଂଯୋଗୀ ବିପ୍ରଙ୍କ ସହିତେ । ଦୁଃଖୀ ଦରିଦ୍ର ଆଦି ଯେତେ ॥
ଏମାନେ ଗୃହିଦିଗୁଁ ଆସି । ତା ଦ୍ଵାରେ ଭୋଜନ ପ୍ରକାଶି ॥
ନାହିଁ ନ ବୋଲେ ସେ ବଚନେ । ସଭିଙ୍କୁ ତୋଷେ ଅନ୍ନଦାନେ ॥
ଲୁଚି ଖେଚେଡ଼ୀ ପୁରୀ କ୍ଷୀର । ଅନ୍ନ ବ୍ୟଞ୍ଜନ ଆଦି କରି ॥
ଯେ ଯେଉଁ ଦ୍ରବ୍ୟ ଇଚ୍ଛାକରେ । ତୋଷଇ ସେହି ପରକାରେ ॥
ଦଶ ବିଂଶ ବା ଷାଠିଏ ଶତେ । କିବା ସହସ୍ର ପରଯନ୍ତେ ॥
ଯେତେଅଇଲେ ତେତେଦେଇ । କେବେହେଁ ନାହିଁ ନ ବୋଲଇ ॥
ତାର ସଂକଳ୍ପ ଏହିମତେ । ଦ୍ଵାରେ ଅତିଥି ଥାନ୍ତି ଯେତେ ॥

ତାଙ୍କ ଚରଣ ଯେବେ ଧୋଇ । ତେବେ ସେ ଅନ୍ନ ଖାଏ ଯାଇ
ନୋହିଲେ ନ କରେ ଭୋଜନ । ଏହି ପ୍ରକାରେ ବଞ୍ଚେ ଦିନ ॥
ଏମନ୍ତେ କେତେ ଦିନ ଗଲା । ତାର ସମ୍ପଦ ଚ୍ୟୁତ ହେଲା ॥
ତା ଦେଖି ଭାର୍ଯ୍ୟା ପୁତ୍ର ତାର । ବୋଲନ୍ତି ଶୁଣ ହେ ପିଅର ॥
ଦିନକୁ ଦିନ ଧନ ଶେଷ । ଅଭାଗ୍ୟ ହେଲାଣି ପ୍ରବେଶ ॥
ଆଗକୁ ବିଚାରଣ ଥିବା । ଅତଥି କାହୁଁ ଚଳାଇବା ॥
ଶୁଣିଣ ଏସନ ସନ୍ଦେଶ । ବୋଇଲା ଭକ୍ତ ରାମଦାସ ॥
ଚିନ୍ତିତ କପାଁ ତୁମ୍ଭ ମନ । ଯାହାର ପ୍ରଭୁ ଲକ୍ଷ୍ମଣ ॥
ଦେବା ଦିଆଇବା ଠାକୁର । କେବଳ ସେହି ସିନା ମୂଳ ॥
ତା ଆଜ୍ଞା ବିନାରେ ଏ ଜୀବ । କିସ କରିବା ଶକ୍ତ ହେବ ॥
ସାଧୁ ସେବାକୁ ମୁଁ ତ ସ୍ଥିର । କୋଟିଏ କାଠରୁ ଅନ୍ତର ॥
କେବଳ ସାହା ଦେବରାୟ । ଏଣୁ ମୋହର ନାହିଁ ଭୟ ॥
ଏମନ୍ତ ମନେ ବିଚାରିଲା । ଏକ ସାଧୁର ଦ୍ୱାରେ ହେଲା ॥
ଆପଣା ନାମେ ଗୋଳାଦେଇ । ବୋଇଲା ଶୁଣ ଧନୀ ତୁହି ॥
ସାଧୁମାନଙ୍କ ଚରଣକୁ । ଦେବ ହେ ଖରଚ ଆମ୍ଭଙ୍କୁ ॥
ପ୍ରତିଦିନର ବ୍ୟୟ ଯେତେ । କେବଳ ଦେଉଥିବ ମୋତେ ॥
ଏମନ୍ତ ବୋଲି ଚଳିଗଲେ । ମନ୍ଦିରେ ପ୍ରବେଶ ହୋଇଲେ ॥
ପୁତ୍ର ଭାରିଯାଙ୍କୁ କହିଣ । ଆନନ୍ଦ ହେଲେ ତିନିଜଣ ॥
ସେହି ସାଧୁତ ଘରୁ ଧନ । ବ୍ୟୟ କରନ୍ତି ପ୍ରତିଦିନ ॥
ଯେତେବେଳରେ ଲୋଡ଼ାଯାହା । ସାଧୁତ ଦେଉଥାଇ ତାହା ॥
ଏମନ୍ତେ ଗଲା କେତେଦିନ । ଗୋଳାରେ ପୂର୍ଣ୍ଣ ହେଲା ଧନ ॥
ଲେଖାରେ ସହସ୍ର ମୋହର । ହେଲା ଯେ ଦାସଙ୍କ ଉପର ॥
ଆଉ ନ ଦେଲା ଧନୀ ଧନ । କହିଲା ନିଷ୍ଠୁର ବଚନ ॥
ବୋଇଲା ଧନ ମୋର ଦିଅ । ଲୋଡ଼ା ହୋଇଲେ ଆଉ ନିଅ
ତାଠାରୁ ନିର୍ବାଣ ଶୁଣିଲେ । ଆବର ଧନୀ ଘରେ ଗଲେ ॥

ଅନେକ ପ୍ରକାରେଣ କହି । ପୁଣ ଗୋଟାଏ ଲେଖିଦେଇ ॥
ତାଠାରୁ ବ୍ୟୟ କରେ ଧନ । ଏମନ୍ତ ଗଲା କେତେଦିନ ॥
ଯହିଁ ସମ୍ପୂର୍ଣ୍ଣ ତାର ହେଲା । ଆଉ ଅଧିକ ସେ ନ ଦେଲା ॥
ଏମନ୍ତେ ବଣ୍ଠିକ ମନ । ତାଠାରୁ ବନ୍ଦକଲେ ଋଣ ॥
ନଗରେ ସମସ୍ତେ ଜାଣିଲେ । ଦାସେ ଅନେକ ଋଣ କଲେ ॥
ଏମନ୍ତେ ସମସ୍ତ ସାଧୁତ । ପ୍ରତ୍ୟେ ନ ଗଲେ କଦାଚିତ ॥
ମାଣେ ତଣ୍ଡୁଳ ପ୍ରକାଶିଲେ । ସକଳ ଲୋକେ ଝିଙ୍ଗାସିଲେ ॥
ସୁନୀଯ୍ୟାସସ୍ତ୍ର ପାଞ୍ଚଯାଏ । ଋଣ ଭୁକଲୁ ସବୁଠାଏ ॥
ଏତେକ ଅଣ୍ଟି ନାହିଁ ତୋତେ । ଆହୁରି ମାଗୁଅଛୁ କେତେ ॥
ଏମନ୍ତେ ସବୁରି ନିରାଶ । ଦେଖିଣ ଭକ୍ତ ରାମଦାସ ॥
ବଣ୍ଠିର କଲାକ ମନର । କ ବୁଦ୍ଧି କରିବ ଏଥର ॥
ସାହୁଙ୍କ ନିରାଶ ବଚନ । ମଠରେ ନାହିଁ ଆଉ ଧନ ॥
ଏହି ସମୟେ ସାଧୁମାନେ । ଯେବେ ଆସିବେ ମୋ ଭବନେ
ତାହାଙ୍କୁ ଦେବ ମୁହିଁ କସ । ନ ଦେଲେ ହୋଇବେ ନିରାଶ
ଅତଏ ଲେଉଟିବେ ଯେବେ । ମୋର ମରଣ ହେବ ତେବେ ॥
ଏମନ୍ତେ ବଣ୍ଠିରୁ ତା ଶରେ । ଆସି ମିଳିଲେ ଜୁଣ୍ଟ... ॥
ଏକବେ ପାଞ୍ଚସସ୍ତ୍ର ମୂର୍ତ୍ତି । ମୁକୁଟବନ୍ଧା ଆସିଛନ୍ତି ॥
ମଠରେ ହୋଇଲେ ପ୍ରବେଶ । ତା ଦେଖି ଭକ୍ତ ରାମଦାସ ॥
ହୃଦପଦ୍ମରେ କଲା ଚିନ୍ତ । ଚିନ୍ତିଲା ଅନନ୍ତ ମୂରତି ॥
ହେ ପ୍ରଭୁ ତୁମ୍ଭେ ଯାହା କର । ସକଳ ଆଧୁତ୍ତ ତୋହର ॥
ଏମନ୍ତ ବଣ୍ଠିରୁ ତା ମନେ । କହାଳ କଲେ ସାଧୁ ମାନେ ॥
ବୋଇଲେ ଶୁଣ ଦାତା ତୁହି । ଉତ୍ତର କରୁ କାହିଁପାଇଁ ॥
ଆମ୍ଭ ଚରଣ୍ଟ ବେଗେ କର । ଯେବେ ଧର୍ମକୁ ଇଚ୍ଛା ତୋର ॥
ବିଳମ୍ବ ହୋଇଲେ ବହୁତ । ତୋହର ସରିବ ମହତ୍ତ୍ୱ ॥
ଅତଏ ସହ୍ମ ନ ପାରିବେ । ନାନା ପ୍ରକାରେ ଗାଳିଦେବେ ॥

ତାହା ଶୁଣିଣ ରାମଦାସ । ବୋଇଲେ ତୁମ୍ଭେମାନେ ବସ ॥
ତୁମ୍ଭ ଚରଣ୍ଟୁ ବର୍ଦ୍ଧମାନ । କରବେ ପ୍ରଭୁ ଲଛମନ ॥
ମୁଁ ଗୁରୁ କେତେକ ମାତର । କହି ଚଳିଲେ ନଜପୁର ॥
ପୁତ୍ର ଶରଧାଙ୍କୁ ବସାଇ । ସକଳ କହିଲେ ବୁଝାଇ ॥
ସାଧୁମାନେ ଅଛନ୍ତି ଯେତେ । ମାଗେଣ ତଣ୍ଡୁଳ ଆଉ ମୋତେ ॥
ପରତେ କରିଣ ନ ଦେଲେ । କି ବୁଦ୍ଧି କରିବା ଗୋ ଭଲେ ॥
ସାଧୁଙ୍କ କଣ୍ଠାଳ ବହୁତ । ଘରେ ତ ନାହିଁ ଆଉ ବିତ୍ତ ॥
ଆଜର ଚରଣ୍ଟ କେମନ୍ତେ । କରିବା କହ ବୁଦ୍ଧି ମୋତେ ॥
ତା ଶୁଣି ପୁତ୍ର ଦ୍ୱାରି କହି । କପାଇଁ ଚିନ୍ତା କରୁ ତୁହି ॥
ମଠ ପିତଳ ସଜମାନ । ଗରଆ ଗଡ଼ୁ ବରତନ ॥
ଲୋଟିଆ ବେଲା କୁମ୍ଭ ଯେତେ । ଯେ ଥାଳୀ ଫରୁଆ ସହିତେ ॥
ଏମାନେ ଯେତେ ଅଛି ତୋର । ଆବର ଦେହ ଅଳଙ୍କାର ॥
ସମସ୍ତ ଘେନି ଚବଗେ ଯାଅ । ସାଧବ ଘରେ ବନ୍ଧା ଦିଅ ॥
ଆଜ ଅତିଥିଙ୍କ ନିମନ୍ତେ । ଲୋଡ଼ା ହୋଇବ ଧନ ଯେତେ
ବହନ ଯାଇଁ ଘେନି ଆସ । ଶୁଣି ଆନନ୍ଦ ରାମଦାସ ॥
ସମସ୍ତ ଦ୍ରବ୍ୟର ଠୁଳକଲା । ଘେନାଇ ଧନୀଘରେ ଗଲା ॥
ବୋଇଲା ଶୁଣ ହେ ସାଧୁତ । ବନ୍ଧା ତୁ ରଖ ଏହୁ ବିତ୍ତ ॥
ଆଜ ସାଧୁଙ୍କ ଲାଗି ଯେତେ । କେବଳ ତାହା ଦିଅ ମୋତେ
ଶୁଣି ସାଧୁତ କୋପଭର । ବୋଇଲା ଶୁଣ ମୋ ଉତ୍ତର ॥
ଯେବା ପଦାର୍ଥ ଅଛି ତୋର । ସକଳ ବନ୍ଧା ଗିନା ମୋର ॥
ମୋର ପଦାର୍ଥ ମୋତେ ଦେଇ । ଆସିଛୁ ଜଟିବାର ପାଇଁ ॥
ଛାଡ଼ ଏ କଥା ମାନ ତୋର । ମହତ୍ତ୍ୱ ଯିବଟି ଏଥର ॥
ଯେତେ ତୁ ଧନ ଅଛୁ ନେଇ । ନ ଦେଇ ରଖିଛୁ କପାଇଁ ॥
କେବଣ ଭରସା ତୋହର । ନ ଦେଉ ପଦାର୍ଥ ମୋହର ॥
ଏଥର ମହତ୍ତ୍ୱ ସରିବ । ପୁଣ କୁଟୁମ୍ବ ଭକା ଯିବ ॥

ଦେଖିବା କେ ରଖିବ ତୋର । ଋଣ ଶୁଝିଲେ ଯିବୁ ଘର ॥
ଏମନ୍ତ ବୋଲି ଗାଳି ଦ୍ୟନ୍ତେ । ମିଳିଲେ ସକଳ ସାଧୁତେ ॥
ସକଳ ସାଧୁ ସେହିଠାରେ । ଗଞ୍ଜିଲେ ନାନା ପରକାରେ ॥
ବୋଇଲେ ଧନ ଦେଲେ ଯିବୁ । ନୋହିଲେ ଅର୍ଗଳାରେ ଥିବୁ ॥
ଛାଡ଼ ଏ ବାହାପିଆ ପଣ । ଯେ ଯାହା ଧନ ବେଗେ ଆଣ ॥
ଲଜ୍ଜା କି ନାହିଁ କହ ତୋତେ । ଦାତା ବୋଲାଉ ଏ ଜଗତେ ॥
ଶୁଣିଣ ସବୁର ଭାଷଣ । ବୋଲନ୍ତି ଭକ୍ତ ରାମଦାସ ॥
ତୁମ୍ଭେ ସମସ୍ତେ ସାଧୁ ଶୁଣ । ମୋତେ ଲାଗିଛି ତୁମ୍ଭ ଋଣ ॥
ଉପର ହସ୍ତେ ଅଛ ଦେଇ । ତଳ ହସ୍ତରେ ଅଛି ନେଇ ॥
ସେ ବ୍ରହ୍ମବିଷର ସମାନ । ଖାଇ କେ ପାର କରେ ଋଣ ॥
ବିଷ ଖାଇଲେ ଜଣେ ମରେ । ବ୍ରହ୍ମସ୍ୱ ବଂଶ ନାଶ କରେ ॥
ବ୍ରହ୍ମା ଇନ୍ଦ୍ରାଦି ସୁରାସୁରେ । ଯକ୍ଷ ଗନ୍ଧର୍ବ ଯେ କିନ୍ନରେ ॥
ଋଣଭୁଜଙ୍ଗ ଦଂଶେ ଯାରେ । ଗୁଣିଆ ନାହିଁ ଆଉ ତାରେ ॥
ବିଷ ତ ଝାଡ଼ିଲେ ଛାଡ଼ଇ । ନୋହିଲେ ଦେହ ସଙ୍ଗେ ରହି ॥
ସେ ଯାଇ ଜୀବର ସହିତେ । ବିଷର ବଡ଼ପଣ ଏତେ ॥
ବ୍ରହ୍ମସ୍ୱ କାଳେ ଦେହ ନାଶି । ଗମଇ ଜୀବ ସଙ୍ଗେ ମିଶି ॥
ବୃକ୍ଷର ଛାୟାର ପ୍ରାୟେ ହୋଇ । ଜୀବର ସଙ୍ଗେ ଲାଗିଥାଇ ॥
ଋଣ ଶୁଝିଲେ ଛାଡ଼ ଦେଇ । ନୋହିଲେ ଜନ୍ମେ ଜନ୍ମେ ଥାଇ
ଏଣୁ ଏ ପୂର୍ବ ଦ୍ୱାରା ଧନ । ବୋଲନ୍ତି ଋଣାନୁବନ୍ଧନ ॥
କେବଳ କଥା ଏକ ଅଛି । ଶୁଣ ହେ ତୁମ୍ଭଙ୍କୁ କହୁଛି ॥
ସାଧୁ ଯେ ଚନ୍ଦ୍ର ଗଙ୍ଗାଜଳ । କୃପାରୁ କେତେ ବା ଶୀତଳ ॥
ବୋଇଲେ ରାଜା ଆଉ ନାହିଁ । ଅଧିକ କି କହିବି ମୁହିଁ ॥
ଶୁଣ ହେ ସକଳ ସାଧୁତେ । ଆଜ ମାଗୁଣି ମୋର ଏତେ ॥
ଏ ସର୍ବ ରଖି ତୁମ୍ଭଠାର । ସାଧୁ ଚରନ୍ତୁ ଆଜ୍ଞା କର ॥
ବିଳମ୍ବ କଲେ ଅପରାଧ । କେ ସହୁ ସାଧୁଙ୍କର କ୍ରୋଧ ॥

ଏଣୁ ମାଗୁଣି ମୋର ଏତେ । କର ବା ନ କର ସମସ୍ତେ ॥
ତୁମ୍ଭ ବ୍ରହ୍ମସ୍ୱମାନ ଯେତେ । ମନେ ଅଛଇ ମୋ କରତେ ॥
ଶ୍ରୀ ଲକ୍ଷ୍ମଣଙ୍କ ଆଜ୍ଞାରେ । ଶୁଝିବ ଦଂଗୃର ଦିନରେ ॥
ଦାସଙ୍କ କହିବାରେ ଏତେ । ଶୁଣିଣ ଆନନ୍ଦ ସମସ୍ତେ ॥
ସେ ଯାହା ବନ୍ଧା ଆଣିଥିଲେ । ସମସ୍ତେ ଲେଉଟାଇ ଦେଲେ ॥
ସାଧୁଙ୍କ ଚରଣକୁ ଯେତେ । ଲେଖିଣ ଦେଲେ ସେ ସମସ୍ତେ ॥
ତାହା ଧରିଣ ରାମଦାସେ । ଚଳିଲେ ମନର ହରଷେ ॥
ମନ୍ଦିରେ ପ୍ରବେଶ ହୋଇଲେ । ସାଧୁମାନଙ୍କୁ ଚରଚିଲେ ॥
ଅତିଥି ଭୋଜନ ସାରିଣ । ଗଲେ ସେ କଲ୍ୟାଣ ବାଞ୍ଛିଣ ॥
ଏମନ୍ତେ ତିନିଦିନ ଗଲା । ଚତୁର୍ଥ ଦିନ ଆସି ହେଲା ॥
ଏଥିଉତ୍ତାରୁ ଭକ୍ତ ଚିତ୍ତେ । ବିଚାର କଲା ନାନାମତେ ॥
କି ବୁଦ୍ଧି କରିବି ବୋଇଲା । ସାଧୁମାନଙ୍କ କଷ୍ଟ ହେଲା ॥
ନ ଦେଲେ ତାହାଙ୍କର ବିତ୍ତ । ରଖିବେ ନାହିଁ ମୋ ମହତ୍ତ୍ୱ ॥
ଏଥିଉତ୍ତାରୁ ତୀର୍ଥବାସୀ । ଯଦ୍ୟପି ମୋର ଦ୍ୱାରେ ଆସି ॥
ରନ୍ଧନ ମାଗିବେ ଭୋଜନ । ମୋତେ ତ ନ ମିଳିବ ଧନ ॥
ନିରାଶ ହୋଇଣ ସମସ୍ତେ । ଲେଉଟି ଯିବେ ଯେଝାମତେ ॥
ତାହା ଦେଖିଣ ମୋ ଜୀବନ । ଥିବାର କିସ ପ୍ରୟୋଜନ ॥
ନ ଦେଖୁଁ ଏସନ ଚରିତ । ଜୀବନ ଯିବାହିଁ ଉଚିତ ॥
ଏମନ୍ତ ବୋଲି ଚଳିଗଲେ । ନାଗ ଗରଳ ଅଣାଇଲେ ॥
ଯତନ କରି ତାହା ରଖି । ପତ୍ନୀକି ବୋଇଲେ ସେ ଡାକି ॥
ଅତିଥେ କିଛି ନ ପାଇବେ । ନିରାଶ ହୋଇ ବାହୁଡ଼ିବେ ॥
ଏହା ଦେଖିବାଯାଏ ପ୍ରାଣ । ରଖିବା କିସ ପ୍ରୟୋଜନ ॥
ଏଥିକୁ ନୁହଇ ତୁ ବିକଳ । ମୁଁ ଏବେ ଭକ୍ଷିବି ଗରଳ ॥
ତା ଶୁଣି ଯୁବତୀରତନ । ପତିକି ବୋଲଇ ବଚନ ॥
ତୁମ୍ଭେ ତ ମୋର ସଙ୍ଗଫଳ । ବୃକ୍ଷକୁ ଯେସନେ ବକଳ ॥



ଭଗବାନ ରାମଦାସ ଘରେ ବିଷପାତ୍ର ଫୋପାଡ଼ିବାକୁ ଯାଉଛନ୍ତି ।

ଫଳର ମଣ୍ଡି ପ୍ରାପ୍ତ ହୋଇ । ଦାଇବ ଲଗାଇ ଅଛଇ ॥
ପତିବହୀନା ଯେଉଁ ନାରୀ । ସଂସାରେ ଥାନ୍ତି ଦେହ ଧରି ॥
କେ କହୁ ତାଙ୍କ ଦୁଃଖମାନ । ଜୀବନ୍ତେ ମରଣ ସମାନ ॥
ମୋତେ ଛାଡ଼ିବା ମନେ କର । ଏ କେଉଁ ଧରମ ତୁମ୍ଭର ॥
ତୁମ୍ଭେ ପରାଣ ଦେବ ଯେବେ । ମୁହିଁ ଭୁଞ୍ଜିବ ବିଷ ତେବେ ॥
ତା ଶୁଣି ସ୍ୱାମୀ ବୋଲେ ସତ । ପୁତ୍ର ଯେ ହୋଇବ ଅନାଥ ॥
ଅବଳା ବୋଲଇ ବଚନ । ଯାହାର ପ୍ରଭୁ ଲକ୍ଷ୍ମଣ ॥
ତାର କାହାକୁ ଅଛୁ ଡ଼ର । ହେ ସ୍ୱାମୀ ବିଚାର ନ କର ॥
ଏମନ୍ତ କୁହାକୁହି ହେଲେ । ଦୁହେଁ ଭୁଞ୍ଜିବା ମୂଳ କଲେ ॥
ଏଥିଉତ୍ତାରୁ ଶୁଣ ରସ । ରଜନୀ ହୋଇଲା ପ୍ରବେଶ ॥
ପୁତ୍ର ଦାରାଦି ତିନିଜଣ । ଆନନ୍ଦେ ଭୋଜନ ସାରଣ ॥
ଶୟନ ମନ୍ଦିରରେ ପଶି । ସମସ୍ତେ ପ୍ରଭୁ ନାମ ଘୋଷି ॥
ବିଷ ତାଟିଆ ଲୁଚାଇଣ । ରଖିଲେ ଶୟନ ଠାବେଣ ॥
ଭୁଞ୍ଜିବା ପୁତ୍ର ନିଦ୍ରାଗଲେ । ବୋଲି ଚୁପତେ ବିଚାରିଲେ ॥
ପ୍ରଭୁଙ୍କ ପାଦପଦ୍ମେ ମତି । ହୋଇ ଅନେକ କଲେ ସ୍ତୁତି ॥
ଜୟ ତୁ ଜୟ ଦୀନବନ୍ଧୁ । ନାମ କରୁଣାମୟ ସିନ୍ଧୁ ॥
ଅନାଦି ପ୍ରଭୁ ଆଦିକନ୍ଦ । ଲୋକପାଳକ ସଦାନନ୍ଦ ॥
ଏଣୁ ଶରଣ ତୋ ପୟର । ତୁ ନାଥ ଯାହା ଇଚ୍ଛାକର ॥
ଜୟ ତୁ ଅନନ୍ତ ମୂରତି । ଅଶେଷ ଜୀବ ପ୍ରାଣପତି ॥
ଜୟ କୋଦଣ୍ଡକାଣ୍ଡପାଣି । ଚିନ୍ତାର୍ଥିଜନ ଚିନ୍ତାମଣି ॥
ଭକତ ବତ୍ସଳ ତୋ ବାନା । ଭବ ଭୟକୁ ବଜ୍ରସେନା ॥
ପ୍ରାର୍ଥନା ସରୁଛୁ ଆମ୍ଭର । ତୁ ନାଥ ଯାହା ଇଚ୍ଛା କର ॥
ଏହା ବୋଲନ୍ତେ ବେନିପ୍ରାଣୀ । ଜାଣିଲେ ପ୍ରଭୁ ଅନ୍ତର୍ଯାମୀ ॥
ମହାନିଦ୍ରାକୁ ଆଜ୍ଞା ଦେଲେ । ବହନ ଯିବୁ ତୁ ବୋଇଲେ ॥
ମୋ ଭକ୍ତମାନଙ୍କୁ ଯାଇଣ । ନିଦ୍ରାରେ ମୋହ ଏହିକ୍ଷଣ ॥

ଆଜ୍ଞା ପ୍ରମାଣେ ନିଦ୍ରା ଗଲ । ତିନିଙ୍କ ହୃଦୟ ମୋହିଲା ॥
ବିଷ ଭକ୍ଷିବା ବୁଦ୍ଧି ଯାଇ । ନିଦ୍ରାରେ ପଡ଼ିଲେ ଘୁମାଇ ॥
ଏମନ୍ତ ସମୟରେ ଆସି । ହୋଇଲା ଦଣ୍ଡଘଡ଼ି ନିଶି ॥
ଯେ ପ୍ରଭୁ ସର୍ବଦା ଅଚିନ୍ତା । ଲାଗିଲା ଭକ୍ତଜନ ଚିନ୍ତା ॥
ଅତ୍ୟନ୍ତ ଉଗ୍ର ହେଲା ମନ । ବିଜୟ ପ୍ରଭୁ ଲଛମନ ॥
ସେ ରାମଦାସଙ୍କ ସ୍ୱରୂପ । ମାୟାରେ ହେଲେ ସେହିରୂପ ॥
ସଙ୍ଗତେ ଘେନି ଦାସ ଜନ । ବୁହାଇ ସାଧୁଙ୍କର ଧନ ॥
ସ୍କନ୍ଧରେ ବାହୁଙ୍ଗି ଲଗାଇ । ବିଜୟ କଲେ ଭାବଗ୍ରାହୀ ॥
ସାହୁଙ୍କ ଦ୍ୱାରେ ବିଜେ କରି । ଡାକିଲେ ଧନୀ ନାମ ଧରି ॥
ବହନ ହୋଇ ଉଠିଆସ । ଆମ୍ଭେ ଆସିଛୁଁ ରାମଦାସ ॥
ଦେଇବେ କଣ୍ଠ ଆଜଦିନ । ନିଅ ତୋ ଋଣ ଦେବା ଧନ ॥
ଶୁଣି ସାଧୁତ ବେଗେ ଉଠି । ଦ୍ୱାରେ ପ୍ରଭୁଙ୍କୁ ଯାଇଁ ଭେଟି ॥
ସୁର ଯୋଗୀନ୍ଦ୍ର ମୁନିମାନେ । ଯାହା ଚିନ୍ତନ୍ତି ଦିବ୍ୟଜ୍ଞାନେ ॥
ଭକ୍ତଙ୍କୁ ଋଣ ଦେବା ଫଳେ । ତାଙ୍କୁ ଦେଖିଲେ ଚର୍ମଡୋଳେ ॥
ଯା ମାୟା ଦେବେ ଅଗୋଚର । କାହୁଁ ଚିହ୍ନିବ ନର ଛାର ॥
ନିଜ ଖାତକ ପ୍ରାୟ ମଣି । ବୋଇଲେ ଶୁଣ ମୋର ବାଣୀ ॥
ଏତେ ନିଶାରେ କାହିଁପାଇଁ । ଅଇଲ କହ ହେ ଗୋସାଇଁ ॥
ତା ଶୁଣି ଜଗତଜୀବନ । ବୋଇଲେ ଶୁଣ ମୋ ବଚନ ॥
ପଦାର୍ଥ ନ ଥିବାରୁ ମୋତେ । କହୁ ଯେ ଥିଲ ନାନାମତେ ॥
ଆଜ ପ୍ରବେଶ ହେଲା ବିତ୍ତ । ରଖିବା ନୁହଇ ଉଚିତ ॥
ଲେଖି ଦେବା ଯେ ଧନ ତୋର । ମିଶାଇ ମୂଳ କଳାନ୍ତର ॥
ସୁନାଆ ଗଣି ଘେନି ଯାଅ । ଆମ୍ଭର ଗୋଜାଗୋଟି ଦିଅ ॥
ଏମନ୍ତ ବୋଲି ଧନ ଦେଲେ । ତାଠାରୁ ଗୋଜା ଘେନିଗଲେ ॥
ବୋଇଲେ ଶୁଣ ହୋ ସାଧୁତ । ତୋ ଆଗେ କହୁଅଛୁ ସତ ॥
ଏବେ ମୁଁ କହୁଅଛୁ ତୋତେ । ବ୍ୟୟ ତୁ ସାଧୁଙ୍କ ନିମନ୍ତେ ॥

ଯେତେ ଲଗିବ ଦେଉଥିବୁ । ସେ ଧନ ଆମ୍ଭେ ଶୁଝି ଦେବୁ ॥
ଆମ୍ଭେ ଖାତକ ତୁମ୍ଭେ ସାହୁ । ଏଥିକି କିପାଁ ଡରୁଥାଉ ॥
ଏମନ୍ତ ଆଜ୍ଞା ତାକୁ ଦେଲେ । ସେଠାରୁ ବିଜେ କରିଗଲେ ॥
ଏହି ପ୍ରକାରେ ଯେତେ ସାହୁ । ସବୁଙ୍କ ଦ୍ୱାରେ ମହାବାହୁ ॥
ସୁନାଆମାନ ଗଣି ଦେଲେ । ସମସ୍ତ ଗୋଜା ଢେନିଗଲେ ॥
ଚଳିଣ ଗଲେ ସେ ସତ୍ୱରେ । ମନ ଅଛଇ ଭକ୍ତଠାରେ ॥
ପ୍ରବେଶ ଦାସଙ୍କ ଭୁବନେ । ବିଜୟ କଲେ ସୀମସ୍ଥାନେ ॥
ବିଷ ଡାଟିଆ କରେ ଧରି । ଫିଙ୍ଗିଣ ଦେଲେ ଦୂର କରି ॥
ସେହି ଡାଟିଆ ପରେ ଗୋଜା । ରଖି ଦେବାଧିଦେବରାଜା ॥
ଅନ୍ତର ହେଲେ ଭବଗ୍ରାହୀ । ଏମନ୍ତେ ଗଲ ରାତ୍ରି ପାହି ॥
କାକ କୁକ୍କୁଟ ରଡ଼ ଶୁଣି । ନିଦ୍ରା ତେଜିଲେ ବେନି ପ୍ରାଣୀ ॥
ରଚି ପ୍ରଭୁଙ୍କ ନାମ ଗୁଣ । ପତି ବୋଇଲେ ପତ୍ନୀ ଶୁଣ ॥
ମୁଁ ବଡ଼ ମନ୍ଦ କର୍ମ କଲି । ବିଷ ନ ଭକ୍ଷି ନିଦ୍ରା ଗଲି ॥
ଦେଖ ପାହିଲା ଆସି ରାତ୍ରି । ଏମନ୍ତ ବୋଲି ବିଷପାତ୍ର ॥
ଦେଖିଲେ ବିଷ ନାହିଁ କିଛି । ପତ୍ର ଯେ ଖଣ୍ଡିକେତେ ଅଛି ॥
ବୋଇଲେ କି ଅଦ୍ଭୁତ ହେଲା । ରଖିବା ବିଷ କେଉଁଣେ ଗଲ ॥
ଏମନ୍ତ ବୋଲି ପତ୍ର ଧରି । ଦୀପ ଲଗାଇ ପାଠକରି ॥
ଆପଣା ନାମେ ଗୋଜା ଜାଣି । ବୋଇଲେ ଶୁଣ ପ୍ରିୟାମଣି ॥
ଏହା ତ ବଡ଼ ଆଚମ୍ବିତ । କେବଳ ପ୍ରଭୁଙ୍କ ଆସୂତ ॥
ଗରଳ ପାତ୍ର କେଉଁଣେ ଗଲ । ଆମ୍ଭର ଗୋଜା କେ ଆଣିଲା ॥
କେମନ୍ତେ ଜାଣିବା ଏ କଥା । ମୋର ମନକୁ ଲାଗେ ବ୍ୟଥା ॥
ଏମନ୍ତ କୁହାକୁହି ହୋନ୍ତେ । ଆସିଣ ମିଳିଲେ ଅଢଥେ ॥
ବେଳ ପ୍ରହରେ ଅଛି ହୋଇ । ବସିଲେ ମଠଦ୍ୱାରେ ଯାଇ ॥
ସମସ୍ତେ ଏକଥାନେ ବସି । ଦାସଙ୍କୁ ଅନେକ ପ୍ରଶଂସି ॥
ଡାକିଲେ ଆସ ରାମଦାସ । କାଲିରୁ ସର୍ବେ ଉପବାସ ॥

ଆମ୍ଭ ଚରଣ୍ଣ ବେଗେ କର । ତା ଶୁଣି ମଠରୁ ବାହାର ॥
ସାଧୁଙ୍କୁ କରଣ ଦର୍ଶନ । ବିସ୍ମିତ କଲା ପଞ୍ଚମନ ॥
ଏଥର କି ବୁଦ୍ଧି କରିବ । କାହାକୁ ଯାଇଁ କି ମାଗିବ ॥
ସାଧୁମାନଙ୍କ ଦ୍ୱାରେ ଗଲେ । ମହତ୍ତ୍ୱ ସାରିବେ ମୋ ଭଲେ ॥
ଏମନ୍ତ ବିସ୍ମୃରୁଛି ଚିତ୍ତେ । ଆସିଣ ସାଧୁ ଯେ ତୁରିତେ ॥
ବୋଇଲେ ଶୁଣ ହେ ଗୋସାଇଁ । ମନରେ ଦୁଃଖ କାହିଁପାଇଁ ॥
ସକାଳଯାଏ ନ ରହିଲ । ରାତି ଅର୍ଦ୍ଧରେ କିପା ଗଲ ॥
ଶୁଣି ସକଳ ସାଧୁ ଧନ । ଯେଣେ ଅଇଲ ଗୋଳା ପୁଣ ॥
ରାତି ପାହିବାଯାଏ ଥିଲେ । କିବା ତୁମ୍ଭଙ୍କୁ ଦଣ୍ଡିଥିଲେ ॥
ତା ଶୁଣି ଭକ୍ତ ରାମଦାସ । ପୁଚ୍ଛଇ ସାଧୁଙ୍କର ପାଶ ॥
ତୁମ୍ଭଙ୍କୁ ଧନ ଦେବା ବେଳେ । ଦେଖିଲଟିକି ଚର୍ମଡୋଳେ ॥
ତା ଶୁଣି ବୋଲନ୍ତି ସାଧୁତେ । ଗୋଳା ଦେଇଛୁଁ ତୁମ୍ଭ ହସ୍ତେ ॥
ତୁମ୍ଭେ ଆମ୍ଭଙ୍କୁ ଦେଲ ଧନ । ଏବେ ତ କହୁଛ ଏମାନ ॥
ତା ଶୁଣି ଭକ୍ତ ଅଚେତ ହେଲେ । ଧନୀମାନଙ୍କୁ ଧରି କୋଳେ ॥
ବୋଇଲେ ଧନ୍ୟ ତୁମ୍ଭେମାନେ । ପ୍ରଭୁଙ୍କୁ ଦେଖିଲ ନୟନେ ॥
ମୁଁ କେତେ ପାପ କରିଥିଲି । ଦିନେ ସ୍ୱପନେ ନ ଦେଖିଲି ॥
ତାହା ଶୁଣିଣ ମହାଜନେ । ଅତି ପବିତ୍ର ହେଲେ ମନେ ॥
ବୋଇଲେ ନିଷ୍ଠ ଭକ୍ତତାତେ । ବିଷ୍ଣୁ ଯେ ପ୍ରସନ୍ନ ସାକ୍ଷାତେ ॥
ହେ ରାମଦାସ ତୋ କୃପାରୁ । ଆମ୍ଭେ ଦେଖିଲୁ ମହାମେରୁ ॥
ତୋ ସଙ୍ଗେ ନ ଥିଲେ ବ୍ୟାପାର । କାହୁଁ ଦେଖନ୍ତୁ ବିଶ୍ୱମ୍ଭର ॥
ଏବେ ଆମ୍ଭର କଥା ଶୁଣ । ଦାରା ତନୟ ଧନ ପ୍ରାଣ ॥
ଆଜ୍ଞୁଁ ତୁ ଯାହା କହିଲ କର । ଚରଣେ ଶରଣ ତୋହର ॥
ଏମନ୍ତ କହି ଚଳିଗଲେ । ସାଧୁଙ୍କ ପାଇଁ ସଜ୍ଞା ଦେଲେ ॥
ତାହା ଦେଖିଣ ରାମଦାସ । ସମର୍ପି ଅତିଥିଙ୍କ ପାଶ ॥
ନିଜ ପୁରକୁ ଚଳିଗଲେ । ପୁନି ସଭରିଯା ବସାଇଲେ ॥

କହିଲେ ସକଳ ଚରିତ । ଶୁଣି ସେ ହେଲେ ଆଚମ୍ବିତ ॥
ବୋଇଲେ ପ୍ରଭୁ ବିନା ଆନ । ଏହା କେ କରିବ ସ୍ରଜନ ॥
ପ୍ରାଣୀ ନ ଜାଣି ମୂଢ଼ପଣେ । ଭ୍ରମୁଅଛନ୍ତି ଅକାରଣେ ॥
ଯାର ମହିମା ଚରାଚର । ପୂରି ରହିଛି ପରାପର ॥
ଚିନ୍ତିଲେ ନାହିଁ ଭୟ ଭ୍ରାନ୍ତି । ନ ଚିହ୍ନି ଜନ୍ମ ମୃତ୍ୟୁ ପ୍ରାନ୍ତି ॥
ଏମନ୍ତ ବୋଲି ଭକ୍ତଜଣ । ଚିନ୍ତିଲେ ଅନନ୍ତ ଚରଣ ॥
ଏକଇ ଚିତ୍ତ ଏକ ମନ । ହୋଇଣ ପ୍ରଭୁ ଲକ୍ଷମନ ॥
ପାଦପଦ୍ମରେ ଚିତ୍ତ ଦେଲେ । ଦିବସ ରଜନୀ ବଞ୍ଚିଲେ ॥
ନିରତେ ପର ଉପକାର । କରିବା ମୂଳ ଅଟେ ତାର ॥
ଏମନ୍ତ ବଞ୍ଚାଇଲେ ଦିନ । ପ୍ରଭୁ ଚରଣେ ଦେଇ ମନ ॥
ଶୁଣ ହେ ମନୁ ନୃପନାଥ । ଦାନର ମହିମା ଏମନ୍ତ ॥
ପାଷାଣ୍ଡ ଲୋକ ଯେଉଁମାନେ । ପରତେ ନାହିଁ ତାଙ୍କ ମନେ ॥
ଯେ ଅବା ଜାଣଇ ଏ ଭାବ । ସେହିମାନଙ୍କୁ ଏ ଦୁର୍ଲ୍ଲଭ ॥
କହଇ ରାମଦାସ ମନ । ମୂଳ ମୋ ପ୍ରଭୁ ଲକ୍ଷ୍ମନ ॥
ସେ ପାଦପଦ୍ମରେ ନିରତ । ଭ୍ରମର ହେଉ ମୋର ଚିତ୍ତ ॥
ସାଧୁମାନଙ୍କ ପାଦଧୂଳି । ମଣ୍ଡିତ ହେଉ ମୋ ମଉଳି ॥
ଏ ମନ ଚଇତନ କଥା । ଶୁଣି ଛୁଡ଼ିବ ଭବବ୍ୟଥା ॥
ସୁଜନେ ଶୁଣି ହୁଅ ପାର । ଶମନ ଦଣ୍ଡରୁ ଉଦ୍ଧର ॥
କିସ କହିବ ରାମଦାସ । ମୂଳଟି ଅଟଇ ବିଶ୍ବାସ ।୨୭୭।

ଇତି ଶ୍ରୀ ଦାର୍ଢ୍ୟଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ
ଭକ୍ତ ରାମଦାସ ମୋକ୍ଷଣେ ନାମ
ସପ୍ତମୋଽଧ୍ୟାୟଃ ।

# ଅଷ୍ଟମ ଅଧ୍ୟାୟ

## ରଘୁଅରକ୍ଷିତ ସମ୍ବାଦ

## ଚୈତନ୍ୟ ଉବାଚ

ହେ ମନ ଶୁଣ ଦିବ୍ୟରସ । ଅଶେଷ ଜନ୍ମ ପାପ ନାଶ ॥
ଏ ବଡ଼ ଆଚମ୍ବିତ କଥା । ଶୁଣି ଗୁଡ଼ିବ ହୃଦୁଁ ବ୍ୟଥା ॥
ଅମୃତରସର ସମାନ । ଶୁଣ ସୁସ୍ଥିର କର ମନ ॥
ଯେବଣ ବଙ୍ଗ ଦେଶ ନାମ । ସକଳ ଦେଶରେ ଉତ୍ତମ ॥
ସେ ଦେଶେ ଅଛେ ଅଧିପତି । ଅଚଳାଚଳ ତା ସମ୍ପତ୍ତି ॥
ନାମ ତା କୃଷ୍ଣ ମହାପାତ୍ର । ତାହାର ଏକଗୋଟି ପୁତ୍ର ॥
ପତ୍ନୀର ନାମ ତା କମଳା । ସଦା ଆନନ୍ଦ ମତ ଭୋଳା ॥
ପୁତ୍ରର ନାମ ରଘୁନାଥ । ଭକ୍ତର ଅଂଶେ ସେହୁ ଜାତ ॥
ଏମନ୍ତେ ତିନିଜଣ ଥାନ୍ତି । କରଣ ନିର୍ମଳ ଭକତି ॥
ଦୁଃଖୀ ଦରିଦ୍ରଜନଟାରେ । ନିରାଶ ନ ଥାଇ ମନରେ ॥
ଦିଅଇ ଶକ୍ତି ଯେତେ ତାର । ନିରତେ ପର ଉପକାର ॥
ଅମୃତ ସମାନେ ବଚନ । କହି ତୋଷଇ ପ୍ରାଣୀ ମନ ॥
ଏମନ୍ତେ କେତେଦିନ ଗଲା । ପୁତ୍ରର ଷୋଳବର୍ଷ ହେଲା ॥
ତା ଦେଖି ଜନନୀ ପିଅର । ଖୋଜ ଉତ୍ତମ ବନ୍ଧୁ ଘର ॥
ମଧ୍ୟବଙ୍ଗଳା ଯେ ସହର । ସେ କଳାବତୀପୁରେ ଘର ॥
କରଣ ନାମ ଗଙ୍ଗାଧର । କୁବେର ସମ ଧନ ତାର ॥
ସପତପୁତ୍ରରେ କୁମାରୀ । ଲକ୍ଷଣବତୀ ସୁକୁମାରୀ ॥
ନାମ ତାହାର ଅନ୍ନପୂର୍ଣ୍ଣା । ପଦ୍ମିନୀ ଜାତି ସେ ସୁଷମା ॥
ଅନେକ ଧନ ବ୍ୟୟ କଲେ । କୃଷ୍ଣ ପୁତ୍ରକୁ ବିଭା କଲେ ॥
ଏମନ୍ତେ କେତେଦିନ ଗଲା । ତାର ସମ୍ପଦ ଚ୍ୟୁତ ହେଲା ॥
ଦରିଦ୍ର ହୋଇ ଦୁଃଖ ପାଇ । କଷ୍ଟ ସେ ନ ପାରିଲେ ସହି ॥

ଚିନ୍ତା କରଣ ପିତା ମଲ । ଜନନୀ ଅଗ୍ନି ଝାସଦେଲ ॥
ରହିଲ ଏକଇ କୁମର । ଦଇବେ ଅତି ସୁକୁମାର ॥
ତା କଷ୍ଟ କହୁଁ ନ ସରଇ । ଭିକ୍ଷା ମାଗିଣ ସେ ବଞ୍ଚଇ ॥
ଏମନ୍ତେ କେତେ ଦିନ ଗଲ । ତା ଚିତ୍ତେ ଦିବ୍ୟଜ୍ଞାନ ହେଲ ॥
ବିଚାରି କଲ ଅନୁକ୍ଷଣେ । ଏଥେଁ ମୁଁ ଥିବି କି କାରଣେ ॥
ସକଳ ଜୀବର କରତା । ଭକତି ମୁକତିର ଦାତା ॥
କମଳା ଦେବୀ ପ୍ରାଣପତି । ଦୀନବାନ୍ଧବ ଜଗତ୍ପତି ॥
ବିଜୟୀ ଶ୍ରୀନୀଳକନ୍ଦର । କମ୍ବୁ ରଥାଙ୍ଗ ଧରି କର ॥
ସେ ପ୍ରଭୁ ଛାମୁକୁ ମୁଁ ଯିବି । ସକଳ କଷ୍ଟ ଜଣାଇବି ॥
ଶ୍ରୀମହାପ୍ରସାଦ କୈବଲ୍ୟ । ଖାଇ ବଞ୍ଚିବି ମୋର କାଳ ॥
ଦଇବେ ମହାପୁଣ୍ୟ କ୍ଷେତ୍ର । ମଲେ ତ ହୋଇବି ପବିତ୍ର ॥
ଏମନ୍ତେ ମନେ ବିଚାରିଲ । ଶ୍ରୀକ୍ଷେତ୍ରେ ବେଗେ ଚଳିଗଲ ॥
ଦର୍ଶନ କଲ ପଦ୍ମମୁଖ । ଛାମୁରେ ଜଣାଇଲ ଦୁଃଖ ॥
ପିତା ଜନନୀ ଦୁହେଁ ମଲେ । ମୋତେ ଅନାଥ କରିଗଲେ ॥
ଏଣୁଟି ରଘୁ ଅରକ୍ଷିତ । ତୋ ପାଦେ ଶରଣ ବାଞ୍ଛିତ ॥
ହେ ପ୍ରଭୁ ଯାହା ଇଚ୍ଛା କର । କିଣିଲ ଦାସ ମୁହିଁ ତୋର ॥
ଏମନ୍ତ କହି ସ୍ତୁତି କଲ । କ୍ଷେତ୍ରରେ ବୁଲି ଦିନ ନେଲ ॥
ବୈଷ୍ଣବ ମଠଧାରୀ ଦ୍ୱାରେ । ମହାପ୍ରସାଦ ଭିକ୍ଷା କରେ ॥
ଭାଗ୍ୟେ ମିଳଇ ଯେତେ ଅବା । ଆନନ୍ଦ ତାହା କଲ ସେବା ॥
ପ୍ରଭୁଙ୍କୁ କରି ଦରଶନ । ଏହି ପ୍ରକାରେ ବଞ୍ଚେ ଦିନ ॥
ଏମନ୍ତେ କେତେ ଦିନ ଗଲ । ଶ୍ୱଶୁର ଘର ତା ଜାଣିଲ ॥
ରଘୁଅକ୍ଷିତ ଦୁଃଖ କଥା । ସକଳେ ପାଇଲେ ବାରତା ॥
ସମସ୍ତ କୁଟୁମ୍ବ ବସିଣ । ଭାବି ଦୁହିତା ପତି ଗୁଣ ॥
ବାଳୁତ କାଳୁଁ ପିତା ମାତା । ଖାଇଣ ହୋଇଲ ଅଚିନ୍ତା ॥
ସର୍ବ ସମ୍ପଦ ନାଶ କରି । ଭିକ୍ଷା ମାଗିଣ ଦେଶ ଫେରି ॥

ଅଷ୍ଟିତ ଲୋକ ପ୍ରାପ୍ତ ହୋଇ । ମିଳିଲା ଶ୍ରୀକ୍ଷେତ୍ରରେ ଯାଇ ॥
ସମସ୍ତ ଦ୍ୱାରେ ଭିକ୍ଷା କରେ । ପ୍ରାଣ ପୋଷଇ ଅନାଗୃହରେ ॥
ତାକୁ କେମନ୍ତେ ଝିଅ ଦେବା । କରିବା ଅନ୍ୟଜନେ ବିଭା ॥
ଏମନ୍ତ ବୋଲଣ ସମସ୍ତେ । ବିଗ୍ଭର କଲେ ଦୃଢ଼ଚିତ୍ତେ ॥
ସେହି ରାଜ୍ୟରେ ରାଜପାତ୍ର । ନାମ ତା ବାସୁ ମହାପାତ୍ର ॥
ଦୁହିତାପାଇଁ ତା ପୁତ୍ରକୁ । ଖୋଜିଲେ ବିଭା କରିବାକୁ ॥
ଆସନ୍ତା ଫଗୁଣ ମାସରେ । ଶୁକଳ ପକ୍ଷ ପଞ୍ଚମୀରେ ॥
ବିଭା କରିବା ହେଲା ମୂଳ । ତା ଶୁଣି ଦୁହିତା ବିକଳ ॥
ମନେ ବିଗ୍ଭର ହେଲା ତାର । ଧିକ ଜୀବନ ଅଟେ ମୋର ॥
ମୋ ପ୍ରାଣନାଥ ଥାଉଁ ଥାଉଁ । ବିଭା କରିବେ ମୋତେ ଆଉ ॥
ମୁଁ ପୁଣି ଧରିଣ ଶରୀର । ବଦନ ଚାହିଁବି କାହାର ॥
ଏମନ୍ତ ମନେ ବିଗ୍ଭରିଣ । ଚିତ୍ତେ ଚିନ୍ତିଲା ନାରାୟଣ ॥
ହେ ପ୍ରଭୁ ଗଜ ନିସ୍ତାରଣ । ଦ୍ରୌପଦୀ ଲଜ୍ଜା ନିବାରଣ ॥
ମୃଗୁଣୀ ଉଦ୍ଧାରଣର ପ୍ରାୟେ । ମୋତେ ଉଦ୍ଧର ଦେବରାୟେ ॥
ଭେଟ କରାଅ ମୋର କାନ୍ତ । ନୋହିଲେ ମରିବି ନିଶ୍ଚିତ ॥
ଏମନ୍ତ ଚିନ୍ତି ଭଗବାନ । ବିଗ୍ଭର କଲା ତାର ମନ ॥
କେ ଏବେ ଯିବ କ୍ଷେତ୍ରବରେ । କହିବ ମୋ ପତି ଗ୍ରାମୁରେ ॥
ଏମନ୍ତ ବିଗ୍ଭରୁ ବିଗ୍ଭରୁ । କେତେହେଁ ଜଣ ସେ ଗ୍ରାମରୁ ॥
ଶ୍ରୀ ଜଗବନ୍ଧୁଙ୍କ ଦର୍ଶନ । ନିମନ୍ତେ କରନ୍ତେ ଗମନ ॥
ତା ଦେଖି ଆନନ୍ଦ ସୁନ୍ଦରୀ । ପତ୍ର ଲେଖିଲା ଗୋପ୍ୟକରି ॥
ବୋଇଲା ଆହେ ପ୍ରାଣେଶ୍ୱର । ମୁଁ ଯେବେ ଦାସୀଟି ତୁମ୍ଭର ॥
ଆସନ୍ତା ଫଗୁଣ ମାସରେ । ଶୁକଳ ପକ୍ଷ ପଞ୍ଚମୀରେ ॥
ଏ ରାଜ୍ୟ ପାତ୍ର କୁମରକୁ । ବିଭା କହିବେ ମୋତେ ତାକୁ ॥
ଏଥିକୁ ଚାହିଁ ବେଗେ ଆସ । ମୋ ଠାରେ ଅଛୁ ଯେବେ ଆସ
ଆସ ନ ଆସ ତୁମ୍ଭ ମନ । ମୁଁ ଏବେ ଗଣୁଅଛୁ ଦିନ ॥

ଯେବେ ଏ କଣ୍ଠ ପରଯନ୍ତେ । ଦେଖା ନ ଦେବ ତୁମ୍ଭେ ମୋତେ
ପ୍ରାଣ ଛାଡ଼ିବ ଆତ୍ମଘାତେ । ଲାଗିବ ସ୍ତ୍ରୀ ହତ୍ୟା ତୋତେ ॥
ଏମନ୍ତେ ଚିଠାଉ ମୁଦିଲା । ପଥିକ୍ କର ହସ୍ତେ ଦେଲା ॥
ବନପ୍ରେ କହିଲା ବହୁତ । କ୍ଷେତ୍ରେ ଅଛନ୍ତି ମୋର କାନ୍ତ ॥
ରଘୁ ଅର୍କ୍ଷିତ ନାମ ତାର । ଭିକ୍ଷା ମାଗଇ ଦ୍ୱାର ଦ୍ୱାର ॥
ଏ ଲେଖା ଦେବଲ ତାଙ୍କ ହସ୍ତେ । ଜୀବନ ଦାନ ଦେବ ମୋତେ ॥
ଜନ୍ମ ଜନ୍ମରେ ଉପକାର । ଶୁଝି ନ ପାରିବ ତୁମ୍ଭର ॥
ଏମନ୍ତ କହିଲାକ ବାଳୀ । ପଥିକ୍ କ ଜନ ଗଲେ ଚଳି ॥
କେତେ ହେଁ ଦିନେକ ଉତ୍ତରେ । ମିଳିଲେ ଯାଇଁ କ୍ଷେତ୍ରବରେ ॥
ଏକଇ ସ୍ଥାନେ ବସା କରି । ପ୍ରଭୁଙ୍କ ଦରଶନ ସାରି ॥
ସୁନ୍ଦରୀ କଥା ଅଛି ମନେ । ତା ପତି ଲୋଡ଼ନ୍ତେ ପ୍ରତିଦିନେ ॥
ରଘୁ ଅର୍କ୍ଷିତ ନାମ ଧରି । ଯାହାକୁ ଦେଖିଲେ ପଚାରି ॥
ଏମନ୍ତେ କେତେଦିନ ପରେ । ଭେଟ ପଡ଼ିଲା ସିଂହଦ୍ୱାରେ ॥
ନାମ ଗୋବର୍ଦ୍ଧନ ପଚାରିଲେ । ଚିଠାଉ ତାର ହସ୍ତେ ଦେଲେ ॥
ବୁଝ ହେ ପତ୍ର ପାଠ କରି । ଦେଇ ଅଛନ୍ତି ତୁମ୍ଭ ନାରୀ ॥
ତା ଶୁଣି ରଘୁ ଅରକ୍ଷିତ । ଚିଠାଉ ଧରିଣ ଏକାନ୍ତ ॥
ସକଳ ବୃତ୍ତାନ୍ତ ବୁଝିଲେ । କି ବୁଦ୍ଧି କରିବି ବୋଇଲେ ॥
ପଥ ଅଟଇ ମାସକର । ନ ଗଲେ ମଲା ପ୍ରିୟା ମୋର ॥
କଣ୍ଠ ରହିଲା ଦିନଦିନ । ନ ଗଲେ ସୁବତୀ ରତନ ॥
ନିଶ୍ଚେ ମରିବ ଆତ୍ମଘାତେ । ଏଥିକୁ ସାହା ଜଗନ୍ନାଥେ ॥
ଏମନ୍ତ ବୋଲି ଚଳିଗଲେ । ପ୍ରଭୁଙ୍କ ସମ୍ମୁଖରେ ମିଳିଲେ ॥
ସାଷ୍ଟାଙ୍ଗେ କରି ଦଣ୍ଡବତ । ଉଠି କପାଳେ ଦେଇ ହସ୍ତ ॥
ବୋଇଲା ନମୋ ଚକ୍ରପାଣି । ଚିନ୍ତାର୍ଥୀ ଜନ ଚିନ୍ତାମଣି ॥
ନମସ୍ତେ ବାଞ୍ଛା କଳ୍ପତରୁ । କୃପାସମୁଦ୍ର ମହାମେରୁ ॥
ଭକ୍ତ୍ୟକାମନା କାମଧେନୁ । ଘୋର ବିପତ୍ତି ତମ ଭାନୁ ॥

ମୋର ସଙ୍କଟ ନିବାରଣ । ତୁମ୍ଭନ୍ତୁଁ ନାହିଁ ଅନ୍ୟ ଜନ ॥
କ୍ଷମ କରିବ ଦେବ ସ୍ୱାମୀ । ତୁମ୍ଭେ ତ ପ୍ରଭୁ ଅନ୍ତର୍ଯାମୀ ॥
ବାରେକ ଫେଡ଼ ଅଭିମାନ । ନୋହିଲେ ଗଲାଟି ଜୀବନ ॥
ପ୍ରଭୁ ନୋହିଲେ ସାହାପକ୍ଷ । ସଂସାରେ ନାହିଁ ମୋତେ ରକ୍ଷ
ଭାସିଲା ରଘୁ ଅରକ୍ଷିତ । ବୋଲଣ ଚଳିଲା ତ୍ୱରିତ ॥
ମିଳିଲା ସିଂହଦ୍ୱାରେ ଯାଇ । ଛିଣ୍ଡା କଡଗି ପାରି ଶୋଇ ॥
ନିନ୍ତ୍ରଣ ଶରଣ ପଞ୍ଜର । ହାରିଲା ଦେହ ବୁଦ୍ଧି ତାର ॥
ଘୋର ନିଦ୍ରାରେ ଅଶକତ । ତାହା ଜାଣିଲେ ଜଗନ୍ନାଥ ॥
ଭୃତ୍ୟ ବତ୍ସଳ ଯାର ବାନା । ଲାଗିଲା ସେବକ ବେଦନା ॥
ପ୍ରଭୁ ତା ସହି ନ ପାରିଲେ । ବେତାଳେ ଡାକି ଆଜ୍ଞାଦେଲେ
ବୋଇଲେ ଏହିକ୍ଷଣି ଯିବ । ମୋର ଭକ୍ତକୁ ବହିନେବ ॥
ନିଦ୍ରା ନ ଭାଙ୍ଗୁ ତୋଳିନେବ । ତୁମ୍ଭେ ନେବାର ନ ଜାଣିବ ॥
ଯେ କଳାବତୀ ପାଟଣାର । ରଘୁ ଅରକ୍ଷିତ ବନ୍ଧୁଘର ॥
ଶୀଘ୍ର ଆସିବ ସେହିଠାର । ଯାଅ ରେ ବିଳମ୍ବ ନ କର ॥
ବେତାଳେ ପ୍ରଭୁ ଆଜ୍ଞାପାଇ । ଚଳିଲେ ଅତି ବେଗ ହୋଇ ॥
ରଘୁ ଅରକ୍ଷିତ ପାଶେ ମିଳି । କଡଗି ସଙ୍ଗତରେ ତୋଳି ॥
ମାୟା ପଲଙ୍କେ ଶୁଆଇଲେ । ଶୂନ୍ୟମାର୍ଗରେ ବହିନେଲେ ॥
ପ୍ରବେଶ କଳାବତୀପୁରେ । ଦାସଙ୍କ ଶ୍ୱଶୁର ଦୁଆରେ ॥
ନିଶ୍ଚିନ୍ତେ ଶୁଆଇ ଅଇଲେ । ପ୍ରଭୁଙ୍କ ଛାମୁରେ କହିଲେ ॥
କହି ଚଳିଲେ ନିଜପୁର । ଏମନ୍ତେ ଉଦେ ଦିବାକର ॥
ରଘୁ ଅରକ୍ଷିତ ଦେଲା ଗୃହିଁ । ଦେଖିଲା କ୍ଷେତ୍ରବରେ ନାହିଁ ॥
ବିଚାର କଲା ତାର ଚିତ୍ତ । ଏତ ଅଟଇ ବିପରୀତ ॥
ଥିଲି ମୁଁ ସିଂହଦ୍ୱାରେ ଶୋଇ । କେ ମୋତେ ଗଲା ଏଥେଥୋଇ
ଏହା ମୁଁ ଜାଣିବ କେମନ୍ତେ । କାହାକୁ ପଚାରିବ ଏଥେ ॥
ଏ ପୁଣି ଅଟେ କେଉଁ ଗ୍ରାମ । କାହାର ଅଟେ ଏ ଆଶ୍ରମ ॥

ଏମନ୍ତ ବଚନର ତା ମନେ । ପୁଚ୍ଛିଲା ଗତାଗତ ଜନେ ॥
ଲୋକେ ବୋଇଲେ ତାହା ଶୁଣି । ଶୁଣ ଭିକ୍ଷୁକ ଆମ୍ଭ ବାଣୀ ॥
ଏ ଅଟଇ କଳାବତୀ ପୁର । ଏ କୃଷ୍ଣ ମହାପାତ୍ର ଘର ॥
ଶୁଣି ଭକତ ମନେ ଗୁଣି । ମୋ ଚିନ୍ତା ଜାଣି ଚକ୍ରପାଣି ॥
ପେଷିଲେ ମାୟା କରି ଏଥେ । ଆନର ବଳେ ନୋହେ ଏତେ
ବ୍ରହ୍ମାଣ୍ଡ ଯାର ଖେଳଘର । ଏକଥା କେତେକ ମାତର ॥
ଏମନ୍ତ ବଚନରୁ ତା ମନେ । ଘରୁ ବାହାର ଲୋମାନେ ॥
ଦ୍ୱାରେ ଦେଖିଲେ ଉପଗତ । ହୋଇଛନ୍ତି ରଘୁ ଅରକ୍ଷିତ ॥
ଛିଣ୍ଡା ନେକେଡ଼ା ବେଶ ହୋଇ । ଚିହ୍ନି ଘରକୁ ଗଲେ ଧାଇଁ ॥
କହିଲେ ପିତାଙ୍କ ଗ୍ରାମରେ । ତୁମ୍ଭ ଦୁହିତାପତି ଦ୍ୱାରେ ॥
ବସିଛି କେମନ୍ତ ପ୍ରକାରେ । ଚାଲ ଦେଖିବା ଧାତକାରେ ॥
ତା ଶୁଣି ଜନନୀ ପିଅର । ପୁତ୍ର ଦୁହିତା ଆଦି ତାର ॥
ମନ୍ଦିରୁ ବାହାର ହୋଇଲେ । ବସିଛି ଅନାଇଣ ଦେଲେ ॥
ଦୁହିତା ଦେଖି ମହାସୁଖୀ । ସବୁରି ମୁଖ ଗଲା ସୁଖି ॥
ବୋଇଲେ ଦଇବ କି କଲା । ଆସିତ ମନ୍ଦ କୃତ୍ୟ ହେଲା ॥
ନ କଲେ ଏହାର ଅର୍ଚ୍ଚନା । ପାଇବା ଲୋକେ ନିନ୍ଦା ସିନା ॥
ଏମନ୍ତ ବୋଲି ଡାକି ନେଲେ । ସ୍ନାନ ମାର୍ଜନା କରାଇଲେ ॥
ଦିବ୍ୟବସନ ପିନ୍ଧାଇଲେ । ନାନାଦି ଅଳଙ୍କାର ଦେଲେ ॥
ଭୋଜନ ଆଦି କର୍ମ ଯେତେ । ସକଳ ସାରିଲେ ଭରିତେ ॥
କପଟ ରଖିଣ ହୃଦରେ । ତୋଷିଲେ ଅନେକ ପ୍ରକାରେ
ଏଥିଉତ୍ତାରୁ ତାତ ମାତ । ଦୁହିତା ଗୁଡ଼ି ସାତ ସୁତ ॥
ଏକାନ୍ତେ ବସି ବିଚାରିଲେ । କି ବୁଦ୍ଧି କରିବା ବୋଇଲେ ॥
ଏଥକୁ ଉପାୟ କରିବା । ଭୋଜନବେଳେ ବିଷ ଦେବା ॥
ମଲେ ଏ ରଘୁଅରକ୍ଷିତ । ଦୁହିତା ନୋହିବ ଅନାଥ ॥
ଏମନ୍ତ କହିବାରୁ ତାତ । ସମସ୍ତ କଲେ ସନମତ ॥

ସମ୍ମତ କରି ଚଳିଗଲେ । ଗୋପ୍ୟେ ଗରଳ ଅଣାଇଲେ ॥
ଅନ୍ନ ବ୍ୟଞ୍ଜନ ପିଠା ଛିଣ୍ଣ । ରନ୍ଧନ କଲେ ବିଷ ଭରି ॥
ତାହା ଜାଣିଲା ମହାସତୀ । ହୃଦପଦ୍ମରେ କଲା ସ୍ତୁତି ॥
ଏକେ ଚତୁରୀ ଶିରୋମଣି । ତରକଗ୍ରବେ ତାହା ଜାଣି ॥
ବିଗ୍ରହ କଲା ତାର ମନ । ନଷ୍ଟେ ମୋ ପତିର ଜୀବନ ॥
ଗରଳ ଦେଇଣ ହରିବେ । କି ବୁଦ୍ଧି କରିବି ମୁଁ ଏବେ ॥
ଏମନ୍ତ ବୋଲି ପତ୍ର ଧରି । ଲେଖିଲା ଶ୍ରୀହରି ସୁମରି ॥
ବିଷ ଯେ ଭରିଛନ୍ତି ଏଥେ । ଭୁଞ୍ଜିବ ନାହିଁ କଦାଚିତେ ॥
ଏମନ୍ତ ଲେଖି ଗୋପ୍ୟ କରି । ପିଠା ଗୋଟିକ ମଧ୍ୟେ ଭରି ॥
ଥୋଇଲା ବିଷ ପିଠା ପରେ । ଶୁଣ ହୋ ଏଥୁ ଅନନ୍ତରେ ॥
ରଘୁଅର୍ଷିତଙ୍କୁ ତ୍ୱରିତେ । ଡାକିଲେ ଭୁଞ୍ଜିବା ନିମନ୍ତେ ॥
ଆଦର କରି ଘେନି ଗଲେ । ଗମ୍ଭୀର ମଧ୍ୟେ ବସାଇଲେ ॥
ରଘୁଅର୍ଷିତ ପାଦ ଧୋଇ । ବସିଲେ ଆସନରେ ଯାଇ ॥
ବିଷ ମିଶ୍ରିତ ଦ୍ରବ୍ୟ ଯେତେ । ବାଢ଼ିଲେ ରଘୁର ନିମନ୍ତେ ॥
ଆନନ୍ଦେ ରଘୁଅରକ୍ଷିତ । ଧ୍ୟାନେ ଚିନ୍ତିଲେ ଜଗନ୍ନାଥ ॥
ଜଳ ଗଣ୍ଡୁଷ କରେ ଧରି । ପ୍ରଭୁଙ୍କୁ ନଇବେଦ୍ୟ କରି ॥
ଭକ୍ଷିବ ବୋଲିଣ ଭକତ । ଧଇଲା ବିଷପିଠା ହସ୍ତ ॥
ପ୍ରଭୁ ଆଜ୍ଞାରେ ପିଠାଗୋଟି । ଘଙ୍ଗନ୍ତେ ତଳେ ପଡ଼େ ଛଟି ॥
ଧରିଣ ପଢ଼ିଲା ତ୍ୱରିତେ । ବିଗ୍ରହ କଲା ହୃଦଗତେ ॥
ନ ଜାଣି ଅପରାଧ କଲି । ପ୍ରଭୁଙ୍କୁ ବିଷ ଭୁଞ୍ଜାଇଲି ॥
ବୁଦ୍ଧି ଯେ ନ ଦିଶଇ ମୋତେ । ପ୍ରସାଦ ଛାଡ଼ିବ କେମନ୍ତେ ॥
ଜନମ ହୋଇଲେ ନିଶ୍ଚିତ । ଅବଶ୍ୟ ମରିବାର ସତ୍ୟ ॥
ଯେବେ ପ୍ରସାଦ ଛାଡ଼ିଦେବ । କାଳେ କି ଅମର ହୋଇବ ॥
କେବଳ ପ୍ରଭୁ ଅପରାଧେ । ପଡ଼ିବ ମହାନର୍କ ମଧ୍ୟେ ॥
ଏଥେ ପାଇବ କେଉଁ ଲାଭ । ଭୁଞ୍ଜିବା କଥା ମୋ ଦୁର୍ଲ୍ଲଭ ॥



ରଘୁଅରକ୍ଷିତ ସଙ୍ଗେ ତାଂର ସ୍ତ୍ରୀ ଚାଲିଯାଉଛନ୍ତି । ଶ୍ୱଶୁର ଏବଂ ଶଳାମାନେ ବିଦାୟ ଦେଉଛନ୍ତି ।

ଏମନ୍ତେ ବିଷଦ୍ରବ୍ୟ ଧରି । ଭୁଞ୍ଜିଲା ଗୋବିନ୍ଦ ସୁମରି ॥
ରେଣୁ ପ୍ରମାଣେ ନ ଥୋଇଲା । ପ୍ରସାଦ ବୋଲି ତା ଭୁଞ୍ଜିଲା ॥
ଦେଖୁଦେଖୁ ସେ ମହାବିଷ । ଉଦରେ ହୋଇଲା ପ୍ରବେଶ ॥
ଘୋଟିଲା ବ୍ରହ୍ମଘରେ ଯାଇଁ । ଢଳିଣ ପଡ଼ିଲାକ ମହୀ ॥
ହାରିଲା ଭକତ ଜୀବନ । ଦେଖି ଆନନ୍ଦ ବୃହଜ୍ଜନ ॥
ଆଟେଣ୍ଟି କବାଟ କିଳିଦେଲେ । ଟୁହିକୁ ଗୃହସ୍ଥ ପିତା ବୋଲେ ॥
ରଜନୀ ପ୍ରଭାତରୁ ନିଅ । ନ ପୋଡ଼ ପୋଡଣ ପକାଅ ॥
ଲୋକେ ପୁଚ୍ଛିଲେ କହ ଏତେ । ଜୁଆଇଁ ମଲା ସର୍ପାଘାତେ ॥
ଶୁଣିଣ ସମସ୍ତେ ହରଷ । ଏଥୁ ଅନ୍ତରେ ଶୁଣ ରସ ॥
ସେ ରଘୁଅକ୍ଷିତ ଘରଣୀ । ପତି ନିଧନ କଥା ଶୁଣି ॥
ବିଚାର କଲା ତାର ଚିତ୍ତେ । ଅଗ୍ନିର ସଙ୍ଗ ହେଲି ମୋତେ ॥
ଯାହା ଲେଖିଛି ବେଦବର । ଅନ୍ୟଥା କରୁ କାହା ଗୁର ॥
ଏମନ୍ତ ବୋଲି ସେ ତରୁଣୀ । ଚିନ୍ତିଲା ପ୍ରଭୁ ଚକ୍ରପାଣି ॥
କମ୍ପିଲା ରତ୍ନ ସିଂହାସନ । ଜାଣିଲେ ପ୍ରଭୁ ଭଗବାନ ॥
ଭୃତ୍ୟକୁ ପଡ଼ିଲା କଷଣ । ସେଠାରୁ ଅଇଲେ ବହନ ॥
ପ୍ରବେଶ କଳାବର୍ଣ୍ଣପୁରେ । ଭୃତ୍ୟ ପଡ଼ିଛି ଯେଉଁ ଠାରେ ॥
ତହିଁ ବିଜୟେ ଦେବହରି । ଦେଖିଲେ ଭୃତ୍ୟ ଅଛି ମରି ॥
ତୋଳି ଧଇଲେ ଦେବରାୟେ । ପୁତ୍ରକୁ ଯେସନ୍ତେ ବାପମାୟେ ॥
ଜଗତନାଥ ପଦ୍ମକରେ । ଆଶ୍ୱାସି ସର୍ବାଙ୍ଗଯାକରେ ॥
ବୋଇଲେ ଉଠରେ ନନ୍ଦନ । କିପାଁ ତୁ ନିଦ୍ରେ ଅଚେତନ ॥
ଯାହା ସହାୟ ପୀତବାସ । ତାର ଗରଳ ଗୁର କିସ ॥
ତକ୍ଷଣେ ପାଇଲା ଜୀବନ । ପ୍ରଭୁ ହୋଇଲେ ଅନ୍ତର୍ଦ୍ଧାନ ॥
ଭକତ ଉଠି ବେଗ ହୋଇ । ପାଶେ ଦେଖିଲା କେହି ନାହିଁ ॥
ବିଚାର କଲା ତାର ଚିତ୍ତେ । ପ୍ରଭୁ କରୁଣା କଲେ ମତେ ॥
ଗରଲ ତାପୁଁ ଉଦ୍ଧରଣ । ପ୍ରଭୁ ହୋଇଲେ ଅନ୍ତର୍ଦ୍ଧାନ ॥

ଏମନ୍ତ ବୋଲି ଉଠି ବସି । ସବେ ଶ୍ରୀହରି ନାମ ଘୋଷି ॥
ଏଥିଉତ୍ତାରୁ ସୁନ୍ଦ କେଶ । ଦିବସ ହୋଇଲା ପ୍ରବେଶ ॥
ପିତା ପୁତ୍ରକୁ ଦେଖିଗଲା । କବାଟ ଫେଡ଼ି ଅନାଇଲା ॥
ବସିଛନ୍ତି ରଘୁଅରକ୍ଷିତ । ଶ୍ରୀହରି ପାଦେ ଦେଇ ଚିତ୍ତ ॥
ଭଜୁଛନ୍ତି ରାମ କୃଷ୍ଣ ହରି । ତାଙ୍କୁ ଦେଖିଲେ ଦେଖି କରି ॥
ବୋଇଲେ ଏତ ବିଷ ଖାଇ । କେମନ୍ତେ ଅଛି ପ୍ରାଣ ପାଇ ॥
ଏ ନିଶ୍ଚେ ନୁହଇଟି ସାନ । ଜାଣ ଏ ଦଇବ ସମାନ ॥
ଏମନ୍ତ ବୋଲି ଯେତ୍ଥାମତେ । ମିଳିଲେ ରଘୁର ଅଗ୍ରତେ ॥
କହି ବିନୟ କଥାମାନ । ବୋଇଲେ ବାନ୍ଧବ ହୋ ଶୁଣ ॥
ଆମ୍ଭେ ଅପ୍ରାଧ କଲୁ ଯେତେ । ଚିତ୍ତେ ନ ଧର କଦାଚିତେ ॥
ତା ଶୁଣି ରଘୁଅରକ୍ଷିତ । ବୋଇଲେ ଶୁଣ ହେ ଉଚିତ ॥
ତୁମ୍ଭର କିଛି ନାହିଁ ଦୋଷ । ମୁଁ ବେ କାହାକୁ ଦେଲି ବିଷ ॥
ତେଣୁ ଏ ଜନ୍ମେ କଲି ପାନ । ଅର୍ଜିଲା କଥା ନୋହେ ଆନ ॥
କେବଳ ମୋର ପ୍ରାଣପତି । ଅଛନ୍ତି ଦାରୁବ୍ରହ୍ମ ମୂର୍ତ୍ତି ॥
ତେଣୁ ପାଇଲି ମୁହିଁ ପ୍ରାଣ । କଥାଏ କହୁଅଛି ଶୁଣ ॥
ଦେଖି ମୋ ଦରିଦ୍ର ସ୍ୱଭାବ । ତୁମ୍ଭେ ଦୁହିତା ଆନେ ଦେବ ॥
ସକଳେ କରିଛ ବିଗ୍ଭର । ଆମ୍ଭେ ଯାଉଛୁ ଦେଶାନ୍ତର ॥
କିବା ଧର୍ମକୁ ଥିଲେ ଭୟ । ମୋହର ପତ୍ନୀ ମୋତେ ଦିଅ ॥
ସଙ୍ଗତେ ଘେନି ଯିବି ଚଳି । ସେ ମୋର ଦୁଃଖର ସଙ୍ଗାଳି ॥
ନୋହିଲେ ଯେ ତୁମ୍ଭର ଇଚ୍ଛା । ଗଲିଟି ନାହିଁ ମୋର କଷା ॥
ଏମନ୍ତ ବୋଲି ରାମ ହରି । ମୁକୁନ୍ଦ ମାଧବ ମୁରାରି ॥
ଭଜି ଗୋବିନ୍ଦ ଦାମୋଦର । ମନ୍ଦିରୁ ହୋଇଲେ ବାହାର ॥
ତା ଦେଖି ଗୃହଜନ ଯେତେ । ପଛରେ ଧାଇଁଲେ ସମସ୍ତେ ॥
ବୋଇଲେ ଆଜ ମାତ୍ର ରହ । ପତ୍ନୀକି ତୋର ଘେନିଯାଅ ॥
ତା ଶୁଣି ରଘୁଅରକ୍ଷିତ । ରହିଲା ନାହିଁ କଦାଚିତ ॥

ଦେଖି ଶ୍ୱଶୁର ଚଳା ଗଲେ । ମନ୍ଦିରେ ପ୍ରବେଶ ହୋଇଲେ ॥
ପୁଚ୍ଛିଲେ ଦୁହିତା ଅଗ୍ରତେ । କହ କି ବଗୃହୁଛୁ ଚିତ୍ତେ ॥
କୁମାରୀ ବୋଲେ ଶୁଣ ତାତ । ଯିବି ମୁଁ ସ୍ୱାମୀର ସଙ୍ଗତ ॥
ସେ ଯୋଗୀ ମୁଁ ତାହାର ଥାଳ । ମୋତେ ରଖିଲେ ଅମଙ୍ଗଳ ॥
ଅଧିକ କି କହିବି ତୋତେ । ଦୋଗୃହୀ କରିବୁ କି ମୋତେ
ମୁଁ ନୋହେ ଏମନ୍ତ ତରୁଣୀ । ହତ୍ୟାରେ ହୋଇବୁ କାରଣୀ
ଶୁଣି ଦୁହିତା ସଜ କଲେ । ବସ୍ତ୍ର ଭୂଷଣ ଧନ ଦେଲେ ॥
ସଙ୍ଗତେ ଘେନି ଗଲେ ଚଳି । ରଘୁଅର୍ଷିତ ପାଶେ ମିଳି ॥
ବୋଇଲେ ତୁମ୍ଭ ପତ୍ନୀ ନିଅ । ଆମ୍ଭଙ୍କୁ ଦୟା କରିଥାଅ ॥
ତାତ ଜନନୀ ଥାଇ ଭଳେ । ସଂସାର ଲଜ୍ଜା ଛଡ଼ାଇଲେ ॥
ସମର୍ପି ଦେଲେ କରେ କର । ବୋଇଲେ ପତ୍ନୀ ନିଅ ତୋର ॥
ଆଜ୍ଞା ଏ ଲାଗିଲାଟି ତୋତେ । କହି ଚଳିଲେ ସେଝାମତେ ॥
ଏଥି ଉତ୍ତରୁ ସ୍ୱାମୀ ପାଦେ । ପତ୍ନୀ ପଡ଼ିଲା ଅପ୍ରମାଦେ ॥
ଉଠି କପାଳେ ଦେଲା ହାତ । ବୋଇଲା ଆହେ ପ୍ରାଣନାଥ ॥
କେଣିକି ଯିବା ବେଗେ କର । ଏଥିରେ ବିଳମ୍ବ ନ କର ॥
ତା ଶୁଣି ରଘୁଅରକ୍ଷିତ । ଧଇଲ ନିଜ ପତ୍ନୀ ହାତ ॥
ଚଳିଣ ଗଲେ ସେଝାମତେ । ଶୁଣ ହେ ମ[illegible] ॥
ଭକତ ନିମନ୍ତେ ଶ୍ରୀବକ୍ଷ । ହୁଅନ୍ତି ସେ ଏତେ ସପକ୍ଷ ॥
କେବଳ ନିର୍ମଳ ହୃଦରେ । ଡାକିଲେ ଲକ୍ଷ ଯୋଜନରେ ॥
ପାଶେ ଡାକିଲା ପ୍ରାୟେ ମଣି । ତାକୁ ରଖନ୍ତି ଚକ୍ରପାଣି ॥
କୁଟିଳ ହୃଦ ଯେଉଁ ନର । ସେ ଡାକୁ ରହିଣ ପାଶର ॥
ତାକୁ ବଧିର ଜନମତେ । ଶୁଣନ୍ତି ନାହିଁ କଦାଚିତେ ॥
ଏଣୁ ବିଶ୍ୱାସ ଏକା ମୂଳ । ଶୁଣ ହେ ମନ ମହୀପାଳ ॥
ଏ ଦାର୍ଢ୍ୟ ଭକ୍ତି ରସାମୃତ । ଅଶେଷ ରସର ଉଦିତ ॥
ସୁଧା ପୂରିତ ପଦ ପଦ । ବିପତ୍ତି ବିପତ୍ତିକୁ ଗଦ ॥

କହଇ ବିପ୍ର ରାମଦାସ । ମୋ ପ୍ରଭୁ କମଳାବିଳାସ ॥
ସୁଜନେ ଏହି ରସେ ରସ । ମୋହର କ୍ଷମାକର ଦୋଷ ॥

ଇତି ଶ୍ରୀଦାର୍ଢ୍ୟଭକ୍ତିରସାମୃତେ ମନଚୈତନ୍ୟ ସମ୍ବାଦେ
ରଘୁଅର୍କ୍ଷିତ ବିଷଭକ୍ଷଣେ ନାମ ଅଷ୍ଟମୋଽଧ୍ୟାୟଃ ।

---

# ନବମ ଅଧ୍ୟାୟ

## ରଘୁଅର୍କ୍ଷିତ ସମ୍ବାଦ

### ମନ ଉବାଚ

ଶୁଣି ସାନନ୍ଦ ମନରାୟେ । ଚୈତନ୍ୟ ପାଦେ କରି ଧ୍ୟାୟେ
ବୋଲଇ କୃତ୍ୟକୃତ୍ୟ ହୋଇ । ପବିତ୍ର କଲୁ ମୋତେ ତୁହି ॥
ଶୁଣିଲି ପ୍ରଭୁଙ୍କ ମହିମା । ଆବର ଭକତ ଗାରିମା ॥
ପୁଣି ପଚାରୁ ଅଛୁ ତୋତେ । ମନେ ସଂଶୟ ମୋର ଏତେ ॥
ପତ୍ନୀକି ଘେନିଣ ସଙ୍ଗତ । ଗଲା ଯେ ରଘୁଅରକ୍ଷିତ ॥
କାହିଁ ରହିଲା ସେହୁ ଯାଇ । ଏ କଥା କହିବ ବୁଝାଇ ॥
ଆବର ମହାପାତ୍ର ଘର । କରି ଯେ ଥିଲା ନୂଆ ବର ॥
ସେ କଥା ପୁଣି ହେଲା କିସ । କହ ହେ ଏଥିର ସନ୍ଦେଶ ॥

### ଚୈତନ୍ୟ ଉବାଚ

ଶୁଣ [illegible] ଅତି ତୋଷେ । କହଇ ମନ ରାଜା ପାଶେ ॥
ହେ ମନ ସାବଧାନେ ଶୁଣ । ସେ କୃଷ୍ଣ ମହାପାତ୍ର ଗୁଣ ॥
ଏଣେ ଦୁହିତା ପଠାଇଲା । ତେଣେ ଦୂତକୁ ପେଷିଦେଲା ॥
ସେ ରାଜ୍ୟ ପାବର ଅଗ୍ରତେ । ଯାଇଣ କହିଲେ ଭରତେ ॥
ତୁମ୍ଭ ପୁତ୍ରକୁ ଯେଉଁ କନ୍ୟା । ଦେବାକୁ ଥିଲା ମୋ ବାସନା ॥
ଆସି ତାହାର ନିଜପତି । ଘେନିଣ ଗଲା ମୋ ଦୁହିତି ॥
ଯେତେ ଉପାୟ ଆମ୍ଭେ କଲୁ । କେବେହେଁ ରଖି ନ ପାରିଲୁ ॥
ତୁମ୍ଭର ଗୋଚର ନିମନ୍ତେ । ପେଷିଣ ଦେଇଅଛୁ ଦୂତେ ॥
ତୁମ୍ଭ ଉପାୟ ଥିଲେ କର । ବାଟେ ଅଛନ୍ତି କନ୍ୟାବର ।

ତା ଶୁଣି ପାବ କୋପଭରେ । ସୈନ୍ୟ ସାଜିଲା ସେ ସତ୍ୱରେ ॥
ଧାଇଁଣ ଗଲେ ରାଜ ବାଟେ । ମିଳିଲେ ରଘୁର ନିକଟେ ॥
ବୋଇଲେଆରେକନ୍ୟା ଚୋର । ଜୀବନେ ଆଶ ଥିଲେ ତୋର ॥
ଛାଡ଼ ପଳାଅ ଏ ସୁନ୍ଦରୀ । ନୋହିଲେ ନେବୁ ବାନ୍ଧ କରି ॥
ଶୁଣି ପଛକୁ ଦେଖିଲ ଚାହିଁ । ଅନେକ ସୈନ୍ୟ ଛନ୍ତି ଧାଇଁ ॥
ତା ଦେଖି ପତ୍ନୀ ଆଗେ ଗଲ । ଆପଣେ ପଛରେ ରହିଲ ॥
ପତ୍ନୀ ବୋଇଲ ସ୍ୱାମୀ ଶୁଣ । ଏଥକୁ ହେଲ ମୋ ମରଣ ॥
ତୁମ୍ଭଙ୍କୁ ମାରି ମୋତେ ନେବେ । ଅନେକ ଭର୍ତ୍ସନା କରିବେ ॥
ଏଥିକି କି ବୁଦ୍ଧି କରିବା । କେମନ୍ତେ ଏଥିରୁ ବଞ୍ଚିବା ॥
ତା ଶୁଣି ରଘୁ ଅରକ୍ଷିତ । ବୋଇଲ ଶୁଣରେ ସଙ୍ଗାତ ॥
ମୋ ପ୍ରଭୁ ଦାରୁବ୍ରହ୍ମ ମୂର୍ତ୍ତି । ଏ ତୁଚ୍ଛ କେତେକ ବିପତ୍ତି ॥
ଯେତେତେତେମୋତେଭେଟିକରି । ଯେ ବିପତ୍ତିଂ କଲେ ପାରି ॥
ଏବେ ରଖିବେ ସେହିମତେ । ଦେଖ ସଖି ଭୟ କାହିଁ ଚିତ୍ତେ ॥
ଶରଣପଞ୍ଜର ତା ବାନା । ସର୍ବ ଭୟକୁ ବଜ୍ରସେନାଁ ॥
ବ୍ରହ୍ମା ଇନ୍ଦ୍ରାଦି ଯାର ପାଦେ । ଧ୍ୟାନେ ଚିନ୍ତନ୍ତି ଅପ୍ରମାଦେ ॥
ସେ ପ୍ରଭୁ ଥାଉଁ ଥାଉଁ ମୋର । କାହିଁ ତୁ ଡରୁ ନାରୀବର ॥
ଏମନ୍ତ କହୁ ପ୍ରିୟାପାଶେ । ଆଗେ ମିଳିଲେ ବେନି ଅଶ୍ୱେ ॥
ଶ୍ରୀବଳଦେବ ବ୍ରହ୍ମରାଶି । ବେନି ଅଶ୍ୱରେ ଛନ୍ତି ବସି ॥
କନ୍ଧେ ଧନୁରୀ ଅଛି ପଡ଼ି । କଟିରେ ସମଦାଢ଼ ଭିଡ଼ି ॥
ଢାଲ ପଡ଼ିଛି ପିଠିପାଶେ । ଦ୍ୱିତୀୟଶ୍ୱର ପ୍ରାୟେ ଦିଶେ ॥
ବଳମସିଂହ ପ୍ରାୟେ ହୋଇ । ମିଳିଲେ ଭୃତ୍ୟ ପାଶେ ଯାଇଁ ॥
ବୋଇଲେ ପ୍ରଭୁ ଦାମୋଦର । କେବଣ ଦେଶେ ତୁମ୍ଭ ଘର ॥
କାହୁଁ ଅଇଲ ଯିବ କାହିଁ । ଏକାକୀ ସଙ୍ଗେ କେହି ନାହିଁ ॥
ଆବର ତୁମ୍ଭ ପଛକତ । ଅନେକ ସୈନ୍ୟ ଧାଇଁଛନ୍ତି ॥
କହ ଏ କେବଣ ଚରିତ । ତା ଶୁଣି ରଘୁ ଅରକ୍ଷିତ ॥

କହେ ଅତ୍ୟନ୍ତ ଧୀର ବାଣୀ । ଶୁଣ କ୍ଷତ୍ରିୟ ଚୂଡ଼ାମଣି ॥
ଏ ବଡ଼ ଆଚମ୍ବିତ କଥା । କହି ବସିଲେ ହେବ ପୋଥା ॥
ମୋର ପତ୍ନୀକି ମୁଁ ନଅନ୍ତେ । ମାରିବେ ଆସୁଛନ୍ତି ମୋତେ ॥
ଅନାଥ ପ୍ରାଣୀ ମୁଁ ଅଟଇ । ସଖା ସୋଦର ମୋର ନାହିଁ ॥
କେବଳ ପ୍ରଭୁ ଚକ୍ରପାଣି । ନୀଳାଦ୍ରି ଚନ୍ଦ୍ର ଚୂଡ଼ାମଣି ॥
ତାଙ୍କର ବିନା ଅନ୍ୟ ଜଣେ । ନାହିଁ ମୋ ଶରଣ ରକ୍ଷଣେ ॥
ଶୁଣି ସାନନ୍ଦ ବେନିଭାଇ । ରହିଲେ ଆଗପଛ ହୋଇ ॥
ଦାସ ଦାସୀଙ୍କି ଆଗେ କଲେ । ନିର୍ଭୟେ ଚାଲ ହେ ବୋଇଲେ ॥
ଆଜ୍ଞା ପ୍ରମାଣେ ବେନିଜନ । ଅଭୟ ପଞ୍ଜରେ ପଶିଣ ॥
ଆନନ୍ଦେ କରନ୍ତି ଗମନ । ପଛେ ଯେ ଧାଇଁଛନ୍ତି ସୈନ୍ୟ ॥
ଭୃତ୍ୟଙ୍କୁ ଅନାଇଣ ଦେଲେ । ଗୋବିନ୍ଦ ମାୟା ଭିଆଇଲେ ॥
କୋଟିଏ ସ୍ୱରୂପ ହୋଇଣ । ବେଢ଼ି ଅଛନ୍ତି ନାରାୟଣ ॥
ଦେଖି ପ୍ରାଣକୁ ଭୟ କରି । ସୈନ୍ୟ ଯେ ଗଲେ ଅପସରି ॥
ଭେକେ ଫଣୀକି ଦେଖି ଯେହ୍ନେ । ଭୟେ ପଳାନ୍ତି ଏଣେତେଣେ ॥
କେଶରୀ ଦେଖି ମୃଗ ଗଜ । ଯେହ୍ନେ ହୁଅନ୍ତି ହତବୀର୍ଯ୍ୟ ॥
ଗରୁଡ଼ ଦେଖି ଯେହ୍ନେ ବ୍ୟାଳ । ପଳାଇ ପଶନ୍ତି ଯେ ବିଳ ॥
ତେମନ୍ତ ପ୍ରାଣର ଆରତେ । ପଳାଇ ଗଲେ ଯେଝାମତେ ॥
ଯହୁଁ ସେ ଦଣ୍ଡଭଗ୍ନ ହେଲେ । ଭୃତ୍ୟଙ୍କୁ ଘେନି ପ୍ରଭୁ ଗଲେ ॥
ସେ ରାଜ୍ୟ ସୀମା ପାରି କରି । ଯାଅ ବୋଇଲେ ଦେବହରି ॥
ତା ଦେଖି ରଘୁ ଅରକ୍ଷିତ । ପ୍ରଣାମ କଲା ଅପ୍ରମିତ ॥
ବୋଇଲା ତୁମ୍ଭର କୃପାରୁ । ପ୍ରାଣ ପାଇଲୁ ଶତ୍ରୁଠାରୁ ॥
ନୋହିଲେ ଆମ୍ଭ ଏ ଶରୀର । ଦେଖି ଥାଆନ୍ତା ଯମପୁର ॥
ଏଣୁ ତୁମ୍ଭର ପଦ୍ମପାଦେ । ଶରଣ ଗଲୁ ଅପ୍ରମାଦେ ॥
ଏମନ୍ତ ବୋଲି ଚଳିଗଲେ । ପ୍ରଭୁଙ୍କୁ ଚିହ୍ନି ନ ପାରିଲେ ॥
ଯା ମାୟା ଦେବେ ଅଗୋଚର । କାହିଁ ଚିହ୍ନିବ ନର ଛାର ॥

ଦେଖ ସେ ପ୍ରଭୁ ନାରାୟଣ । ଭୃତ୍ୟଙ୍କୁ ସଙ୍କଟୁ ତାରଣ ॥
ବିଜୟ କଲେ ଆଦିମୂଳ । ପ୍ରବେଶ ହେଲେ ନୀଳାଚଳ ॥
ଏଥିଉତ୍ତାରୁ ବେନପ୍ରାଣୀ । ଚିତ୍ତେ ଚିନ୍ତିଲେ ଚକ୍ରପାଣି ॥
ସବୁ ଆପଦୁ ପାରି ହୋଇ । ଆନନ୍ଦେ ଗଲେ ପଥ ବାହି ॥
କେତେଦେହେଁ ଦିନର ଭିତରେ । ପ୍ରବେଶ ହେଲେ କ୍ଷେତ୍ରବରେ ॥
ପ୍ରଭୁଙ୍କୁ ଦରଶନ କଲେ । ଦକ୍ଷିଣ ପାରୁଶେ ରହିଲେ ॥
ମନ୍ଦିର ଖଣ୍ଡି ଏକ କରି । ତହିଁ ରହିଲେ ବେନପ୍ରାଣୀ ॥
ସକଳ ଚିନ୍ତା ଦୂରେ ତେଜି । ହୃଦେ ପ୍ରଭୁଙ୍କୁ ଭାବେ ଭଜି ॥
ନ ଜାଣେ ଅନ୍ୟକଥାମାନ । ନିରତେ ଗୋବିନ୍ଦ ଗାୟନ ॥
ଦାରୁବ୍ରହ୍ମଙ୍କ ଲୀଳା ଯେତେ । ଭଜୁଣ ଥାଇ ଅନୁବ୍ରତେ ॥
ନିଧୂପ ପଞ୍ଚ ଅବକାଶ । ଜଗିଣ ଥାଇ ପ୍ରଭୁପାଶ ॥
କଳା ଶ୍ରୀମୁଖକୁ ଚାହିଁଣ । ବାହୁନୁ ଥାଇ ତାଙ୍କ ଗୁଣ ॥
ଦେଖିଣ ଶ୍ୱେତ ପଦ୍ମ ଡୋଳା । ଆନନ୍ଦେ ହେଉଥାଇ ଭୋଳା ॥
ଶ୍ରୀପାଦପଦ୍ମ ନିତ୍ୟେ ଭାବ । ବୋଲେ ମୁଁ ପରମୁଣ୍ଡା ଯିବ ॥
ଏମନ୍ତ ବୋଲି ଭାବ ଭୋଳେ । ନେତ୍ରୁଁ ଲୋତକ ଧାରି ଗଲେ ॥
କରେ ବଜାଇ କରତାଳ । ଭଜଇ ଗୋବିନ୍ଦ ଗୋପାଳ ॥
ନାଚଇ କଳା ନାଟ୍ୟଘରେ । ତା ଭଙ୍ଗି କହିଲେ ନ ସରେ ॥
ଜଗମୋହନେ ଗଡ଼ିଯାଇ । ଗରୁଡ଼ ପଛେ ବଶ ହୋଇ ॥
ଜଣାଇ ଦୁଃଖ ସୁଖ ଯେତେ । ଚଳଇ ଭିକ୍ଷାର ନିମନ୍ତେ ॥
କ୍ଷେତ୍ରରେ ବୁଲି ଭିକ୍ଷା କରେ । ଯେ ଅବା ମିଳେ ତା ଭାଗ୍ୟରେ
ଢେମ୍ନା ଚଳଇ ନିଜପୁରେ । ଦିଅଇ ନେଇ ପତ୍ନୀଠାରେ ॥
ପତ୍ନୀ ତା କରଇ ରନ୍ଧନ । ସ୍ୱାମୀ ତା କରଇ ଭୋଜନ ॥
ତା ଅବଶେଷ ଖାଏ ନାରୀ । ତା ବିନା ନ ଭକ୍ଷଇ ବାରି ॥
ଏମନ୍ତେ ବଞ୍ଚଇ ତରୁଣୀ । ପତିକି ଗୁରୁପ୍ରାୟ ମଣି ॥
ପତିକି କରେ ଅତି ଦୟା । ଏକଇ ପ୍ରାଣ ବେନି କାୟା ॥

ଏମନ୍ତେ ବଞ୍ଚୁଥାଇ ଦିନ । ଭଜଣ ଶ୍ରୀମଧୁସୂଦନ ॥
ସାଧୁଜନଙ୍କୁ ଦେଖେ ଯହିଁ । ନିର୍ମଳ ଭକତି କରଇ ॥
ସକଳ ଜୀବେ ଦୟା ତାର । ନିରତେ ପର ଉପକାର ॥
ନ ହରେ ପରନାରୀ ବିତ୍ତ । ନୋହେ କପଟ କୂଟଚିତ୍ତ ॥
ଦ୍ୱାରେ ଦେଖିଲେ ଅଭ୍ୟାଗତେ । ବିପ୍ର ବୈଷ୍ଣବ ଆଦି ଯେତେ ॥
ବାନ୍ଧବ ପ୍ରାୟେ ତାଙ୍କୁ ମଣି । ତୋଷଇ ଦେଇ ଅନ୍ନପାଣି ॥
ଚିନ୍ତା ନ ଥାଇ ତାଙ୍କ ମନ । ପ୍ରଭୁ ପ୍ରେମରେ ସେ ମଗନ ॥
ଏମନ୍ତ ଗଲା ଦିନାକେତେ । ତା କୀର୍ତ୍ତି ଶୁଭିଲା ଜଗତେ ॥
ଲୋକେ ବୋଇଲେ ଧନ୍ୟ ଧନ୍ୟ । ରଘୁ ଅର୍ଚ୍ଚିତର ଜୀବନ ॥
ଦରିଦ୍ର ହେଲେ କଷ୍ଟ ହେବ । ଦୁର୍ଲ୍ଲଭ ଅଟେ ତାର ଭାବ ॥
ଭିକ୍ଷା ସେ ମାଗିଣ ଜୀଇଚ୍ଛି । ଯେ ଯାହା ମାଗିଲେ ଦେଉଚ୍ଛି ॥
ଆବର ପ୍ରଭୁ ନାମ ଯେତେ । ଗାୟନ କରୁଥାଇ ନିତ୍ୟେ ॥
କହେ ବିନୟ ଧୀର ବାଣୀ । ଧନ୍ୟ ଅଟନ୍ତି ବେନିପ୍ରାଣୀ ॥
ଏମନ୍ତ ବୋଲନ୍ତି ସମସ୍ତେ । ପ୍ରଶଂସା କରି ଯେଝାମତେ ॥
ଏମନ୍ତ ସମୟରେ ପୁଣ । ବୈଷ୍ଣବ ସାତ. ପାଞ୍ଚଜଣ ॥
ଅପୂର୍ବ ଅଟନ୍ତି ସେମାନେ । ଆଇଲେ କ୍ଷେତ୍ର ଦରଶନେ ॥
ପ୍ରବେଶ ହେଲେ ନୀଳଗିରି । ପ୍ରଭୁଙ୍କ ଦରଶନ ସାରି ॥
ବୁଲିଲେ ଭୋଜନ ନିମନ୍ତେ । ତହୁଁ ବୋଇଲେ ଜଣକେତେ ॥
ରଘୁଅର୍ଚ୍ଚିତଙ୍କ ଭବନେ । ବିଜୟ କର ସାଧୁମାନେ ॥
ତାହାର ଅଛି ଭକ୍ତିଭାବ । ଗଲେ ଭୋଜନ ନିଶ୍ଚେଁ ଦେବ ॥
ଶୁଣି ଚଳିଲେ ସାଧୁବୃନ୍ଦ । ମନରେ ହୋଇଣ ଆନନ୍ଦ ॥
ଭକତଭାବେ ବିଜେ କଲେ । ତା ନାମ ଧରିଣ ଡାକିଲେ ॥
ଅତିଥି ଡାକ ଶୁଣି କର୍ଣ୍ଣେ । ଅତି ଆନନ୍ଦ ହୋଇ ମନେ ॥
ମନ୍ଦିରୁ ବାହାର ହୋଇଲା । ସାଧୁଙ୍କୁ ଦରଶନକଲା ॥
ବୋଇଲା ଆଜ୍ଞାକର ମୋତେ । କି କାର୍ଯ୍ୟ କରିବି ତୁରିତେ ॥



ଧନୀ ରଘୁଅରକ୍ଷିତ ଘର ଖଟ ଉପରକୁ ଚାହିଁ ଦେଖିଲା, ଭଗବାନ ରଘୁଅରକ୍ଷିତ ସ୍ତ୍ରୀକୁ ସାହା ହୋଇଛନ୍ତି ।

ଶୁଣି କହିଲେ ସାଧୁମାନେ । ଆମ୍ଭଙ୍କୁ ତୋଷ ଅନ୍ନଦାନେ ॥
ଅଇଲୁଁ କାଣ୍ଡି ଶୁଣି ତୋର । ଏଥିରେ ବିଳମ୍ବ ନ କର ॥
ସନ୍ତୋଷ କଲେ ସାଧୁଗଣ । ପାଇବୁ ପରମ କାରଣ ॥
ତା ଶୁଣି ରଘୁଅରକ୍ଷିତ । ବଗୃର କଲା ହୃଦଗତ ॥
କି ବୁଦ୍ଧି କରିବି ଏଥର । ଘରେ ତ କିଛି ନାହିଁ ମୋର ॥
କେବଳ ପ୍ରଭୁ ଚକ୍ରଧର । ସଙ୍କଟ ଫେଡ଼ିବେ ମୋହର ॥
ଏମନ୍ତ ବୋଲି ଅତିଥିଙ୍କୁ । ବସାଇଗଲା ମନ୍ଦିରକୁ ॥
ପତ୍ନୀକି ବୋଲେ ସଖୀ ଶୁଣ । ଅତିଥି ପାଞ୍ଚ ସାତ ଜଣ ॥
ଦ୍ୱାରେ ପ୍ରବେଶ ହେଲେ ଆସି । ଭୋଜନ ମାଗୁଛନ୍ତି ବସି ॥
ଏଥିକୁ କି ବୁଦ୍ଧି କରିବା । କେମନ୍ତେ କରି ଚରିତବା ॥
ଘରେ ତ କିଛି ନାହିଁ ଧନ । କହ ଗୋ ଯୁବତୀ ରତନ ॥
ତା ଶୁଣି ବୋଲଇ ସୁନ୍ଦରୀ । ଶୁଣ ହେ ପ୍ରାଣ ଅଧିକାରୀ ॥
ଦେବା ଦିଆଇବାକୁ ହରି । କରତା ଅଛନ୍ତି ସବୁରି ॥
ଏଥିକୁ ଶୋଚନା ନ କର । ମୋ ଅଙ୍ଗେ ଯେତେ ଅଳଙ୍କାର ॥
ଅଛଇ ବେଗେ ନେଇଯାଅ । ସାଧୁତ ଘରେ ବନ୍ଧାଦିଅ ॥
କିଛିହିଁ ଧନ ନେଇ ଆସ । ସାଧୁ ଚରିତ କରି ତୋଷ ॥
ତାହା ଶୁଣିଣ ନିଜ ପତି । କୋଳରେ ବସାଇ ଯୁବତୀ ॥
ବୋଇଲା ଧନ୍ୟ ଗୃହମୁହିଁ । ମୋର ସୁଗତିଦାତ୍ରୀ ତୁହି ॥
ଏବେ ତୁ ଶୁଣ ମୋ ଉତ୍ତର । ହୃଦୟ ମଧ୍ୟରେ ବଗୃର ॥
ନେଲେ ମୁଁ ଏତେ ଅଳଙ୍କାର । ଲୋକେ ଦେଖିଲେ ଅସୁନ୍ଦର ॥
ବୋଲିବେ ରଘୁ ଅରକ୍ଷିତ । କାହୁଁ ଆଣିଲା ଏତେ ବିତ୍ତ ॥
ଭିକ୍ଷା ମାଗିବା ଲୋକ ଏହି । କାହୁଁ ବା ଆଣିଲା ଚୋରାଇ ॥
ଏମନ୍ତ ବୋଲି ମନେ ମନ । କରିବେ ସିନା ଅନୁମାନ ॥
ଏବେ ତୁ ଅଳଙ୍କାର ନେଇ । ବହନ ଯାଅ ରେ ତରୁଣୀ ॥
ସାଧୁର ଘରେ ବନ୍ଧାଦେଇ । ପଞ୍ଚାଶ ମୁଦ୍ରା ଆଣ ତୁହି ॥

ଆଠଧନକୁ ଲକ୍ଷ୍ୟ କର । ମିଶାଇ ମୂଳ କଳନ୍ତର ॥
ଶୁଝିଣ ଦେବା ଧନ ତାର । ଆଣିବା ଆମ୍ଭ ଅଳଙ୍କାର ॥
ସ୍ୱାମୀ ବଦନୁଁ ଏହା ଶୁଣି । ସେ ପତିବ୍ରତା ଶିରୋମଣି ॥
ଚଳିଣ ଗଲା ଆନନ୍ଦରେ । ପ୍ରବେଶ ସାଧୁତ ମନ୍ଦିରେ ॥
ଅଙ୍ଗ ଭୂଷଣମାନ ଫେଇ । ଥୋଇଲା ଧନୀ ଆଗେ ନେଇ ॥
ବୋଇଲା ଶୁଣ ମହାଜନ । ରଖ ଏ ଅଳଙ୍କାରମାନ ॥
ଶତେ ସୁନାସ୍ତା ଦେଇଥିବ । ଲାଭ ମିଶାଇ ମୂଳ ନେବ ॥
ଅନେକ ହେବ ଉପକାର । ଧର୍ମେ ଲାଗିବ ଧନ ତୋର ॥
ସୁଧା ସମାନେ ଧୀର ବାଣୀ । ଧନୀ ସୁନ୍ଦରୀ ମୁଖୁଁ ଶୁଣି ॥
ବସ୍ତୁର କଲା ତା'ର ଚତ୍ତ୍ରେ । ଏ କେବେନ୍ତେ ଲାଭ ହେବ ମୋତେ
ତାର ସୁନ୍ଦର ରୂପ ଚିନ୍ତି । ବୋଲଇ ଶୁଣରେ ଯୁବତୀ ॥
ବନ୍ଧାରେ ପ୍ରୟୋଜନ ନାହିଁ । ଯାହା କହୁଛି ଶୁଣ ତୁହି ॥
ଯେବେ ତୁ ଦେବୁ ପ୍ରୀତିଦାନ । ଗଣି ଦେଉଛି ନିଅ ଧନ ॥
ତାହା ଶୁଣିଣ ନାରୀମଣି । ବଜ୍ର ପଡ଼ିଲା ପ୍ରାୟ ମଣି ॥
ପୁଣି ସେ ଶାନ୍ତ କରି ମନ । ବୋଲଇ ଶୁଣ ମହାଜନ ॥
ଦଣ୍ଡେକ ମାତ୍ର ହୁଅ ସ୍ଥିର । କହି ଚଳିଲା ନାରୀବର ॥
କାନ୍ତ ଆଗରେ ଏ ଚରିତ । ବୁଝାଇ କହିଲା ସମସ୍ତ ॥
ଏ ଦାନ ଲାଭର କାରଣି । ତୁମ୍ଭେ ମୋହର ପ୍ରାଣମଣି ॥
ଏଥକୁ କି ବସ୍ତୁର କହ । ଶୁଣି ସନ୍ତୋଷ ହେଉ ଦେହ ॥
ତା ଶୁଣି ରଘୁ ଅରକ୍ଷିତ । ବୋଇଲା ଶୁଣ ରେ ସଙ୍ଗାତ ॥
ସାଧୁଜନଙ୍କ ଉପକାରେ । ଲାଗିବ ଆମ୍ଭର ଭାଗ୍ୟରେ ॥
ଯାହା ବୋଇଲା ମହାଜନ । ସମ୍ମତ କରି ଆଣ ଧନ ॥
ତାହା ଶୁଣିଣ ମହାସତୀ । ବୋଇଲା ଶୁଣ ପ୍ରାଣପତି ॥
ତୁମ୍ଭର ଆଜ୍ଞା ପାଇ ମୁହିଁ । ଗଲିଟି ମୋର ଦୋଷ ନାହିଁ ॥
ଏମନ୍ତ କହି ଚଳିଗଲା । ସାଧୁତ ମନ୍ଦିରେ ମିଳିଲା ॥

ବୋଇଲା ଶୁଣ ହେ ସାଧୁତ । ଆମ୍ଭେ ତା କଲୁ ସନମତ ॥
ବିଳମ୍ବ ନ କରଣ ଧନ । ଦିଅ ତୁ ପିବଇଁ ବଦନ ॥
ରଜନୀ ପ୍ରହର କାଳରେ । ତୁମ୍ଭେ ଆସିବ ଆମ୍ଭ ପୁରେ ॥
ତୁମ୍ଭର ଯାହା ଅଭିଳାଷ । ପୂର୍ଣ୍ଣ କରିବ ଧର୍ମାଶିଷ୍ୟ ॥
ଶୁଣି ସାନନ୍ଦ ମହାଜନ । ନଗଦ ଗଣି ଦେଲା ଧନ ॥
ଧରି ସୁନ୍ଦରୀ ଚଳିଗଲା । ସ୍ୱାମୀର ହସ୍ତେ ନେଇ ଦେଲା ॥
ସେ ଧନ ପାଇ ଆନନ୍ଦିତ । ହୋଇଣ ରଘୁ ଅରକ୍ଷିତ ॥
ଚଳିଣ ଗଲା ଅତି ବେଗେ । ମିଳିଲା ସିଂହଦ୍ୱାର ଲଗେ ॥
ଶ୍ରେଷ୍ଠ ସେବକ ଡାକିଆଣି । ବରଗି ଦେଲା ତାକୁ ଗଣି ॥
ବୋଇଲା ଶୁଣ ହେ ସୁଆର । ପ୍ରଭୁ ମଣୋହି ବେଗେ କର ॥
କ୍ଷୀରି ଖେଚୁଡ଼ି ଶାଳି ଅନ୍ନ । ନାନାଦି ପ୍ରକାରେ ବ୍ୟଞ୍ଜନ ॥
ନାଡ଼ି ଯେ ସରପୁଳି ଗଜା । ଅମାଲୁ ଆଦି ଦ୍ରବ୍ୟ ଗଜା ॥
କାନ୍ତି କାକରା ଆଦି ପିଠା । ଯେ ରସପଣା ଦଧି ମିଠା ॥
ପ୍ରଥମ ଧୂପେ ଏତେ ହେବ । ସାଧୁଙ୍କ ନିମନ୍ତେ ଆସିବ ॥
ଏଥିରେ ବିଳମ୍ବ ନ କର । କହି ଚଳିଲେ ନିଜପୁର ॥
ଏମନ୍ତେ କେତେବେଳ ଗଲା । ଶ୍ରୋଷାଇ ତିଆରି ହୋଇଲା ॥
ଭୋଗମଣ୍ଡପେ ଭୋଗ କରି । ପ୍ରଭୁଙ୍କ ନଇବେଦ୍ୟ ସାରି ॥
ମହାପ୍ରସାଦ ବହିନେଲେ । ରଘୁଅର୍କ୍ଷିତ ପାଶେ ଦେଲେ ॥
ଦେଖି ଭକତ ଅତି ତୋଷେ । ମିଳିଲା ଅତିଥିଙ୍କ ପାଶେ ॥
ବୈଷ୍ଣବ ପଙ୍ଗତ ବସାଇ । ପ୍ରସାଦ ପରଷିଲେ ନେଇ ॥
ଯାହାର ଯାହା ପ୍ରୟୋଜନ । ସନ୍ତୋଷେ କଲେ ତା ଭୋଜନ ॥
ଭୋଜନ ସାରି ସାଧୁଗଣ । ଦାସଙ୍କୁ କରଣ କଲ୍ୟାଣ ॥
ଚଳିଣ ଗଲେ ଯେଝାମତେ । ପ୍ରଶଂସା କରଣ ସମସ୍ତେ ॥
ଏଥି ଉତ୍ତରୁ ଦିନ ଶେଷ । ରଘୁଅର୍କ୍ଷିତ ପତ୍ନୀପାଶ ॥
କହଇ ଶୁଣ ପ୍ରାଣସହି । ତୋତେ ଯେ ଧନ ଅଛି ଦେଇ ॥

ସେ ବିବେକକଲେ ଆମ୍ଭ ପୁର । କରିବୁ ଅତ୍ୟନ୍ତ ଆଦର ॥
ତାଙ୍କୁ ମୋଠାରୁ ଶତେଗୁଣେ । ସେବା କରିବୁ ତା ଚରଣେ ॥
ଯେଉଁ ପ୍ରକାରେ ଧନ ତାର । ସେହି ପ୍ରକାରେ ସେବା କର ॥
ଯେବେ ମୋଠାରେ ଅଛି ମନ । ଶୁଝିବୁ ସୁବର୍ଣ୍ଣ ରତନ ॥
ଏମନ୍ତ କହି ଚଳିଗଲା । ଅନ୍ତର ହୋଇଣ ରହିଲା ॥
ପତ୍ନୀ ଅନେକ ତୋଷ ହୋଇ । କନକ ସମ ଯାର ଦେହୀ ॥
ଅଗ୍ରେ ଜାଳିଣ ଦୀପାବଳି । ପଲଙ୍କେ ବସିଅଛି ବାଳୀ ॥
ଏମନ୍ତ ସମୟରେ ତହିଁ । ସେ ଧର୍ମୀ କାମାତୁର ହୋଇ ॥
ମିଳିଲା ଦାସଙ୍କର ଦ୍ୱାରେ । ତୁଣ୍ଡ ଶୁଣାଇ କାଶି ଧୀରେ ॥
ତାହା ଶୁଣିଣ ଶୁଭ୍ରକେଶୀ । ଚିତ୍ତେ ଚିନ୍ତିଲ ବ୍ରହ୍ମରାଶି ॥
ବୋଇଲା ଶୁଣ ଧର୍ମୀଶିଷ୍ୟ । ନିର୍ଭୟ ହୋଇ ବେଗେ ଆସ ॥
ଶୂନ୍ୟମନ୍ଦିରେ ମୁହିଁ ଏକା । କିପାଁ ତୁମ୍ଭର ମନେ ଶଙ୍କା ॥
ଆମ୍ଭ ଭରସା ନରହରି । ଦ୍ରୌପଦୀ ଲଜ୍ଜା ନାଶକାରୀ ॥
ଏକାନ୍ତ ପ୍ରଭୁ ଥାଉଁ ଥାଉଁ । ଚିତ୍ତେ କାହାକୁ ଭୟ ଆଉ ॥
ପଲଙ୍କ ଉପରକୁ ଧୀରେ । ଗୁହାଁନ୍ତେ ପ୍ରେମ ନୟନରେ ॥
ଦେଖିଲା ବସିଛି ସୁନ୍ଦରୀ । ଅତି ଆନନ୍ଦ ମନ କରି ॥
ତାହାର ପଛେ ଦେବ ହରି । ସତୀଙ୍କ କୋଳାଶ୍ରିତ କରି ॥
ଆବୋରି ବସିଣ ଅଛନ୍ତି । ଲକ୍ଷ୍ମୀଙ୍କୁ ଯେମନ ଯଦୁପତି ॥
କିବା ପାର୍ବତୀ କୋଳେ ଧରି । ବିଜୟ ପ୍ରଭୁ ଶୂଳଧାରୀ ॥
କି ଇନ୍ଦ୍ର କୋଳେ ଇନ୍ଦ୍ରାୟଣୀ । ଚନ୍ଦ୍ରର କୋଳେ କି ରୋହିଣୀ ॥
କିବା ଶାରଦା ଯେମନ ପତି । ବିଜୟ କରିଣ ଅଛନ୍ତି ॥
ତେସନ ପ୍ରଭୁ ଭାବଗ୍ରାହୀ । ସତୀଙ୍କ କୋଳରେ ବସାଇ ॥
ବିଜୟ ପ୍ରଭୁ ଆଦିମୂଳ । ଧର୍ମୀ ଦେଖିଣ ହେଲା ଭୋଳ ॥
ଶ୍ରୀହରି ଅଭୟପଞ୍ଜରେ । ଭୃତ୍ୟନାରୀଙ୍କ କୋଳ କଲେ ॥
ତା ଦେଖି ଧର୍ମୀ ପାଞ୍ଚେ ମନ । ଏ ତ କଳନ୍ତା ହୁତାଶନ ॥

ତେଇଁବ କରୁଥିଲି ମନ । କେମନ୍ତେ ଧରିବି ଜୀବନ ॥
ନିଜ ଜନନୀଠାରେ ଯେସନ୍ତେ । ସୁତ ଦୁର୍ବୁଦ୍ଧି ଇଚ୍ଛେ ମନେ ॥
ମୁ ମୂଢ଼ ତେସନ୍ତେ ମନ୍ଦ କଲି । ଫଣୀ ଫଣାରେ ହସ୍ତ ଦେଲି ॥
ଏମନ୍ତେ ବୋଲି ଅବହେଳେ । ପଡ଼ିଲା ସତୀ ପାଦତଳେ ॥
ତାହା ଦେଖିଣ ମହାସତୀ । ହୃଦପଦ୍ମରେ କଲା ଭୀତି ॥
ବୋଇଲା ଏ କି ବିପରୀତ । ସୁରତ ଗୁଣ୍ଡ଼ ଦଣ୍ଡବତ ॥
କରିବା ଉଚିତ ନୁହଇ । ଉଠ ସାଧୁତ ବେଗହୋଇ ॥
ଅବଳା ମୁଖୁଁ ଏହା ଶୁଣି । ଉଠି କପାଳେ ଦେଲି ପାଣି ॥
ବୋଲେ ହେ ସତୀ ନମେ ତୋତେ । ଶରଣଗଲି ରଖ ମୋତେ ॥
ଯେତେ ଅପ୍ରାଧ କଲି ତୋତେ । ଚିତ୍ତେ ନ ଧର କଦାଚିତେ ॥
ପୁତ୍ର ଯେ ମାତା ଗର୍ଭେ ଥାଇ । ସେ ଯେବେ ପାଦ ପ୍ରହାରଇ ॥
ମାତ କି ଘେନେ ତାର ଦୋଷ । ସେରୂପେ ମୁହିଁ ତୋର ଶିଷ୍ୟ ॥
ତୁମ୍ଭେ ଯେ ପୁଣ୍ୟସ୍ତ୍ରୀ ବୋଲି । ମୁଁ ମୂଢ଼ ଜାଣି ତ ନ ଥିଲି ॥
ଏବେ ତୋ କୃପାଦୃଷ୍ଟି ଲାଗି । ମୁଁ ଯେ ହୋଇଲି ମୋକ୍ଷଭାଗୀ ॥
ଏମନ୍ତବୋଲିଣ ଲେଉଟି । ସତୀ ଚରଣ ତଳେ ଲୋଟି ॥
ଏଥିଉତ୍ତାରୁ କଥା ଶୁଣ । ସେ ହରିଭକତ ନିପୁଣ ॥
ଅନ୍ତର ହୋଇ ଯାଇଥିଲା । ତାହାର ମନେ ବିଚାରିଲା ॥
ଧନୀ ଯେ ଥିଲା ଧନ ଦେଇ । ସନ୍ତୋଷ ହେଲା କି ସେ ନାହିଁ ॥
ଏମନ୍ତ ବୋଲିଣ ସତ୍ୱରେ । ପ୍ରବେଶ ହେଲା ନିଜପୁରେ ॥
ଦେଖିଲା ନାରୀ ପାଦତଳେ । ଧନୀ ଶୋଇଛି ଭାବଭୋଳେ ॥
ରଘୁଅରକ୍ଷିତ ବୋଲେ ତହିଁ । ଉଠ ସାଧୁତ ବେଗ ହୋଇ ॥
ଯୁବତୀ ଗୋଟିକ ଚରଣେ । ପଡ଼ିଛ କେବଣ କାରଣେ ॥
ତା ଶୁଣି ଧନୀ ବେଗେ ଉଠି । ରଘୁଅରକ୍ଷିତ ପାଦେ ଲୋଟି ॥
କହିଲି ସକଳ ବୁଝାଇ । ଦେଖ ହେ ପ୍ରଭୁ ଭାବଗ୍ରାହୀ ॥
ତୁମ୍ଭ ପତ୍ନୀକି କୋଳେ ଧରି । ପ୍ରଭୁ ଅଛନ୍ତି ବିଜେକରି ॥

ତା ଶୁଣି ଆଚମ୍ବିତ ହେଲେ । ସମସ୍ତେ ଅନାଇଣ ଦେଲେ ॥
ଦିଶେ ନ ଦିଶେ ଭଗବାନ । ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ ॥
ସେ ତିନିଜଣ ସ୍ତବସ୍ତୋଳେ । ଏକ ଆରେକ ଧରି କୋଳେ ॥
ପ୍ରଭୁ ମହିମା କହି ଭଲେ । ଆନନ୍ଦସାଗରେ ଭାସିଲେ ॥
ଏଥିଉତ୍ତାରୁ ସେ ସାଧୁତ । ବିନୟେ କହିଲା ବହୁତ ॥
ପୁଣି ଅନେକ ଧନ ଦେଲା । ମେଲାଣି ହୋଇଣ ସେ ଗଲା ॥
ସେ ପତି ପତ୍ନୀ ବେନିଜଣ । ଚିନ୍ତିଲେ ଶ୍ରୀହରି ଚରଣ ॥
ଆନନ୍ଦେ ବଞ୍ଚାଇଲେ ଦିନ । କାଳେ ଲଭିଲେ ମୁକ୍ତିସ୍ଥାନ ॥
କହଇ ବିପ୍ର ରାମଦାସ । ମୋ ପ୍ରଭୁ କମଳାବିଳାସ ॥
ସେ ଦାରୁବ୍ରହ୍ମଙ୍କ ଚରଣେ । ମୋ ଚିତ୍ତ ରହୁ ଅନୁକ୍ଷଣେ ॥
ଏ ଦାର୍ଢ୍ୟଭକ୍ତି ରସାମୃତ । ଯୁଜନେ ପିଅ ଶ୍ରୁତିପଥ ॥
ମୁକତି ହେବ ଦିନୁ ଦିନ । ନ ହେବ ଯମ ଦରଶନ ॥
ସୁଖେ ପରମପଦ ପାଇ । ବସିବ ଦେବଲୋକେ ଯାଇ ॥

ଇତି ଶ୍ରୀଦାର୍ଢ୍ୟଭକ୍ତିରସାମୃତେ ମନଚୈତନ୍ୟ ସମ୍ବାଦେ
ରଘୁଅରକ୍ଷିତ ମୋକ୍ଷଣେ ନାମ ନବମୋଽଧ୍ୟାୟଃ ।

---

## ଦଶମ ଅଧ୍ୟାୟ

ନୀଳାମ୍ବର ଦାସ ସମ୍ବାଦ

ଚୈତନ୍ୟ ଉବାଚ

ପୁଣି ଚୈତନ୍ୟ ମନତୋଷେ । କହଇ ମନରାଜା ପାଶେ ॥
ହେ ମନ ସାବଧାନେ ଶୁଣ । କହିବା ଭକତ ଲକ୍ଷଣ ॥
ଉତ୍ତରଖଣ୍ଡେ ତାର ଘର । ବ୍ରାହ୍ମଣ ନାମ ନୀଳାମ୍ବର ॥
କୁଟୁମ୍ବ ପୋଷଣ ନିମନ୍ତେ । ଜୀବିକା କରେ ନାନାମତେ ॥
ଗୃହୀ ଗୃହରେ ରହିଥାଇ । ଦୁଃଖକୁ ଶୋଚନା ନ ଥାଇ ॥

## ନୀଳାମ୍ବର ଦାସ

ପୃଷ୍ଠା ୬୨-୭୭



ନୀଳାମ୍ବର ଦାସ ଭୟ ପାଇ ଭଗବାନଙ୍କୁ ଡାକିବାରୁ ଭଗବାନ କ୍ଷତ୍ରିୟ ରୂପରେ ଦେଖାଦେଲେ ।

ବିଷମ୍ବା କାଳି ଏ ସଂସାର । ସକଳ ଜୀବେ ଦୟା ତାର ।
ଶ୍ରୀହରି ରସାମୃତସାର । ଶ୍ରଦ୍ଧ ପିଅଇ ନିତ୍ୟେ ସାର ॥
ସକଳ ଶାସ୍ତ୍ରେ ମହାଜ୍ଞାତା । ଜାଣଇ ପାପ ପୁଣ୍ୟ କଥା ॥
ଜିତଇନ୍ଦ୍ରିୟ ଧୀରବୁଦ୍ଧି । ନିର୍ଦ୍ଦୋଷ ଶାନ୍ତ ଆତ୍ମାଶୁଦ୍ଧି ।
ନିର୍ଲୋଭି ନିର୍ମୋହ ନିର୍ଭୟ । ପବିତ୍ର ସଦାନନ୍ଦମୟ ॥
କେବଳ ଗୋବିନ୍ଦ ଭଜନ । କରି ବଞ୍ଚଇ ଗୃହ ଦିନ ॥
ଏମନ୍ତେ କେତେଦିନ ଗଲା । ଦିନେ ସେ ମନେ ବିଚାରିଲା ॥
ଯେତେ ଏ ଦାରା ପୁତ୍ର ଧନ । ଏସବୁ ମାୟାର ବନ୍ଧନ ।
ଏହାଙ୍କ ସଙ୍ଗେ ସଙ୍ଗ ହୋଇ । ବୃଥାର୍ଥେ ଗଲା ମୋର ଦେହୀ ॥
ଯେ ପ୍ରଭୁ ଜଗତ ଈଶ୍ୱର । କମଳା ଦେବୀଙ୍କର ବର ॥
ଅଶେଷ ଜୀବର କରତା । ଭକତ ମୁକତିର ଦାତା ॥
ସେ ପ୍ରଭୁ ବିଜେ ନୀଳଗିରି । କମ୍ବୁ ରଥାଙ୍ଗ କରେ ଧରି ॥
ପ୍ରବେଶ ହେଲେ ତାଙ୍କ ପାଶେ । ଅଶେଷ ଜନ୍ମ ପାପ ନାଶେ ॥
ସେ ଦାରୁବ୍ରହ୍ମ ଦରଶନ । ନ କଲି ଧିକ ମୋ ଜୀବନ ॥
ମିଥ୍ୟା ସଂସାର ଦାରା ଧନ । ବୈରାଗ୍ୟ ଉପୁଜିଲା ମନ ॥
ସଜ ହୋଇଲା ସେ ତୁରିତେ । କ୍ଷେତ୍ରକୁ ଯିବାର ନିମନ୍ତେ ॥
ପଥକୁ ଧଇଲା ସଙ୍ଖାଳି । କନ୍ଧରେ ପକାଇ ଯାଉଁଳି ॥
ଚିତ୍ତେ ଚିନ୍ତଇ ଭବଗ୍ରାହୀ । ଆନନ୍ଦେ ଗଲା ପଥବାହି ॥
ମନ ନିବେଶି ନୀଳାଚଳେ । ଧୀରେ ଗମଇ ଭବଭୋଳେ ॥
ମାତା ଅନ୍ତରେ ପୁତ୍ର ଯେସନ୍ତେ । ମାତା ଲୋଡ଼ଇ ତାର ମନେ ॥
ସେହି ପ୍ରକାରେ ତାର ମନ । ଚିନ୍ତିତ ସଦା ଭଗବାନ ॥
ପ୍ରଭୁଙ୍କ ଗୁଣ ଗୁଣି ଚିତ୍ତେ । ଚଳିଣ ଯାଏ ରାଜପଥେ ॥
କେତେହେଁ ଦିନର ଭିତରେ । ମିଳିଲା ଯାଇ ଗଙ୍ଗା ତୀରେ ॥
ଘୋର ବନସ୍ତ ପାଞ୍ଚକୋଶ । ତା ମଧ୍ୟେ ହୋଇଲା ପ୍ରବେଶ ।
ଏକା ଗମଇ ନାହିଁ ଭୀତ । ଚିନ୍ତଇ ଦାରୁବ୍ରହ୍ମ ମୂର୍ତ୍ତି ।

ସେ ବନ ଅନ୍ତେ ଗଙ୍ଗାତଟେ । ମିଳିଲି ଅତି ମନହୃଷ୍ଟେ ॥
ଦେଖିଲି ପୂରିଅଛି ଜଳ । ଦିଶଇ ନାହିଁ ଥଳକୂଳ ॥
ଏକେ ତ ବରଷା ସମୟ । ଦେଖି ହୃଦରେ କଲି ଭୟ ॥
କେମନ୍ତେ ଗଙ୍ଗା ପାରି ହେବ । ତରୀଇ ବିନା କି ତରିବ ॥
ଜନ ଶବଦ ପଥେ ନାହିଁ । କାହାକୁ ପଚାରିବ ମୁହିଁ ॥
ନାବ ଅଛଇ କେଉଁପାଶେ । ବୋଲି ଚାହିଁଲି ଦଶଦିଶେ ॥
ଏକ ତରୀଇ ଖଣ୍ଡିଦୂରେ । ନାବ ପକାଇ ମୀନ ମାରେ ॥
ଦେଖି ଉଷତ ମୀଳାମ୍ବର । ଡାକ ଛାଡ଼ିଲି ଉଚ୍ଚସ୍ୱର ॥
ତରୀଇ ଭାଇ ନାବ ଆଣ । ଏ ଜନ୍ତୁ କର ପରିତ୍ରାଣ ॥
ବେଳ ଯେ ହେଉଛି ଉଛୁର । ଘୋର ଗହନ ନଦୀତୀର ॥
ଏଠାରେ ଘର ଗ୍ରାମ ନାହିଁ । ନଦୀ ତରିଲେ ଯିବ ମୁହିଁ ॥
ଦେଖ ମୋ ସାହା କେହୁ ନାହିଁ । ଅନାଥ ହୋଇଣ ଅଛଇ ॥
ମୋତେ ତୁ କର ଏଥୁଁ ପାର । ଅନେକ ହେବ ଉପକାର ॥
ତା ଶୁଣି ତରୀଇ ହରଷ । ନାବ ବାହିଲି ତାର ପାଶ ॥
ଚୋରିଦିଗକୁ ଦେଲି ଚାହିଁ । ଜନ ଗହଳି କିଛି ନାହିଁ ॥
ବିପ୍ରର କଲା ତାର ଛନ୍ଦେ । ଦଇବ ଭେଟାଇଲା ମୋତେ ॥
ଏହି ପଥିକର ଯାଉଁଳି । ମୋର ଯେ ହୋଇବ ସଙ୍ଗାଳି ॥
ଧନ ରତନ ଥିବ ଯେତେ । ଖାଇ ବଞ୍ଚିବ ଦିନା କେତେ ॥
ବିଳମ୍ବ ନ କରଣ ଏବେ । ଏହାକୁ ବସାଇବ ନାବେ ॥
ବିପଥେ ନାବ ବାହିନେବ । ଅଥଳଜଳେ ପେଲିଦେବ ॥
ଏମନ୍ତ ବିଚାରି ହୃଦର । ବୋଇଲା ଶୁଣ ବିପ୍ରବର ॥
ଏ ଜନ୍ତୁ ପାରିକଲେ ତୋତେ । କହ ତୁ କିସ ଦେବୁ ମୋତେ ॥
ତା ଶୁଣି ବୋଲଇ ଭକତ । ଯେ ଦୁଃଖ ମୂଲ ତୋ ଉଚିତ ॥
ଦେଇଣ ଯିବ ମୁହିଁ ତୋତେ । ବେଗେଣ ପାରିକର ମୋତେ ॥
ଶୁଣି ତରୀଇ ଛନ୍ଦାଭାବେ । ବିପ୍ରକୁ ବସାଇଲା ନାବେ ॥

ତେଜିଣ ଆତଯାତ କୂଳ । ନାବ ବାନ୍ଧିଲ ଘୋରଜଳ ॥
ଯେ ଦଗେ ଥଳକୂଳ ନାହିଁ । ସେହି ଦଗକୁ ନେଲ ବାନ୍ଧି ॥
ଦେଖିଣ ଶ୍ରୀହରି ଭକତ । ବୋଇଲ ଏ କି ବିପରୀତ ॥
କୂଳକୁ ତେଜି ନାବ ଏଣେ । ବାନ୍ଧୁ ତୁ କେବଣ କାରଣେ ॥
ନିଶ୍ଚେ ତୁ ମୋର ନାଶ ଅର୍ଥେ । ବିଚାର କରୁଅଛୁ ଚିତ୍ତେ ॥
ଧର୍ମ ଲଙ୍ଘିବୁ କି ରେ ତୁହି । ତା ଶୁଣି ଧୀବର ବୋଲଇ ॥
ହେ ବିପ୍ର କି ପଚାରୁ ମୋତେ । ତୋର ମରଣ ମୋର ହସ୍ତେ ॥
ଦଇବ ନିର୍ବନ୍ଧ କରିଥିଲ । ତେଣୁ ଏକାନ୍ତେ ଭେଟାଇଲ ॥
ତାହା ଶୁଣିଣ ସେ ଭକତ । ହୋଇଲ ଅତି ଭୟଗ୍ରସ୍ତ ॥
ଆରତେ ଚିନ୍ତେ ଚିନ୍ତାମଣି । ରଖ ରଥାଙ୍ଗ କମ୍ବୁପାଣି ॥
ରଖ ହେ କମଳାବଲ୍ଲଭ । ରଖ ହେ ନୀଳାଦ୍ରି ସୁଲଭ ॥
ବାରଣ ଦୁଃଖ ନିବାରଣ । ବାରେକ ରଖିବା ଶରଣ ॥
ପ୍ରଭୁ ନୋହିଲେ ସାହାପକ୍ଷ । ଏ ଦାସ ମଲଟି ପ୍ରତ୍ୟକ୍ଷ ॥
ବିଳମ୍ବେ ନାହିଁ ଆଉ କାର୍ଯ୍ୟ । ସତ୍ୱରେ ଆସି ଦେବରାଜ ॥
ଦେଇ କରୁଣା ନାବ ତୋଳ । ବିପତ୍ତି ସମୁଦ୍ରୁଁ ଉଦ୍ଧର ॥
ତୁମ୍ଭର ଶ୍ରୀମୁଖ ଦର୍ଶନ । ତହିଁରୁ ଯାଉ ମୋ ଜୀବନ ॥
ସକଳ ଜାଣ ମହାବାହୁ । ମୁଁ ତୁମ୍ଭର କି କହିବ ଆଉ ॥
ତୁମ୍ଭେ ତ ସର୍ବ ଅନ୍ତର୍ଯ୍ୟାମୀ । ରଖ ନ ରଖ ଦେବସ୍ୱାମୀ ॥
ମୋର ଆରତ ନିବାରଣେ । ବ୍ରହ୍ମାଣ୍ଡେ ନାହିଁ ଅନ୍ୟ ଜଣେ ॥
ଏମନ୍ତ ବୋଲି ସ୍ତୁତି ଭଣି । ଧ୍ୟାନେ ଚିନ୍ତିଲ ଚକ୍ରପାଣି ॥
ତାହା ଜାଣିଲେ ଭଗବାନ । ତେଜିଲେ ରତ୍ନ ସିଂହାସନ ॥
ଭୃତ୍ୟ ରକ୍ଷଣେ ଆଦିମୂଳ । ବିଜୟ କଲେ ଗଙ୍ଗାଜଳ ॥
ମାୟାରେ କ୍ଷତ୍ରିରୂପ ଧରି । ଶବ୍ର ଚୌତନା ଶିରେ ଭରି ॥
ଚମ୍ପକ କେତକୀ ପାଖୁଡ଼ା । ମଉଳି ପଡ଼ିଅଛି ବେଢ଼ା ॥
କର୍ଣ୍ଣେ କୁଣ୍ଡଳ ଝଲକିତ । କି ଅବା ଅରୁଣ ଉଦିତ ॥

କସ୍ତୁରୀ ଚିତା ଭାଲପଟେ । ସୁରତ୍ନମାଳ କଣ୍ଠତଟେ ॥
ହୃଦରେ ପଦକ ବିରାଜେ । ପୀତବସନ କଟିମାଝେ ॥
ବାହେ ବାହୁଟି ବୀରନେତ । କାଣ୍ଡ କୋଦଣ୍ଡ ଧରି ହସ୍ତ ॥
ନବପଲ୍ଲବ ଡାଳେ ଡାଳେ । ଖଞ୍ଜି ଅନନ୍ତ ଭୁଜମୂଳେ ॥
ଅତି ସୁନ୍ଦର ରତ୍ନ ଜଡ଼ି । କଳା ଶ୍ରୀମୁଖଯାକ ପଡ଼ି ॥
ହେମକଙ୍କଣ ବେନି ପାଣି । ଝଳି ବିଗ୍ରହେ ନାନାମଣି ॥
ନୂତନ ନୀରଦାଙ୍ଗ ସାଜେ । ଚନ୍ଦ୍ରହ୍ନିଁ ଶ୍ରୀମୁଖ ବିରାଜେ ॥
ଷୋଡ଼ଶ ବର୍ଷ ନବଯୁବା । କୋଟିଏ ଚନ୍ଦ୍ର ଜିଣି ପ୍ରଭା ॥
ଝଟକ ବିଦ୍ୟୁତ୍ପ୍ରାୟେ ଦିଶି । ଗଗନୁଁ ପଡ଼ିଲେ କି ଖସି ॥
ଧାଇଁ ଅଛନ୍ତି ବେଗକରି । ଯେସନେ ବିଷମ କେଶରୀ ॥
କାର୍ମୁକ ଅଛନ୍ତି ଟଙ୍କାରି । ଡାକିଲେ ରେ ରେ କାର କରି
ତରାଇ ନାବ ଘେନିଆସ । ଜୀବନେ ଯେବେ ଅଛି ଆଶ ॥
ଶୁଣି ଶ୍ରୀହରି ସିଂହରଡ଼ି । ତରିଇ ମୁଣ୍ଡେ ବଜ୍ର ପଡ଼ି ॥
ପଞ୍ଚବଟୀକି ଦେଲ ଗୁହାଁ । ଧୀବର ମନେ ବିଚାରଇ ॥
ଏ ବିପ୍ର ବଡ଼ ଭାଗ୍ୟବନ୍ତ । ତେଣୁଟି ରଖିଲେ ଅନନ୍ତ ॥
କ୍ରୋଧରେ ଆସୁଛନ୍ତି ଧାଇଁ । ବିପ୍ରକୁ ନେବେ ମୁକୁଳାଇ ॥
ମୁଁ ଏବେ କି ବୁଦ୍ଧି କରିବି । ବିପ୍ର କହିଲେ ନାଶିଯିବି ॥
ଏହା ବିଚାରି ନାବ ପେରି । ବାହିଲା ଧୀରି ଧୀରି କରି ॥
ନାବ ବାହିବା ହେଲା ଦେଖି । ତତକ୍ଷଣେ ପ୍ରଭୁ ପଦ୍ମଆଖି ॥
ଧଇଲେ ମନ ଭେଦୀ ଶର । ବିନ୍ଧିଲେ ବ୍ରହ୍ମାଣ୍ଡଠାକୁର ॥
ଶବଦ କରଣ ପ୍ରଚଣ୍ଡ । ନାଦେ ବାଜିଲା ଯାଇ କାଣ୍ଡ ॥
ଲାଗି ରହିଲା ମୂନ ଗଳି । ଯେସନେ ଝଟକ ବିଜୁଳି ॥
ଦେଖି ତରାଇ ଛନ ଛନ । ନାବ ବାହିଲା ଘନ ଘନ ॥
ପ୍ରବେଶ ପ୍ରଭୁ ପାଶେ ଯାଇ । ନାବରୁ ପଡ଼ିଲା ଓହ୍ଲାଇ ॥
ବିପ୍ର ତରାଇ ବେନିଜନ । ଭେଟିଲେ ଗୋବିନ୍ଦ ଚରଣ ॥

ଦେଖି ଶ୍ରୀହରି କୋପଭରେ । ଗର୍ଜିଲେ ଢଗରି ଉପରେ ॥
ରେ ରେ ଧୀବର ତୁହି ମୂଢ଼ । ଆଜୁଁ ଏ ଖଣ୍ଡପଣ ଛାଡ଼ ॥
ଆମ୍ଭେ ଏ ବନେ ଜଗିଥାଉଁ । ନ କହ କମା ନାବ ବାନ୍ଧୁ ॥
ଏକାକୀ ଲୋକେ ପାରିକରୁ । ରାଜାର ଗଣ୍ଡା ନାଶକରୁ ॥
ଏବେ ଏପରି ବୁଦ୍ଧି କଲେ । ନାଶ ଯିବୁଟି ଜାଣ ଭଲେ ॥
ଏମନ୍ତ କହି କୋପମୂର୍ତ୍ତି । କାଞ୍ଚିତେ କଲେ କୋପ ଶାନ୍ତି ॥
ଆଳାପ ହସି ନାରାୟଣ । ବୋଇଲେ ଆହେ ବିପ୍ର ଶୁଣ ॥
ଏ ବନ ଜଗିବା ନିମନ୍ତେ । ଶାଢ଼ୀ ଦେଇଛି ରାଜା ମୋତେ ॥
ଯେ ଅବା ଖଣ୍ଡପଣ କରେ । ପଥୁକୀ ଜନ ଧନ ହରେ ॥
କି ଅବା ଧନ ବନ୍ତମାନ । ଛଡ଼ାଇ କରଇ ନିଧନ ॥
ଏହାକୁ ଦେଖିବା ନିମନ୍ତେ । ଠଣା ମୁଁ ଜଗିଥାଇ ଏଥେଁ ॥
ଏ କାଣ୍ଡେ ତାଙ୍କ ପ୍ରାଣ ହରି । ପେଷଇ ଯମରାଜା ପୁରୀ ॥
ତୁମ୍ଭେ ଅଇଲ ସେହିପଥେ । ଥରେ ତ ନ କହିଲ ମୋତେ ॥
ତା ଶୁଣି ବୋଲଇ ବ୍ରାହ୍ମଣ । ମୋହର ନ ଜାଣିବାପଣ ॥
ଏଥେ ତେତା ଠଣା ଅଛୁ ବୋଲି । ଏହା ମୁ ଜାଣି ତ ନ ଥିଲି ॥
ତୁମ୍ଭଙ୍କୁ ନ ଦେଖିଲି ଯେଣୁ । ନ କହି ଅଇଲି ମୁଁ ତେଣୁ ॥
ଏମନ୍ତ ବୋଲେ ବିପ୍ର ତହିଁ । ଚହ୍ନିଲା ନାହିଁ ଭବଗ୍ରାହୀ ॥
ମା ମାୟା ଦେବେ ଅଗୋଚର । କାହୁଁ ଜାଣିବ ନର ଛାର ॥
ଯୋଗୀର ଧ୍ୟାନକୁ ଯେ ଦୂର । ମୁନି ମାନଙ୍କୁ ଅଗୋଚର ॥
ଏ ତ ମନୁଷ୍ୟ ହୀନ ବୁଦ୍ଧି । କାହୁଁ ଚହ୍ନିବ ଦୟାନିଧି ॥
ମନୁଷ୍ୟ ପ୍ରାୟେ ତାଙ୍କୁ ମଣି । ବୋଇଲା ଶୁଣ ବାରମଣି ॥
ମୋତେ କରୁଣା ବେଗେ କର । ମୁଁ ଏବେ ଯିବ କ୍ଷେତ୍ରବର ॥
ମୋ ପ୍ରାଣନାଥ ଚକ୍ରଧର । ତାଙ୍କ ଦର୍ଶନେ ଇଚ୍ଛା ମୋର ॥
ଏବେ ମୁଁ ଏହି ଗଙ୍ଗା ନଦୀ । ତରିବ କେହ୍ନେ କହ ବୁଦ୍ଧି ॥
ତା ଶୁଣି ପ୍ରଭୁ ନାରାୟଣ । ବୋଲନ୍ତି ଢଗରିରେ ଶୁଣ ॥

ବିପ୍ରଙ୍କୁ ନାବରେ ବସାଇ । ଏହି ସଳଖେ ନାଅ ବାହି ॥
ମୋ ଦେଖୁଁ ଦେଖୁଁ ପାରକର । ଜୀବନେ ଆଶା ଥିଲେ ତୋର ॥
ଶୁଣି ତରିଇ କମ୍ପମାନ । ମୁଖରୁ ନ ସ୍ଫୁରେ ବଚନ ॥
ଅନେକ ଦଣ୍ଡବତ କଲା । ବିପ୍ରଙ୍କୁ ନାବେ ବସାଇଲା ॥
ଶୁଣ ସୁଜନେ ହେତୁ ଦେଇ । ସାଧୁଙ୍କୁ କଣ୍ଠାଳ ତରିଇ ॥
ଦେଖିଲା ପ୍ରଭୁ ଆଦିମୂଳ । ସେବାରେ ହୁଏ କେତେ ଫଳ ॥
ବିପ୍ରହିଁ ନାବରେ ବସିଲା । ଧୀବର କୂଟ ନ କହିଲା ॥
ଯେଣୁ ସେ ଅଟେ ସାଧୁଚେତା । ନ ଚିନ୍ତେ ପର ନାଶ କଥା ॥
ଆନନ୍ଦେ ହରିନାମ ଗାଇ । ତରିଇ ନାବ ନେଲା ବାହି ॥
ଦାରୁ ବ୍ରହ୍ମଙ୍କୁ ଚିନ୍ତାକରି । ମୁଖେ ତରିଲେ ଗଙ୍ଗାବାରି ॥
ନାବରୁ ଉଠି ବିପ୍ର ଗଲେ । ଶ୍ରୀହରି ଅନ୍ତର୍ଦ୍ଧାନ ହେଲେ ॥
ତରିଇ ଗଲା ନିଜପୁର । ଏଥି ଉତ୍ତାରୁ ବିପ୍ରବର ॥
କେତେହେଁ ଦିନ ପଥ ବାହି । ମିଳିଲେ କ୍ଷେତ୍ରବରେ ଯାଇଁ ॥
ଏମନ୍ତ ସମୟରେ ପୁଣ ସେ ପଞ୍ଚ କୋଶର ମଧେଣ ॥
ଯାତ୍ରା ହୋଇଛି ନୀଳାଚଳେ । ଶ୍ରୀ ନନ୍ଦୀଘୋଷ ରଥପରେ ॥
ବିଜୟ କରି ଦେବହରି । ଶ୍ରୀଭୁଜେ ଶଙ୍ଖ ଚକ୍ର ଧରି ॥
ତାଳଧ୍ୱଜରେ ଦେବରାଜ । ରୋହିଣୀ ଦେବୀଙ୍କ ଆତ୍ମଜ ॥
ବିଜେ ଲଙ୍ଗଳ ହଳଧର । ପ୍ରଳମ୍ବା ଗଜର କେଶରୀ ॥
ବିଜୟା ରଥେ ଦେବୀ ବିଜେ । କି ହେମ ପ୍ରତିମା ବିରାଜେ ॥
ଦଇତାପତିମାନେ ରଥେ । ଧରିଣ ଯୋଡ଼ବେତ ହସ୍ତେ ॥
ଡାକନ୍ତି ମଣିମା ମଣିମା । ଭୃତ୍ୟଙ୍କ ଗୁହାରି ଶୁଣିମା ॥
ସେବକ ଘଣ୍ଟାନାଦ କରି । ଶବଦେ କମ୍ପେ ବସୁନ୍ଧରୀ ॥
ବଜାଇ ଶ୍ରୀବୀର କାହାଳି । କମ୍ବୁ ନିବଦ ହୁଳହୁଳି ॥
ତୁରୀ ବଇଁଶୀ ବାଦ୍ୟ ଯେତେ । ଝମକ ନିଶାଣ ସହିତେ ॥
ସେବକ ବୃନ୍ଦ ହୋଇ ମେଳ । ନାଚନ୍ତି ଦେଇ କରତାଳ ॥

ମୃଦଙ୍ଗ ମର୍ଦ୍ଦଳ କେ ଧରି । ବଜାଇ ନୃତ୍ୟ ଗୀତ କରି ॥
କେ ପ୍ରଭୁମାନଙ୍କୁ ଅନାଇ । ଭାବରେ ଗଡ଼ି ଯାଉଥାଇ ॥
କେ ବା କପାଳେ ଦେଇ କର । ଡାକଇ ଜୟ ଜୟକାର ॥
ସବୁରି ମୁଖେ ନାମଧ୍ୱନି । କରନ୍ତେ କମ୍ପଇ ମେଦିନୀ ॥
କଳା ପିଠିଆ ଅପ୍ରମିତ । ରଥ ଦଉଡ଼ି ଧରି ହସ୍ତ ॥
ଅତି ଆନନ୍ଦେ ଓଟାରନ୍ତି । ରଥ କରଇ ଦିବ୍ୟ ଗତି ॥
ସକଳ ଶବଦରୁ ବଳି । ଶ୍ରୀନନ୍ଦିଘୋଷ ରଥ ଚଳି ॥
କୋଟି ବ୍ରହ୍ମାଣ୍ଡ ଶୁଭେ ପୂରି । ପ୍ରଭୁ ସମ୍ମୁଖେ ବିଜେ କରି ॥
କରଣ ସୁର ନର ଗୋଷ୍ଠୀ । ସକଳ ଲୋକେ ସମଦୃଷ୍ଟି ॥
ତା ଦେଖି ଅତି ବେଗେ ଧାଇଁ । ଭକ୍ତିଭାବରେ ଭୋଳ ହୋଇ ॥
ଭେଟିଲ ପ୍ରଭୁ ପାଶେ ଯାଇଁ । ସାଷ୍ଟାଙ୍ଗେ ପାଦେ ପଡ଼ି ଶୋଇ ॥
ଉଠି ମସ୍ତକେ ଦେଲ ହସ୍ତ । ବୋଇଲ ନମୋ ଜଗନ୍ନାଥ ॥
ତୁମ୍ଭ ଶ୍ରୀମୁଖ ଦରଶନ । ପାଇଁ ଆତୁର ମୋ ଜୀବନ ॥
ବାଟେ ସଙ୍କଟୁ ରକ୍ଷାକରି । ମୋତେ ଯେ ଆଣିଲ ଉଦ୍ଧରି ॥
ତହିଁର ଲାଭ ଏତେ ହେଉ । ତୋ ପାଦ ଚିନ୍ତି ଦିନ ଯାଉ ॥
ଏମନ୍ତ ବୋଲି ନାମ ଧରି । କୃଷ୍ଣ କେଶବ ଦଇତ୍ୟାରି ॥
ମୁକୁନ୍ଦ ମାଧବ ଅଚ୍ୟୁତ । ପରମାନନ୍ଦ ଗୋପୀନାଥ ॥
ଶ୍ରୀନାରାୟଣ ଚକ୍ରପାଣି । ଦୀନବାନ୍ଧବ ରଘୁମଣି ॥
ଶ୍ରୀବତ୍ସଲାଞ୍ଛନ ବରଜ । ଜୟ ଦେବାଧିଦେବରାଜ ॥
ଏସନ ନାମ ଗାୟନରେ । ନେତ୍ରୁ ଲୋତକଧାରା ଗଳେ ॥
କଲା ଶ୍ରୀମୁଖ ଧ୍ୟାନ କରି । ପ୍ରଭୁ ସ୍ୱରୂପ ମନେ ଧରି ॥
ଚିତ୍ତ ନିବେଶି ଶ୍ରୀପଦ୍ମର । ପ୍ରାଣ ଛାଡ଼ିଲ ଦ୍ୱିଜବର ॥
ସମସ୍ତେ ଦେଖୁଁ ଦେଖୁଁ ତହିଁ । ଚଳିଣ ପଡ଼ିଲକ ମହୀ ॥
ଶୁଣ ସୁଜନେ ହେତୁ ଦେଇ । ସେ ଯେଉଁ ଗତି ଥିବ ପାଇ ॥
ତାହା କହିବାକୁ ସକ୍ଷମ । ନୁହଇ ମୁହିଁ ନରାଧମ ॥

କେବଳ ସାଧୁଜନମାନେ । କହିଲେ କହିବେ ବଚନେ ॥
ଶୁଣ ସୁମନ ଏ ଚରିତ । ଭକତ ଲକ୍ଷଣ ଏମନ୍ତ ॥
ଅଶେଷ ଲୋକଙ୍କ ମହିମା । ବେଦ ନ ଜାଣେ ଗୁଣସୀମା ॥
ଏ ଦାର୍ଢ୍ୟଭକ୍ତି ରସାମୃତ । ଶ୍ରବଣ ପଠନେ ମୁକତ ॥
ପଦପଦକେ ସୁଖ ଜଦେ । ଅଶେଷ ଜନ୍ମ ପାପ ଛେଦେ ॥
କହଇ ରାମଦାସ ମୂଢ଼ । ମୋ ପ୍ରଭୁ ନନ୍ଦଘୋଷାରୂଢ଼ ॥
ସେ ଦାରୁବ୍ରହ୍ମଙ୍କ ଚରଣେ । ମୋ ଚିତ୍ତ ରହୁ ଅନୁକ୍ଷଣେ ॥
ନିତ୍ୟ ମୋ ମନ ମଧୁକର । ନିଷ୍ଠଲେ ରହୁ ସେ ପୟର ॥
ନମସ୍ତେ ସାଧୁଙ୍କ ଚରଣ । ଏ ବର ଦିଅ ଅନୁକ୍ଷଣ ॥
ସୁଜନେ ଏହି ରସେ ରସ । ଏ ଭବ ଜଳରେ ନ ଭାସ ॥
ସାଧୁ ଶ୍ରୀକୃଷ୍ଣନାମ ବିନେ । ଜୀବ ଉଦ୍ଧାର ନାହିଁ ଅନ୍ୟେ ॥

ଇତି ଶ୍ରୀ ଦାର୍ଢ୍ୟଭକ୍ତିରସାମୃତେ ମନଚୈତନ୍ୟ ସମ୍ବାଦେ
ବିପ୍ର ନୀଳାମ୍ବର ଦାସ ଦାର୍ଢ୍ୟଭାବବର୍ଣ୍ଣନେ ନାମ
ଦଶମୋଽଧ୍ୟାୟଃ ।

---

## ଏକାଦଶ ଅଧ୍ୟାୟ

ରଘୁବେହେରା ସମ୍ବାଦ

ମନ ଉବାଚ

ମନ ବୋଲଇ ଚଇତନ । ଶୁଣିଲି ଅପୂର୍ବ ବଚନ ॥
ସେ ନୀଳାମ୍ବର ଦାସ କଥା । ଶୁଣି ତୁଟିଲା ମନୋବ୍ୟଥା ॥
ଏହି ପ୍ରକାରେ କଥା ଯେତେ । ଅଛଇ କହିଥାଅ ମୋତେ ॥
ମୋର ପୁଚ୍ଛିବା ଯାଏ ଆଉ । ତୁମ୍ଭ କହିବାର ନ ଥାଉ ॥
କେବଳ ସାଧୁକଥା ଯେତେ । କହି ପବିତ୍ର କର ମୋତେ ॥
ଶୁଣି ଚୈତନ୍ୟ ଅତି ତୋଷେ । କହଇ ମନରାଜା ପାଶେ ॥

## ଚୈତନ୍ୟ ଉବାଚ

ହେ ରାଜା ସାବଧାନେ ଶୁଣ । ଏ ଦାର୍ଢ୍ୟଭକ୍ତିର ଲକ୍ଷଣ ॥
ପୁରୁଷୋତ୍ତମ ମହାକ୍ଷେତ୍ର । ଯେ କ୍ଷେତ୍ରମାନଙ୍କେ ପବିତ୍ର ॥
ତହିଁକ ଦକ୍ଷିଣକୋଣଠାରେ । ଶ୍ରୀନୀଳାଚଳ ପାରୁଶରେ ॥
ପିପିଲି ଗ୍ରାମ ନାମ ତାର । ସେହି ଗ୍ରାମରେ ତାର ଘର ॥
ଜାତରେ ଅଟଇ ଧୀବର । ରଘୁଅରେକ୍ଷ ନାମ ତାର ॥
ତାହାର ଘରେ ତିନି ପ୍ରାଣୀ । ମାତା ସହିତେ ତା ଘରଣୀ ॥
ଏମନ୍ତେ ତିନିଜଣ ଥାନ୍ତି । କରି ତାହାଙ୍କ ନିଜ ବୃତ୍ତି ॥
ଜାଲ ପକାଇ ମୀନ ମାରି । ପ୍ରାଣ ପୋଷଇ ବନ୍ଦୀ କରି ॥
ଏମନ୍ତେ କେତେ ଦିନ ଅନ୍ତେ । ସୁଜ୍ଞାନ ଜନ୍ମିଲା ତା ଚିତ୍ତେ ॥
ଶ୍ରୀଗୁରୁ ମନ୍ତ୍ର ଜପ କରି । ତୁଳସୀମାଳା ହୃଦେ ଧରି ॥
ବସଇ ସାଧୁଜନ ନିତ । ଶ୍ରୀ ଭାଗବତ ପଢ଼େ ନିତ ॥
ଜୀବ ମାରିବା ଦୋଷ ଯେତେ । ବିଚାର କରୁଥାଇ ଚିତ୍ତେ ॥
ଦଣ୍ଡ ଦଣ୍ଡକେ ଶୋକଭରେ । କରି କରୁଣ ହୃଦୟରେ ॥
ବୋଲେ ବିଧାତା ଏହା କଲୁ । ଧୀବର କୁଳେ ଜନ୍ମଦେଲୁ ॥
ଜୀବମାରଣେ ଦୋଷୀ ମୁହିଁ । ନରକେ ପଡ଼ିବଇଁ ଯାଇ ॥
ଏମନ୍ତ ମନରେ ବିଚାରି । ନ ଗଲା ଆଉ ମୀନ ମାରି ॥
ଦଇବେ ଦୁଃଖୀଘର ସୀମା । ପାଇଲା ଅତ୍ୟନ୍ତ ଯାତନା ॥
ତାହାର ମାତା ପତ୍ନୀ ନିତି । ନାନାପ୍ରକାରେ ଗାଳି ଦିଅନ୍ତି ॥
ତୁ ଏବେ ହୋଇବୁ ସନ୍ନ୍ୟାସ । ଆମ୍ଭଙ୍କୁ ରଖି ଉପବାସ ॥
ନୋହିଲେ ମୀନ ମାରି ଯାଅ । ନିଜ କୁଟୁମ୍ବ ପୋଷୁଥାଅ ॥
ଶୁଣି ଧୀବର କୋପଭରେ । ଦେଲଣା ଜାଲ ଧରି କରେ ॥
ଗଲା ସେ ମୀନ ମାରିବାରେ । ପ୍ରବେଶ ହେଲା ସରୋବରେ ॥
କୃଷ୍ଣ ସୁମରି ପଶି ଜଳେ । ଜାଲ ବାହିଲା ଗୁରକୂଳେ ॥
ଏମନ୍ତେ କେତେ ସମୟରେ । ଶ୍ରୀ ଜଗନ୍ନାଥଙ୍କ କୃପାରେ ॥
ପଡ଼ିଲା ରୋହିମାଛ ଗୋଟି । ତା ଜାଲ ମଧ୍ୟରେ ଚହଟି ॥

ତାହା ଦେଖିଣ କଇବର୍ତ୍ତ । କପାଳେ ମାରି ନିଜ ହାତ ॥
ବିଚାର କରଇ ସେ ଚିତ୍ତେ । ଏହାକୁ ମାରିବି କେମନ୍ତେ ॥
ସାକ୍ଷାତେ ମୀନ ଅବତାର । ଯେହୁ ନାଶିଲେ ଶଙ୍ଖାସୁର ॥
ସେ ଦିବ୍ୟ ରୂପ ନାଶ କରି । ମୁଁ କେଉଁଣେ ଥିବି ଦେହଧରି ॥
ଯେବେ ନ ମାରିବି ଏ ମୀନ । ମୋତେ ନ ମିଳିବ ଭୋଜନ ॥
ପତ୍ନୀ ଯେ ଦୁଆରୁ ତଡ଼ିବ । ଅନ୍ନ ନ ଦେଇ ଘଉଡ଼ିବ ॥
ଏମନ୍ତ ବୋଲି ଭାବଭୋଳେ । ବେନି ନୟନୁ ଅଶ୍ରୁ ଗଳେ ॥
ସେ ମୀନ ଧରି ବେଗେ ଗଲା । ଶୁଷ୍କ ଭୂମିରେ ପକାଇଲା ॥
ବୋଇଲା ମୀନରୂପୀ ଶୁଣ । ତୁ ଯାହା କରିବୁ ଭିଆଣ ॥
ମୋର ତ ଧୀବର ସ୍ୱଭାବ । କେ ତାହା ଅନ୍ୟଥା କରିବ ॥
ତୋତେ ନକଲେ ଆଜ ନାଶ । ମୋତେତ ନ ମିଳିବ ଗ୍ରାସ ॥
ଏଣୁ ମାରିବା କଥା ସତ । ବୋଲି ତଣ୍ଡିରେ ଦେଲା ହସ୍ତ ॥
ଅଳପ ଯାକି ଦେଲା ଧରି । ସେ ମୀନ ବଦନ ବିସ୍ତାରି ॥
ଡାକିଲା ରଖ ନାରାୟଣ । ଧୀବର ଶୁଣିଲା ଶ୍ରବଣ ॥
ନିଧି ପ୍ରାପତ ହେଲା ଯେହ୍ନେ । ତେସନ ଆନନ୍ଦ ତା ମନେ ॥
ସେ ମୀନ ଘେନି ଚଳିଗଲା । ଅଗମ୍ୟ ବନସ୍ତେ ମିଳିଲା ॥
ନିର୍ଝରଠାରେ ଝର ନୀର । ଦେଖି ହରଷ ମନ ତାର ॥
ସେ ଝର ତଟେ କୁଣ୍ଡ କରି । ଅଳପ ଜଳ ତହିଁ ଭରି ॥
ସେ ଜଳେ ସେ ମୀନ ନିବେଶି । ଦୃଢ଼ ଆସନ କରି ବସି ॥
ବୋଲେ ସେ ମୀନ ଗର୍ଭଗତେ । ଯେ ନାମ ଶୁଣାଇଲା ମୋତେ ॥
ସେ ଏବେ ରୂପବନ୍ତ ହେଉ । ମୋତେ ସେ ଦେଖାଦେଇ ଯାଉ ॥
ନୋହିଲେ ଜୀବନ ହାରିବି । ତାହାର ମୁଣ୍ଡେ ହତ୍ୟା ଦେବି ॥
ଏମନ୍ତେ ନିଷ୍ଠାବ୍ରତ କଲା । ସେ ମୀନରୂପେ ହେତୁ ଦେଲା ॥
ଇନ୍ଦ୍ରିୟମାନ ବଶ କରି । ଚଞ୍ଚଳଚିତ୍ତ ସ୍ଥିର କରି ॥
ସୁମାର୍ଗେ ରଖି ନେତ୍ର ଦୁଇ । ମନକୁ ଜ୍ଞାନମାର୍ଗେ ଥୋଇ ॥



ହରୁ ବେହେରା ନାରାୟଣଙ୍କୁ ନ ଦେଖିଲେ ପ୍ରାଣ ହାରିବ ବୋଲି ଜିଦ୍ ଧରିବାରୁ
ତାଙ୍କୁ ନାରାୟଣ ଦେଖାଦେଲେ ।

ଭଜନ କଲା ନାରାୟଣ । ଯେ ନାମ ପରମ କାରଣ ॥
ସେ ନାରାୟଣ ନାମ ଗୋଟି । ହୃଦ ପଦ୍ମରେ କଲା ଗଣ୍ଠି ॥
ନିରନ୍ତେ ବଦନରେ ଗୁଣି । ନ ଜାଣେ ଦିବସ ରଜନୀ ॥
ଏମନ୍ତେ ଛନ୍ନାଦିନ ହେଲା । କେଣିକ ପାଦେ ନ ଟଳିଲା ॥
ମରିବା କଥା କଲା ମୂଳ । ତାହା ଜାଣିଲେ ଆଦିମୂଳ ॥
ବିପ୍ରସ୍ୱରୂପ ଗୋଟି ଧରି । ଧୀବର ଆଗେ ବିଜେ କରି ॥
ବୋଇଲେ ଶୁଣ ହେ ତପସ୍ୱୀ । କି ତପ କରୁ ଏଥେଁ ବସି ॥
କି ଜାତି ଗୋତ୍ର ଅଟେ ତୋର । କି ତୋର ନାହିଁ ଘରଦ୍ୱାର ॥
କିସ ବିଘ୍ନରୁ ଅଛୁ ମନେ । ଏକାନ୍ତେ ବସିଅଛୁ ବନେ ॥
କହ ଏ କେବଣ ଚରିତ । ଶୁଣି ବୋଲଇ କଇବର୍ତ୍ତ ॥
ହେ ବିପ୍ର ମୋତେ କି ପଚାର । ଜାତିରେ ଅଟେ ମୁଁ ଧୀବର ॥
କୁଟୁମ୍ବ ଜଞ୍ଜାଳ ନିମନ୍ତେ । ପେଲଣା ଜାଲ ଧରି ହସ୍ତେ ॥
ଅଇଲି ମୀନ ମାରିବାରେ । ପ୍ରବେଶ ହେଲି ସରୋବରେ ॥
ଜାଲ ପକାନ୍ତେ ଜଳେ ପଶି । ପଡ଼ିଲା ରୋହିମାଛ ଆସି ॥
ସେ ମୀନ ପକାଇଣ କୂଳେ । ଧରି ମୁଁ ମାରିବାର ବେଳେ ॥
ସେ ମାଛ ପାଟି ବିସ୍ତାରିଣ । ଡାକିଲା ରଖ ନାରାୟଣ ॥
ଶୁଣି ମୁଁ ଆଚମ୍ବିତ ହୋଇ । ମୀନକୁ ଧରି ଅଇଲଇଁ ॥
ଏ ଘୋର ବନସ୍ତରେ ପଶି । ମୀନକୁ ଜଗିଛଇଁ ବସି ॥
ଯେ ନାମ ଶୁଣାଇଲା ମୋତେ । ତାହାକୁ ଦେଖିବା ନିମନ୍ତେ ॥
ତେବେ ମୁଁ ନିଜପୁରେ ଯିବି । ନୋହିଲେ ଜୀବନ ହାରିବି ॥
ଏ କଥା ମୋର ସତ୍ୟବ୍ରତ । ତେଣୁ ମୁଁ ବସିଅଛି ଏଥ ॥
କହିଲି ମନର ବେଦନା । ହେ ବିପ୍ର ବିଜେକର କନା ॥
ତୁମ୍ଭେ ଥିବାକୁ ମୋ ଆଗର । ଭଜନ ହେଉଛି ଉଚ୍ଛୁର ॥
ଏମନ୍ତ ବୋଲି ନାରାୟଣ । ନାମ ଭଜନ କଲା ପୁଣ ॥
ସେ ଅନ୍ତର୍ଯାମୀ ନାରାୟଣ । ଜାଣିଲେ ରଘୁନାଥ ମନ ॥

ବୋଇଲେ ଶୁଣ ହେ ଧୀବର । ଏ କଥା ବିପରୀତ ତୋର ॥
ମୀନ ରଚିବ ନାମ କାହିଁ । ଏ କଥା ପରତେ ନ ଯାଇ ॥
ଯେବେ ରଚିବ ପରମାଣ । ଦାଇବ ବୋଲି ତାକୁ ଜାଣ ॥
ସେ କାହିଁ ଦେଖାଦେବ ତୋତେ । ବିଅର୍ଥେ ବସିଅଛୁ ଏଥେଁ ॥
ଏବେ ତୁ ନିଜପୁରେ ଯାଅ । ଅଧିକ କଷ୍ଟହିଁ ନ ପାଅ ॥
ତା ଶୁଣି ବୋଲେ କଇବର୍ତ୍ତ । ଭଲ କହିଲୁ ବିପ୍ର ତୁ ତ ॥
ସେ ସିନା ଦେଖାଦେବା ଦୂର । ମୋର ମରିବାଟି ନିକର ॥
ଏଥିକୁ ଭୟ ନାହିଁ କିଛି । ପ୍ରାଣ ମୁଁ ମୂଳୁଛି ରହିଛି ॥
କେବଳ ଦୀନବନ୍ଧୁ ନାମ । ବହିଅଛନ୍ତି ଦାରୁବ୍ରହ୍ମ ॥
ପତିତ ରକ୍ଷଣ ନିମନ୍ତେ । ଦେଉଳେ ବାନ୍ଧିଛନ୍ତି ନେତେ ॥
ଦୈନ୍ୟ ଆରତ ନିବାରଣ । ଶ୍ରୀଭୁଜେ ଚକ୍ର ଅନୁକ୍ଷଣ ॥
ଧରି ବିଜୟି ଦାରୁହରି । ଏଣୁ ଭରସା ଅଛି କରି ॥
ଅବଶ୍ୟ ଦେଖାଦେବେ ଥରେ । ବିଚାର ଅଛି ମୋ ମନରେ ॥
ନୋହିଲେ ପ୍ରାଣ ମୋର ଯାଉ । ତାର କୀରତି ରହିଥାଉ ॥
ଏବେ ହୋ ଶୁଣ ବିପ୍ରବର । ତୁମ୍ଭଙ୍କୁ କୋଟି ନମସ୍କାର ॥
କଲ୍ୟାଣ କରି ମୋତେ ଚଳ । ଭଜନ ହେଉଅଛି ହେଳ ॥
ତା ଶୁଣି ଶ୍ୱେତପଦ୍ମଡୋଳା । ଭକତଭାବେ ହେଲେ ଭୋଳା ॥
ବିଚାର କଲେ ହୃଦଗତେ । ମୁହିଁ ନିର୍ଦ୍ଦୟ ହେଲେ ଏଥେଁ ॥
ନିଶ୍ଚେ ମରିବ ଏ ଧୀବର । ଜୀବନ ଆଶା ନାହିଁ ଯାର ॥
ଏମନ୍ତ କହି ପୀତବାସ । ବୋଇଲେ ଶୁଣ ରଘୁଦାସ ॥
ଆମ୍ଭେଟି ମୀନ ଗର୍ଭଗତେ । ସେ ନାମ ଶୁଣାଇଲୁ ତୋତେ ॥
ତୋ ମନେ ସଂଶୟ ନ କର । ଆମ୍ଭେଟି ଜଗତଈଶ୍ୱର ॥
ଆପଣ କୃପା କଲୁ ତୋତେ । ବର ତୁ ମାଗି ଘେନ ମୋତେ ॥
ତା ଶୁଣି ବୋଲଇ ଧୀବର । ଦେଖାଅ ନିଜରୂପ ତୋର ॥
ବାରେ ଦେଖିବ ଚର୍ମ ଡୋଳେ । ଖଣ୍ଡିବ ଜନ୍ମମୃତ୍ୟୁ ହେଲେ ॥

ତା ଶୁଣି ପ୍ରଭୁ ଦେବରାଜ । ତକ୍ଷଣେ ହେଲେ ଚତୁର୍ଭୁଜ ॥
କମ୍ବୁ ରଥାଙ୍ଗ ଗଦାଧର । ଶୋଭା ପାଉଛି ଗୃଶକର ॥
ପ୍ରତ୍ୟକ୍ଷେ ଭଗ ପୀତବାସ । ଦେଖି ଉଠିଲେ ରଘୁଦାସ ॥
ସାଷ୍ଟାଙ୍ଗେ କରି ଦଣ୍ଡବତ । ଉଠି କପାଳେ ଯୋଡ଼ି ହାତ ॥
ବୋଲନ୍ତି ନମୋ ଚକ୍ରପାଣି । ଭକତଜନ ଚିନ୍ତାମଣି ॥
ବ୍ରହ୍ମା ଇନ୍ଦ୍ରାଦି ଯୋଗେଶ୍ୱର । ଧ୍ୟାନେ ଚିନ୍ତନ୍ତି ଯା ପୟର ॥
ସେ ପ୍ରଭୁ ମୋହ ଗ୍ରର ପାଇଁ । ବିଜୟ କଲେ ଦୟା ବହି ॥
ଆଉ ମୁଁ କି ବର ମାଗିବି । ତୁମ୍ଭ ଚରଣେ ଲୁଚିଯିବି ॥
ପ୍ରଭୁ ବୋଇଲେ ଯାହା ମନ । ମାଗ ହେ ଭକତ ରତନ ॥
ଦାସେ ବୋଇଲେ ଯେବେ ବର । ଦେବାକୁ କୃପା ହେବ ତୋର ॥
ଏ ମୋର ଧୀବର ସ୍ୱଭାବ । ଏହା ଯେମନ୍ତେ ନାଶିଯିବ ॥
ଆବର ଅନ୍ତ ମିଳୁଥିବ । ତୋ ନାମ ଧରି ଜୀବ ଯିବ ॥
ଯେବେ ହୃଦରେ ଭାବୁଥିବ । ତୁମ୍ଭ ଦର୍ଶନ ପାଉଥିବ ॥
ଅସ୍ତୁ ବୋଲଣ ଭଗବାନ । ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ ॥
ବୈକୁଣ୍ଠପୁରେ ଗଲେ ଚଳି । ଭକତ ହରି ହରି ବୋଲି ॥
ବାନନ୍ତି ହୋଇଲା ବାହାର । ଭାବେ ଗମନ୍ତି ଧୀରି ଧୀର ॥
କରେ ବଜାଇ କରତାଳି । ବେନି ନୟନୁ ଧାର ଗଳି ॥
ଶ୍ରୀହରି ନାମ ଗାନ କରି । ପ୍ରବେଶ ହେଲା ନିଜପୁରୀ ॥
ଏଣେ ଯେ ନିଜପୁର ଜନେ । ରଘୁକୁ ନ ଦେଖି ନୟନେ ॥
କାନ୍ଦି ବୋବାଇ ପଡ଼ି ଗଡ଼ି । ମଲା ବୋଲିଣ ଆଶା ଛାଡ଼ି ॥
ଅତ୍ୟନ୍ତ ଚିନ୍ତାଭରେ ଥିଲେ । ଏହି ସମୟେ ଦାସେ ଗଲେ ॥
ତା ସଙ୍ଗେ ପୁରଜନ ଯେତେ । ଗୋଡ଼ାଇ ଅଛନ୍ତି ସମସ୍ତେ ॥
ବୋଇଲେ ଦେଖ ଏହୁ ବାଇ । ଛନ୍ଦରେ ପ୍ରଭୁ ନାମ ଗାଇ ॥
କଷ୍ଟକୁ ଭୟ କରି ଚିତ୍ତେ । ଲୁଚି ଯେ ଥିଲା ଦିନା କେତେ
ପୁଣି ଅଇଲା ଧାଇଁ ଧାଇଁ । ପତ୍ନୀକି ଠକାଇବା ପାଇଁ ॥

ଏତ ଠାପୁଆ ଜନମରୁ । ଠାପୁଆମାନଙ୍କର ଗୁରୁ ॥
ଏମନ୍ତେ ଉପହାସ କଲେ । ଯେଝାପୁରକୁ ଚଳିଗଲେ ॥
ଏଥିଉତ୍ତାରୁ ଗୃହଜନେ । ଦାସଙ୍କୁ ନେଇଣ ସଦନେ ॥
ଅନ୍ନ ବ୍ୟଞ୍ଜନ ପରଷିଲେ । ରଘୁର ମନକୁ ତୋଷିଲେ ॥
ଭୋଜନ ସାରି ଦାସେ ଉଠି । ଭଜି ଶ୍ରୀହରି ନାମ ଗୋଟି ॥
କଥାପଦକେ ନାରାୟଣ । ନାମ ରଟଇ ପୁନଃ ପୁନଃ ॥
ମାଳା ତିଳକ ଭେକ ଧରି । ବୈକୁଣ୍ଠପଥକୁ ଆବୋରି ॥
ଦାଣ୍ଡେ ବୁଲଇ ଭିକ୍ଷା ଅର୍ଥେ ମାଗଇ ନାହିଁ କଦାଚତେ ॥
ଶ୍ରୀନାରାୟଣ ନାମ ଧରି । ଦାଣ୍ଡେ ବୁଲଇ ଭିକ୍ଷା କରି ॥
ପ୍ରଭୁଙ୍କ ଆଜ୍ଞା ପ୍ରମାଣରେ । ଯେତେତେ ଲଗଇ ତାର ଘରେ ॥
ଲୋକେ ଦିଅନ୍ତି ଯାଚି କରି । ଦାସେ ଆଣନ୍ତି ତାହା ଧରି ॥
ଦିଅନ୍ତି ମାତା ସନ୍ନିଧାନେ । ଦେଖି ଆନନ୍ଦ ମାତା ମନେ ॥
କବଣ ରନ୍ଧନ ଭୋଜନ । ସୁଖେଣ ବଞ୍ଚୁଥାନ୍ତି ଦିନ ॥
ଏମନ୍ତେ କେତେଦିନ ପରେ । ଦିନେକ ଗ୍ରାମମଣ୍ଡପରେ ॥
ବସିଅଛନ୍ତି ରଘୁଦାସେ । ବାଳକେ ବେଢ଼ି ଚଉପାଶେ ॥
ବୋଇଲେ ଛଦ୍ମ ତପସ୍ୱୀ । ଦେଖ ସାଧୁତ ପ୍ରାୟ ଦିଶି ॥
କୁଟୁମ୍ବ ପୋଷିଣ ନ ପାରି । ଜୀଅଁଇ ଭିକ୍ଷା ମାଗି କରି ॥
ଧୂଳି ଉଡ଼ାଇ ଝାମ୍ପ କଲେ । ବିଶେଷ ରୂପେ ଗାଳିଦେଲେ ॥
ନାନା ପ୍ରକାରେ ଗାଳି ଦେଇ । କେ ମାଳା ଉଚ୍ଛୁଡ଼ି ନିଅଇ ॥
ତାଦେଖି ଶ୍ରୀହରିର ଦାସ । ଉଠି ଗମିଲେ ନିଜ ବାସ ॥
ଏକ ବାଳକ ତହିଁ ଥିଲା । ପଛରେ ଗୋଡ଼ାଇଣ ଗଲା ॥
ଲୌହକଣ୍ଟକଲଗା ବାଡ଼ି । ଧରି ନିତମ୍ବେ ହେଲା ମାଡ଼ି ॥
ରୁଧିର ହୋଇଲା ବାହାର । ତା ଦେଖି ବୋଇଲା ଧୀବର ॥
କି ଅପରାଧ କଲି ତୋତେ । ଏତେକ ଦଣ୍ଡ ଦେଲୁ ମୋତେ ॥
ତୋତେ ଦଣ୍ଡିବୁ ଦୀନବନ୍ଧୁ । ତୋ ମାତା ପୁଚି ବୋଲି କାନ୍ଦୁ

ଏମନ୍ତ ବୋଲି ଶାପ ଦେଇ । ଦାସେ ପହଣ୍ଡ କେତେ ଯାଇ ॥
ତକ୍ଷଣେ ସେ ବାଳକ ଗୋଟି । ଜୀବନ ହାରି ଭୂମି ଲୋଟି ॥
ତାଂ ଦେଖି ସକଳ ବାଳକେ । ଯାଇ ମିଳିଲେ ତାର ମାଖେ ॥
ଦେଖିଲେ ପିଣ୍ଡେ ପ୍ରାଣ ନାହିଁ । ସମସ୍ତେ ଗଲେ ତହୁଁ ଧାଇଁ ॥
ତା ଦେଖି ମାତାଙ୍କ ଆଗରେ । ସକଳ ବୁଝାଇ କହିଲେ ॥
ତୁମ୍ଭର ପୁତ୍ର ପ୍ରାଣ ଗ୍ଲଡ଼ି । ମଝି ଦାଣ୍ଡରେ ଅଛୁ ପଡ଼ି ॥
ତା ଶୁଣି ଜନନୀ ପିଅର । ରୋଦନ କରି ଉଚ୍ଚସ୍ୱର ॥
ମିଳିଲେ ପୁତ୍ର ପାଶେ ଯାଇ । ଧରଣ ସଳଖି ବସାଇ ॥
ନାସିକା ଚପି କର୍ଣ୍ଣ ଫୁଙ୍କି । କର ଚରଣ ନାଡ଼ୀ ଦେଖି ॥
ଜାଣିଲେ ପିଣ୍ଡେ ପ୍ରାଣ ନାହିଁ । ପୁତ୍ରକୁ ଦେଖିଗଲେ ବହି ॥
ଦାସଙ୍କ ପାଦେ ପକାଇଲେ । ବହୁତ ବିନୟୀ ହୋଇଲେ ॥
ବୋଇଲେ ଶୁଣ ଆହେ ସାଧୁ । ତୁମ୍ଭେ ତ ସର୍ବଲୋକ ବନ୍ଧୁ ॥
ଶତ୍ରୁ ମିତ୍ରାଦି ତୋର ନାହିଁ । ଏ ଦଣ୍ଡ ବହିଲୁ କିପାଇଁ ॥
ଏବେ ମୋ ପୁତ୍ରଦୋଷ ଯେତେ । ସକଳ ଦିଅ ମୋର ମାଥେ ॥
ସଂସାର ମଧ୍ୟେ ମୋତେ ରଖ । ଦିଅ ମୋ ଏକଇ ବାଳକ ॥
ନୋହିଲେହତ୍ୟାହେବତୋତେ । ବୋଲି ପଡ଼ିଲେ ପାଦଗତେ ॥
ତା ଦେଖି ଶ୍ରୀହରିର ଦାସ । ଚିତ୍ତରେ କମଳାବିଳାସ ॥
ବୋଇଲେ ଶୁଣ ସାଧୁଜନ । ଶୁଣ ହେ ସକଳ ନନ୍ଦନ ॥
ମୋହର ଦୋଷ ଥିଲେ ଏଥେ । ସମସ୍ତେ ଦଣ୍ଡ ଦିଅ ମୋତେ ॥
ତାହାର ଅପରାଧ ଗୁହିଁ । ଦଣ୍ଡ ବହିଲେ ଭବଗ୍ରାହୀ ॥
ଏବେ ମୋ ପ୍ରଭୁଙ୍କ ଆଜ୍ଞାରେ । ଚିରଞ୍ଜୀବ ଥାଉ ଏ ସଂସାରେ ॥
ଜୀବନ ପାଉ ଏ ବାଳକ । ସମସ୍ତେ ଉଠ ବୋଲି ଡାକ ॥
ତା ଶୁଣି ତାତ ମାତ ତାର । ଆବର ଯେତେ ଥିଲେ ନର ॥
ସମସ୍ତେ ବୋଲି ହରି ହରି । ତୋଳିଲେ ପୁତ୍ର ଭୁଜ ଧରି ॥
ବୋଇଲେ ଉଠ ରେ ବାଳୁତ । ଦେଖ ତୋହର ତାତ ମାତ ॥

ତା ଶୁଣି ଉଠିଲା କୁମର । ପାଇଣ ନିଜ ପ୍ରାଣ ତାର ॥
ନିଦ୍ରୁଁ ଉଠିଲ ପ୍ରାୟେ ହୋଇ । ଚକ୍ଷୁ ମଳିଣ ଦେଲା ଗୃହିଁ ॥
ଦେଖିଲେ ଗ୍ରାମଜନ ଯେତେ । ଦାସଙ୍କୁ ବେଢ଼ିଣ ସମସ୍ତେ ॥
ତାତ ଜନନୀ ଭକ୍ତ ପାଦେ । ସେବା କରନ୍ତି ଅପ୍ରମାଦେ ॥
ତା ଦେଖି ସେ ବାଳକ ଗୋଟି । ଦାସଙ୍କ ପାଦତଳେ ଲୋଟି ॥
ଉଠି ଜପାଟେ ଦେଲା କର । ବୋଲେ ମୋ ଦୋଷ କ୍ଷମାକର ॥
ତାହା ଦେଖିଣ ସର୍ବଜନେ । ଅତି ଚକିତ ହେଲେ ମନେ ॥
ଦାସଙ୍କ ପାଦ ପୂଜା କଲେ । ଯେ ଯାହା ମତେ ଚଳିଗଲେ ॥
ଦାସେ ଚଳିଲେ ନିଜ ପୁର । ଭଜଣ ଗୋବିନ୍ଦ ପୟର ॥
ଏମନ୍ତେ କେତେଦିନ ଗଲା । ତା ଯଶ ଜଗତେ ପୂରିଲା ॥
ବେଳକୁ ବେଳ କୀର୍ତ୍ତି ତାର । ବଢ଼ିଲା ଅପାରୁଁ ଅପାର ॥
ସେ ରାଜ୍ୟ ପ୍ରଜାଜନ ଯେତେ । ଆନନ୍ଦେ ଆସନ୍ତି ସମସ୍ତେ ॥
ଦେଖିଣ ଧନ ଦାସ ଦ୍ୟନ୍ତି । ଦର୍ଶନ କରି ଲେଉଟନ୍ତି ॥
ଯାହାକୁ ଯାହା ସେ କହଇ । ସେ କଥା ଅନ୍ୟଥା ନୁହଇ ॥
ଏମନ୍ତେ ଗଲା କେତେଦିନ । ଏଥିଉତ୍ତାରୁ କଥା ଶୁଣ ॥
ଦିନେ ସେ ମନର ହରଷେ । ଏକାନ୍ତେ ବସି ରଘୁଦାସେ ॥
କିଛି ଭୋଜନ ଦ୍ରବ୍ୟ ଥୋଇ । ଧ୍ୟାନେ ଚିନ୍ତିଲେ ଭବଗ୍ରାହୀ ॥
ତାକ୍ଷଣେ ନୀଳାଚଳବାସୀ । ଭକତ ପାଶେ ହେଲେ ଆସି ॥
ଦାସେ ଦେଖିଣ ଶ୍ରଦ୍ଧାମନେ । ପ୍ରଭୁ ବସାଇ ଦିବ୍ୟାସନେ ॥
ଭୋଜନଦ୍ରବ୍ୟ ଧରି କରେ । ଭୁଞ୍ଜନ୍ତି ପ୍ରଭୁଙ୍କ ମୁଖରେ ॥
ଏମନ୍ତ ସମୟରେ ତହିଁ । ସେ ମହାରାଜ ନୃପସାଇଁ ॥
ପ୍ରଭୁଙ୍କ ମଣୋହି ନିମନ୍ତେ । ନାନା ପ୍ରକାରେ ଭୋଜ ଯେତେ ॥
ସେବକ ହସ୍ତେ ଘର କରି । ଭୋଗ ମଣ୍ଡପେ ନେଇ ଭରି ॥
ପଣ୍ଡାଏ ପୂଜାରେ ବସିଲେ । ପ୍ରଭୁ ଚକ୍ଷୁରେ ନ ଦିଶିଲେ ॥
କେତେହେଁ ବେଳ ଧ୍ୟାନଗତେ । ଦିଶିଲେ ନାହିଁ କଦାଚିତେ ॥

ନୃପତି ପାଖେ ଜଣାଇଲେ । ପ୍ରଭୁ ଯେ ମଣୋହି ନ କଲେ ॥
କି ଅବା ହୋଇଲା ଅଭାବ । ସକଳ ଭୋଗ ପୋତା ହେବ ॥
ଶୁଣି ନୃପତି ତାପ ମନେ । ଗରୁଡ଼ ପଛେ କୁଶାସନେ ॥
ଶୋଇଲା ପ୍ରଭୁ ଚିନ୍ତାକରି । ତାହା ଜାଣିଲେ ଦେବହରି ॥
ସ୍ୱପନମାର୍ଗେ ଭବଗ୍ରାହୀ । ନୃପତି ଆଗେ ଉଭା ହୋଇ ॥
ବୋଇଲେ ଶୁଣ ହେ ରାଜନ । କିମ୍ପା ତୁ ଦୁଃଖ କରୁ ମନ ॥
ଆମ୍ଭେ ଯେ ପିପିଲି ଗ୍ରାମରେ । ଧୀବର ରଘୁଦାସ ଘରେ ॥
ଭୋଜନ କରୁଅଛୁଁ ବସି । ତେଣୁଟି ଚକ୍ଷୁରେ ନ ଦିଶି ॥
ଭକତ ଗୃହଦେବ ଯେବେ । ଏହି ମଣୋହି ହେବ ତେବେ
ମୂଳ ମୋ ଭକତର ଭାବ । ଏ ଦ୍ରବ୍ୟ ମୋର କିସ ହେବ ॥
ଭକତ ରେଣୁମାନ ଦେଲେ । ତାହା ମୁଁ ମଣେ ମେରୁ ତୁଲେ
ଭାବ ନ ଥାଇ ଯେ ଭୋଜନ । ସେ ମେରୁ ତୁଲେ ଦେବା ଧନ
ସେ ମୋତେ ଅଟଇ କଣ୍ଟିତ । ଶ୍ରଦ୍ଧା ନ ଥାଇ ଯାର ଚିତ୍ତ ॥
ତେଣୁଟି କହୁଅଛୁ ତୋତେ । ଯାଇ ପିପିଲି ପରଯନ୍ତେ ॥
ମୋର ଦାସକୁ ଘେନି ଆସ । ଦିଅ ତୁ କ୍ଷେତ୍ରବରେ ବାସ ॥
ତେବେ ମୁଁ କରିବ ଭୋଜନ । ଏମନ୍ତ କହି ଅନ୍ତର୍ଦ୍ଧାନ ॥
ପ୍ରଭୁ ଶ୍ରୀମୁଖେଁ ଏହା ଶୁଣି । ନିଦ୍ରାରୁ ଉଠି ନୃପମଣି ॥
ଅଶ୍ୱ ଆରୋହି ଚଳିଗଲେ । ସକଳ ସମ୍ଭ୍ରମର ତୁଲେ ॥
ମିଳିଲେ ପିପିଲି ଗ୍ରାମରେ । ଧୀବର ରଘୁଦାସ ଦ୍ୱାରେ ॥
ଆପେ ନୃପତି ବ୍ରହ୍ମହଂସ । ଡାକିଲେ ଦାସେ ବେଗେ ଆସ
ତାହା ନ ଜାଣେ ରଘୁଦାସ । ପ୍ରଭୁ ସେବାରେ ଅଭିଲାଷ ॥
କୋଟିଏ ନିଧି ପାଇଅଛୁ । ତେଣୁ ସେ ନ ଜାଣଇ କିଛୁ ॥
ନୃପତି କେତେହେଁ ଡାକିଲେ । ଦାସେ ଶ୍ରବଣେ ନ ଶୁଣିଲେ ॥
ତାହା ଜାଣିଲେ ନରନାଥ । ଅଶ୍ୱରୁ ଓହ୍ଲାରି ତୁରିତ ॥
ମନ୍ଦିରେ ପ୍ରବେଶ ହୋଇଲେ । ଦାସଙ୍କ ପାର୍ଶ୍ୱେ ମିଳିଲେ ॥

ତାହା ଜାଣିଲେ ଭଗବାନ । ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ ॥
ପ୍ରଭୁ ନ ଦେଖି ଦାସେ ଖୋଜେ । ନେହୁଁ ଲେଉଟକଧାରୀ ଗଲେ ॥
ଆହା ମୋ ପ୍ରଭୁ ଗଲେ କାହିଁ । ବୋଲି ଭୂମିରେ ଗଡ଼ିଯାଇ ॥
ତାହା ଦେଖିଣ ନୃପବର । ତୋଳିଣ ଧଇଲେ ଶ୍ରୀକର ॥
ହୃଦରେ କଲେ ଆଲିଙ୍ଗନ । ବୋଇଲେ ଧନ୍ୟ ତୋ ଜୀବନ ॥
ହରିଙ୍କି କଲୁ ବଶବର୍ତ୍ତୀ । ତୋର ଦର୍ଶନେ ମୁଁ ମୁକତି ॥
ଏମନ୍ତ ବୋଲି ଦଣ୍ଡଧାରୀ । ନେଲେ ଦାସଙ୍କ ହସ୍ତ ଧରି ॥
କରିଣ ନାନାମତେ ସଜ । ମଣ୍ଡାଇ ନାନାବେଶେ ଗଜ ॥
ଦାସଙ୍କୁ ତହିଁ ବସାଇଲେ । କୁଟୁମ୍ବ ସଙ୍ଗେ ଚଳାଇଲେ ॥
ନାନା ଉତ୍ସବେ ଚଳିଗଲେ । ଶ୍ରୀ ପୁରୁଷୋତ୍ତମେ ମିଳିଲେ ॥
ପ୍ରଭୁଙ୍କୁ କଲେ ଦରଶନ । ବଢ଼ିଲା ସେବା ପୂଜାମାନ ॥
ଦକ୍ଷିଣ ପାନ୍ତଶରେ ଭଲେ । ଚଉଁରିଘର ବନାଇଲେ ॥
ତହିଁ ଦାସଙ୍କୁ ଦେଲେ ସ୍ଥାନ । ଖଞ୍ଜିଲେ ଖଞ୍ଜା ବରତନ ॥
ଅନେକ ଗଉରବ କରି । ଚଳିଣ ଗଲେ ଦଣ୍ଡଧାରୀ ॥
ଦାସେ ରହିଲେ ପ୍ରଭୁ ପାଶେ । ଅତ୍ୟନ୍ତ ମନର ହରଷେ ॥
ନିରତେ କରି ହରିସେବା । ନ ଜାଣେ ଅନ୍ୟ ଦେବାଦେବା ॥
ନିରତେ ଦାନ ପୁଣ୍ୟେ ରତ । ନାମ ଭଜଇ ଅବିରତ ॥
ଏମନ୍ତେ ବଞ୍ଚୁଥାନ୍ତି ଦିନ । ଆନନ୍ଦେ ଶୁଣ ହେ ସୁଜନ ॥
ତାହାର ନାମ ରଘୁଦାସ । ଜଗତେ ହୋଇଛି ପ୍ରକାଶ ॥
ଆଉ ତ ଯେତେ ଯେତେ କଥା । କହି ବସିଲେ ହେବ ପୋଥା ॥
ଶୁଣ ସୁମନେ ହୋଇ ତୋଷ । ଦାର୍ଢ୍ୟତାଭକ୍ତି ସୁଧାରସ ॥
ଏ ମନ ଚୈତନ୍ୟ ସମ୍ବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥
ଅଶେଷ ଜନ୍ମ ପାପ ଥିଲେ । ଖଣ୍ଡିବ ବଦନେ ଗୁଣିଲେ ॥
କେବଳ ଥିଲେଟି ଶରଧା । ଲାଗିବ ନାହିଁ ପାପ ବାଧା ॥
କହଇ ବିପ୍ର ରାମଦାସ । ସାଧୁଙ୍କ ମହିମା ଅଶେଷ ॥

ଇତି ଶ୍ରୀ ଦାର୍ଢ୍ୟଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ ରଘୁବେହେରା ଭକ୍ତଭାବ ବର୍ଣ୍ଣନେ ନାମ ଏକାଦଶୋଽଧ୍ୟାୟଃ ।

---

## ଦ୍ୱାଦଶ ଅଧ୍ୟାୟ

### ଗଙ୍ଗାଧର ଦାସ ସମ୍ବାଦ

### ଚୈତନ୍ୟ ଉବାଚ

କହେ ଚୈତନ୍ୟଶୁଦ୍ଧଚେତା । ଶୁଣ ସୁମନ ସାଧୁ କଥା ॥
ପୁରୁଷୋତ୍ତମ କ୍ଷେତ୍ରବରେ । ପ୍ରତାପ ରୁଦ୍ର ସମୟରେ ॥
ଗୋବିନ୍ଦପୁର ବୋଲି ନାମ । ଗ୍ରାମମାନଙ୍କ ମୋକ୍ଷସ୍ଥାନ ॥
ବଣିଆ ନାମେ ଗଙ୍ଗାଧର । ସେହି ଗ୍ରାମରେ ତାର ଘର ॥
ସରଯା ନାମ ତାର ଜାୟା । ସତୀ ସାଧବୀ ସ୍ୱାମୀପ୍ରିୟା ॥
ପୁତ୍ର ଦୁହିତା ତାର ନାହିଁ । ତହିଁକି ଶୋଚନା ନ ଥାଇ ॥
ସେ ପତି ପତ୍ନୀ ଥାନ୍ତି ଏକା । କରଣ ଆପଣା ଜୀବିକା ॥
ପସରା କରି ବିକାକିଣି । ସୁଖେ ଜୀଅନ୍ତି ବେନି ପ୍ରାଣୀ ॥
ନାନାଦି କନ୍ଦୁଦ୍ରବ୍ୟ ଯେତେ । ଯେ ଶୁଣ୍ଠି ପିପ୍ପଳି ସହିତେ ॥
କରଣ ଶ୍ରୀହରି ଭକତ । ଦେବା ଦୟାରେ ଶୁଦ୍ଧମତ ॥
ପରଦୁଃଖରେ ହୋଇ ଦୁଃଖୀ । ସେବନ୍ତି ସାଧୁଜନ ଦେଖି ॥
ଏମନ୍ତେ କେତେ ଦିନ ଗଲା । ବୃଦ୍ଧ ବୟସ ଆସି ହେଲା ॥
ଦିନେକ ଶୟନ ସମୟେ । ପତ୍ନୀ ତା ପତି ଆଗେ କହେ ॥
ହେ ସ୍ୱାମୀ ଶୁଣ ମୋ ବଚନ । ଲୋକେ ମୁଁ ହେଲି ହୀନମାନ ॥
ଘର ବାହାର ବାଟ ଘାଟେ । ଥୋକେ ବୋଲନ୍ତି ହାଟେବାଟେ ॥
ପୋଡ଼ୁ ଏ ଆଣ୍ଟୁକୁଡ଼ୀ ମୁଖ । ଏହା ମୁଖ ପ୍ରଭାତେ ନ ଦେଖ ॥
ଏମନ୍ତ ବୋଲି ଥୋକେ ଲୋକ । ଠିଆ ନ ହୋନ୍ତି ମୋର ପାଖ ॥
ଥୋକାଏ କଥା ନ କହନ୍ତି । ଦେଖିଲେ ମଥା ପୋତି ଯାନ୍ତି ॥
ଏଣୁ ମୋ ହୃଦୟ ଆକୁଳ । ଖଣ୍ଡିଲେ ନାହିଁ ଆଦିମୂଳ ॥

ଆମ୍ଭ ଭଗ୍ୟରେ ପୁତ୍ର ନାହିଁ । ଲୋଡ଼ିଲେ ପାଇବା ତା କାହିଁ ॥
ଏଥିକୁ ବ୍ରାହ୍ମଣ କୁମର । ଗୋଟିଏ ବଶ୍ୟ ବ୍ରତ କର ॥
ନୋହିଲେ ଆପଣା କୁଳରୁ । ଅତ୍ୟନ୍ତ ଦରିଦ୍ରର ଘରୁ ॥
କାଞ୍ଚ ଦେଇଣ ତାକୁ ବିତ୍ତ । କିଣି ଯେ ଆଣ ଏକ ସୁତ ॥
ପାଳିବା ପୁତ୍ରସମ କରି । ଏ ଭବ ଜଳୁ ହେବା ପାରି ॥
ତଳିବା ପର ଅପବାଦୁଁ । ସର୍ବେ ବୋଲିବେ ସାଧୁ ସାଧୁ ॥
ମୋ ମନେ ଯୋଗାଇ ଏ କଥା । ତା ଶୁଣି ବୋଲେ ନିଜ ଭର୍ତ୍ତା ॥
ନିଶ୍ଚେ ଆଣିବା ଏକ ବାଳ । ପୁତ୍ର ସମାନେ ପ୍ରତିପାଳ ॥
ଏମନ୍ତ ବୋଲି ଚଳିଗଲା । ଶ୍ରୀ ପୁରୁଷୋତ୍ତମେ ମିଳିଲା ॥
ପ୍ରବେଶ ରୂପକାର ଘରେ । କାଞ୍ଚନ ଧନ ଦେଇ ତାରେ ॥
ସର୍ବ ଲକ୍ଷଣ ପୂର୍ଣ୍ଣ ଜାଣି । କୃଷ୍ଣ ପ୍ରତିମା ଗୋଟି ଆଣି ॥
ତା ପତ୍ନୀ ଆଗେ ଥୋଇଦେଲା । ଶୁଣ ସଖି ସମ୍ଭାଳ ବୋଇଲା ॥
ଏହିଟି ଗତି ମୁକ୍ତିଦାତା । ଏହିଟି ଜୀବର କରତା ॥
ଏହାକୁ ପୁତ୍ର ବୁଦ୍ଧି କର । ଯଶୋଦା ଦେଖି ଗଲେ ତର ॥
ବ୍ରହ୍ମାଦି ସର୍ବ ଦେବଗଣେ । ଏହାକୁ ଭଜୁଥାନ୍ତି ମନେ ॥
ଏ ପ୍ରଭୁ ବିନା ଅନ୍ୟ ଜଣେ । ନାହିଁ ଜୀବନ ଉଦ୍ଧାରଣେ ॥
ଏଣୁ କେବଳ ହୃଦଗତେ । ବିଶ୍ୱାସେ ସେବ ଏକଚିତ୍ତେ ॥
ଯାହା ବାଞ୍ଛୁ ତୋର ମନ । ତାହା କରିବେ ଏହ୍ନ ପୂର୍ଣ୍ଣ ॥
ତା ଶୁଣି ଆନନ୍ଦ ସୁନ୍ଦରୀ । କୃଷ୍ଣ ପ୍ରତିମା ଗୋଟି ଧରି ॥
ସ୍ନାନ ମାର୍ଜନା କରାଇଲେ । ଦିବ୍ୟ ଆସନେ ବସାଇଲେ ॥
ଉତ୍ତମ ସର କ୍ଷୀର ପାନ । କୃଷ୍ଣଙ୍କୁ କଲା ନିବେଦନ ॥
ବଡ଼ିର କଲା ତାର ମନେ । ପୁତ୍ର ପାଇଲି ଏତେଦିନେ ॥
ଏହାଙ୍କୁ ପୁତ୍ର ଭାବେ ମଣି । ସୁଖେ ତରିବୁଁ ବେନି ପ୍ରାଣୀ ॥
ଏମନ୍ତ ବୋଲି ଆଦିକନ୍ଦ । ସେବଣ ହୋଇଲେ ଆନନ୍ଦ ॥
ପୁତ୍ର ପରିଯ୍ୟେ ନିରନ୍ତରେ । ତଇଳ କୁଙ୍କୁମ ଅଙ୍ଗରେ ॥



ଗଙ୍ଗାଧର ଦାସଙ୍କ ସ୍ତ୍ରୀ ତାଙ୍କ ସ୍ୱାମୀଙ୍କ ଶବ ସହିତ ଅଗ୍ନିକୁ ଡେଇଁବାକୁ ଯାଉଥିବା ବେଳେ ଭଗବାନ ସେ ଦୁହିଁଙ୍କୁ ରଥରେ ବସାଇ ସ୍ୱର୍ଗକୁ ନେଇଗଲେ ।

ମର୍ଦ୍ଦନ କରି ନିତ ନିତ । ସ୍ନାହାନ ମାର୍ଜ୍ଜନ କରନ୍ତି ॥
କର୍ପୂର ଚନ୍ଦନ ସହିତେ । ସର୍ବାଙ୍ଗେ ଲେପୁଥାନ୍ତି ନିତ୍ୟେ ॥
ନାନା କୁସୁମେ ବେଶକରି । ନାନାନ୍ଦ ଅଲଙ୍କାର ଭରି ॥
ବାଳକଠାରେ ସ୍ନେହ ଯେତେ । ସେହି ପ୍ରକାରେ ସ୍ନେହ ଶତେ ॥
କେତେ ଅପୂର୍ବ ଦ୍ରବ୍ୟମାନ । କୃଷ୍ଣଙ୍କୁ କରି ନିବେଦନ ॥
ପରେ ଭୁଞ୍ଜନ୍ତି ବେନିପ୍ରାଣୀ । ନୋହିଲେ ନ ଛୁଅନ୍ତି ପାଣି ॥
କେନ୍ଦୁ କଇଥ ବରକୋଳି । ପଣସ ଶ୍ରୀଫଳ କଦଳୀ ॥
ଗ୍ରାମକୁ ଯେତେ ବିକା ଆସେ । କିଣି ଦିଅନ୍ତି ପୁଅ ପାଶେ ॥
ଆବର ଯେତେ ବଣିଜାର । ପିଅର ଗଲେ ଦେଶ ପୁର ॥
ଯେ ବା ଅପୂର୍ବ ଦ୍ରବ୍ୟମାନ । ବନ୍ଧୁ ସେ ଆଣେ ଶ୍ରଦ୍ଧାମନ ॥
ଆଣଇ ଅତି ଶ୍ରଦ୍ଧାଚିତ୍ତେ । ପୁଅକୁ ଦେବାର ନିମନ୍ତେ ॥
ପ୍ରବେଶ ହେଲକ୍ଷଣି ଘରେ । ଦିଅଇ ନେଇ ପୁଅ କରେ ॥
ମାତାହିଁ ଅତି ସ୍ନେହଭରେ । ପୁଅକୁ ଧରି କୋଳ କରେ ॥
ଦଣ୍ଡେ ନ ଛାଡ଼େ ପୁଅ ପାଶ । ଗୃହ କାରିଜ ତାକୁ ବିଷ ॥
ଦଇବଯୋଗେ ସେ ଯୁବତୀ । ଯେବେ କରଇ ଗୃହକାର୍ଯ୍ୟି ॥
ନିରତେ ହୋଇ ଛନ ଛନ । ପୁଅେ ନିବେଶିଥାଇ ମନ ।୨୦।
ଦଣ୍ଡକେ ଆସୁଥାଇ ଦେଖି । ଦେଖିଲେ ହେଉଥାଇ ସୁଖୀ ॥
କେତେ ବେଳରେ କୋଳେ ଭିଡ଼ି । ବୋଲଇ ଯାଇଥିଲି ଛାଡ଼ି ॥
ମୁଁ ହୀନ ଅଲକ୍ଷଣୀ ମଲି । ତୋତେ ଏକାକୀ ଛାଡ଼ି ଗଲି ॥
ଏମନ୍ତ ବୋଲି ଚନ୍ଦ୍ରମୁଖେ । ଚୁମ୍ବନ ଦିଏ ଅତି ସୁଖେ ॥
ଏହି ପ୍ରକାରେ ସେ ଯୁବତୀ । ଭାବନା କରୁଥାଇ ନିତି ॥
କୃଷ୍ଣଙ୍କୁ ପୁଅ ପ୍ରାୟେ ମଣି । ଅନ୍ୟ ନ ଜାଣେ ସେ ତରୁଣୀ ॥
ତା ତହୁଁ ତାତ ଶତଗୁଣେ । କୃଷ୍ଣଙ୍କୁ ପୁଅ ପ୍ରାୟେ ମଣେ ॥
ଏମନ୍ତେ ଗଲା କେତେଦିନ । ଏଥି ଉତ୍ତରୁ ଶୁଣ ମନ ॥
ଦିନେକ ଗଙ୍ଗାଧର ଦାସ । କହିଲା ନିଜ ପତ୍ନୀ ପାଶ ॥

ଯାଉଛୁ ବାଣିଜ୍ୟ ନିମନ୍ତେ । ପୁତ୍ର ଲଗିଲି ଏକା ତୋତେ ॥
କ୍ଷଣେ ତୁ କେଣିକି ନ ଯିବୁ । ନିରତେ ପୁତ୍ର ପାଶେ ଥିବୁ ।୬୦।
ଏମନ୍ତ ବୋଲି ବେଗ କରି । ନାନାଦି କନ୍ଦୁଦ୍ରବ୍ୟ ଭରି ॥
ଜଣାଇ ପୁତ୍ରର ଅଗ୍ରତେ । ଚଳିଲା ବାଣିଜ୍ୟ ନିମନ୍ତେ ॥
ଶବ୍ଦ ନିବେଶି ପୁତ୍ରପାଶେ । ବୁଲି ବକିଲା ଦେଶେ ଦେଶେ ॥
ଏମନ୍ତେ ତିନି ଦିନ ଗଲା । ତାହାକୁ ତିନି ଯୁଗ ହେଲା ॥
ସୁତ ନ ଦେଖି ଛନ ଛନ । ବସି ସେ ଠୁଳ କଲା ଧନ ॥
ପୁତ୍ର ନିମନ୍ତେ ଯେ ଅପୂର୍ବ । କିଣି ଆଣିଲା ଭକ୍ଷ ଦ୍ରବ୍ୟ ॥
ଘେନି ଆନନ୍ଦେ ଚଳିଗଲା । ଗ୍ରାମ ନିକଟେ ଯାଇ ହେଲା ॥
ଦଇବେ ବୃଦ୍ଧ ଗଙ୍ଗାଧର । ଗୃଲନ୍ତେ ଅତି ଖରତର ॥
ପାଦ ଖସନ୍ତେ ସେ ପଡ଼ିଲା । ପଡ଼ିବା ଠାରେ ପ୍ରାଣ ଗଲା ॥
ଜୀବ ଯିବାର ବେଳେ ତାର । ଡାକିଲା ଆରେ କୃଷ୍ଣ ମୋର ॥
ଦେଖିଲି ନାହିଁ ତୋ ଶ୍ରୀମୁଖ । ମୁଁ ପାପୀ ବଡ଼ଇ ମୂରୁଖ ॥
ଏମନ୍ତ ବୋଲି ପୁଣ ପୁଣ । କୃଷ୍ଣ ସୁମରି ଗଲା ପ୍ରାଣ ॥
ତାହା ଦେଖିଣ ଗ୍ରାମଲୋକେ । ଧାଇଁଲେ ତାର ପତ୍ନୀପାଖେ ॥
ବୋଇଲେ ଶୁଣ ଆଗୋ ସଖି । ଅଇଲୁ ତୋ ପତିକି ଦେଖି ॥
ଗ୍ରାମ ବାହାରେ ଅଛି ଶୋଇ । ଦେଖିଲୁଁ ପିଣ୍ଡେ ପ୍ରାଣ ନାହିଁ ॥
ତାହା ଶୁଣିଣ ମହାସତୀ । ହୃଦ ପଦ୍ମରେ କଲା ଭିତ ॥
ଅତ୍ୟନ୍ତ ଶୋକଭର ହୋଇ । ମିଳିଲା ପୁତ୍ରପାଶେ ଯାଇ ॥
ଡାକିଲା ଆରେ କୃଷ୍ଣ ମୋର । ଅରକ୍ଷ ଲୋକଙ୍କ ସୋଦର ॥
ଦୀନ ବାନ୍ଧବ ଚିନ୍ତାମଣି । ଜଗନ୍ମୋହନ ବଂଶୀପାଣି ॥
କି ବୁଦ୍ଧି କରିବି ମୁଁ ଏବେ । ବାଟେ ତୋ ପିତା ମଲା ଯେବେ
ଏଥକୁ କହ ବୁଦ୍ଧି ମୋତେ । ହେ ପୁତ୍ର ପଚ୍ଚାରୁଛି ତୋତେ ॥
ତା ଶୁଣି ପ୍ରଭୁ ଚକ୍ରଧର । ଜଗତନାଥ ବିଶ୍ୱମ୍ଭର ॥
ବୈକୁଣ୍ଠ ବାସୀ ଅନ୍ତର୍ଯ୍ୟାମୀ । ଭକତ ଘବେ ଦେବ ସ୍ୱାମୀ ॥

ତକ୍ଷଣେ ହୋଇଲେ ବଜପ୍ସେ । ବୋଇଲେ ଶୁଣସି ଗୋ ମାଏ ॥
ତୁମ୍ଭେ କପାଇଁ ଚିନ୍ତା କର । ପଥ ଶ୍ରମରେ ପିତା ମୋର ॥
ନିଦ୍ରା ସେ ଯାଇଛନ୍ତି ସିନା । ତୁ ଯାଇ ତୋଳି ଆଣୁ କିନା ॥
ବୋଲିବୁ ଏକା ପୁତ୍ର ଛାଡ଼ି । କପା ଏଠାରେ ଅଛୁ ପଡ଼ି ॥
ବହନ ଉଠ ଘର ଯିବ । ପୁତ୍ର ଯେ ତେଣେ କାନ୍ଦୁଥିବ ॥
ଉଠାଇ ଘେନିଆସ ତାତ । ବହନ ଚଳିଯାଅ ମାତ ॥
ପୁତ୍ର ଶ୍ରୀମୁଖୁ ଏହା ଶୁଣି । ଅତି ଆନନ୍ଦେ ସେ ତରୁଣୀ ॥
ଚଳିଣ ଗଲା ଅତି ବେଗେ । ମିଳିଲା ନିଜ ସ୍ୱାମୀ ଆଗେ ॥
ଦେଖିଲା ପିଣ୍ଡେ ପ୍ରାଣ ନାହିଁ । ଅଙ୍ଗନେ ପଡ଼ିଣ ଅଛଇ ॥
ହସ୍ତ ଦେଇଣ ତାର ମାଥ । ବୋଇଲା ଉଠ ପ୍ରାଣନାଥ ॥
ଏକା ପୁତ୍ରକୁ ଛାଡ଼ି ମୁହିଁ । ଆସିଛି କେହି ସଙ୍ଗେ ନାହିଁ ॥
ଏବେ ବହନ ଯିବା ଚାଲ । ସେ ପୁ ସେବା ଆମ୍ଭ ମୂଳ ॥
ଏମନ୍ତ ବୋଲୁଁ ସେ ଯୁବତୀ । ପ୍ରାଣ ପାଇଲା ନିଜ ପତି ॥
ନିଦ୍ରୁଁ ଉଠିଲା ପ୍ରାୟ ହୋଇ । ଚକ୍ଷୁ ମେଲିଣ ଦେଲା ଚାହିଁ ॥
ପାଶ୍ୱେ ନିଜ ନାରୀ ଦେଖି । ବୋଇଲା ଶୁଣ ଆଗୋ ସଖି ॥
ତୁ କିମ୍ପା ଏଥକୁ ଅଇଲୁ । କହ ମୋ ପୁତ୍ରକୁ କି କଲୁ ॥
ଏହା କହନ୍ତେ ନିଜ ଭର୍ତ୍ତା । ନାରୀ କହିଲା ସବୁ କଥା ॥
ତହୁଁ ତୁରିତେ ବେନି ପ୍ରାଣୀ । ଚଳିଲେ କୃଷ୍ଣ ଗୁଣ ଗୁଣି ॥
ପ୍ରବେଶ ହେଲେ ନିଜ ପୁର । ଯାଇଣ ଶ୍ରୀକୃଷ୍ଣ ଛାମୁର ॥
ଯେ ବା ଅପୂର୍ବ ଦ୍ରବ୍ୟମାନ । ପୁତ୍ରରେ କରି ନିବେଦନ ॥
ଅତି ଆନନ୍ଦେ ଶିବ ଖେଳେ । ଚୁମ୍ବନ ଦେଲେ ଧରି କୋଳେ ॥
ଏକରୁ ଆରେକ ଛଡ଼ାଇ । ହୃଦରେ ଭିଡ଼ି ଚୁମ୍ବ ଦେଇ ॥
ଅତି ଆନନ୍ଦେ ପୁତ୍ର ନେଇ । ସେ ନିଜ ଆସନେ ବସାଇ ॥
ସେ ପତି ପତ୍ନୀ କୋଟି ଗୁଣେ । ସେବିଲେ ଶ୍ରୀକୃଷ୍ଣ ଚରଣେ ॥
ଏମନ୍ତେ ଦିବସ ଶେଷରେ । ରାତ୍ରି ଶୟନ ସମୟରେ ॥

ବୋଇଲା ଗଙ୍ଗାଧର ଦାସ । ହେ କୃଷ୍ଣ କମଳାବିଳାସ ॥
ଅଶେଷ ଜୀବର କରତା । ଚତୁର ବର୍ଗ ଫଳଦାତା ॥
ତୁମ୍ଭଙ୍କୁ ପୂଜ କରିପାଇ । ମୋ କଷ୍ଟ ନ ଗଲା କପାଇ ॥
ଏ ବୃଦ୍ଧକାଳେ ଗ୍ରାମ ଦେଶ । ବୁଲି ମୁଁ ନ ଗଲେ ଅବଶ୍ୟ ॥
ଭୋଜନ ନ ମିଳେ ଆମ୍ଭଙ୍କୁ । କେ ଅଛି ଆହା ବୋଲିବାକୁ ॥
ଏମନ୍ତ ବୋଲନ୍ତେ ପିଅର । ତାହା ଜାଣିଲେ ଚକ୍ରଧର ॥
ଶ୍ରୀକୃଷ୍ଣ ହୃଦଗତେ ବଚେ । ହସି ବୋଲନ୍ତି ଦେବରାଜେ ॥
ହେ ତାତ ମାତ ଏବେ ଶୁଣ । ଚିନ୍ତା କରିବା ଅକାରଣ ॥
ମୋ ପର ପୁତ୍ର ଥାଉଁ ଥାଉଁ । ଚିନ୍ତେ କାହାକୁ ଭୟ ଆଉ ॥
ଯାହା ବାଞ୍ଛନ୍ତି ତୁମ୍ଭ ମନ । ତାହା ମିଳିବ ସନ୍ନିଧାନ ॥
ଏ କଥା ଅଟଇ ପ୍ରମାଣ । ସଂଶୟ ନାହିଁ ଏଥେ ଜାଣ ॥
ଏବେ ତୋ ବାଞ୍ଛା ସିଦ୍ଧ ହେଉ । ତୋ ଘରେ ଧନ ପୂରିଥାଉ ॥
ଏମନ୍ତ ଆଜ୍ଞା ତାକୁ ଦେଇ । ମନୁଷ୍ୟ ମତେ ଭାବଗ୍ରାହୀ ॥
ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ । ପିଅର ଶୁଣି ଏ ବଚନ ॥
ଉଠି ଧାଇଁଲା ବେଗ ହୋଇ । ଦେଖିଲା ପୁତ୍ର ଘରେ ନାହିଁ ॥
ତକ୍ଷଣେ ଦେଖିଲା ଭୁବନ । ପୂରି ଅଛଇ ବହୁଧନ ॥
ପୁତ୍ରକୁ ନ ଦେଖି ନୟନେ । ବଡ଼ୁର କଲା ତାର ମନେ ॥
ଯେ ହରି ବାଞ୍ଛା କଳ୍ପତରୁ । ଯାହା ମହିମା ମହାମେରୁ ॥
ଭକତ ଜନେ ଦୟା ତାର । କିସ ହୋଇବ ଧନ ଛାର ॥
ବାଞ୍ଛିଲି ବାଞ୍ଛାଫଳ ପାଇ । ଅଧିକେ ପ୍ରୟୋଜନ ନାହିଁ ॥
ମୁଁ ମୂଢ଼ ମନ୍ଦକୃତ୍ୟ କଲି । ଧନର ଲୋଭେ ନାଶ ଗଲି ॥
କୃଷ୍ଣଙ୍କୁ ହରାଇଲି ମୋର । କିସ କରିବ ଧନ ଛାର ॥
ଏମନ୍ତେ ପ୍ରଭୁ ଗୁଣ ଗୁଣି । ରୋଦନ କଲେ ବେନି ପ୍ରାଣୀ ॥
ଆହା ଶ୍ରୀକୃଷ୍ଣ କାହିଁ ଗଲୁ । ଆମ୍ଭଙ୍କୁ ସଙ୍ଗତେ ନ ନେଲୁ ॥
ଆମ୍ଭଙ୍କୁ ପଛେ ପକାଇ । ଛାଡ଼ି ଯିବାର ନ ଯୋଗାଇ ॥

ଭୂମ୍ବର ବିନା ପାପୀ ଜୀବ । ଥାଇଣ କି ଭୋଗ କରିବ ॥
ଥାଇ ନ ଥାଇ ଏ ଜୀବନ । ଯେବେ ଗ୍ଭଡ଼ିଲ ମୋ ନନ୍ଦନ ॥
ଏମନ୍ତ ବୋଲି ଗଙ୍ଗାଧର । କୃଷ୍ଣ ସୁମରି ଶତେ ବାର ॥
ପ୍ରାଣ ଗ୍ଭଡ଼ିଲ ଈବଦେ଼ଲେ । ତା ଦେଖି ପତ୍ନୀ ଧରି କୋଳେ
ବୋଇଲି ଧିକ ଏ ଜୀବନ । ଯେବେ ଗ୍ଭଡ଼ିଲ ମୋ ନନ୍ଦନ ॥
ଆବର ଗଲେ ପତି ମୋର । କୃଷ୍ଣ ସୁମରି ଶତେ ବାର ॥
ପତି ପୁତ୍ର ହେଲେ ଅନ୍ତର । ଆଉ କି ପ୍ରୟୋଜନ ମୋର ॥
ଏ ଜୀବ ଥିବା କି କାରଣ । ଯିବଇଁ ସ୍ୱାମୀର ସଙ୍ଗେଣ ॥
ଯୁବତୀମାନଙ୍କର ଧର୍ମ । କରିବ ଉଚିତ ଯେ କର୍ମ ॥
ଅନଳ ଜାଳି ପତି ସଙ୍ଗେ । ପଶିବ ତହିଁ ମଧ୍ୟେ ବେଗେ ॥
ଏମନ୍ତ ବିଗ୍ଭରୁ ସୁନ୍ଦରୀ । ତକ୍ଷଣେ ପାଷ୍ଟିଲ ଶରୀରୀ ॥
ଦିବସ ଦେଖି ସେ ଯୁବତୀ । ଯେତେକ ଧନ ତା ସମ୍ପତ୍ତି ॥
ହରି କୃପାରୁ ହୋଇଥିଲି । ଅନେକ ବିପ୍ର ହସ୍ତେ ଦେଲି ॥
ଦୁଃଖୀ ଦରିଦ୍ର ସାଧୁଜନେ । ଧନ ଯେ ଦେଲି ଶୁଦ୍ଧମନେ ॥
ଯେତେକ ବିତ୍ତ ତାର ଥିଲି । ରେଣୁ ପ୍ରମାଣେ ନ ରଖିଲି ॥
ସକଳ ଧନ ଦେଲି ସାରି । ସ୍ୱାମୀକି ସଙ୍ଗତରେ ଧରି ॥
ନାନା ଉତ୍ସବ କରାଇଲି । ଗ୍ରାମ ବାହାରେ ଚଳିଗଲି ॥
ଚନ୍ଦନ କାଷ୍ଠେ ଅଗ୍ନି ଜାଳି । ଅନେକ ଘୃତ ତହିଁ ଢାଳି ॥
ଘୃତ ଭୃଣାଦି ଛଣ ସୂତ୍ର । ପାଇ ଜଳିଲି ବାଡ଼ହୋତ୍ର ॥
ଅତି ପ୍ରଖର ଶତାନଳ । ଘୋଟିଲି ଗଗନ ମଣ୍ଡଳ ॥
ସେ ମହା ଅଗ୍ନି ତେଜ ପାଇ । ପାଶ୍ଚେ ରହି ନ ହୁଅଇ ॥
ଏମନ୍ତ ସମୟରେ ନାରୀ । ଯେ ବିଧିମତେ ସ୍ନାନ କରି ॥
ଅନେକ ମତେ ସଜ ହୋଇ । ମୁଖେ ଶ୍ରୀହରି ନାମ ଗାଇ ॥
ପତିକି ଘେନି ଅତି ତୋଷେ । ମିଳିଲି ଅଗ୍ନିକୁଣ୍ଡ ପାଶେ ॥
ବୋଇଲି ନମୋ ବୈଶ୍ୱାନର । ନମସ୍ତେ ଚନ୍ଦ୍ର ଦିବାକର ॥

ନମସ୍ତେ ଦଶଦିଗପାଳ । ନମୋ ବସୁଧା ଆଖଣ୍ଡଳ ॥
ନମୋ ବିଧାତା ହରିହର । ଅଶେଷ ବ୍ରହ୍ମାଣ୍ଡ ଠାକୁର ॥
ଶରଣ ଗଲି ରଖ ମୋତେ । ମୁଁ ଯିବି ସ୍ୱାମୀର ସଙ୍ଗତେ ॥
ଅନଳ ମଧ୍ୟେ ଦେବି ଝାସ । ନ ଲାଗୁ ଆତ୍ମହତ୍ୟା ଦୋଷ ॥
ଏମନ୍ତ ବୋଲି ଧାଡକାରେ । ପତି କି ଘେନି ସଙ୍ଗତରେ ॥
ବୈକୁଣ୍ଠପୁର ଅନୁସରି । ଛୁଟନ୍ତି ଶ୍ରୀକୃଷ୍ଣ ନାମ ଧରି ॥
ସମସ୍ତେ ଦେଖୁ ଦେଖୁ ତହିଁ । ଅନଳେ ପଡ଼ିଲେକ ଡେଇଁ ॥
ଏମନ୍ତ ସମୟରେ ପୁଣ । ଲକ୍ଷ୍ମୀ ସହିତେ ନାରାୟଣ ॥
ତାରେ କରୁଣା କଲେ ଆସି । ଅନଳ କୁଣ୍ଡ ମଧ୍ୟେ ପଶି ॥
ସେ ପତି ପତ୍ନୀ ପ୍ରାଣ ହରି । ରଥେ ବସାଇ ବେଗକରି ॥
ଅନଳୁ ହୋଇଲେ ବାହାର । ଶୁଭିଲା ଜୟ ଜୟକାର ॥
ଝଟକ ବିଦ୍ୟୁତ୍ ପ୍ରାୟେ ଦିଶି । ଗଗନ ମଧ୍ୟେ ଯାଇ ମିଶି ॥
ତାହା ଦେଖିଣ ସର୍ବ ନର । ଡାକିଲେ ଧନ୍ୟ ଗଙ୍ଗାଧର ॥
ଧନ୍ୟ ତୋ ପତ୍ନୀ ତୋର ଭାବ । ବ୍ରହ୍ମାଣ୍ଡ ମଧ୍ୟରେ ନ ଥିବ ॥
ଏମନ୍ତ ବୋଲି ଯେଝାମତେ । ପ୍ରଶଂସା କରି ଅପ୍ରମିତେ ॥
ଚଳିଣ ଗଲେ ଯେଝାପୁର । ଚିତ୍ତେ ଚିନ୍ତିଣ ଭାବ ତାର ॥
ଶୁଣ ସୁଜନେ ହେତୁ ଦେଇ । ଏ ଦାର୍ଢ୍ୟ ଭକତି ଅଟଇ ॥
ସୁଦୃଢ଼ ଚିତ୍ତେ ଯେଉଁ ଜନ । କରନ୍ତି ଶ୍ରବଣ ପଠନ ॥
ଜନ୍ମ ମରଣ ବାଧା ନାହିଁ । ବସିବେ ବିଷ୍ଣୁ ଲୋକେ ଯାଇ ॥
ଏ ମନ ଚୈତନ୍ୟ ସମ୍ବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥
ବୋଲଇ ବିପ୍ର ରାମଦାସ । ମୂଳଟି ଅଟଇ ବିଶ୍ୱାସ ॥
ବିଶ୍ୱାସ ବିନା କର୍ମ ଯେତେ । ଫଳ ନ ଫଳେ କଦାଚିତେ ॥
ଏଣୁ ଶ୍ରୀ ହରିପଦ୍ମ ପାଦେ । ମୋ ଚିତ୍ତ ରହୁ ଅପ୍ରମାଦେ ॥
ସାଧୁଜନଙ୍କ ପାଦଧୂଳି । ନିରତେ ପଡ଼ୁ ମୋ ମଉଳି ॥
ଏ ଜୀବ ଯିବାବେଳେ ଏକା । ସାଧ ଶ୍ରୀକୃଷ୍ଣ ତୁହେଁ ସଖା ॥



ଜଗନ୍ନାଥ ବିପ୍ରରୂପରେ ଆସି ବନ୍ଧୁ ମହାନ୍ତିଙ୍କୁ ତାଙ୍କ ସମସ୍ତ ଖାଦ୍ୟଦ୍ରବ୍ୟ ରତ୍ନ ଥାଳୀରେ ଦେଉଛନ୍ତି

ସୁଜନେ ଏହି ରସେ ରସ । ଏ ଭବଜଳରେ ନ ଭସ ॥

ଇତି ଶ୍ରୀଦାର୍ଢ୍ୟଭକ୍ତିରସାମୃତେ ମନଚୈତନ୍ୟ ସମ୍ବାଦେ
ଗଙ୍ଗାଧର ଦାସ ପତିପତ୍ନୀ ମୋକ୍ଷଣେ ନାମ
ଦ୍ୱାଦଶୋଽଧ୍ୟାୟଃ ।

—*—

## ତ୍ରୟୋଦଶ ଅଧ୍ୟାୟ

### ବନ୍ଧୁ ମହାନ୍ତ ସମ୍ବାଦ
### ଚୈତନ୍ୟ ଉବାଚ

ହେ ମନ ଶୁଣ ଦିବ୍ୟରସ । ପ୍ରଭୁଙ୍କ ମହିମା ଅଶେଷ ॥
ଯେ ସାଧୁଜନଙ୍କ ମହିମା । କେ କହି ପାରେ ତାର ସୀମା ॥
ଯାଜପୁରରେ ତାର ଘର । ବନ୍ଧୁ ମହାନ୍ତ ନାମ ତାର ॥
ଜାତିରେ ଅଟଇ କରଣ । ତାର କୁଟୁମ୍ବ ପାଞ୍ଚଜଣ ॥
ବେନି ଦୁହିତା ଏକ ସୁତ । ପତ୍ନୀ ତା ସ୍ୱାମୀରେ ଭକତ ॥
ଏମନ୍ତେ ପାଞ୍ଚଜଣ ଥାନ୍ତି । କରି ଯାଚକ ପଣ ନିତି ॥
ଦେଶ ବଦେଶ ବୁଲିଯାନ୍ତି । ପ୍ରବାସୀ କୁଟୁମ୍ବ ପୋଷନ୍ତି ॥
ଏକ ଦିନରୁ ଆରଦିନ । ଘରେ ତା ନ ଥାଇ ଭୋଜନ ॥
ସର୍ବଦା ସଦାନନ୍ଦମୟେ । ଦୁଃଖକୁ ଶୋଚନା ନ ଥାଏ ॥
ଏଣୁ ଶ୍ରୀହରି ପାଦେ ମତି । ନିରତେ ସାଧୁଜନେ ପ୍ରୀତି ॥
ପ୍ରଭୁ ମହିମା ଗୁଣମାନ । ନିରତେ ରଟଇ ବଦନ ॥
କର୍ଣ୍ଣରେ ଶୁଣି ହୃଦେ ଚିନ୍ତ । ଏଣୁ ଆନନ୍ଦ ତାର ମତ ॥
ସକଳ ଜୀବେ ତାର ଦୟା । ବାନ୍ଧବ ଜନେ ସେ ନିର୍ମାୟା ॥
ହରି ଭକତେ ମହାଭୟ । ସତ୍ୟ ଧାର୍ମିକ ବିପ୍ରପ୍ରିୟ ॥
ସଂସାର କର୍ମେ ସେ ଉଦାର । ଜାଣଇ ନାମ ଏକ ସାର ॥
ସତ୍ୟରେ ଭଜୁଥାଇ ମୁଖେ । ଦିନ ବଞ୍ଚଇ ଦୁଃଖ ସୁଖେ ॥

ଏମନ୍ତେ କେତେଦିନ ଗଲା । ଦଇବେ କାନ୍ତାର ପଡ଼ିଲା ॥
ପ୍ରାଣୀଙ୍କି ନ ମିଳେ ଭୋଜନ । ଦୁର୍ଭିକ୍ଷେ ମଲେ ବହୁଜନ ॥
ଯହୁଁ ଦେଖିଲେ କୁଡ଼ କୁଡ଼ । ହୋଇଣ ପଡ଼ିଲେକ ମଡ଼ ॥
ସକଳ ଦେଶେ ଡକା ବୋବା । ଆଜ କେ ଅନ୍ନ ଦେବ ଅବା ॥
ବନ୍ଧୁ ମହାନ୍ତ ନାନା ମତେ । ବୁଲିଣ ଗ୍ରାମ ପାଞ୍ଚ ସାତେ ॥
କାହିଁ ସେ କିଛି ନ ପାଇଲା । ନିରାଶେ ଲେଉଟି ଅଇଲା ॥
ବସିଲା ନିଜ ପୁରେ ଯାଇ । ଚିନ୍ତଇ ପ୍ରଭୁ ଭବଗ୍ରାହୀ ॥
ଏହି ସମୟେ ପତ୍ନୀ ତାର । କହିଲା ପତିର ଛାମୁର ॥
ବୋଲଇ ଶୁଣ ପ୍ରାଣନାଥ । ବାଳକେ ହୋଇଲେ ଅନାଥ ॥
ପୁତ୍ର ଦୁହିତା ଅସମ୍ଭାଳ । ଭୋଜନ ନ ପାଇ ଆକୁଳ ॥
ଯେତେ କଙ୍କାଳ ମୋତେ କରି । କେ ସହୁ ମାତା ଦେହ ଧରି ॥
ଏଥକୁ କହ କି ବିଚାର । କି ବୁଦ୍ଧି କରିବା ଏଥର ॥
ମୋହର ସଖା ସାହା ନାହିଁ । ଦାଦି ମଉଳା ବାପ ଭାଇ ॥
ତୁମ୍ଭର ବନ୍ଧୁ ଇଷ୍ଟ ଘର । ପ୍ରୀତି ମଇତ୍ର ସହୋଦର ॥
ଥିଲେ ନିକଟେ ଦୂରଦେଶେ । ଗୃହ ହୋ ଯିବା ତାଙ୍କ ପାଶେ ॥
କରିଣ ନାନାମତେ ସେବା । ଏ କାଳ କାନ୍ତାର ବଞ୍ଚିବା ॥
ତା ଶୁଣି ବୋଲେ ନିଜ ପତି । ମୋ ବାଣୀ ଶୁଣ ରେ ଯୁବତୀ ॥
ତୁ ଯାହା ପଚାରିଲୁ ମୋତେ । ମୁଁ ଏବେ କହୁଅଛି ତୋତେ ॥
ବନ୍ଧୁ ସୋଦର ମୋର ନାହିଁ । ମୁଁ ବଡ଼ ଅନାଥ ଅଟଇ ॥
ଏକା ମୋ ବନ୍ଧୁ ଜଣେ ଅଛି । ବହୁତ ଦୂରରେ ରହିଛି ॥
ଏଠାରୁ ଦକ୍ଷିଣ ଠାରେ । ଘର କରିଛି କ୍ଷେତ୍ରବରେ ॥
ପୁରୁଷମାନଙ୍କ ଉତ୍ତମ । କେହି ନାହାନ୍ତି ତାଙ୍କୁ ସମ ॥
ଆବର ଭାଗ୍ୟବନ୍ତ ପଣେ । ବ୍ରହ୍ମାଣ୍ଡେ ନାହିଁ ଅନ୍ୟଜଣେ ॥
ଯାଇ ପାରିଲେ ତାଙ୍କ ପାଏ । ଦୁଃଖେ ବା ଛାଡ଼ିବ ଥୋକାଏ ॥
ତା ଶୁଣି ଆନନ୍ଦ ସୁନ୍ଦରୀ । କହଇ ସ୍ୱାମୀ କର ଧରି ॥

ହେ ନାଥ ମୋର ବୋଲ କର । ପୁତ୍ର ଗୋଟିକ ତୁମ୍ଭେ ଧର ॥
ଏକ ଦୁହିତା ମୋ'ର ସଙ୍ଗେ । ଆରେକ ଚଳାଇବା ଆଗେ ॥
ଘରେ ପଦାର୍ଥ ଅଛି ଯେତେ । ପଣନ୍ତେ ବାନ୍ଧବଅ ମୋତେ ॥
ବହନ ହୋଇ ଚାଲ ଯିବା । ନୋହିଲେ ସମସ୍ତେ ମରିବା ॥
ପତ୍ନୀ ମୁଖରୁ ଏହା ଶୁଣି । ବନ୍ଧୁ ମହାନ୍ତି ମନେ ଗୁଣି ॥
ନେତ୍ର ପବିତ୍ର ହେଲା ମୋର । ଦେଖିବ ବ୍ରହ୍ମାଣ୍ଡ ଠାକୁର ॥
ଶ୍ରୀ ବଳଭଦ୍ରଦେବ ଦେଖି । ସଫଳ କରିବ ମୁଁ ଆଖି ॥
ଏମନ୍ତ ବିଚାରିଣ ଚିତ୍ତେ । ପୁତ୍ରକୁ ଧଇଲେ ତୁରିତେ ॥
ପତ୍ନୀ କହିଲା ଯେଉଁ ରୂପେ । ତାହାକୁ ଦେଲା ସେହିରୂପେ ॥
ପୁତ୍ରକୁ ବସାଇଣ କନ୍ଧେ । ଚଳିଲେ ପରମ ଆନନ୍ଦେ ॥
ପଥରେ ଗୃହଦାନ ରହି । ମିଳିଲେ କ୍ଷେତ୍ରବରେ ଯାଇଁ ॥
ପ୍ରବେଶ ସିଂହଦ୍ୱାରଠାର । ଦେଖିଲେ ବେତୁଆ ଅପାର ॥
ବନ୍ଦୁତ ହୋଇଛି ଆକଟ । ମାଛି ଗଳିବା ନାହିଁ ବାଟ ॥
ସେ ଦ୍ୱାରେ ପଶି ନ ପାରିଲେ । ଦୂରହୁଁ ରହି ଅନାଇଲେ ॥
ପତିତପାବନକୁ ଦେଖି । ସୁଫଳ କଲେ ଚର୍ମଆକ୍ଷି ॥
ତହୁଁ ଚଳିଲେ ଅତି ସୁଖେ । ମିଳିଲେ ଦକ୍ଷିଣର ପାଖେ ॥
ବସିଲେ ପେଜନଳାଠାରେ । ଯେ ଗୋରୁ ଗାଈଙ୍କ ସଙ୍ଗରେ ॥
ଦେଖି ତା ପତ୍ନୀ ବୋଲେ ତହିଁ । ଏଠାରେ ବସିଲ କପାଇଁ ॥
ଦେଖ ହେଉଛି ସନ୍ଧ୍ୟାକାଳ । ଅତି ଅନ୍ଧାର ବେଳୁଁବେଳ ॥
ବେଗେ ତୋ ବନ୍ଧୁଘର ଯିବା । ଭୁଞ୍ଜିଣ ଶରୀର ତୋଷିବା ॥
ଅନ୍ନ ନ ଦେଲେ ସେହୁ ପୁଣି । ମାଗିବା କାହୁଁ ପେଜ ପାଣି ॥
ଏମନ୍ତ ବୋଲନ୍ତେ ସୁନ୍ଦରୀ । ବାଳକ ମାତା ହାତ ଧରି ॥
. ହେ ମାତ ଲାଗୁଅଛି ଭୋକ । ଗଲାଣି ପ୍ରାଣ ବେଗେ ରଖ ॥
ତା ଶୁଣି ବନ୍ଧୁ କହେ ଧୀରେ । ପୁତ୍ର ଦୁହିତାଙ୍କ ଆଗରେ ॥
ଆଜ ଶୁଣିଲ ବାନ୍ଧୁଘର । ବହୁର ହେଉଛି ଅପାର ॥

ବନ୍ଧୁତ ଦେଖୁଁ ବନ୍ଧୁମାନେ । ଆସି ଅଛନ୍ତି ତା ଭୁବନେ ॥
ଦ୍ୱାରେ ବେତୁଆ ଜଗିଛନ୍ତି । ଭୂମି ସଙ୍ଗୋଳ ଗୁଡ଼ ଦ୍ୟନ୍ତି ॥
ଯେ ପେଲାପଣ କରି ଯାଇ । ମାଡ଼େ ତା ଜୀବନ ଉଡ଼ଇ ॥
ଏଥକୁ ବସ୍ତୁର ତୋ ମନେ । ଘରେ ବଞ୍ଚିବା ଏହିସ୍ଥାନେ ॥
ପେଜକୁଣ୍ଡରୁ ପେଜ ଆଣି । ଖାଇ ବସିବା ପାଞ୍ଚପ୍ରାଣୀ ॥
ରଜନୀ ପ୍ରଭାତରୁ ଯିବା । ଏକାନ୍ତେ ବନ୍ଧୁଙ୍କୁ ଭେଟିବା ॥
ସ୍ୱାମୁରେ ଜଣାଇବା ଦୁଃଖ । ବୋଲିବା ଆମ୍ଭ ପ୍ରାଣ ରଖ ॥
କେବଳ ଅନ୍ନ ବସ୍ତ୍ର ଦେଇ । ଏ କଥା ମନକୁ ଯୋଗାଇ ॥
ଶୁଣି ଯୁବତୀ ବୋଲେ ହେବ । ଆଣ ହୋ ପେଜ ପ୍ରାଣ ରଖୁ ॥
ବିପ୍ର ଚଳିଲା ଏହା ଶୁଣି । ଛିଡ଼ା କୁଡୁଆ ଗୋଟି ଆଣି ॥
ସେ ପେଜ କୁଣ୍ଡରେ ବୁଡ଼ାଇ । ପତ୍ନୀକି ଦିଅଇ ବଢ଼ାଇ ॥
ପୁତ୍ର ଦୁହିତା ପତ୍ନୀ ଆଗେ । ପେଜ ପିଇଲେ କ୍ଷୁଧା ଘରେ ॥
ଉଦର ଭରି ସୁସ୍ଥ ହୋଇ । ପଡ଼ିଲେ ସେହିଠାରେ ଶୋଇ ॥
ଦାସୁ ମହାନ୍ତି ଅତି ତୋଷେ । ଲମ୍ଫ ଲଗାଇ ପ୍ରଭୁପାଶେ ॥
ବୋଇଲା ନମୋ ଦାନୁ ହରି । ଚର ଅଚରେ ଅଛ ପୂରି ॥
ସକଳ ଜୀବେ ପଡ଼ଦାତା । ତୁମ୍ଭେହୁଁ ନାହିଁ ନା କରତା ॥
ମୁଁ ଏଥୁଁ ନୁହଇ ବାହାର । ତୁ ନାଥ ଯାହା ଇଚ୍ଛାକର ॥
ପ୍ରଭୁ ଏଠାରେ କଲେ ହେଳା । ବୁଡ଼ିଲା ଚନ୍ଦ୍ରାକଳେ ଭେଳା ॥
କ୍ଷୁଧା ଅନଳେ ପାଞ୍ଚଜଣେ । ପୋଡ଼ି ମରୁଛୁ ଅକାରଣେ ॥
ତୋର କରୁଣାବାରି ଦେଇ । ଶୀତଳ କର ଭବଗ୍ରାହୀ ॥
ଏମନ୍ତ ବୋଲି ସ୍ତୁତି କଲା । ପଥଶ୍ରମରେ ନିଦ୍ରାଗଲା ॥
ଏଥି ଉତ୍ତାରୁ ଶୁଣ ମନ । ବଢ଼ିଲା ସେବା ପୂଜାମାନ ॥
ନିର୍ଦ୍ଧୂପ ପଞ୍ଚ ଅବକାଶ । ତଡ଼ାଉ ଲାଗି ଆଦି ବେଶ ॥
ବଡ଼ସିଂହାର ପୁଷ୍ପାଞ୍ଜଳି । ଶେଯାଇ ଖଟ ଶେଯ ତୁଳି ॥
ସକଳ ସେବା ବଢ଼ାଇଲେ । ଭଣ୍ଡାର ଘରେ ମୁଦ ଦେଲେ ॥

ଦୀପ ଦିହୁଡ଼ି ଧରି ଥୋକେ । ଦେଉଳ ଶୋଧିଲେ ସେବକେ
ସକଳ କବାଟ ପକାଇ । ସପ୍ତମ ଶାଙ୍କୋଳି ଲଗାଇ ॥
କଞ୍ଚି ପକାଇ କାଠି ଧରି । ଗଲେ ଭଣ୍ଡାର ଅଧିକାରୀ ॥
ଆଉ ସେବକେଯେତେ ଥିଲେ । ଯେ ଯାହାପୁରେ ଚଳିଗଲେ ॥
ଏଥି ଉତ୍ତାରୁ ଶୁଣ ଶିବ । ଯେ ପ୍ରଭୁ କମଳା ବଲ୍ଲଭ ॥
ସକଳ ଜୀବ ଚିନ୍ତାମଣି । ଦୀନବାନ୍ଧବ ଚକ୍ରପାଣି ॥
ଅଶେଷ ବ୍ରହ୍ମାଣ୍ଡ କରତା । ଲାଗିଲା ମନେ ଭୃତ୍ୟ ଚିନ୍ତା ॥
ହୋଇ ଅତ୍ୟନ୍ତ ଛନ ଛନ । ଦେଉଳେ ବିଜେ ଭଗବାନ ॥
ଭଣ୍ଡାରଘରୁ ରତ୍ନଥାଳୀ । ବେଗେ ଧଇଲେ ବନମାଳୀ ॥
ତହିଁ ପୂରାଇ ଶାଳୀଅନ୍ନ । ନାନାଦି ପ୍ରକାର ବ୍ୟଞ୍ଜନ ॥
ଆବର ଅମାଲୁ ଯେ ଗଜା । ନାଡ଼ୁ ପାପୁଡ଼ି ଭୋଗ ଖଜା ॥
ଯେ କାନ୍ତି କାକରା ଆରିସା । ଘୃତରେ ହୋଇଅଛି ମିଶା ॥
କ୍ଷିରି ଖେଚଡ଼ି ସରପଣା । ଧରି ଚଳିଲେ ଜଗକ୍କିଶା ॥
ରାତ୍ର ହୋଇଛି ଘଡ଼ି ସାତ । ଦକ୍ଷିଣ ଦ୍ୱାରେ ଉପଗତ ॥
ଡାକିଲେ ବନ୍ଧୁନାମ ଧରି । ତା ଶୁଣି ବନ୍ଧୁ ହେତୁ କରି ॥
ବୋଇଲା ଶୁଣ ଆଗୋ ସହି । ଏ କ୍ଷେତ୍ରେ କେତେ ବନ୍ଧୁ ନାହିଁ
କେ ଅବା କାହାକୁ ଡାକୁଛି । ମୁଁ କିମ୍ପା ଯିବ ଗୋ ମୃଗାକ୍ଷି ॥
ଏମନ୍ତ ବୋଲି ତୁନି ହୋନ୍ତେ । ପୁଣି ଡାକିଲେ ଜଗନ୍ନାଥେ ॥
ଆଣ୍ଟେ ଡାକିଲେ ନାରାୟଣ । ଯାଜପୁରିଆ ବନ୍ଧୁ ଶୁଣ ॥
କୁଟୁମ୍ବ ଘେନି ସଙ୍ଗତରେ । ରହିଛୁ ପେଜନଳାଠାରେ ॥
ବହନ ହୋଇ ଆସ ପାଶ । ଡାକୁଛି ଧରି ମୁହିଁ ଗ୍ରାସ ॥
ତା ଶୁଣି ବନ୍ଧୁ ଅତି ତୋଷେ । ଯାଇଁ ମିଳିଲା ପ୍ରଭୁପାଶେ ॥
ବିପ୍ର ସ୍ୱରୂପ ଗୋଟି ଧରି । ବଢ଼ାଇ ଦେଲେ ଅନ୍ନଥାଳୀ ॥
ବୋଇଲେ ଭୁଞ୍ଜ ସୁସ୍ଥ ହୋଇ । କାଲି ସକାଳୁ ତୋତେ ମୁହିଁ ॥
ଖଞ୍ଜିବି ଅନ୍ନବସ୍ତ୍ର ଯେତେ । ଚିନ୍ତା ନକର ତୁମ୍ଭେ ଚିତ୍ତେ ॥

ଏମନ୍ତ କହି ଭଗବାନ । ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ ॥
ବନ୍ଧୁ ସେ ଅନ୍ନ ଘେନିଗଲେ । କୁଟୁମ୍ବଙ୍କ ଉଠାଇଲେ ॥
ଅନ୍ନ ସେ ଥୋଇ ମଧ୍ୟଗତେ । ବେଢ଼ଣ ବସିଲେ ସମସ୍ତେ ॥
ପଞ୍ଚ ଦୁହିତା ସେ ନନ୍ଦନ । ସମସ୍ତେ କଲେକ ଭୋଜନ ॥
ଉଦର ଭରି ସୁସ୍ଥ ହୋଇ । ଥାଳୀ ଧରିଲା ବେଗ ହୋଇ ॥
କବାଟ ଧରି ଧୀରେ ପେଲି । ଡାକିଲେ ଥାଳୀ ନିଅ ବୋଲି ॥
କେତେହେଁ ବେଳ ଡାକ ଦେଲେ । କେ କେଣେ କେହି ନ ଶୁଣିଲେ
ନିରାଶ ହୋଇ ଧରି ଥାଳୀ । ବନ୍ଧୁ ଲେଉଟି ଗଲେ ଚଳି ॥
ତୁଣ୍ଡା କନାରେ ଗୁଡ଼ାଇଁ । ଥୋଇଲା ସୀମସ୍ଥାନେ ନେଇ ॥
ଏଥିଉତ୍ତାରୁ ନିଶି ଶେଷ । ଦିବସ ହୋଇଲା ପ୍ରବେଶ ॥
କାକ କୁକୁଟ ଦେଲେ ରାବ । ସଂସାର ଦିଶିଲା ସୁଲଭ ॥
ସେବକେ ଶୁଚିମନ୍ତ ହୋଇ । ଗଲେ ଶ୍ରୀହରି ସେବା ପାଇଁ ॥
କବାଟ ମେଲାଇ ପଶିଲେ । ଯେ ଯାହା ସେବାରେ ଲାଗିଲେ
ଭଣ୍ଡାର ଫିଟାଇଲେ ଯାଇ । ଦେଖିଲେ ରତ୍ନଥାଳୀ ନାହିଁ ॥
ସମସ୍ତେ ହୋଇଲେ ତାଟକା । ଦେଉଳେ ପଡ଼ିଲାକ ଡକା ॥
ଭଣ୍ଡାର ସୂପକାର ଧରି । ବାନ୍ଧିଲେ ଯୋଡ଼ ଯୋଡ଼ କରି ॥
ବାଜିଲା ବେତ ସେ ଅନେକ । ଧାଇଁଲେ ଗୃହଦେଗେ ଲୋକ ॥
ପ୍ରଭୁଙ୍କ ଘଟସୂତ୍ରମାନ । କେ ତାହା କରିପାରେ ଆନ ॥
ଦଇବ ଯୋଗେ ବନ୍ଧୁ ତାର । କୁଟୁମ୍ବ ଘେନି ସଙ୍ଗତର ॥
ଥୋଇଥିଲା ସୀମସ୍ଥାନେ ଦେଇ । ଲୋକେ ଦେଖିଲେ ତାହା ଯାଇ
ତୁଣ୍ଡା କନାରେ ରତ୍ନ ଥାଳୀ । ଫୁଟିଣ ଦିଶୁଥାଇ ଝଳି ॥
ଯୋଗେ ଅରୁଣ ତେଜ ପାଇ । ଅଧିକେ ତେଜ ବିରାଜଇ ॥
ବନ୍ଧୁ ମହାନ୍ତି ସୀମସ୍ଥାନେ । ଥାଳୀ ଦେଖିଲେ ଲୋକମାନେ
ବୋଇଲେ କାହିଁ ର ଏ ଚୋର । ପଳାଇଯିବ ବେଗେ ଧର ॥
ଏମନ୍ତ ବୋଲି ଜଣ ସାତେ । ବନ୍ଧୁକୁ ଧଇଲେ ଉଦ୍ଧତେ ॥

କର୍କଶ ବାଘେଣୀ ବାନ୍ଧିଲେ । ଥାଳୀ ଛଡ଼ାଇ ଘେନିଗଲେ ॥
ଅନେକ ମାଡ଼ହିଁ ମାଇଲେ । ପାଦେ ଶାଙ୍କୋଳି ଲଗାଇଲେ ॥
ତା ଶୁଣି ବନ୍ଧୁ ଯେ ବୋଲଇ । ମୋହର କିଛି ଦୋଷ ନାହିଁ ॥
ରାଜ ଯେ ଦଶଘଡ଼ିଠାରେ । ଦେଇଲୁଁ ଏକ ସ୍ୱପ୍ନବରେ ॥
ରତ୍ନ ଥାଳରେ ଅନ୍ନ ଭରି । ମୋତେ ଯେ ଦେଲେ ଡାକାକରି
ତା ତହୁଁ ଆଣିଲଇଁ ମୁହିଁ । କୁଟୁମ୍ବମାନ ସୁଖେ ଖାଇ ॥
ଥାଳୀ ଯେ ଲେଉଟାଇ ନେଲି । କେତେହେଁ ରୂପେ ମୁଁ ଡ଼ାକିଲି॥
କେତଣେଯେ ନ ଶୁଣିଲେକେହି । ଘେନି ଅଇଲି ଲେଉଟାଇ ॥
ଏଥିରେ କେଉଁଦୋଷ ମୋର । କହ କେମନ୍ତେ ହେଲି ଚୋର ॥
ବିନା ଦୋଷରେ ଦଣ୍ଡଦେଲେ । ବୁଝିବେ ମୋର ପ୍ରଭୁ ଥିଲେ ॥
ପନ୍ନୀ କହିଲେ ଏହିମତେ । କେହି ତା ନ ଗଲେ ପରତେ ॥
ବନ୍ଧୁକୁ ବାନ୍ଧି ଘେନିଗଲେ । ବନ୍ଦୀ ମନ୍ଦିରେ ବନ୍ଦ କଲେ ॥
ନାନାମତରେ ଦେଲେ ଗାଳି । ଯେ ଯାହା ମତେ ଗଲେଚଳି ॥
ବନ୍ଧୁ ରହିଲେ ବନ୍ଦୀଘରେ । ଚିତ୍ତ ନିବେଶି ପ୍ରଭୁଠାରେ ॥
ବୋଲେ ମୁଁ ପାପୀ ଅପରାଧୀ । ତୁମ୍ଭେ ଯେ କରୁଣା ବାରିଧି ॥
ବ୍ରହ୍ମାଣ୍ଡ ମଧ୍ୟେ ପାପୀଜନେ । ମୋ ପରି ନାହିଁ ଅନ୍ୟଜଣେ ॥
ତୋ ପରି ପତିତତାରଣ । ଅଛି କେ ବ୍ରହ୍ମାଣ୍ଡ ମଧ୍ୟେଣ ॥
ଏଣୁ ତୁ ଯାହା କଲେ କର । ଅନ୍ୟ ଶରଣ ନାହିଁ ମୋର ॥
ଏମନ୍ତ ବୋଲି ଭାବ ହୃଦ । ଚିନ୍ତିଲି ପ୍ରଭୁ ପଦ୍ମପାଦ ॥
ଏଥିଅନ୍ତରୁ ଦିନ ଶେଷ । ରଜନୀ ହୋଇଲା ପ୍ରବେଶ ॥
ପ୍ରଭୁଙ୍କ ନିତ୍ୟକର୍ମ ଯେତେ । ସେବକ ସାରିଲେ ଭରତେ ॥
ପଲଙ୍କେ ସୁପାତ ପକାଇ । ପ୍ରଭୁମାନଙ୍କୁ ପହୁଡ଼ାଇ ॥
ଦେଉଳ ବେଢ଼ା ନିଷେଧିଲେ । କବାଟ କିଳି ଚଳିଗଲେ ॥
ପ୍ରବେଶ ଯେ ଯାହା ଭବନ । ଏଥିଅନ୍ତରୁ ଶୁଣ ମନ ॥
ଯେ ପ୍ରଭୁ ଭୃତ୍ୟ ଚିନ୍ତାମଣି । ସର୍ବ ବ୍ୟାପିଛନ୍ତି ପୁଣି ॥

ପ୍ରଭୁ ପଣକୁ ଲୁଚପାଇ । ସେବକ ବେଦନା ନ ସହି ॥
ଦେବଙ୍କୁ ବଡେ ଜଗଜ୍ଜିତା । ଲାଗି ଅଛଇ ଭକ୍ତ ଚିନ୍ତା ॥
ତକ୍ଷଣେ ଗରୁଡ଼ ଆରୋହି । ଗଗନ ମାର୍ଗେ ଉଡ଼ଯାଇ ॥
ବଡେ ଖୋରଧା ରଥିପୁରେ । ପ୍ରତାପରୁଦ୍ରର ମନ୍ଦିରେ ॥
ଯେ ମହାରାଜ ନୃପସାଇଁ । ପଲଙ୍କେ ନିଦ୍ରା ଅଛି ଯାଇ ॥
ତାହାଙ୍କ ପାଶେ ଭାବଗ୍ରାହୀ । ବିଜୟ କଲେ ଭାବ ବହି ॥
ସ୍ୱପନ ମାର୍ଗେ ଆଜ୍ଞା ଦେଲେ । ଶୁଣରେ ରାଉତ ବୋଇଲେ ॥
ତୋ ଘରେ ବନ୍ଧୁ ଆସିଥାଇ । ସେ ନିକ ଉପବାସେ ଯାଇ ॥
ଇତର ଲୋକଙ୍କର ଘରେ । କୁଣିଆ ଯା ଏ କା ଭୋକରେ ॥
ତାହାର ଯାଜପୁରେ ଘର । କୁଟୁମ୍ବ ଧେନ ସଙ୍ଗତର ॥
ବନ୍ଧୁ ମୋ ଅତି ଶ୍ରଦ୍ଧାମନେ । ଆସି ଯେ ଥିଲା ମୋ ଭୁବନେ ॥
ତାଙ୍କୁ ଭୋଜନ ମୁହିଁ ଦେଲି । ତୋ ବାପ ଗଣ୍ଠି କା ନାଶିଲି ॥
ଯେ ରତ୍ନଥାଳୀଗୋଟି ମୋର । ଥିଲା ଯେ ତୋ ବନ୍ଧୁ ପାଶର ॥
ତାହାକୁ ଚୋର ଦୋଷ ଦେଇ । ଧଇଲେ ତୋର ଲୋକ ଯାଇ ॥
ନିବଡ଼େ ବାନ୍ଧି ପକାଇଲେ । ଅନେକ ମାଡ଼ହିଁ ମାଇଲେ ॥
ଚରଣେ ଶାଙ୍କୋଳି ଲଗାଇ । ରଖିଲେ ବନ୍ଦୀଘରେ ନେଇ ॥
ତା ଦେଖି କୁଟୁମ୍ବ ସକଳ । କେ କନ୍ଦୁ ତାହାଙ୍କ ବିକଳ ॥
ଏଣୁ ମୁଁ କହୁଅଛି ତୋତେ । କ୍ଷେତ୍ରକୁ ଯିବୁ ତୁ ତ୍ୱରିତେ ॥
ବନ୍ଧୁକୁ ବନ୍ଦୀରୁ ଫିଟାଇ । ଚରଣୁ ଶାଙ୍କୋଳି କଟାଇ ॥
ବିନୟ ହୋଇ ପାଦତଳେ । ସ୍ନାନ କରାଇ ତୀର୍ଥ ଜଳେ ॥
ପିନ୍ଧାଇ ସୁଝୀନ ଅମ୍ବର । ଖଞ୍ଜିବୁ ନାନା ଅଳଙ୍କାର ॥
ଦେଉଳେ ଖରଶୋଧା ପଣେ । ଶାଢ଼ୀ ଯେ ଦେବୁ ତୁ ଆପଣେ ॥
ବନ୍ଧୁର ପାଞ୍ଚି ମୋ ପ୍ରମାଣ । ଏ କଥା ସତ୍ୟବୋଲି ଜାଣ ॥
ଝିସି ଖେଚଡ଼ ପୁସି ଅନ୍ନ । ଜାଅନ୍ତେ ଦେବୁ ତୁ ଭୋଜନ ॥
ତେବେସେରାଜ୍ୟସୁଖେଥିବୁ । ନୋହିଲେ ନିଶ୍ଚେ ନାଶ ଯିବୁ ॥

ଆମ୍ଭେ ଟି ପ୍ରଭୁ ନାରାୟଣ । କହୁଅଛୁ ସାବଧାନେ ଶୁଣ ॥
ଏମନ୍ତ ବୋଲି ଗୁପ୍ତେ ମାର । ତକ୍ଷଣେ ଗଲେ ନରହର ॥
ପ୍ରବେଶ ହେଲେ ନୀଳାଚଳେ । ଏଣେ ଉଠିଲେ ମହୀପାଳେ ॥
ପ୍ରଭୁ ମହିମା ମନେ ଗୁଣି । ବାହାରେ ବଜେ ନୃପମଣି ॥
ପାତ୍ର ମନ୍ତ୍ରୀଙ୍କି ଡକାଇଲେ । ସକଳ ବୁଝାଇ କହିଲେ ॥
ତକ୍ଷଣେ ଦାଣ୍ଡୁଲାଗି ହୋଇ । ବିଜୟ କଲେ ନୃପସାଇଁ ॥
ଏଣେ ଯେ ଦଶଦଣ୍ଡଠାରେ । ବିଜୟ କଲେ ନୃପବରେ ॥
ବନ୍ଧୁ ପାଶକୁ ବେଗେ ଗଲେ । ବନ୍ଧନ ଫିଟାଅ ବୋଇଲେ ॥
ବନ୍ଧୁକୁ ନେଇ କଲେ କୋଳ । ହୃଦେ ଲଗାଇ ମହୀପାଳ ॥
ବୋଇଲେ ଧନ୍ୟ ମୋ ଜୀବନ । ଦେଖିଲି ତୋହର ବଦନ ॥
ଏମାନେଦୋଷକଲେଯେତେ । ସକଳ କ୍ଷମା ଦିଅ ମୋତେ ॥
ଏମନ୍ତ ବୋଲି ଭୁଜ ଧରି । ଶିରେ ଢାଳିଲେ ତୀର୍ଥବାରି ॥
ପିନ୍ଧାଇ ସୁକ୍ଷ୍ମ ବସନ । ଖଞ୍ଜିଲେ ଖଞ୍ଜା ବରତନ ॥
ଦେଉଳେ ଖର୍ଚ୍ଚଶୋଧାପଣେ । ପାଟ ବାନ୍ଧିଲେ ତତକ୍ଷଣେ ॥
କୁଟୁମ୍ବଯାକ ବନ୍ଧୁ ଥିଲେ । ଅନେକ ପରତୁଷ୍ଟ କଲେ ॥
ଦକ୍ଷିଣ ପାର୍ଶ୍ୱରେ ଘର । ତୋଳାଇ ଦେଲେ ନୃପବର ॥
ଭୋଗ ଖଞ୍ଜିଲେ ମହାରାଜେ । ଖୁଆଇ ପୁତ୍ର ନାତି ଯାଏ ॥
ବନ୍ଧୁକୁ ସୁଚିତ୍ତ କରାଇ । ପ୍ରଭୁ ଶ୍ରୀମୁଖକୁ ଦେଖାଇ ॥
ସକଳ ସମର୍ପିଣ ଦେଲେ । ନୃପତିବର ଚଳିଗଲେ ॥
ବନ୍ଧୁ ରହିଲେ ପ୍ରଭୁ ପାଶେ । ଅତ୍ୟନ୍ତ ମନର ହରଷେ ॥
କୁଟୁମ୍ବ ଘେନି ସଙ୍ଗତରେ । ଶ୍ରୀ ଜଗବନ୍ଧୁଙ୍କ ସେବାରେ ॥
ପରମ ଆନନ୍ଦେ ରହିଲେ । ମନକୁ ଚୈତନ୍ୟ କହିଲେ ॥
ଶୁଣ ସୁଜନେ ପ୍ରଭୁ ପଣ । ଭକ୍ତ ବତ୍ସଳ ଭଗବାନ ॥
କରନ୍ତି ଏତେଦୂର ଯାଏ । ଯେବା ବିଶ୍ୱାସ କରିଥାଏ ॥
ଭାବକୁ ନିକଟ ଗୋସାଇଁ । ଅଭାବ ଜନେ ଭେଟ ନାହିଁ ॥

ଏଣୁ ପାମର ରାମଦାସ । ଶରଣ କମଳା ବିଳାସ ॥
ବନ୍ଧୁମହାନ୍ତି ଗୀତରସ । ସୁଜନେ ଶୁଣି ହୁଅ ତୋଷ ॥
ଏ ଦାର୍ଢ୍ୟଭକ୍ତି ରସାମୃତ । କେବଳ ପ୍ରାଣୀକଷ୍ଟ ହତ ॥
ଯେ ଅବା ଶ୍ରଦ୍ଧାମନେ ଶୁଣେ । କି ଅବା ବଦନରେ ଗୁଣେ ॥
ତାର କଳୁଷ ଥିବ ଯେତେ । ରହିବ ନାହିଁ କଦାଚିତେ ॥
ସକଳ କର୍ମେ ଯଶ ହେବ । ଶମନ ସଦନେ ନ ଯିବ ॥
ଏ କଥା ଅଟଇ ପ୍ରମାଣ । ସକଳ ଶାସ୍ତ୍ରେ ଏହା ଶୁଣ ॥
ସାଧୁ ଶ୍ରୀକୃଷ୍ଣ କଥା ବିନେ । ଜୀବ ଉଦ୍ଧାର ନାହିଁ ଅନ୍ୟେ ॥
ଏଣୁ ପାମର ରାମଦାସ । ସାଧୁ ଶ୍ରୀକୃଷ୍ଣ ପାଦେ ଆଶ ॥
କରି ଚିନ୍ତଇ ନିଜମନେ । ଯାହା କରିବେ ସାଧୁମାନେ ॥

ଇତି ଶ୍ରୀଦାର୍ଢ୍ୟଭକ୍ତିରସାମୃତେ ମନଚୈତନ୍ୟ ସମ୍ବାଦେ
ବନ୍ଧୁ ମହାନ୍ତି ଦାର୍ଢ୍ୟଭାବ ବର୍ଣ୍ଣନେ ନାମ
ତ୍ରୟୋଦଶୋଽଧ୍ୟାୟଃ ।

---

# ଚତୁର୍ଦ୍ଦଶ ଅଧ୍ୟାୟ

ବଳରାମ ଦାସ ସମ୍ବାଦ
ଚୈତନ୍ୟ ଉବାଚ

ଶୁଣ ସୁଜନେ ଶୁଦ୍ଧଚିତ୍ତେ । ଯାହା ମୁଁ କହୁଅଛି ତୋତେ ॥
ଭକତଜନ ମଧ୍ୟେ ସାର । ମହିମା ଅପାରୁ ଅପାର ॥
ନାମ ତା ବଳରାମ ଦାସ । ମହନ୍ତ ସୋମନାଥ ଶିଷ୍ୟ ॥
ପୁରୁଷୋତ୍ତମେ ତାର ଘର । କୁଟୁମ୍ବ ଧନେ ସଙ୍ଗତର ॥
ଉତ୍ତମ ଜନେ ଆଶ୍ରେ କରି । ନିତି ବୁଲଇ ଭିକ୍ଷା କରି ॥
ଏମନ୍ତେ ବଞ୍ଚୁଥାନ୍ତି ଦିନ । ଶୋଚନା ନ ଥାଇ ତା ମନ ॥
ନିରତେ ହରିପାଦେ ଧ୍ୟାୟି । ଆନନ୍ଦେ ମତ୍ତ ହେଉଥାଇ ॥
ଗୋଟିଏ ନାମ ଯହୁଁ ଶୁଣେ । କୋଟିଏ ନିଧି ପ୍ରାପ୍ୟେ ମଣେ ॥

ସର୍ବଦା ହରିରସେ ରତେ । ଶ୍ରବଣେ ଶୁଣି ମୁଖେ ଘୋଷେ ॥
ବସଇ ସାଧୁଙ୍କ ସଙ୍ଗର । ସକଳ ଜୀବେ ଦୟା ତାର ॥
ଦାରୁବ୍ରହ୍ମ ସେବା ବଚନେ । ଅନ୍ୟ ନ ଜାଣେ ତାର ମନେ ॥
କେବଳ ପ୍ରକୃତ ବନ୍ଧରେ । ନିରତେ ଗମେ ବେଶ୍ୟାଘରେ ॥
ଚନ୍ଦ୍ରରେ କଳଙ୍କ ଯେସନ । ଅର୍ଜିଲ କଥା ନୋହେ ଆନ ॥
ପୂର୍ବ ଅର୍ଜିଲ କର୍ମଫଳେ । ନିରତେ ବେଶ୍ୟାଘରେ ଚଳେ ॥
ଏମନ୍ତେ କେତେ ଦିନ ଅନ୍ତେ । ଶୁଣ ସୁମନ ଶୁଦ୍ଧଚିତ୍ତେ ॥
ଆଷାଢ଼େ ଶ୍ରୀଗୁଣ୍ଡିଚା ଯାତ୍ରା । ନିର୍ମାଣ ହେଲା ତିନିରଥ ॥
ସୁଭଦ୍ରା ବଳଦେବ ଭୁଜେ । ପ୍ରଭୁ ସମ୍ଭ୍ରମେ ବିଜେକଲେ ॥
ଅସଂଖ୍ୟ ଜନଙ୍କର ହାତେ । ବିଜୟ ନନ୍ଦିଘୋଷ ରଥେ ॥
ନନ୍ଦିଘୋଷ ଚଳିବାରେ । ଆନନ୍ଦ କେ କହୁ ସଂସାରେ ॥
ଅନେକ ବାଦ୍ୟ ନାଦ ଶୁଣି । ଆନନ୍ଦ ହୋଇଲା ଧରଣୀ ॥
ଏମନ୍ତ ସମୟରେ ଶୁଣ । ଗଣିକା ମନ୍ଦିରେ ଯାଇଣ ॥
ଥିଲେ ହେ ବଳରାମ ଦାସେ । ମତ୍ତ ହୋଇଣ ବେଶ୍ୟାରସେ ॥
ଶ୍ରବଣେ ଶୁଣିଲେ ସେ ଧ୍ୱନି । ଶିରେ କରାଘାତ କରିବେନି ॥
ବୋଇଲେ ଧିକ ମୋ ଜୀବନ । ଅଜ୍ଞାନେ ବଞ୍ଚିଲି ମୁଁ ଦିନ ॥
ପ୍ରଭୁ ମୋ ରଥେ ବିଜେ କଲେ । ଶୋଇ ମୁଁ ଅଛି ବେଶ୍ୟା କୋଳେ ॥
ଏମନ୍ତ ବୋଲି ଗଲା ଧାଇଁ । ମିଳିଲା ପ୍ରଭୁପାଶେ ଯାଇ ॥
ଉଠିଲା ନନ୍ଦିଘୋଷ ରଥେ । କର ନିବେଶି ଅଛି ମାଥେ ॥
କଳାମୁଖିଙ୍କୁ ଅନାଇ । ଅନେକ ମତେ ବାହୁନଇ ॥
ସେବକେ ଅନାଇଣ ଦେଲେ । କ୍ରୋଧରେ ଦାସଙ୍କୁ ବୋଇଲେ ॥
ଗନ୍ଧ ତୋ ତାମ୍ବୁଳର ଗାର । କୁଙ୍କୁମ ଦେହେ ଜରଜର ॥
ଅଙ୍ଗେ କନ୍ଦର୍ପ ତୋର କାୟେ । ଦିଶୁଛୁ ଖଣ୍ଡ ଶବ ପ୍ରାଏ ॥
ସ୍ନାନ ଶଉଚ ତୋର ନାହିଁ । ଥିଲୁ ତୁ ବେଶ୍ୟାଘରେ ଶୋଇ ॥
କିପାଁ ଚଢ଼ିଲୁ ତୁ ରଥର । ଭକତ ପଣ ପୋଛି ତୋର ॥

କେ ତୋତେବୋଲେଜ୍ଞାନବନ୍ତ । ଦେଖ ହୋ ପ୍ରଭୁ ଜଗନ୍ନାଥ ॥
ବ୍ରହ୍ମା ଇନ୍ଦ୍ରାଦି ଯାର ପାଦେ । ସେବା କରନ୍ତି ଅପ୍ରମାଦେ ॥
ତାହାଙ୍କୁ ତୋର ଭୟ ନାହିଁ । ଆସିଛୁ ଶୁଣମନ୍ତ୍ର ନୋହି ॥
ଏମନ୍ତ ବୋଲି କୋପଭରେ । ସେବକମାନେ ଯେ ଯାହାରେ ॥
ଗଲେଅନେକଧକ୍କା ଦେଲେ । ରଥରୁ ପେଲି ପକାଇଲେ ॥
ନାନା କୁବାକ୍ୟ ଗାଳିଦେଇ । କହ ତୋ ବାପ ଆଗେ ଯାଇ ॥
ସବୁର ମୁଖରୁ ନିବାଣ । ପାଇଲା ବଳରାମ ଦାସ ॥
ମନରେ ପାଇ ଗୁରୁ ତାପ । ବଢ଼ିଲା ବଡ଼ଶୋକ ସନ୍ତାପ ॥
ପ୍ରଭୁ ସମ୍ମୁଖରେ ଉଭାହୋଇ । କଳାଶ୍ରୀମୁଖକୁ ଅନାଇ ॥
ବେନି ନୟନୁ ଧାର ଗଲେ । ପ୍ରଣାମ କଲା ମହୀତଳେ ॥
କଟି କପାଳେ ଦେଇ ପାଣି । ବୋଇଲା ନମୋ ଚକ୍ରପାଣି ॥
ନମୋ ଜଳଦ ପଦ୍ମମୁଖ । ଭକତ ଜନଙ୍କର ଭେଖ ॥
ଭକ୍ତବତ୍ସଳ ମହାବାହୁ । ନନ୍ଦିଘୋଷରେ ଥାଉ ଥାଉ ॥
ଶଙ୍ଖ ଯେ ଚକ୍ର ବେନିକର । ବଡ଼ାଙ୍କ ଅଛୁ ଡିନାପୁର ॥
ଦେଖକେ ଗଞ୍ଜିଲେ ମାରଦଣ୍ଡ । ତହିଁ ନ ଛେଦ ମୋର ମୁଣ୍ଡ ॥
ଦଣ୍ଡ ଯେ ଦେଲୁ ପରହସ୍ତେ । ଏଥିରେ ଯଶ ହେଲା କେତେ ॥
ମୋତେଭକ୍ତବଣାଯେବେ ତୋର । ସକଳ ଜାଣିଲି ଏଥର ॥
ନନ୍ଦଗଉଡ଼ ପୁଅ ହୋଇ । ନନ୍ଦିଘୋଷରେ ଏବେ ଥୁଇ ॥
ବିଜୟ ଚକା ଡୋଳଟିରେ । କପାଳ ଫୁଟିବ ଦୃଷ୍ଟିରେ ॥
ଥିଲୁ ମୋ ପ୍ରାଣବନ୍ଧୁ ବୋଲି । ତୋର ସମ୍ମୁଖକୁ ଆସିଥିଲି ॥
ଅଳ୍ପ ଦଣ୍ଡ ଦେଲୁ ମୋତେ । ଆଜ ଜାଣିଲି ମୁହିଁ ତୋତେ ॥
ଯେ ଜାଣଇ ତୋ ସକଳ । ତେଣୁ ବା ହୋଇବ ଅକଳ ॥
ବ ମୁଁ ଗଲିଟି ବାହୁଡ଼ି । କେ ଟିକୁ ତୋ ରଥ ଦଉଡ଼ି ॥
କେମନ୍ତ କରୁ ଛୁହ । ତାହା ଦେଖଇ କନା ମୁହିଁ ॥
କେ ଗୃହ୍ନ ଏବେ ରଥ । ତୋ ବାପ ନନ୍ଦର ଶପଥ ।

ଆବର କହୁଅଛୁ ଶୁଣ । ଶ୍ରୀବତ୍ସଭୂଷଣ ଲକ୍ଷଣ ॥
ମୁଁ ଯେବେ ତୋହର ସେବକ । ତୁ ଯେବେ ମୋ ପ୍ରାଣନାୟକ ॥
ଅନ୍ୟ ଶରଣ ମୋର ଥିଲେ । ତାହା ବୁଝିବୁ ତୁହି ଭଲେ ॥
ଆବର କହୁଅଛୁ ଯାହା । ଶୁଣ ପୂତନା ପ୍ରାଣଖିଆ ॥
କୋଟିଏ ବ୍ରହ୍ମାଣ୍ଡ ହୋଇବ । ଗୋଟିଏ ପ୍ରଭୁ ହୋଇଥିବ ॥
ତାର ସେବକ ହାନି ଲଭ । ସେ ପ୍ରଭୁ ଯେବେ ନ ବୁଝିବ ॥
ସେ ଲଜ୍ଜା ହେବଟି କାହାର । ତୋ ହୃଦପଦ୍ମରେ ବିଚାର ॥
ଅଧିକ କି କହିବ ମୁହିଁ । ତୁମ୍ଭେ ମୋ ଜୀବର ଗୋସାଇଁ ॥
ଯେ ଦଣ୍ଡ ଉଚିତ ମୋହର । ବୋଲି ଚଳିଲେ କ୍ରୋଧଭର ॥
ପଛକୁ ଅନାଇଁ ଅନାଇଁ । ମିଳିଲ ସିନ୍ଧୁକୂଳେ ଯାଇଁ ॥
ବାଙ୍କିମୁହାଣ ବାଲିକୁଦେ । ବସିଲ ମନର ବିଷାଦେ ॥
ବାଲିରେ ତିନିଗୋଟି ରଥ । ନିର୍ମାଣ କଲାଣ ତ୍ୱରିତ ॥
ନୟନ ବୁଜି ଧ୍ୟାନେ ଚିନ୍ତି । ଯେ ଜଗବନ୍ଧୁ ତିନିମୂର୍ତ୍ତି ॥
ବୋଇଲ ଏଥେ ବିଜେକର । ମୁଁ ଯେବେ ସେବକ ତୋହର ॥
ଏମନ୍ତ ବୋଲି ସ୍ତବବୋଲେ । ନୟନୁ ଅଶ୍ରୁ ଧାର ଗଳେ ॥
ଅମୃତ ନଦୀ ପ୍ରାୟେ ହୋଇ । ସର୍ବାଙ୍ଗେ ଯାଇଅଛି ବହି ॥
ତାହା ଜାଣିଲେ ଆଦିମୂଳ । ଯେ ପ୍ରଭୁ ଭକତବତ୍ସଳ ॥
ଶରଣ ରକ୍ଷଣ ଯା ବାନା । ନ ସହେ ସେବକ ବେଦନା ॥
ଅଶେଷ ସୁଖ ପୂରକରି । ବାଙ୍କି ମୁହାଣେ ବିଜେ କରି ॥
ଦାରୁ ରଚିଣ ନନ୍ଦିଘୋଷେ । ପ୍ରଭୁ ବିଜୟ ଭକ୍ତପାଶେ ॥
ସଙ୍ଗତେ ଘେନି ଭଗ୍ନୀ ଭ୍ରାତ । ବିଜୟ କଲେ ବାଲିରଥ ॥
ତା ଦେଖି ବଳରାମ ଦାସ । କେ କହୁ ମନର ହରଷ ॥
ଅଳପେ ଅନାଇଣ ଦେଲ । କଳାପ ସୁକୃତ ଲଭିଲ ॥
କେବଳ ଅଭିମାନ ଧରି । ମୁହିଁ ସେ ଅଛି ବନ୍ଦ କରି ॥
ହୃଦେ ଆନନ୍ଦ ମୁଖେ ଦୁଃଖ । ତାହା ଜାଣିଲେ ପଦ୍ମମୁଖ ॥

ହସି କହନ୍ତି ପୀତବାସ । ଦାସେ ନ କର ତୁମ୍ଭେ ରୋଷ ॥
ଘୋର ସନ୍ତାପ ତୋର ଦେଖି । ଯାହା ମୁଁ ଅଇଲି ଉପେକ୍ଷି ॥
ଏବେ ଯେ ଆଜ୍ଞପ୍ତି ତୋହର । ତୋ ମନେ ଯାହା ତାହା କର ॥
ପ୍ରଭୁ ଶ୍ରୀମୁଖୁଁ ଶୁଣି ଏତେ । ଦାସ ବଳିଆ ସ୍ତୁତି କେତେ ॥
ତକ୍ଷଣେ ଶିରେ କର ଦେଇ । ଭୂମିରେ ପାଦ୍ୟେ ପଡ଼ି ଶୋଇ ॥
ଉଠି କପାଳେ ଦେଇ କର । ବୋଇଲା ନମୋ ଚକ୍ରଧର ॥
କମଳା ଯାର ପରଶୁଖି । ଧାତା ଯାହାର ଆଜ୍ଞାକାରୀ ॥
ଦେବ ଇନ୍ଦ୍ରାଦି ସୁରାସୁରେ । ଯକ୍ଷ ଗନ୍ଧର୍ବ ଯେ କିନ୍ନରେ ॥
ରବି ଚନ୍ଦ୍ରାଦି ବୈଶ୍ୱାନର । ନାଗ ନୃପତି ଚରାଚର ॥
କ୍ଷିତି ଆକାଶ ଦିଗପାଳ । ଯାହାର ଆଜ୍ଞାରେ ସକଳ ॥
ହେଉ ଅଛନ୍ତି ଆତପାତ । ତୁମ୍ଭେ ଅଶେଷ ଲୋକନାଥ ॥
ଶାରଦା ଯାର ଆଜ୍ଞାକାରୀ । ଯେ ଅଷ୍ଟନିଧି ପରିବାରୀ ॥
ସିଦ୍ଧ ଯୋଗୀନ୍ଦ୍ର ମୁନିଗଣେ । ଧ୍ୟାନେ ଶଳନ୍ତି ଯା ଚରଣେ ॥
ତୋ ସ୍ତୁତି କେତେକ ମାତର । କୋଟିଏ କୀଟରୁ ଅନ୍ତର ॥
ବିଜୟ କଲ ମୋର ପାଇଁ । ପ୍ରଭୁ ପଣକୁ ଲୁଚାଇ ॥
ଏହା ନ ଜାଣି ମୂଢ଼ ନରେ । ସେବନ୍ତି ଅନ୍ୟ ଦେବତାରେ ॥
ଗଙ୍ଗା ଛାଡ଼ିକି ଗଙ୍ଗା କୂଳେ । କୂପ ଖୋଳନ୍ତି ତୃଷାତୁରେ ॥
ସୁଧା ଛାଡ଼ିକି ବିଷ ଖାଇ । ମରିବା ସମ ସେ ଅଟଇ ॥
ଯେ ତୁମ୍ଭ ମହିମା ଜାଣିତ । ଜାଣି ଭଜନ୍ତି ଅବିରତ ॥
ଶରଣ ପଶି ତୋ ଚରଣେ । ଇନ୍ଦ୍ର ପଦହିଁ ସେ ନ ଗଣେ ॥
ତୋହ ବଳିଆ ଏ ସଂସାରେ । ଶତ୍ରୁରେ କାହାକୁ ନ ଡରେ ॥
କମ୍ବୁ ରଥାଙ୍ଗ ଗଦାପାଣି । ଭରସା ଅଛି ବୋଲି ଜାଣି ॥
ମହାପାତକୀ ହୋଇଥାଇ । ସେ ଦୋଷ କ୍ଷମାକର ତୁହି ॥
ମୁଁ ଯେ ସର୍ବଦା ଅପରାଧୀ । ତୁମ୍ଭେ ଯେ କରୁଣା ବାରିଧି ॥
ହୁଡ଼ି ବୋଇଲି ଯେତେ ଆଜ । ସେ ତୁଣ୍ଡେ ପଡ଼ୁ ମୋର ବଜ୍ର ॥



ରାଜା ପ୍ରତାପରୁଦ୍ର ଦେବ ବଳରାମ ଦାସଙ୍କୁ କ୍ଷମା ମାଗୁଛନ୍ତି । ଦୁଷ୍ଟସେବକମାନେ ମଧ୍ୟ କ୍ଷମାଭିକ୍ଷା କରୁଛନ୍ତି ।

ଭୃତ୍ୟଙ୍କୁ ଏତେ ସାହାପକ୍ଷ । ଆଜ ତ ଦେଖିଲି ପ୍ରତ୍ୟକ୍ଷ ॥
ଏବେ ଯେ ନନ୍ଦଘୋଷରଥ । ନୀଳାଦ୍ରି ନଗରରେ ଯାନ୍ତ ।୧୧୦।
ଅନେକ ସୁଖଭୋଗମାନ । ଗ୍ରହି ଅଇଲେ ଭଗବାନ ॥
ଭ୍ରାତା ଭଗିନୀ ସାହା ହୋଇ । ଏଥେ ନ ଭୁଞ୍ଜିବେ ଗୋସାଇଁ ॥
ମୁଁ ମୂଢ଼ ମନ୍ଦ କୃତ୍ୟ କଲା । ପ୍ରଭୁଙ୍କୁ ଏ କଷ୍ଟ ବଢ଼ାଇଲା ॥
ତା ଶୁଣି ପ୍ରଭୁ ଭାବଗ୍ରାହୀ । ଦାସଙ୍କୁ ପାଖରେ ବସାଇ ॥
ହସି ଶ୍ରୀମୁଖେ ଆଜ୍ଞାଦେଲେ । ହେ ଦାସେ ଶୁଣ ତୁ ବୋଇଲେ ॥
ରହିବ ମୋର ଜସ ହେବ । ମୂଳ ମୋ ଭକତର ଭାବ ॥
ଅଶେଷ ସୁଖ ଭାବ ମୋର । ଭକତ କଥାମୃତ ସାର ॥
ମୋର ମହିମା ପଦେ ପଦେ । ଯେ ଶୁଣୁଥିବ ସଦା ହୃଦେ ॥
ସେ ଅଟେ ସୁଖଦାତା ମୋର । ତୋ ମନେ ସଂଶୟ ନ କର ॥
ତା ଶୁଣି ବଳରାମ ଦାସ । ମନରେ ଲଭି ଅତି ତୋଷ ॥
ହୃଦୟ ମଧ୍ୟେ ଚକାସନେ । ପ୍ରଭୁଙ୍କୁ ବସାଇ ଯତନେ ॥
ଆପଣା ଧର୍ମ ସ୍ତମ୍ଭରେ । ବାନ୍ଧିଲ ମନ ପାଟଡୋରେ ॥
ଆନନ୍ଦ ଦାଣ୍ଡେ ରଥ ଚଢ଼ି । ଲଗାଇ କଳ୍ପନା ଦଉଡ଼ି ॥
ପ୍ରକୃତି ବେଢ଼ି ଆଏ ଗଲେ । ରଥ ଦଉଡ଼ି ଓଟାରିଲେ ॥
ସଦ୍‌ଗୁଣ ସାରଥିଏ ରଥେ । ଗୀତ ଗାଇଣ ରଙ୍ଗେ ନାଚେ ॥
ସୁଜନବୃତ୍ତି ବେଢ଼ିକରେ । ହିଂସାଦୁର୍ବୁଦ୍ଧି ଦୂର କରେ ॥
ମହତଘଣ୍ଟା ବଜାଇଲେ । ଶବଦ ଶଙ୍ଖ ଧ୍ୱନି କଲେ ॥
ଜାଗ୍ରତ ସୁବୁଦ୍ଧି ପରୀକ୍ଷା । ସେ ରଥ କରିବାକୁ ରକ୍ଷା ॥
ପଞ୍ଚ ପବନ ବିପ୍ରଗଣ । ସୁବୁଦ୍ଧି ପଣ୍ଡାଙ୍କୁ ଘେନିଣ ॥
ପ୍ରଭୁଙ୍କ ପୂଜାରେ ବସିଲେ । ଅଶେଷ ଭୋଗ ମନାସିଲେ ॥
ଚଉଦ ବ୍ରହ୍ମାଣ୍ଡର ଗତେ । ଅପୂର୍ବ ଦ୍ରବ୍ୟମାନ ଯେତେ ॥
ମନରେ ସବୁ ଠୁଳ କଲେ । କଳ୍ପନା ମାର୍ଗେ ପୂଜା କଲେ ॥
ତୁ ହୋ ସୁମନ ନୃପବରଣ । ଚୈତନ୍ୟ ମଲ୍ଲୀକ ଘେନିଣ ॥

ରହିଲୁ ସୁଷୁମ୍ନା ଦ୍ୱାରେ । ବଳିଷ୍ଠ ପୁରୁଷ ଗ୍ରାମରେ ॥
ନିର୍ଭୟ ହୋଇ ଆଜ୍ଞା ଦେଲେ । ଭୟକୁ ମାର ରେ ବୋଇଲେ ॥
କ୍ରୋଧ ତାମସ ଆଦି ଯେତେ । କୁଟିଳ କପଟ ସହିତେ ॥
ମାନ କୁମତି ମିଥ୍ୟା ଲୋଭ । ମଦ ମତ୍ସର ଯେ ସ୍ୱଭାବ ॥
ଦୁର୍ଗୁଣି ଦାମ୍ଭିକ ନାସ୍ତିକ । କଳ୍ପନା ଆଦି ଯେତେ ଲୋକ ॥
ମାରି ଏହାଙ୍କୁ କର ଦୂର । ନ ଥାଉ ଏ ଦାବ୍ୟ ଉଥର ॥
ଏମନ୍ତ ଆଜ୍ଞା ତାଙ୍କୁ ଦେଇ । ରହିଲା ଶ୍ରୀମୁଖକୁ ଚାହିଁ ॥
ଆନନ୍ଦେ ବଳରାମ ଦାସ । ତୁଷ୍ଟ ପ୍ରସାର ଦେହ ଆଶ ॥
ଶୀତ ଦିବସ ନ ଜାଣିଲା । କ୍ଷୁଧା ତୃଷାହିଁ ନ ମଣିଲା ॥
କେବଳ ଏକ ଭାବ ହୋଇ । ଶ୍ରୀ ଦାରୁବ୍ରହ୍ମଙ୍କୁ ଭଜଇ ॥
ଏମନ୍ତ ଭାବ ଦେଖିକରି । ସେ ଭାବେ ବନ୍ଧନ ଶ୍ରୀହରି ॥
ଏଣେ ଯେ ନନ୍ଦିଘୋଷ ରଥ । କଳାପିଠିଆ ଅପ୍ରମିତ ॥
ଦାଉଡ଼ ଧରିଣ ଉଟାରି । ବଳ ପ୍ରାକ୍ରମେ ଗଲେ ହାରି ॥
ରଥଚକହିଁ ନ ଚଳିଲେ । ସମସ୍ତେ ଦେଖିଣ ଭାଳିଲେ ॥
କି ବୁଦ୍ଧି କରିବା ଏଥର । କାହିଁ ନ ଚଳେ ରଘୁବର ॥
ଏମନ୍ତ ଦେଖିଣ ସମସ୍ତେ । କହିଲେ ନୃପତି ଅଗ୍ରତେ ॥
ଇତରେ ଉତର ଯେ ଯାଇଁ । ରାଜ୍ୟ ସକଳ ଜନ ଚାହିଁ ॥
ଯୁବା ବାଳକ ବୃଦ୍ଧ ନାରୀ । ବ୍ରହ୍ମ କ୍ଷତ୍ରିୟ ଆଦି କରି ॥
ଯେ ପାତ୍ର ମନ୍ତ୍ରୀ ଅମାତ୍ୟ । ସାଧୁତ ସାମନ୍ତ ସହିତେ ॥
ସକଳ ଲୋକଙ୍କର ହାତେ । ରଥ ଟିଙ୍କାଇ ନାନାମତେ ॥
କାହିଁତେ ଟାଣି ନ ପାରିଲେ । ଆପଣେ ନୃପତି ଭାଳିଲେ ॥
କିବା ଅଭାଗ୍ୟ ହେଲା ମୋର । ତେଣୁ ନ ଚଳେ ରଘୁବର ॥
ଆଣିଲେ ମତ୍ତଗଜ ଯେତେ । ନୃପତି ଆଜ୍ଞାରେ ସମସ୍ତେ ॥
ଆଣିଲେ ଶତେକ ମତ୍ତଗଜ । କରିଣ ନାନାମତେ ସଜ ॥
ବେଗେଣ ରଥରେ ଯୋଗିଲେ । ମାହୁନ୍ତେ ଅଙ୍କୁଶେ ପିଟିଲେ ॥

ଏଣେ ପ୍ରତାପ ରୁଦ୍ର ରାଜା । କରାଇ ନାନାମତେ ପୂଜା ॥
କଟି ବସନ ଆଣ୍ଟେ ଭିଡ଼ି । ଆପଣେ ଧଇଲେ ଦାଉଡ଼ି ॥
ତାହା ଦେଖିଣ ଯେତେ ଲୋକ । ସମସ୍ତେ ହୋଇଣ ଉତ୍ସୁକ ॥
ଧଇଲେ ନନ୍ଦିଘୋଷ ବେଢ଼ି । ଗୁଡ଼କୁ ଯେସନେ ପିମ୍ପୁଡ଼ି ॥
ଅନେକେ ଦେଲେ ହୁଳହୁଳି । ବଜାଇ କରେ କରତାଳି ॥
ଅନେକ ହରିବୋଲ ପଡ଼ି । ହସ୍ତରେ ଧଇଲେ ଦାଉଡ଼ି ॥
ଝିଙ୍କିଲେ ଯେ ଯାହାର ମତେ । ରଥ ନ ଚଳେ କଦାଚିତେ ॥
ରାଜା ମନୁଷ୍ୟ ଶ୍ରମ ପାଇ । ବସିଲେ ଯେ ଯାହାରେ ଥାଇ
ତାହା ଦେଖିଣ ନୃପବର । ବିଚାର କଲା ତା ମନର ॥
ପ୍ରଭୁ ପଦାରବିନ୍ଦଗତି । ଅପ୍ରାଧ ଅଛିଲି ବହୁତ ॥
ତେଣୁ ନ ଚଳେ ନନ୍ଦିଘୋଷ । ବୁଝିବା ଏଥିର ସନ୍ଦେଶ ॥
ଏମନ୍ତ ବୋଲି କୁଶାସନେ । ଶୋଇଲେ ରାଜା ଦୁଃଖମନେ ॥
ପ୍ରଭୁ ଚରଣେ ମନ ଦେଇ । ସଂଶୟ ଜାଣିବାର ପାଇଁ ॥
ତାହା ଜାଣିଲେ ତତକ୍ଷଣ । ସେ ଅନ୍ତର୍ଯାମୀ ନାରାୟଣ ॥
ରାଜାଙ୍କୁ କହିଲେ ସ୍ୱପନେ । ତୁ କିପା ଚିନ୍ତା କରୁ ମନେ ॥
ଏବେ ମୁଁ କହୁଅଛି ତୋତେ । ହେ ରାଜା ଶୁଣ ଶୁଦ୍ଧ ଚିତ୍ତେ ॥
ମୋର ଭକତ ଯେଉଁ ଜନ । ମୋହର ନାମ କରେ ଗାନ ॥
ସେ କେବେ ଅଶୁଚି ନୁହଇ । ସର୍ବଦା ଶୁଚିମନ୍ତ ଦେହୀ ॥
ଏଣୁ ମୋ ବଳରାମ ଦାସ । ମନରେ ହୋଇଣ ହରଷ ॥
ଆମ୍ଭଙ୍କୁ ଅଣିଲା ମୋହର । ମାରି ତାହାକୁ କଲୁ ଦୂର ॥
ତେଣୁ ଭକତ ଅଭିମାନେ । ଗଲା ଅତ୍ୟନ୍ତ ଦୁଃଖମନେ ॥
ବସିଲା ଚକ୍ରତୀର୍ଥେ ଯାଇ । ତାହାଙ୍କ ମୋ ପାଦପଦ୍ମେ ଧାୟୀ ।
ତାହା ଜାଣିଣ ଆମ୍ଭେ ଗଲୁ । ଭକତ ପାରୁଣେ ମିଳିଲୁ ॥
ସେ ଯେତେ ସୁଖ ମୋତେ ଦେଲା । ଯେଉଁ ପ୍ରକାରେ ଯାନ୍ତ୍ରା କଲା ॥
ଇନ୍ଦ୍ରାଦି ଦେବଙ୍କୁ ଦୁର୍ଲଭ । ତୁ କାହିଁ ଜାଣିବୁ ତା ଭାବ ॥

ନେଣୁଛି ଅଛୁଁ ସେହି ସ୍ଥାନେ । ଏ ରଥ ଚଳିବ କେସନେ ॥
ଭକତ ଭାବେ ବାନ୍ଧିଅଛୁ । ଆମ୍ଭେ ତାହା ନପାରୁ ମୁକ୍ତି ।
ଭକତ ମୋହର ଶରୀର । ମୁହିଁ ତାହାଙ୍କ ପ୍ରାଣେଶ୍ୱର ॥
ଭକତ ରକ୍ଷଣ ନିମନ୍ତେ । ଚକ୍ର ମୁଁ ଧରିଅଛୁ ହସ୍ତେ ॥
ଭକତ ଦୁଃଖ ସୁଖ ଯେତେ । ମୁଁ ଭିନା ଜାଣିଥାର ନତେ୍ୟ ॥
ଏ ଆଜ୍ଞା ସତ୍ୟ ଅଟେ ମୋର । ହେ ରାଜା ସଂଶୟ ନ କର ॥
ଯେବେ ତୁ ନନ୍ଦିଘୋଷ ରଥେ । ଯାତ୍ରା କରିବୁ ବୋଲି ମୋତେ
ତେବେ ତୁ ଏମନ୍ତ କରିବୁ । ସେବକ ଯାକ ଡକାଇବୁ ॥
ମୋର ଭକ୍ତଙ୍କୁ ଅକାରଣେ । ଦଣ୍ଡ ବହିଲେ ଯେଉଁମାନେ ॥
ତାହାଙ୍କୁ ଯୋଡ଼ ଯୋଡ଼ କରି । ବନ୍ଧାଇ ଥିବୁ ଦଣ୍ଡଧାରୀ ॥
ଗଳାରେ କାଳଫାଶ ଭରି । ଦନ୍ତେ ତୃଣ ଥିବେ ଧରି ॥
ପଛରେ ଗଳା ଧକ୍କା ଦେଇ । ନେଇବାଇ ଯିବୁ ନରସାଇଁ ॥
ମୋ ଭୃତ୍ୟ ଭୂମିରେ ଭେଟିବେ । ସମସ୍ତେ ଚରଣେ ଲୋଟିବେ ॥
ତୁ ଯେ ଆପଣେ ନୃପବର୍ଣ୍ଣ । ଦାସଙ୍କୁ କୋଳେ ବସାଇଣ ॥
ଅନେକ ଗଉରବ କରି । ନେଇ ଆସିବୁ ଦଣ୍ଡଧାରୀ ॥
ବସାଇ ନନ୍ଦିଘୋଷ ରଥେ । ବାନ୍ଧିବୁ ପାଟଶାଢ଼ୀ ମାଥେ ॥
ବୋଲିବୁ ଯାତ୍ରା ବେଗେ କର । ତେବେ ଚଳିବ ରଘୁବର ॥
ନୋହିଲେ ନ ଚଳଇ ରଥ । ହେ ରାଜା କହିଲିଟି ସତ ॥
ମୁହିଁ ଗୁଡ଼ିଲି ନୀଳାଚଳ ଭକତ ଭାବ ମୋର ମୂଳ ॥
ଭକତ ଯିବ ମୋର ଯେଣେ । ମୁହିଁ ନିଶ୍ଚୟ ଯିବ ତେଣେ ॥
ଏକଥା ସତ୍ୟ ମହୀପାଳ । କହି ଚଳିଲେ ଆଦ୍ୟମୂଳ ॥
ରାଜା ଏମନ୍ତ ଆଜ୍ଞା ପାଇ । ଉଠିଲା ଅତି ବେଗ ହୋଇ ॥
ସେବକମାନଙ୍କୁ ଘେନିଣ । ଦାସ ଦୋରେହା ଯେତେଜନ ॥
ବନ୍ଧାଇ ଯୋଡ଼ ଯୋଡ଼ କରି । ଗଳେ କୁଠାର ଛନ୍ଦି ଧରି ॥
ଦନ୍ତେ ତୃଣ ଧରାଇଲେ । ପଛେ ହାବୁକା ତାଙ୍କୁ ଦେଲେ

ଡେନାଇ ଗଲେ ଖରେ ଜନେ । ମିଳାଲେ ଭକ୍ତ ସନ୍ନିଧାନେ ॥
ଏମନ୍ତେ ରାମୁରେ ଭେଟିଲେ । ତକ୍ଷଣେ ଚରଣେ ଲୋଟିଲେ ॥
ଯୋଡି କପାଳେ ଦେଲେ କର । ବୋଇଲେ ଦେବ ବଡ଼କର ॥
ଯେତେ ଅଗ୍ରାହ୍ୟ ଆମ୍ଭେ କଲୁ । ତହିଁର ଶାସ୍ତି ତ ପାଇଲୁ ॥
ଏବେ ତୁ ଦୋଷ କର କ୍ଷମା । ଧନ୍ୟ ତୋ ଭକତ ମହିମା ॥
ଏମନ୍ତ ବୋଲିଣ ରାଜନ । କହିଲେ ମଧୁର ବଚନ ॥
ଦାସଙ୍କୁ କୋଳେ ବସାଇଲେ । ଅନେକ ଗଉରବ କଲେ ॥
ଧନ ବସନ ତାଙ୍କୁ ଦେଇ । ଦାସଙ୍କୁ ଅଶ୍ୱରେ ବସାଇ ॥
ଘେନାଇ ଗଲେ ନୃପବର । ଅନେକ ଉତ୍ସବ କରିଣ ॥
ପ୍ରବେଶ ହେଲେ କ୍ଷେତ୍ରବରେ । ଶ୍ରୀ ନନ୍ଦିଘୋଷ ପାର୍ଶ୍ୱରେ ॥
ଦାସଙ୍କୁ ଘେନି ନରନାଥେ । ବଢ଼ନ୍ତୁ ନନ୍ଦିଘୋଷ ରଥେ ॥
ପ୍ରଭୁଙ୍କ ସମ୍ମୁଖେ ବସାଇ । ପାଦ ବାନ୍ଧିଲେ ନରସାଇଁ ॥
ବୋଇଲେ କର ଏବେ ଯାତ । ଏ ସବୁ ତୁମ୍ଭର ଆୟତ୍ତ ॥
ତା ଶୁଣି ବଳରାମ ଦାସ । ମନରେ ହୋଇଣ ହରଷ ॥
ବୋଇଲେ ନମୋ ମହାବାହୁ । ଭକତବତ୍ସଳ ବୋଲାଉ ॥
ନାମ କରୁଣା ମହାମେରୁ । କାଷ୍ଠେ ତ ଦୁବ କରୁ ଦାରୁ ॥
ଏବେ ମୁଁ କହୁଅଛୁ ତୋତେ । ହେ ପ୍ରଭୁ ବଜେ କର ରଥେ ॥
ଈଶ୍ୱରେ ତ ରଥ ଚଳାଉ । ପ୍ରଭୁ ମହିମା ରହିଥାଉ ॥
ଏମନ୍ତ ବୋଲି କରଯୋଡ଼େ । ବୋଇଲା ଝିଙ୍କ ହୋ ଦାଉଡ଼ି ॥
ତା ଶୁଣି ପିଠିଆଇ ଗଲେ । ରଥ ଦାଉଡ଼ି ଟାଣିଲେ ॥
ସମସ୍ତେ ଜୟ ଜୟ କଲେ । କାମିନୀ ହୁଳହୁଳି ଦେଲେ ॥
ତାହା ଦେଖିଣ ପ୍ରଭୁ ମନେ । ପ୍ରସନ୍ନ ହେଲେ ନରପତେ ॥
ରଖିଣ ଭକତ ମହତ । ଚଳିଲା ନନ୍ଦିଘୋଷ ରଥ ॥
ପଛକୁ ରହିଲା ଦାଉଡ଼ି । ପକ୍ଷୀ ଯେସନେ ଶୂନ୍ୟେ ଉଡ଼ି ॥
ତେସନେ ପ୍ରଭୁ ଦେବରାଜ । ସଙ୍ଗେ ଚଳିଲେ ତାଳ ଧ୍ୱଜ ॥

ପଲକ ମାତ୍ରେ ରଘୁବର । ପ୍ରବେଶ ଗୁଣ୍ଡିଚ୍ଚ ନଗର ॥
ତାହା ଦେଖିଣ ସର୍ବଜନ । ଆବର ସେ ମହା ସୁଜନ ॥
ଗୃହ ଦ୍ୱାରରେ ବେଢ଼ି ବସି । ଦାସଙ୍କୁ ଅନେକ ପ୍ରଶଂସି ॥
ବୋଇଲେ ଧନ୍ୟ ତୋ ଜୀବନ । ବଶ ତୁ କଲୁ ନାରାୟଣ ॥
ଧନ୍ୟ ଏ ପ୍ରଭୁଙ୍କ ମହିମା । ରଖିଲେ ଭକତ ଗାରିମା ॥
ଏଣୁ ଏ ବ୍ରହ୍ମାଣ୍ଡ ମଧ୍ୟେଣ । ହରି ଭକତ ବଡ଼ଜଣ ॥
ଗୃହ ଦ୍ୱାରରେ ବେଢ଼ି ବସି । ଦାସଙ୍କୁ ଅନେକ ପ୍ରଶଂସି ॥
ଯେ ସାଧୁ ଜନଙ୍କୁ ଭଜଇ । ସେ ନିଶ୍ଚେ ହରିଙ୍କି ଲଭଇ ॥
ଯେବା ସାଧୁରେ ଦ୍ରୋହକରି । ସେ ନିଶ୍ଚେ ଶ୍ରୀହରି ବଇରି ॥
ଏମନ୍ତ ବୋଲି ଯେଝାମତେ । ଗଲେ ସେ ଭାବ ଭାବ ଚିତ୍ତେ ॥
ପ୍ରଭୁଙ୍କୁ ବିଜେ କରାଇଲେ । ସେବାରେ ସେବକ ଲାଗିଲେ ॥
ଶୁଣ ସୁମନ ଏହି ରସ । ସାଧୁଙ୍କ ମହିମା ଅଶେଷ ॥
ଭକତେ ପ୍ରଭୁ ଦୟା ଯେତେ । ବ୍ରହ୍ମା ଇନ୍ଦ୍ରରେ ନାହିଁ ତେତେ
କହଇ ବିପ୍ର ରାମଦାସ । ମୋ ପ୍ରଭୁ କମଳା ବିଳାସ ॥
ସାଧୁଜନଙ୍କ ପାଦଗତେ । ମୋ ଚିତ୍ତ ରହୁ ଅନୁବ୍ରତେ ॥
ଏ ଦାର୍ଢ୍ୟଭକ୍ତି ରସ ବାଣୀ । ଶୁଣି ସଂସାରୁ ତର ପ୍ରାଣୀ ॥
ଏ ମନ ଚୈତନ୍ୟ ସମ୍ବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥
ଏଣୁ ଅଧମ ରାମଦାସ । ତୋ ପାଦେ ରହୁ ମୋର ଆଶ
ନିରନ୍ତେ ଏହି ଆଜ୍ଞା ହେଉ । ଏ ଭାବ ମନରୁ ନ ଯାଉ ॥

ଇତି ଶ୍ରୀଦାର୍ଢ୍ୟଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ
ବଳରାମ ଦାସ ଦାର୍ଢ୍ୟଭାବ ବର୍ଣ୍ଣନେ ନାମ
ଚତୁର୍ଦ୍ଦଶୋଽଧ୍ୟାୟଃ ।

* * *

# ପଞ୍ଚଦଶ ଅଧ୍ୟାୟ

## ଜଗନ୍ନାଥ ଦାସ ସମ୍ବାଦ

### ଚୈତନ୍ୟ ଉବାଚ

ପୁଣି ଚୈତନ୍ୟ ଅତି ତୋଷେ । କହନ୍ତି ମନ ଗଙ୍ଗା ପାଶେ ॥
ଶୁଣ ସୁମନ ଶୁଦ୍ଧଚିତ୍ତେ । ତୁ ଯାହା ପଚାରିଲୁ ମୋତେ ॥
ଏ ବଡ଼ ଆଚମ୍ବିତ କଥା । ଶୁଣି ଛାଡ଼ିବ ଭବବ୍ୟଥା ॥
ଯେ କ୍ଷେତ୍ରମାନଙ୍କ ଉତ୍ତମ । ନାମ ତା ଶ୍ରୀ ପୁରୁଷୋତ୍ତମ ॥
ସେ ପୁଣ୍ୟ କ୍ଷେତ୍ରରେ ନିବାସ । ନାମ ତା ଜଗନ୍ନାଥ ଦାସ ॥
ଜାତିରେ ଅଟଇ ବ୍ରାହ୍ମଣ । ସୁଜ୍ଞାନୀ ପଣ୍ଡିତ ସୁଜାଣ ॥
ଚତୁର ବିବେକ ତା ମତି । ଶାନ୍ତ ସ୍ୱଭାବ ଧୀର ଗତି ॥
ଧାର୍ମିକ ବୁଦ୍ଧି ସଦାଶୟ । ସ୍ୱଭାବେ ସଦାନନ୍ଦମୟ ॥
ସକଳ ଶାସ୍ତ୍ରରେ ସୁଜ୍ଞାତା । ଜାଣଇ ପାପ ପୁଣ୍ୟ କଥା ॥
ଏ ଘୋର ସଂସାରକୁ ଡରି । ନିରତେ ମନରେ ବିଚାରି ॥
କେମନ୍ତେ ହେବି ଏଥୁ ପାର । ଏତ ଅପାର ପାରାବାର
ଏଥୁ ଉଦ୍ଧାର ହେବା ପାଇଁ । ଭକତି ବିନୁ ଅନ୍ୟ ନାହିଁ
ଏମନ୍ତ ବୋଲି ପ୍ରତିଦିନ । ହରି ଚରଣେ କରେ ଧ୍ୟାନ
ଏମନ୍ତେ କେତେ ଦିନ ଗଲା । ଦିନେକ ଏମନ୍ତ ହୋଇଲା ।
ଶୟନ ସମୟରେ ଦାସେ । ମନ ନିବେଶି ପ୍ରଭୁ ପାଶେ ।
ବୋଇଲେ କୃପା ମୋତେ କର । ଦେଖାଅ ମହିମା ତୁମ୍ଭର ॥
ମୋ ଜୀବ ଉଦ୍ଧାର ନିମନ୍ତେ । କି ଆଜ୍ଞା ହେଉ ପ୍ରଭୁ ମୋତେ ॥
ତୁମ୍ଭେ ବୋଲାଅ ଦୀନବନ୍ଧୁ । ନାମ କରୁଣାମୟ ସିନ୍ଧୁ ॥
ସୁଦୟା ନୋହିଲେ ତୁମ୍ଭର । କେମନ୍ତେ ଭବୁ ହେବି ପାର ।
ଏଣୁ ତୁ ଯାହା କଲେ କର । ଆନ୍ୟତ୍ର ନାହିଁଟି ମୋହର ॥
ଏମନ୍ତ ବୋଲି ନିଦ୍ରାଗତେ । ହରିଙ୍କି ଚିନ୍ତାକରି ଚିତ୍ତେ ॥

ତାହା ଜାଣିଲେ ନାରାୟଣ । ଏ ଜଗତ କାରଣ ॥
ରଣ ଜନ ଚନ୍ଦ୍ରାମଣି । କମ୍ବୁ ରଥାଙ୍ଗ ଗଦାପାଣି ॥
ଗୁରୁ ଅଧରେ ମନ୍ଦହାସେ । ବିଜୟ କଲେ ଭୃତ୍ୟପାଶେ ॥
ଶ୍ରୀମୁଖେ ଆଜ୍ଞା ଦେଲେ ହରି । ଶୁଣ ହେ ଦାସେ ହେତୁ କରି ॥
ତୁ ଯାହା ଚିନ୍ତୁଥାଉ ମନ । ତାହା ମୁଁ କହୁଅଛି ପୁଣ ॥
ତୋ ଜୀବ ଉଦ୍ଧାର ନିମନ୍ତେ । ଦୀକ୍ଷା ମୁଁ ଦେଉଅଛି ତୋତେ ॥
ସକଳ ଶାସ୍ତ୍ର ମଧ୍ୟେ ସାର । ଓଁକାର ବ୍ରହ୍ମ ଏକାକ୍ଷର ॥
ଆମ୍ଭେ ଶ୍ରୀମୁଖେ ଆଜ୍ଞା କଲୁ । ଶ୍ରୀ ଭାଗବତ ନାମ ଦେଲୁ ॥
ସେ ମହାବୀଜ ନଅକ୍ଷର । କହିଲୁ ଅନନ୍ତ ଆଗର ॥
ସେ ମହାଭକ୍ତ ଚତୁର୍ଦ୍ଦିଶେ । କହିଲେ ବ୍ରହ୍ମାଙ୍କର ପାଶେ ॥
ବିଧାତା ହୃଦେ ଜପକଲେ । ପୁଣି ତା ଚତୁର ଶ୍ଳୋକରେ ॥
ବିସ୍ତାର କଲେ କବପଣେ । କହିଲେ ନରନାରାୟଣେ ॥
ସେହି ନର ନାରାୟଣ ଋଷି । ହୃଦପଦ୍ମରେ ତାହା ଘୋଷି ॥
ପଞ୍ଚମ ଶ୍ଳୋକରେ ଭଣିଲେ । ନାରଦ ମୁନିଙ୍କି କହିଲେ ॥
ନାରଦ ଶତେ ଶ୍ଳୋକ କଲେ । ବ୍ୟାସଙ୍କ ଆଗରେ କହିଲେ ॥
ସେହି ବ୍ୟାସ ମହାପଣ୍ଡିତ ଭଲେ । ଅଠର ସହସ୍ର ଶ୍ଳୋକ କଲେ ॥
କହିଲେ ଶୁକଦେବ ପାଶେ । ସେ ମୁନି ଶୁଣି ଅତି ତୋଷେ ॥
ଅଶେଷ ମୁନିଙ୍କର ତୁଲେ । ପରୀକ୍ଷ ରାଜାଙ୍କୁ କହିଲେ ॥
ଶୁଣି ପରୀକ୍ଷ ମହାରଣ । ପାଇଲେ ପରମ କାରଣ ॥
ସେହି ମହାପୁରାଣ ଚରିତ । ପ୍ରାକୃତ ବନ୍ଧେ କଲେ ଗୀତ ॥
ତୁ ନିଶ୍ଚେ ପବନ ହୋଇବୁ । ଅଶେଷ ପ୍ରାଣୀଙ୍କି ତାରିବୁ ॥
ଶ୍ରୀ ଭାଗବତ ଶୁଣି କର୍ଣ୍ଣେ । ପବନ ହେବେ ପ୍ରାଣୀମାନେ ॥
କରି ତୁ ଏହି ଅନୁକୂଳ । ଲଭ ତୁ ପରମ ମଙ୍ଗଳ ॥
ଏମନ୍ତେ ଦାସେ ଆଜ୍ଞା ପାଇ । ସ୍ୱପନେ ପ୍ରଭୁଙ୍କୁ ଜଣାଇ ॥
ଏ ଗ୍ରନ୍ଥ ନିଗମୁଁ ବାହାର । ମୁନିମାନଙ୍କୁ ଅଗୋଚର ॥



ପ୍ରତାପରୁଦ୍ରଦେବ [redacted] ଦାସଙ୍କ ସ୍ତ୍ରୀ ବେଶ ଦେଖି ଆଚମ୍ବିତ ।

ଫେଡ଼ ଏକଥା ଆଜ୍ଞା ହେଉ । ଶୁଣି ବୋଲନ୍ତି ମହାବାହୁ ॥
ଭୟ ନ କର ତୁମ୍ଭେ କହ୍ନି । ଗୀତ ତୁ କର ମୁହିଁ ଅଛି ॥
ତୋ ହୃଦପଦ୍ମେ ବସିଥାଇ । ମୁଁ ଯାହା ଦେଉଥିବ କହି ॥
ତାହା ତୁ ପନ୍ନ ଘେନି ଲେଖ । କହି ଚଳିଲେ ପଦ୍ମମୁଖ ॥
ଏମନ୍ତ ସମୟରେ ଶୁଣ । ନିଦ୍ରା ଭାଜିଲା ତତକ୍ଷଣ ॥
ଦାସ ଉଠିଲେ ଚେତା ପାଇ । ପାଶେ ଦେଖିଲେ କେହି ନାହିଁ ॥
ହୋଇଲେ ପ୍ରଭୁ ଅଙ୍ଗୀକାର । ହେବ ମୋ ଜୀବର ଉଦ୍ଧାର ॥
ଏମନ୍ତ ବୋଲି ଶୁଦ୍ଧଚିତ୍ତେ । ଲେଖନୀ ପତ୍ର ଧରି ହସ୍ତେ ॥
ଚିତ୍ତ ନିବେଶି ପ୍ରଭୁପାଶେ । ଲେଖିଲେ ମନର ହରଷେ ॥
ଶ୍ରୀ ଭାଗବତ ଯେ ପୁରାଣ । ଯେ ଅଟେ କଠିନୁ କଠିନ ॥
ପ୍ରାକୃତ ବନ୍ଧେ କଲେ ଗୀତ । ଯେ ପୁଣ୍ୟମୟ ଭାଗବତ ॥
ପ୍ରାଣୀଙ୍କ ଚିତ୍ତ କରି ସ୍ଥିର । ବାଢ଼ିଲେ ମୁକତ ପସର ॥
ସୁନ୍ଦର ମଧୁର କୋମଳ । ସାଧୁଙ୍କ ଶ୍ରବଣ ମଙ୍ଗଳ ॥
ପ୍ରାଣୀ କଲ୍ମଷ ନାଶିବାରେ । ଗାୟନ କଲେ ସର୍ବଠାରେ ॥
ତାହା ଶୁଣିଣ ପ୍ରାଣୀମାନେ । ଅତି ଆନନ୍ଦ ହୋଇ ମନେ ॥
ସ୍ତ୍ରୀ ପୁରୁଷ ବାଳବୃଦ୍ଧା । ସମସ୍ତେ ଶୁଣି କଲେ ଶ୍ରଦ୍ଧା ॥
[illegible]ପୁରେ ଯେତେ ନାରୀ । ଦାସଙ୍କୁ ଆଣିଲେ ହକାରି ॥
ବସନ୍ତ ମଣ୍ଡଳ ଆକାରେ । ଦାସଙ୍କୁ ବସାଇ ମଧ୍ୟରେ ॥
ବୋଲନ୍ତି ସମସ୍ତ ଅବଳା । କହ ଶ୍ରୀକୃଷ୍ଣ ବାଳଲୀଳା ॥
ଶୁଣି ପବିତ୍ର ହେଉ ଆମ୍ଭେ । ବହନ କହ କନା ତୁମ୍ଭେ ॥
ତା ଶୁଣି ଜଗନ୍ନାଥ ଦାସ । ଗାୟନ କରନ୍ତି ଅଭ୍ୟାସ ॥
ଶ୍ରୀକୃଷ୍ଣ ଗୋପୀଙ୍କର ଭାବ । ଯେ ବ୍ରହ୍ମା ଶିବଙ୍କ ଦୁର୍ଲଭ ॥
କେ ବର୍ଣ୍ଣିପାରେ ତାହା ସ୍ୱାଦ । ବଚସ୍ଥା ବଷକ୍ତି ସେ ଗଦ ॥
ପଦ ପଦକେ ସୁଧା ଝରେ । ଅଶେଷ ଜନ୍ମ ପାପ ହରେ ॥
ତାହା ଶୁଣିଣ ନାରୀବୃନ୍ଦ । ଲଭନ୍ତି ପରମ ଆନନ୍ଦ ॥

ଅନେକ ଧନ ବସ୍ତ୍ର ଦେଇ । ସମସ୍ତେ କହନ୍ତି ବଦାନ୍ୟୀ ॥
ପ୍ରତିଦିନରେ ଆମ୍ଭ ପୁରେ ବିଜୟ କରୁଥିବ ଘରେ ॥
ସର୍ବେ କରି ଯାଉଥିବ । କହୁ ଶ୍ରୀକୃଷ୍ଣ ଲୀଳାଭାବ ॥
ତା ଶୁଣି ଦାସେ ଉଲ୍ଲାସମନେ । ଚଳନ୍ତି ଆପଣା ଭୁବନେ ॥
ପ୍ରତିଦିନରେ ଏହି ମତେ । ଗାୟନ କରୁଥାନ୍ତି ନିତ୍ୟେ ॥
ତାହା ଦେଖିଣ ଖଳଜନେ । ସହି ନ ପାରୁଥାନ୍ତି ମନେ ॥
କାକ ଚଣ୍ଡାଳ ଯେଉଁପରି । ଉତ୍ତମ ଦ୍ରବ୍ୟ ଭ୍ରଷ୍ଟକରି ॥
ଶ୍ୱାନ ଚଣ୍ଡାଳ ଯେସ୍ନେ ଦାଣ୍ଡେ । ଧାଇଁଣ ଯାଉଥାନ୍ତି ଗୃହେ ॥
ଦେଖିଲେ ତୁଳସୀ ବୃକ୍ଷକୁ । ଚରଣ ଟେକି ମୂତ୍ର କରେ ॥
ମୂଷିକ ଯେସ୍ନେ ଦିବ୍ୟବାସ । ଦନ୍ତେ କାଟିଣ କରେ ନାଶ ॥
କାଟିଲେ ନ କରେ ଆହାର । ନାଶିବା କଥା ମୂଳ ତାର ॥
ସେହି ପ୍ରକାରେ ମୂଢ଼ଜନରେ ଦୋଷ ଦିଅନ୍ତି ସାଧୁଠାରେ ॥
ଏମନ୍ତ ନ ପାରିଲେ ସହି । ସେ ବାକ୍ୟ ରାଜା ଆଗେ କହି ॥
ବୋଲନ୍ତି ଶୁଣ ନୃପବର । ତୋ ପୁଣ୍ୟକ୍ଷେତ୍ରର ବିଧାନ ॥
ବ୍ରାହ୍ମଣ ଜଗନ୍ନାଥ ଦାସ । ଅନେକ ସ୍ତ୍ରୀଙ୍କ କଲା ନାଶ ॥
ଧୂପ ତିଳକ ମାଳାଭରି । କପଟେ ହୋଇ ବ୍ରହ୍ମଚାରୀ ॥
କାଖରେ ପୁସ୍ତକ ଗୋଟିଏ । ଧରି ବୁଲଇ ସବୁଠାଏ ॥
ଯେତେଣ ଦେଖଇ ନାରୀବୃନ୍ଦ । ଟେକ କହୁ ତାହାର ଆନନ୍ଦ
ତହିଁ ବସିଣ କରେ ଗୀତ । ହଲଇ ତାର ମୁଣ୍ଡ ହସ୍ତ ॥
ଅର୍ଥ କହଇ ନାନାମତେ । ସ୍ତ୍ରୀଙ୍କି ମୋହିବା ନିମନ୍ତେ ॥
ତାହା ଶୁଣନ୍ତି ଯେତେ ନାରୀ । ନ ପାରି ତାଠାରୁ ଉଦ୍ଧରି ॥
ତାଙ୍କୁ କରନ୍ତି ଯେତେ ସେବା । ପତିଙ୍କି ନ କରିବେ ଅବା ॥
ଏ କଥା ବୁଝ ନୃପମଣି । ସତ କି ମିଛ ବୁଝ ପେଷି ॥
ଶୁଣି ନୃପତି କୋପଭରେ । ବୋଇଲେ ଯାଅ ଧାଡକାରେ ॥
ଦାସଙ୍କୁ ବେଗେ ଘେନି ଆସ । ବୁଝିବା ଏଥିର ସନ୍ଦେଶ ॥

ଆଜ୍ଞା ପ୍ରମାଣେ ଭୃତେ ଗଲେ । ଦାସଙ୍କୁ ଘେନିଣ ଆଇଲେ ॥
ସମ୍ମୁଖରେ ଛିଡ଼ା କଲେ ନେଇ । ଦେଖି ପୁଚ୍ଛିଲେ ନୃପସାଇଁ ॥
କୋପେ ବୋଇଲେ ଦାସେ ଶୁଣ । ଏ କି ତୁମ୍ଭର ଆଚରଣ ॥
ଗ୍ଭଡ଼ିଣ ପୁରୁଷ ସଙ୍ଗତ । ସ୍ତ୍ରୀ ମଧ୍ୟରେ ଗାଅ ଗୀତ ॥
ନିଶି ଦିବସେ ସବୁବେଳେ । କେବଳ ଥାଅ ନାରୀମେଳେ ॥
ଏ କି ତୁମ୍ଭର ବ୍ୟବହାର । କହ ହେ ଏଥିର ଉତ୍ତର ॥
ତା ଶୁଣି ଜଗନ୍ନାଥ ଦାସ । ଚିତ୍ତେ ଚିନ୍ତିଲେ ପୀତବାସ ॥
ବୋଇଲେ ଶୁଣ ଦଣ୍ଡଧାରୀ । ଖଳ ବଚନ ଶୁଣି କରି ॥
ସାଧୁଙ୍କୁ କଷଣ ଦେବାର । ଏ ଧର୍ମ ନୁହଇ ତୁମ୍ଭର ॥
ଆମ୍ଭର ଭାବ ଅଛି ଯାହା । ଶୁଣ କହୁଛି ନରନାହା ॥
ବ୍ରହ୍ମ ବ୍ୟତିରିକ୍ତ ଜୀବଜାତ । ଅପରେ ଯେତେ ଜନ୍ତୁ ଜନ୍ତୁ ॥
ସ୍ତ୍ରୀ ପୁରୁଷ ବାଳ ବୃଦ୍ଧା । ଯେ ଅବା ଶୁଦ୍ଧି କରେ ଶ୍ରଦ୍ଧା ॥
ବସିବୁ ତାର ପାଶେ ଯାଇ । ଏଥି ସଂଶୟ କିଛି ନାହିଁ ॥
ସ୍ୱରୂପ ଶୁଣ ଦଣ୍ଡଧାରୀ । ଆମ୍ଭେ ତ ଅଟୁ ବ୍ରହ୍ମଚାରୀ ॥
ପୁରୁଷେ ପୁରୁଷ ବୋଲଇ । ସ୍ତ୍ରୀଙ୍କ ସଙ୍ଗେ ସଙ୍ଗୀ ହୋଇ ॥
ଏଣୁଟି ଶ୍ରୀହରି କୃପାଏ । ଚିତ୍ତେ କାହାକୁ ନାହିଁ ଭୟେ ॥
ତାହା ଶୁଣିଣ ନୃପବର । କ୍ରୋଧରେ କମ୍ପାଇ ଶରୀର ॥
ଦନ୍ତେ ଅଧର ଚାପି ରୋଷେ । ବୋଇଲେ ଶୁଣ ଆହେ ଦାସେ ॥
ଏହା ତ କହିଲ ବଚନେ । କେମନ୍ତେ ପ୍ରତେ ଯିବା ମନେ ॥
ସ୍ୱରୂପ ଯେବେ ଏ ଉତ୍ତର । ଦେଖାଅ ନାରୀରୂପ ତୋର ॥
ନୋହିଲେ ଦଣ୍ଡକୁ କାରଣ । ଅବଶ୍ୟ ହେବୁ ବିପ୍ର ଶୁଣ ॥
ଏମନ୍ତ ବୋଲି ନୃପବର । ରଖାଇ ଦେଲେ ବନ୍ଦୀଘର ॥
ସେ ବନ୍ଦୀଘରେ ଦାସେ ଥାଇ । ଚିତ୍ତେ ଚିନ୍ତିଲେ ଭାବଗ୍ରାହୀ ॥
ଆରତେ ଦାସ ଜଗନ୍ନାଥ । ବୋଲନ୍ତି ରଖ ଗୋପୀନାଥ ॥
ରଖ ହେ ଆରତ ଭଞ୍ଜନ । କଷ୍ଟପାବକ ପ୍ରଭଞ୍ଜନ ॥

ଦ୍ରୌପଦୀ ଲଜ୍ଜା ନିବାରଣ । ବାରଣ ଆରତତାରଣ ॥
କୃପାସମୁଦ୍ର ଚକ୍ରପାଣି । ଶରଣଜନ ଚିନ୍ତାମଣି ॥
ପ୍ରତାପରୁଦ୍ରର ଦଣ୍ଡରୁ । ଉଦ୍ଧର ଧର ମହାମେରୁ ॥
ଲଜ୍ଜାସମୁଦ୍ରୁ ପାରିକର । ମୁଁ ଯେବେ ଶରଣ ତୁମ୍ଭର ॥
କରୁଣା କର ପ୍ରଭୁ ମୋତେ । କୀରତି ରହୁ ଏ ଜଗତେ ॥
ଏ ଯେ ପୁରୁଷ ରୂପ ଯାଉ । ସ୍ତିରୀ ସ୍ୱରୂପ ମୋର ହେଉ ॥
ଦେଖି ନୃପତି ମରୁ ଭଳି । ଖଳଙ୍କ ମୁଖେ ଲଗୁ କାଳି ॥
କପଟୀ ଜନ ଚକ୍ଷୁ ଯେତେ । ଚିନ୍ତାରେ ମରନ୍ତୁ ସମସ୍ତେ ॥
ମୂର୍ଖଜନଙ୍କ ଗର୍ବ ନାଶୁ । ସାଧୁଙ୍କ ମହିମା ପ୍ରକାଶୁ ॥
ଏମନ୍ତ ଆଜ୍ଞା ହେଉ ମୋତେ । ନୋହିଲେ ହନ୍‌ ନିହିବ ତୋତେ
ତୋ ଧର୍ମ ପ୍ରଭୁ ଥାଉ ଥାଉ । ଏ ରାଜଦଣ୍ଡ କେବା ସହୁ ॥
ତୁ ଯେ ମୋହର ପ୍ରାଣନାଥ । ଏଠାରେ ନ ସରୁ ମହତ ॥
ଏମନ୍ତ ବୋଲି ସ୍ତୁତି କଲେ । ଦାସେ ନିଷ୍ଟ ନେତ୍ର ନିଦ୍ରାଗଲେ
ତାହା ଜାଣିଲେ ଭଗବାନ । ଯେ ପ୍ରଭୁ ଭକତଜୀବନ ॥
ଦ୍ୱିଭୁଜ କଲେ ଭାବଗ୍ରାହୀ । ଦାସଙ୍କ ପାରୁଶରେ ଯାଇ ॥
ଅଭୟ ପାଣି ଆନନ୍ଦରେ । ଲଦିଲେ ସେବକ ଉପରେ ॥
ବୋଇଲେ ବାଞ୍ଛା ସିଦ୍ଧ ହେଉ । ପୁରୁଷତନୁ ତୋର ଯାଉ ॥
ହେଉ କାମିନୀ ତନୁ ପ୍ରାପ୍ତ । ରାଜା ଦୂରକୁ କଟାଁ ଭୟ ॥
ଆମ୍ଭ ଦାସିଆ ଥାଉ ଥାଉ । ଚିତ୍ତେ କାହାକୁ ଭୟ ଆଉ ॥
ଏବେ ତୁ ମନେ ହେତୁ କର । ମୋ ସୁଦର୍ଶନ ବଳୀୟାର ॥
ଏମନ୍ତ ଆଜ୍ଞା ତାକୁ ଦେଲେ । ତକ୍ଷଣେ ଅନ୍ତର୍ଦ୍ଧାନ ହେଲେ ॥
ଦାସେ ତପ ନିଦ୍ରା ଯାଇଥିଲେ । ଏମନ୍ତ ସ୍ୱପନ ଦେଖିଲେ ॥
ଉଠିବସିଲେ ତତକ୍ଷଣ । ଚିନ୍ତିଣ କମଳାରମଣ ॥
ଦେଖିଲେ ପାଟେଣି କେହି ନାହିଁ । ବୋଇଲେ ବ୍ରହ୍ମାଣ୍ଡଗୋସାଇଁ ॥
ମୋତେ କରୁଣା କରି ଗଲେ । ମୋର ବିପତ୍ତି ଦେଖି ଭଲେ

ଏମନ୍ତ ବୋଲି ବେଗ ହୋଇ । ନିଜ ଦେହକୁ ଦେଲେ ଚାହିଁ ॥
ଦେଖିଲେ ସ୍ତ୍ରୀ ଦେହଗୋଟି । ହେଲେଣ ମୋହନ୍ତ ଅଛି ସୃଷ୍ଟି ॥
ବିପ୍ରର କଲା ମନେ ତାର । ଧନ୍ୟ ଜୀବନ ହେଲା ମୋର ॥
ଯେବଣ ପାଦପଦ୍ମ ଲାଗି । ଅହଲ୍ୟା ହେଲା ମୋକ୍ଷଭାଗୀ ॥
ଯେଉଁ ଚରଣ ଲାଗି କରି । କୁବୁଜା ହୋଇଲା ସୁନ୍ଦରୀ ॥
ଯେବଣ ପାଦପଦ୍ମ ଭଟେ । ଫଣୀ ମଣିକ ଶିରେ କଟେ ॥
ସଂସାରେ ଗଙ୍ଗାରୂପେ ବହି । ଅଶେଷ ପ୍ରାଣୀଙ୍କି ତାରଇ ॥
ସେ ପାଦପଦ୍ମରଜ ପାଇ । ପବିତ୍ର ହେଲି ଆଜ ମୁହିଁ ॥
ଆଉ କାହାକୁ ମୋର ଡର । ମୋ ପ୍ରଭୁ ବଟେ ବଳୀୟାର ॥
ଏମନ୍ତ ବୋଲି ଅତି ତୋଷେ । ମଧ୍ୟରୁ ବାହାରିଲେ ଦାସେ ॥
ଭଜିଲେ ରାମକୃଷ୍ଣ ହରି । ବୋଇଲେ କାହିଁ ଦଣ୍ଡଧାରୀ ॥
ଯିବେ ସେ କରୁଥିଲେ କୋପ । ଦେଖୁ ଆମ୍ଭର ସ୍ତ୍ରୀରୂପ ॥
ଏମନ୍ତ ବୋଲି ମାୟା ନାରୀ । ରାଜଦୂତଙ୍କୁ ସଙ୍ଗେ ଧରି ॥
ଚଳିଲେ ଅତ୍ୟନ୍ତ ହରଷେ । ଭେଟିଲେ ଯାଇ ରାଜା ପାଶେ ॥
ଦେଖି ନୃପତି ଆଚମ୍ବିତ । ବୋଇଲେ ଏ କି ବିପରୀତ ॥
ସ୍ତନ ବଦନ ଅଙ୍ଗେ ଶୋଭା । କି ଅବା ପଠାନ୍ତର ଦେବା ॥
ସୁନ୍ଦର ପଣେ ଏଡ଼େ ନାରୀ । ମୋହି ପାରଇ ବ୍ରହ୍ମଚାରୀ ॥
କେମନ୍ତ ଏ ରୂପ ହୋଇଲା । ପୁରୁଷ ତନୁ କେଉଁଣେ ଗଲା ॥
ନିଶ୍ଚୟେ ଗୋବିନ୍ଦର ମାୟା । ଆନର ବଟେ କାହିଁ ଏହା ॥
ଏମନ୍ତେ ବିଚାରି ନୃପତି । ହୃଦପଦ୍ମରେ କଲେ ସ୍ତୁତି ॥
ବୋଇଲେ ଶୁଣ ଆହେ ଦାସେ । ମାୟା ଯେ କଲ ଆମ୍ଭ ପାଶେ ॥
ଏହା କେମନ୍ତେ ଜଣାଯିବ । ଦେଖାଅ ନାରୀଙ୍କ ସ୍ୱଭାବ ॥
ତା ଶୁଣି ସେ ମାୟା ସୁନ୍ଦରୀ । ମନେ ଚିନ୍ତିଲେ ନରହରି, ॥
ଅଳପ ମନ୍ଦେ ମନ୍ଦେ ହସି । ନୟନ ଅପାଙ୍ଗରେ ଶୋଷି ॥
ତାଳକୁ କଲେ ଚନ୍ଦ୍ରାନନ । ବୋଇଲେ ଶୁଣ ହେ ରାଜନ ॥

କେତେ କଷ୍ଟାଳ କରୁ ମୋତେ । ଯେମନ୍ତେ ହେବ ତୋର ପ୍ରତେ ॥
ଏମନ୍ତ ବୋଲି ବାସ ଧରି । ଦେଖାଇ ଦେଲେକ ସୁନ୍ଦରୀ ॥
ମର୍ମ ସ୍ଥାନରୁ ଶୋଣବନ୍ଧ । ବସନ ବିବର୍ଣ୍ଣ ଦିଶଇ ॥
ସଭାରେ ଥିଲେ ଯେତେ ଜନ । ସମସ୍ତ ଦେଖିଲେ ନୟନ ॥
ବୋଇଲେ ସ୍ୱରୂପ ଏ କଥା । କେ ଏହା କରିପାରେ ମିଥ୍ୟା ॥
ନିଷ୍ଟେ ଏ ଶ୍ରୀହରିର ଦାସ । ରାଜନ କର ହେ ବିଶ୍ୱାସ ॥
ସାଧୁରେ ଅପରାଧ କଲେ । ସମସ୍ତେ ନାଶ ଯିବା ଭଲେ ॥
ଏହା ଶୁଣିଣ-ମହାରାଜା । କଲେ ଦାସଙ୍କ ପାଦେ ପୂଜା ॥
ଅନେକ ଧନ ବସ୍ତ୍ର ଦେଲେ । ଚରଣେ ବିନୟେ କହିଲେ ॥
ବୋଇଲେ ଶୁଣ ମୋ ବଚନ । ଦୁଃଖ ନ କର ତୁମ୍ଭ ମନ ॥
କହ ଶ୍ରୀ ଭାଗବତ ରସ । ଏ ମୋର ଅପରାଧ ନାଶ ॥
ଶ୍ରବଣେ କର୍ଣ୍ଣ ସୁଖୀ ହେଉ । ଅଶେଷ ଜନ୍ମ ପାପ ଯାଉ ॥
ଏଥିରେ ନ କର ନିରାଶ । ତା ଶୁଣି ଜଗନ୍ନାଥ ଦାସ ॥
ହୋଇଣ ପରମ ଆନନ୍ଦ । ଚିତ୍ତେ ଚିନ୍ତିଲେ ଆଦିକନ୍ଦ ॥
ପଶିଲେ ଜଳ ମଧ୍ୟେ ଯାଇଁ । ସ୍ନାନ ଯେ କରିବାର ପାଇଁ ॥
କାମିନୀରୂପ ଗୋପ୍ୟ କଲେ । ପୁରୁଷ ସ୍ୱରୂପ ହୋଇଲେ ॥
ସମସ୍ତେ ଦେଖୁ ଦେଖୁ ତହିଁ । ସ୍ନାନ ଶଉଚବନ୍ତ ହୋଇ ॥
ବସିଲେ ନୃପତି ସଭାରେ । ଅତ୍ୟନ୍ତ ହରଷ ମନରେ ॥
ଗାୟନ କଲେ ଭାଗବତ । ଯେ ଶୁକ ଦେବଙ୍କ ଉକତ ॥
ପ୍ରାକୃତବଚନେ ଥିଲେ କରି । ସେ ମହା ପୁରାଣ ବିସ୍ତାରି ॥
କହିଲେ ନୃପତି ଅଗ୍ରତେ । ଆଦ୍ୟନ୍ତୁ ପ୍ରାନ୍ତ ପରିଯନ୍ତେ ॥
ଶୁଣି ନୃପତି ସଭାଜନେ । ଅତି ହରଷ ହୋଇ ମନେ ॥
ଦାସଙ୍କୁ ଅନେକ ପ୍ରଶଂସି । ବୋଇଲେ ତୁମ୍ଭେ ବ୍ରହ୍ମଋଷି ॥
ତୁମ୍ଭ ମହିମା ବୁଝିବାରେ । କେ ଅବା ଅଛୁ ଏ ସଭାରେ ॥
ଏଥକୁ ଶୋଚନା ନ କର । ବୋଲି ଉଠିଲେ ଦଣ୍ଡଧାରୀ ॥

ଆପଣା ଅଙ୍ଗୁ ଅଳଙ୍କାର । କାଢ଼ିଣ ଦାସଙ୍କ ଗୁମୁର ॥
ରଖିଣ ଦଣ୍ଡବତ କଲେ । ଆଜ ମୁଁ ଶରଣ ବୋଇଲେ ॥
ଏମନ୍ତ ବୋଲି ସେ ରାଜନ । ଚନ୍ଦ୍ରାର୍କେ ଦେଲେ ଭୂମିଦାନ ॥
ଗୃହ ସହିତେ ଦାନ ଦେଇ । ଦାସଙ୍କୁ ମେଲଣି କରାଇ ॥
ଏଥିଉତ୍ତାରୁ ଦଣ୍ଡଧାରୀ । ଖଳୁଆମାନଙ୍କୁ ହକାରି ॥
ଚେଙ୍ଗି ଗୃବୁକ ଗୁଡ ପିଠି । ସବୁଙ୍କୁ କଲେ ସାତବେଣ୍ଟି ॥
ଅନେକ ଶାସ୍ତି ତାଙ୍କୁ ଦେଲେ । ରାଜ୍ୟୁ ବାହାର କରାଇଲେ ॥
ବୋଇଲେ ଆଉଁ ଏ ରାଜ୍ୟରେ । ଯେ ଅବା ସାଧୁ ଜନଠାରେ ॥
ଦୂଷଣ ବଚନ କହିବ । ତାହାର ବଂଶ ନାଶ ଯିବ ॥
ଏମନ୍ତ ବୋଲି ଦଣ୍ଡଧର । ବିଜୟ କଲେ ନିଜପୁର ॥
ତେଣେ ଯେ ଦାସେ ଗଲେ ଚଳି । ନିଜ ଭୁବନେ ଯାଇ ମିଳି ॥
ଆନନ୍ଦେ ବଞ୍ଚାଇଲେ ଦିନ । ଭଜିଣ ଶ୍ରୀ ମଧୁସୂଦନ ॥
କାଳେ ଲଭିଲେ ହରି ଭକ୍ତି । ସଂସାର ମଧ୍ୟେ ଅଛି କୀର୍ତ୍ତି ॥
ଶୁଣ ସୁମନ ଶୁଦ୍ଧଚିତ୍ତେ । ଏ ଦାର୍ଢ୍ୟଭକ୍ତି ରସାମୃତେ ॥
ପଢ଼ି ଶୁଣିବେ ଯେଉଁ ଜନେ । ନ ଯିବେ ଶମନ ସଦନେ ॥
ଅଶେଷ ଜନ୍ମ ପାପ ନାଶି । ଦେବଙ୍କ ସଙ୍ଗେ ଥିବେ ବସି ॥
କହଇ ବିପ୍ର ରାମଦାସ । ମୂଳଟି ଅଟଇ ବିଶ୍ୱାସ ॥
ବିଶ୍ୱାସ ବିନା କର୍ମ ଯେତେ । କେବଳ ଆଶ୍ରୟ ଜଗତେ ॥
ଏଣୁ ପାମର ରାମ ଦାସ । ସାଧୁ ଚରଣେ କରେ ଆଶ ॥
ସୁଜନେ ଏଥି ରସେ ରସ । ଏ ଭବଜଳରେ ନ ଭାସ ॥

ଇତି ଶ୍ରୀଦାର୍ଢ୍ୟଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ
ଜଗନ୍ନାଥଦାସ ଦାର୍ଢ୍ୟଭାବ ବର୍ଣ୍ଣନେ ନାମ
ପଞ୍ଚଦଶୋଽଧ୍ୟାୟଃ ।

---

# ଷୋଡ଼ଶ ଅଧ୍ୟାୟ

## ମାଧବାଗୃର୍ଯ୍ୟ ସମ୍ବାଦ

### ଚୈତନ୍ୟ ଉବାଚ

ଏବେ ହେ। ମନବ୍ୟୟ୍ର ଶୁଣ । ଏ ଦାର୍ଢ୍ୟ ଭକ୍ତର ଲକ୍ଷଣ ॥
ସେ ପୁଣ୍ୟ ଗଙ୍ଗା ନଦୀ ତୀର । ନଦୀୟା ନବରରେ ଘର ॥
ଜାତରେ ଅଟେ ବିପ୍ରବର । ମାଧବାଗୃର୍ଯ୍ୟ ନାମ ତାର ॥
ଧାର୍ମିକ ବିବେକ ସୁଜାଣ । ସକଳ ଗୁଣରେ ନିପୁଣ ॥
ସକଳ ଜନେ ତାର ଦୟା । ଶାନ୍ତ ସୁଶୀଳ ସେ ନିର୍ମାୟା ॥
ଦାନ ସୁକୃତେ ତାର ମତି । ସାଧୁଙ୍କ ସେବା କରେ ନିତି ॥
ବିପ୍ରଙ୍କ ସେବାରେ ଦୃଢ଼ବ୍ରତ । ନାମ ଭଜନେ ଅପ୍ରମିତ ॥
ଶୁଭ କର୍ମରେ ବଞ୍ଚେ ଦିନ । ନ ଜାଣେ ଅନ୍ୟ କଥାମାନ ॥
ତାର ଭାରଯା ମହାସତୀ । ନାମ ତାହାର ସତ୍ୟବତୀ ॥
ସୁନ୍ଦର ପଣେ ସେ ତରୁଣୀ । ନିପୁର ଯାକ ପାରେ ଜିଣି ॥
ଶରଦ ସୁଧାଂଶୁବଦନୀ । କରକ ହୀରକ ଦଶନୀ ॥
ସେ ଯେ ରତ୍ନସ୍ତ ଶିରୋମଣି । ଶ୍ରୀକୃଷ୍ଣ ଚରନ ରୁକ୍ମଣୀ ॥
ସ୍ୱାମୀର ଆଜ୍ଞା ନ ପେଲଇ । ନିରନ୍ତେ ଚରଣେ ଶରଇ ॥
ସ୍ୱାମୀର ସେବା ତାର ମୂଳ । ନ ଜାଣେ ସେ ଅନ୍ୟ କୁଶଳ ॥
ଏମନ୍ତ ପତିବ୍ରତା ନାରୀ । କେବଳ ଭଜୁଥାଇ ହରି ॥
ପତି ଶ୍ରୀପତି ସାଧୁଜନ । ଏ ତିନି ମଣଇ ସମାନ ॥
ଆନନ୍ଦେ ବଞ୍ଚୁଥାନ୍ତି ଦିନ । ଏଥିଉତ୍ତାରୁ ଶୁଣ ମନ ॥
ଏମନ୍ତେ ପତିପତ୍ନୀ ଦୁଇ । ଏକଇ ପ୍ରାଣ ଭିନ୍ନେ ନୋହି ॥
ତାହାର ଏକଇ କୁମର । ଛମାସ ହେଲା ଜନ୍ମିବାର ॥
ଅତି ସୁନ୍ଦର ସେ କୁମର । ମାତା ପିତାଙ୍କ ମନୋହର ॥
ଚନ୍ଦ୍ରମା ପ୍ରାୟେ ଦେହ ତାର । ଅନ୍ଧାର କରଇ ଉଜ୍ଜ୍ୱଳ ॥
ମାତ ଜନନୀ ତାହା ଦେଖି । ନିରତେ ହେଉଥାନ୍ତି ସୁଖୀ ॥



ଚୈତନ୍ୟ ସନ୍ନ୍ୟାସୀ ଙ୍କଣ୍ଠରୁ ପିଲାକୁ ନେଇ  ତାର ମା'ଙ୍କୁ ଦେଉଛନ୍ତି

ପୁତ୍ରକୁ ଧରି କାଖେ କୋଳେ । ଦିନ ବଞ୍ଚନ୍ତି ସୁଖହେଳେ ॥
ଏମନ୍ତ ସମୟରେ ତହିଁ । ଯେ ପ୍ରଭୁ ଚୈତନ୍ୟ ଗୋସାଇଁ
ଅଶେଷ ପ୍ରାଣୀଙ୍କ କଲ୍ମଷ । କରିବା ଅର୍ଥେ ପ୍ରଭୁ ନାଶ ॥
ହୋଇ ଅଛନ୍ତି ଅବତାର । ସେ ପ୍ରଭୁ ଏକ ଦିନକର ॥
ନିତି ପ୍ରହରେ ଅସ୍ତୁ ହୋଇ । ଅତି ଆନନ୍ଦେ ବେନି ଭାଇ ॥
ନଦୀୟା ଦାଣ୍ଡେ ବିଜେ କରି । ସକଳ ସାଧୁଙ୍କୁ ହକାରି ॥
ଢୋଲ ମୃଦଙ୍ଗ ଅଣାଇଲେ । ଦିନ୍ଦୁଡ଼ିମାନ ଲଗାଇଲେ ॥
ବଜାଇ ଶିଙ୍ଘା ବେଣୁ ସ୍ୱନ । ଆନନ୍ଦେ କଲେ ସଂକୀର୍ତ୍ତନ ॥
ଶ୍ରୀରାମକୃଷ୍ଣ ଗୁଣ ଯେତେ । ଗାନ କରନ୍ତି ଅବିରତେ ॥
ନାଚନ୍ତି ଅତି ଭୋଳ ହୋଇ । ବିଷୟ ବିଷକୁ ପକାଇ ॥
ତା ଶୁଣି ଅତି ବେଗ ହୋଇ । ମାଧବାଗୃହିଁ ଗଲେ ଧାଇଁ ॥
ଶୁଣିଲେ ନାମ ସଂକୀର୍ତ୍ତନ । ଏଥିଉତ୍ତାରୁ ଶୁଣ ମନ ॥
ଅତି ଆନନ୍ଦେ ସତ୍ୟବତୀ । ରନ୍ଧନ କର୍ମେ ଦେଲ ମତି ॥
କୋଳେ ଧରିଣ ନିଜ ବାଳ । ଅତି କୋମଳ ତୁମ୍ବାଫଳ ॥
ବ୍ୟଞ୍ଜନ କରିବାର ଅର୍ଥେ । ପନିକି ପକାଇଁ ତୁରିତେ ॥
ସେ ଫଳ କାଟନ୍ତେ କାମିନୀ । କର୍ଣ୍ଣେ ଶୁଭିଲା ନାମଧ୍ୱନି ॥
ସେ ସଂକୀର୍ତ୍ତନର ମଧ୍ୟରେ । ଗାନ କରନ୍ତି ଉଚ୍ଚସ୍ୱରେ ॥
ରାଧା ଶ୍ରୀକୃଷ୍ଣ ପ୍ରେମଲୀଳା । କର୍ଣ୍ଣରେ ଶୁଣି ହେଲା ଭୋଳା ॥
ପୁଲକ ହେଲା ରୋମାବଳୀ । ନେତ୍ରୁ ଲୋତକ ଧାର ଗଲି ॥
ବଦନୁ ନ ସ୍ଫୁରେ ବଚନ । ଦେହୁ ହଜିଲା ବୁଦ୍ଧିଜ୍ଞାନ ॥
ଲୟ ଲଗିଲା ସଂକୀର୍ତ୍ତନେ । ସୁସାଧୁମାନଙ୍କର ଗାନେ ॥
ଏଣୁ ସେ ଅତି ଭାବଭୋଳେ । ସେ ଫଳ ପକାଇଲା ତଳେ ॥
ଧଇଲା ନିଜ ପୁତ୍ରଗୋଟି । ତତ୍କ୍ଷଣେ ପକାଇଲା କାଟି ॥
ଅତ୍ୟନ୍ତ ଟିକି ଟିକି କରି । ଚଟୁଆ ଆଟିକାରେ ଭରି ॥
ବ୍ୟଞ୍ଜନ ଅର୍ଥେ ଚୁଲିପରେ । ବସାଇ ଦେଲା ଧାତିକାରେ ॥

ଆଶ୍ଚେ ଅନଳ ଦେଲା ଜାଳି । ତହୁଁ ଅନ୍ତର ହେଲ ବାଳୀ ॥
ମନ ନିବେଶି ସଂକୀର୍ତ୍ତନେ । ବସିଲ ନିଷ୍ଠଲ ଆସନେ ॥
ଶ୍ରୀକୃଷ୍ଣ ପ୍ରେମ ଲୀଳାମୃତ । ଶୁଣି ହୋଇଲ ମୂରୁଚ୍ଛିତ ॥
କ୍ଷଣ କ୍ଷଣକେ ଭାବ ହୃଦେ । ଗାନ କରଇ ପଦେ ପଦେ ॥
କ୍ଷଣକେ ହସେ କ୍ଷଣେ ତୁନି । କ୍ଷଣକେ ପଡ଼ଇ ମେଦିନୀ ॥
ଏମନ୍ତ ଭାବେ ହୋଇ ଭୋଳ । ତାହା ଜାଣିଲେ ଆଦ୍ୟମୂଳ ॥
ମାଧବାଶ୍ରମୀ କଣ୍ଠେ ବସି । ମନ ମୋହିଲେ ବ୍ରହ୍ମଋଷି ॥
ସେ ବପ୍ର ଗଲେ ଛାଡ଼ି ଛାଡ଼ି । ତୁଟିଲ ସଂକୀର୍ତ୍ତନୁ ମନ ॥
ଦେଖିଲ ନିଜ ପ୍ରିୟା ତାର । ରୁଧିରେ ତନୁ ଜର ଜର ॥
ଭାବେ ହୋଇଛି ମୂରୁଚ୍ଛିତ । ବପ୍ର କପାଳେ ମାରେ ହସ୍ତ ॥
ପତ୍ନୀକି ଧରିଣ ଉଠାନ୍ତ । ବୋଇଲା ଏକି ବପସ୍ଥାନ ॥
ଫେଡ଼ ତୁ କହ ତତପର । କାହିଁ ତୋ ବାଳୁତ କୁମର ॥
ଶୁଣି ସୁନ୍ଦରୀ ଚେତା ପାଇ । ପାଟେ ଦେଖିଲା ପୁତ୍ର ନାହିଁ ॥
ତନୁ ବସନ ନାରଖାର । ରକତେ ଦିଶେ ଜର ଜର ॥
ତଳେ ପଡ଼ିଛି ପଲଗୋଟି । ଦେଖିଣ ଚକିତ ବଟୋଷ୍ଟୀ ॥
ବେଗେ ରନ୍ଧନପୁରେ ଗଲା । ଚୁଲିରୁ ଉଠାଇ ଆଣିଲ ॥
ଦେଖିଲ ପୁତ୍ର ମାଂସ ସିଝି । ରନ୍ଧିଛି ପକ୍ୱ ପ୍ରାୟେ ଭାଜି ॥
ପତି ସମ୍ମୁଖରେ ଦେଲ ଥୋଇ । ବୋଇଲା ମୋର ଦୋଷ ନାହିଁ
କେବଳ ଚୈତନ୍ୟ ସନ୍ନ୍ୟାସ । ଶ୍ରୀକୃଷ୍ଣ ରାଧା ପ୍ରେମରସ ॥
ଗାୟନ କଲେ ଉଚ୍ଚସ୍ୱରେ । ସେ ଧ୍ୱନି ଶୁଣି ଶ୍ରବଣରେ ॥
ଦେହରୁ ହଜିଲ ମୋ ଜ୍ଞାନ । ରହିଲ ସଂକୀର୍ତ୍ତନେ ମନ ॥
ତେଣୁଟି କଲି ପୁତ୍ର ନାଶ । ବଚ୍ଛର ଏଥେ କାହା ଦୋଷ ॥
ତା ଶୁଣି ବୋଲେ ତାର ପତି । ଧନ୍ୟ ଜୀବନ ତୋର ସତୀ ॥
ଧନ୍ୟ ତୋହର ପିତାମାତା । ଧନ୍ୟ ମୁଁ ଅଟେ ତୋର ଭର୍ତ୍ତା
ଧନ୍ୟ ଅଟଇ ତୋ ଜୀବନ । କୃଷ୍ଣ ବଶରେ ତୋର ମନ ॥

ପୁଣ ତମ୍ଭେ ଗଲେ ପଛେ ଯାଉ । ଏ ହ୍ରଦ ଦେଖିବ ମୁଁ କାହୁଁ ॥
ଏମନ୍ତ ବୋଲି ନିଜ ପତି । କୋଳେ ବସାଇ ସେ ଯୁବତୀ ॥
ମୁଖେ ଚୁମ୍ବନ ତାର ଦେଇ । କହେ ଅଚନ୍ତେ ରହ ସହି ॥
ତା ଶୁଣି ବୋଲେ ସେ ଯୁବତୀ । ଶୁଣ ମୋହର ପ୍ରାଣ ପତି ॥
ସେ ରାଧା କୃଷ୍ଣର ମହିମା । ଜାଣି ନ ପାରେ ବେଦବ୍ରହ୍ମା ॥
ସେହି କୃଷ୍ଣ ପ୍ରେମରସେ ରସି । ଅଛନ୍ତି ଚୈତନ୍ୟ ସନ୍ନ୍ୟାସୀ ॥
ଭକତ ବନ୍ଧୁ ସଙ୍ଗତରେ । ଆନନ୍ଦେ ସଂକୀର୍ତ୍ତନ କରେ ॥
କୃଷ୍ଣ ମହିମା ଯେବେ ସତ । ନିଶ୍ଚେ ଜୀଇବ ମୋ ବାଳୁତ ॥
ତହିଁ ବୁଡ଼ନ୍ତି ମୋର ମନ । କିପାଁ ମରିବ ମୋ ନନ୍ଦନ ॥
ଏମନ୍ତ ବୋଲି ସେ ସୁନ୍ଦରୀ । ପତିଙ୍କ ସଙ୍ଗତରେ ଧରି ॥
ମାଂସ ଆଣିକା ମାଥେ ବହି । ଚଳିଲେ ଅତି ବେଗ ହୋଇ ॥
ମିଳିଲେ ସଂକୀର୍ତ୍ତନ ମଧ୍ୟେ । ଅତ୍ୟନ୍ତ ମନର ଆନନ୍ଦେ ॥
ଆଣିକା ଚରଣେ ଥୋଇଲେ । ସକଳ ବୃତ୍ତାନ୍ତ କହିଲେ ॥
ତାହା ଶୁଣିଣ ସାଧୁମାନେ । ଚୈତନ୍ୟ ଦେବଙ୍କର ସନେ ॥
ବୋଇଲେ ଧନ୍ୟ ଏ ସୁନ୍ଦରୀ । ଧନ୍ୟ ଏହାର ଗର୍ଭଧାରୀ ॥
ଧନ୍ୟ ଅଟଇ ଏହା ପତି । ଧନ୍ୟ ଅଟଇ ଏହା ମତି ॥
ଧନ୍ୟ ସୁଫଳ ଆମ୍ଭ ଆଖି । ଏମନ୍ତ ସ୍ତ୍ରୀ ମୁଖ ଦେଖି ॥
ଏମନ୍ତ ବୋଲି ସର୍ବଜନେ । ଅତି ଆନନ୍ଦ ହୋଇ ମନେ ॥
ବୋଲିଲେ ନମୋ ମହାବାହୁ । ଭକତ ବାନ୍ଧବ ବୋଲାଉ ॥
ଅଶେଷ ଜନ ଚିନ୍ତାମଣି । ବ୍ରଜମୋହନ ବଂଶୀପାଣି ॥
ନମସ୍ତେ ବ୍ରଜେନ୍ଦ୍ର କୁମର । ନମୋ ରାଧିକା ପ୍ରାଣେଶ୍ୱର ॥
ଏ ଭୂମି ବୃନ୍ଦାବନ ଭାବ । ବ୍ରହ୍ମାଦି ଦେବଙ୍କୁ ଦୁର୍ଲଭ ॥
ଏ ଭାବେ ଶବ୍ଦ ଦେଇକରି । ପୁଣି ନାଚିଲ ସେ ସୁନ୍ଦରୀ ॥
ଏ କଥା ଅଟେ ବିପରୀତ । ମହିମା ଅଟେ ତୋର ସତ ॥
ଏ ପୁଣ୍ୟ ସ୍ତ୍ରୀ ପୁଣି ଜୀଉ । ମହିମା ଯୁଗେ ଯୁଗେ ଥାଉ ॥

ନାମ ମହିମା ଏଣେ ଦିଶୁ । ସାଧୁଙ୍କ ମହିମା ପ୍ରକାଶୁ ॥
ଏମନ୍ତ ବୋଲି ସର୍ବଜନେ । ମାତିଲେ ନାମ ସଂକୀର୍ତ୍ତନେ ॥
ନିତ୍ୟେ ଚୈତନ୍ୟ ଦୁଇ ଭାଇ । ଆନନ୍ଦେ ଗଦ ଗଦ ହୋଇ ॥
ଶ୍ରୀରାଧା କୃଷ୍ଣ ଚିନ୍ତା କରି । କରେ ତୁଳସୀ ଦଳ ଧରି ॥
ବ୍ୟଞ୍ଜନ ଭାଣ୍ଡେ ପକାଇଲେ । ମଣ୍ଡଳ ମଧ୍ୟେ ବସାଇଲେ ॥
ନିତ୍ୟ ଡାକିଲେ ପୁତ୍ର ଗୋଟି । ଭାବେ ଶ୍ରୀହରି ନାମ ରଟି ॥
ବୋଇଲେ ଏହି ଆଜ୍ଞା ହେଉ । ବିପ୍ର ନନ୍ଦନ ପ୍ରାଣ ପାଉ ॥
ଏମନ୍ତ ବୋଲି ଆଗ କରି । ଶ୍ରୀକରେ କରତାଳ ଧରି ॥
ଗାୟନ କଲେ ଉଚ୍ଚସ୍ୱରେ । ଶ୍ରୀକୃଷ୍ଣ ଯୁଗଳ ଭାବରେ ॥
ଦଣ୍ଡ ଦଣ୍ଡକେ ହରିଧ୍ୱନି । କରନ୍ତେ କମ୍ପଇ ମେଦିନୀ ॥
କେ ରଙ୍ଗେ କରେ ନାନା ନୃତ୍ୟ । କେ ରଙ୍ଗ କରି ଗାଏ ଗୀତ ॥
କେ ରଙ୍ଗ ତାଳି ଭଙ୍ଗୀ ହୋଇ । ରଙ୍ଗରେ ମୃଦଙ୍ଗ ବଜାଇ ॥
କେ କରେ ଦେଇ କରତାଳି । କେ ମୁଖେ ଦେଲେ ହୁଳହୁଳି ॥
ନଦୀୟା ନଗରରେ ଯେତେ । ଯେ ସ୍ତ୍ରୀ ବା ପୁରୁଷ ସହିତେ ॥
ବୃଦ୍ଧ ବାଳକ ଯୁବା ଯାଏ । ସମସ୍ତେ କଲେ ଜୟେ ଜୟେ
ସକଳ ମୁଖେଁ ଏହା ଶୁଣି । ଆନନ୍ଦ ହୋଇଲା ଧରଣୀ ॥
ଏମନ୍ତ ଦଣ୍ଡଦଣ୍ଡ ପରେ । ବ୍ରହ୍ମାଣ୍ଡ ନାୟକ କୃପାରେ ॥
ସେ ନାମ ବ୍ରହ୍ମ ମହିମାରେ । ଚୈତନ୍ୟ ଦେବଙ୍କ କୃପାରେ ॥
ଆବର ସାଧୁଙ୍କ କୃପାରେ । ଶେଷ ଯୁବତୀ ସନ୍ତୋଷରେ ॥
ବାଳୁତ ଗୋଟି ପ୍ରାଣ ପାଇ । ରୋଦନ କଲା ଭାଣ୍ଡେ ଥାଇ ॥
ତାହା ଦେଖିଣ ସର୍ବଜନ । ରଖିଲେ ନାମ ସଂକୀର୍ତ୍ତନ ॥
ଅତି ଆନନ୍ଦ ମନ ହୋଇ । ଗାୟନ କଲେକ ଗୋସାଇଁ ॥
ଶାଶୁ ଠାକୁଣୀ କାଢ଼ଦେଲେ । ପୁତ୍ରକୁ ଘେନିଣ ଅଇଲେ ॥
ସଭାରେ ଆସନ ନିବେଶି । ବସିଲେ ଚୈତନ୍ୟ ସନ୍ନ୍ୟାସୀ ॥
ପୁତ୍ରକୁ କୋଳରେ ବସାଇ । କର୍ଣ୍ଣରେ ସଞ୍ଜୀବନୀ କହି ॥

କୃପାରୁ ଯେଣୁ ପ୍ରାଣ ପାଇ । କୃପା ଆଗ୍ରୁଣୀ ନାମ ହୋଇ ॥
ଜନନୀକୋଳେ ନେଇ ଦେଲେ । ନିଅ ତୋ ପୁତ୍ରକୁ ବୋଇଲେ
ଅନେକ ଜନେ ତାହା ଦେଖି । ସୁଫଳ କଲେ ଚର୍ମ ଆଖି ॥
ଜନନୀ ନିଜ ସୁତ ପାଇ । ଆନନ୍ଦ କେ ପାରିବ କହ ॥
ଦୀନ ଜନରେ କୋଟିଶତ୍ତ । ମିଳିଲେ ହୁଅଇ ଯେମନ୍ତ ॥
ଆଜନ୍ମ ଅନ୍ଧ ଚକ୍ଷୁ ପାଇ । ଯେମନ୍ତେ କୃତାର୍ଥ ହୁଅଇ ॥
ପାପିଷ୍ଠ ବୈକୁଣ୍ଠ ଗମନେ ଯେମନ୍ତେ ହୁଏ ତାର ମନେ ॥
ଏମନ୍ତ ହେଲା ସେ ସୁନ୍ଦରୀ । ନିଜ ବାଳକ ପାଇ କରି ॥
ଟେକ କନ୍ଧ ପିଅର ଆନନ୍ଦ । ମୁଖ ବିକାଶେ ପୂର୍ଣ୍ଣଚନ୍ଦ୍ର ॥
ଅଶ୍ରୁତ ଅଗୋଚର ଯାହା । ନୟନେ ଦେଖିକରି ତାହା ॥
ସାଧୁଙ୍କୁ ଅନେକ ପ୍ରଶଂସି । ଅନେକ ଧନ ଦେଲା ତୋଷି ॥
ତାହା ଦେଖିଲେ ଯେତେ ଜନ । ସବୁରି ମୁଖେ ଧନ୍ୟ ଧନ୍ୟ ॥
କୃଷ୍ଣ ମହିମା ଭାବି ଯେତେ । ବୋଲିଣ ଗଲେ ଯେଝାମତେ ॥
ସେ ପତି ପତ୍ନୀ ପୁତ୍ର ଧରି । ଚଳିଣ ଗଲେ ନିଜ ପୁରୀ ॥
ଚୈତନ୍ୟ ଦେବଙ୍କ ହରଷ । ଶ୍ରୀରାଧା କୃଷ୍ଣ ପ୍ରେମରସ ॥
ସାଧୁମାନଙ୍କ ଗୁଣ ଯେତେ । ନାମର ମହିମା ସହିତେ ॥
ନିରନ୍ତେ ଶତେ ଗୁଣ ଗୁଣି । ବଞ୍ଚିଲେ ଦିବସ ରଜନୀ ॥
ଏମନ୍ତେ କେତେ ଦିନ ଅନ୍ତେ । ହରିଙ୍କି ଭଜିଲେ ସାକ୍ଷାତେ ॥
ଶୁଣ ସୁଜନ ଏ ଚରିତ । ଏ ଦାର୍ଢ୍ୟଭକ୍ତି ରସାମୃତ ॥
ଶ୍ରବଣେ ଶ୍ରଦ୍ଧା ଯେଉଁ ନର । ଜନ୍ମ ମରଣୁଁ ହେବ ପାର ॥
ହରି ଭକତ ଜନ କଥା । ତାହାଙ୍କୁ ସତ୍ୟ ଏହି କଥା ॥
ଦାମ୍ଭିକ ମୂର୍ଖ ଯେଉଁ ନର । ସେ କାହୁଁ କରିବ ଗୋଚର ॥
ସେ କଥା ପରତେ କରିବ । ହାସ୍ୟରେ ଉଡ଼ାଇଣ ଦେବ ॥
କହଇ ବିପ୍ର ରାମଦାସ ମୋ ପ୍ରଭୁ ଚୈତନ୍ୟ ସନ୍ନ୍ୟାସ
ଆବର ସାଧୁଜନ ପାଦେ । ମୋ ଚିତ୍ତ ରହୁ ଅପ୍ରମାଦେ ॥

ଇତି ଶ୍ରୀଦାର୍ଢ୍ୟଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ
ମାଧବାଗୃଞ୍ଚ ପତି ପତ୍ନୀ ଦାର୍ଢ୍ୟଭାବ ବର୍ଣ୍ଣନେ
ନାମ ଷୋଡ଼ଶୋଽଧ୍ୟାୟଃ ।

---

## ସପ୍ତଦଶ ଅଧ୍ୟାୟ

### ଖୋଳିଆ କବୀର ସମ୍ବାଦ

### ଚୈତନ୍ୟ ଉବାଚ

ଚୈତନ୍ୟ ଦେବ ଅତି ଭାବେ । କହଇ ମନ ରଜା ଆଗେ ॥
ଅତି ଆନନ୍ଦ ଦିବ୍ୟରସ । କେବଳ ଶ୍ରବଣେ ପୀୟୂଷ ॥
ହେ ମନ ହୁଅ ସାବଧାନ । ଚଞ୍ଚଳ ନ କର ତୋ ମନ ॥
ଏ ବଡ଼ ଆଚମ୍ବିତ କଥା । ଶୁଣି ଖଣ୍ଡିବ ଭବବ୍ୟଥା ॥
ଆନନ୍ଦେ ଶୁଣ କର୍ଣ୍ଣପୁଟେ । ଯେ ପୁଣ୍ୟ ଗଙ୍ଗାନଦୀ ତଟେ ॥
ହୁଗଳି ମଧ୍ୟରେ ତା ଘର । ନାମ ତା ଖୋଳିଆ କବୀର ॥
ଦାରା ତନୟ ତାର ନାହିଁ । ସେ ନିଜ ମାତା ସୁଦ୍ଧି ଦୁଇ ॥
ଏମନ୍ତେ ଥାନ୍ତି ତେବେଜନ । ଜାତିରେ ଅଟନ୍ତି ପଟାଣ ॥
ଅତ୍ୟନ୍ତ ଦରିଦ୍ର ଜୀବନ । କଷ୍ଟରେ ବଞ୍ଚୁଥାନ୍ତି ଦିନ ॥
ବାଉଁଶ ଖଣ୍ଡିଏ ନିତି ନିତି । ରଣ କରିଣ ବୁଣୁଥାନ୍ତି ॥
ସେ ବସ୍ତ୍ର ଖଣ୍ଡି ବିକି ନିତ୍ୟ । ରଖନ୍ତି ସାନ୍ଧ୍ୟ ମୂଲ ଯେତେ ॥
ତହିଁ ଯେତେକ ମିଳୁଥାଇ । ପ୍ରାଣ ପୋଷନ୍ତି ତାହା ଖାଇ ॥
ଦଇବ ଯୋଗରେ ଭିକାରୀ । ଯୋଗୀ ଜଙ୍ଗମ ବ୍ରହ୍ମଚାରୀ ॥
ବନ୍ତ ବୈଷ୍ଣବ ଯେ ସନ୍ନ୍ୟାସୀ । ତାହାଙ୍କ ଦ୍ୱାରେ ଯେବେ ଆସି
ପ୍ରକାଶ କରନ୍ତି ସେମାନେ । ତାହାଙ୍କୁ ଅତି ଶ୍ରଦ୍ଧାମନେ ॥
ଯେ ଅବା ତାର-ଘରେ ଥାଇ । ଦିଅଇ ତାର ପାଶେ ନେଇ ॥
ମାତା ନନ୍ଦନ ବେନି ପ୍ରାଣୀ । କହନ୍ତି ସୁଧାସମ ବାଣୀ ॥
କଣ୍ଠା ସିଝାଚୁ ଯେତେ ଥାଇ । ଯେ ଯାହା ମାଗେ ତାହା ଦେଇ
ନାହିଁ ବୋଲିବା ଶବ୍ଦ ତାର । ତୁଣ୍ଡରୁ ନୁହଇ ବାହାର ॥



ଝୋଲ୍‌ଆ କବୀର୍ ତାର ମା' ସହିତ ଘରକୁ ଆସି ଦେଖିଲ ଯେ ତାର ଘର୍ ନାନାଦ
ଦ୍ରବ୍ୟରେ ପୂର୍ଣ୍ଣ ହୋଇଛି ।

ଏମନ୍ତେ ବଞ୍ଚୁଥାନ୍ତି ଦିନ । କରଣ ଶ୍ରୀହରି ଭଜନ ॥
ଦେଖିଲେ ସାଧୁଜନ ଗୋଷ୍ଠୀ । ସେଠାରୁ ନ ଆସଇ ଉଠି ॥
ଯଦି ସେ ଗୃହକର୍ମେ ଥାଇ । ଯେ ଯାହା ମାଗିଲେ ତା ଦେଇ ॥
ପ୍ରଭୁ ପଦାରବିନ୍ଦ ଗତେ । ନିବେଶି ମନ ଅନୁବ୍ରତେ ॥
ସକଳ ଜନେ ଦୟା କରେ । ବିକଳ ଦୁଃଖିଜନଠାରେ ॥
ଏହି ପ୍ରକାରେ ବଞ୍ଚେ ଦିନ । ନ ଜାଣେ ଅନ୍ୟ କଥାମାନ ॥
ଏମନ୍ତେ କେତେ ଦିନଅନ୍ତେ । ତା କୀର୍ତ୍ତି ପୂରିଲା ଜଗତେ ॥
ଯହିଁ ଶୁଣିଲେ ତା ଚରିତ । ପ୍ରଶଂସା କଲେ ଅପ୍ରମିତ ॥
ଲୋକେ ବୋଇଲେ ଧନ୍ୟ ଧନ୍ୟ । ଖୋଲିଆ କବୀର ଜୀବନ ॥
ଏତେ ଦରିଦ୍ର ଜନ ହୋଇ । ଯେ ଯାହା ମାଗିଲେ ଦିଅଇ ॥
ଏତେ କୁଶଳ ତାର ମତି । ବୋଲିଣ ପ୍ରଶଂସା କରନ୍ତି ॥
ବଞ୍ଚଇ ପର ଉପକାରେ । ନାମ ଭଜନ ନିତ୍ୟ କରେ ॥
ଏମନ୍ତ ହୋଇ ଦିନଦିନେ । ତା ଯଶ ଜଗତେ ପ୍ରକାଶେ ॥
ତାହା ଜାଣିଲେ ଭଗବାନ । ବଢ଼ିବା ପାଇଁ ତାର ମନ ॥
ତତକ୍ଷଣେ ବିପ୍ରରୂପ ହୋଇ । ବିଜୟ କଲେ ଭବଗ୍ରାହୀ ॥
ଅତି ଦୁର୍ବଳ ବିପ୍ରଗୋଟି । ଚାଲନ୍ତେ ପଡ଼ୁଅଛି ଝୁଣ୍ଟି ॥
ଛିଣ୍ଡା ଲେଙ୍ଗୁଟା କନାଧଡ଼ି । ଅନେକ ଗଣ୍ଠି ଅଛି ତହିଁ ॥
ତଳୁଁ ଖଣ୍ଡିକ ପିନ୍ଧି ଅଛି । ଖଣ୍ଡେ ଦୋଷଡ଼ା ଛନ୍ଦି କଟି ॥
ଅତ୍ୟନ୍ତ ଦରିଦ୍ରରୂପରେ । ବିଜୟ କଲେ ତାର ପୁରେ ॥
ଧୀରେ ଚାଲନ୍ତେ ବ୍ରହ୍ମରାଶି । ଖଣ୍ଡେ ଦୂରରେ ବସି ବସି ॥
ଯାହାଙ୍କୁ ଦେଖିଲେ ପଚାରି । କାହିଁ ହୋ କବୀରର ପୁରୀ ॥
ଆଉ ଅଛଇ କେତେଦୂରେ । ଦେଖାଇ ଦିଅ କନା ମୋରେ ॥
ଆମ୍ଭେ ହୋ ଯିବୁ ତାର ପାଶେ । କିଛିହିଁ ମାଗିବାର ଆଶେ ॥
ଏମନ୍ତ କହି ଜନାର୍ଦ୍ଦନ । ସେଠାରୁ କରନ୍ତି ଗମନ ॥
ତେଣୁ କବୀର ଆସୁଅଛି । ଘରେ ତ ଅନ୍ନ ନାହିଁ କିଛି ॥

ବସ୍ତ୍ର ଖଣ୍ଡିଏ ଅଛୁ ଧରି । ବନ୍ଦି କରିବ ବୋଲି କରି ॥
ଘରେ ତା କିଛି ନାହିଁ ଯେଣୁ । ଚଞ୍ଚଳେ ଯାଉଅଛୁ ତେଣୁ ॥
ତେଣୁ ଆସନ୍ତି ଦାମୋଦର । ଭେଟ ପଡ଼ିଲେ ଯେ ଦାଣ୍ଡର ॥
ଲୋକେ ବୋଇଲେ ତହିଁଥାଇ । ଏହିଟି କବୀର ଅଟଇ ॥
ତାହା ଶୁଣିଣ ଚକ୍ରପାଣି । କବୀର ମୁଖ ଚାହିଁ ଭଣି ॥
ଶୁଣ ହେ ଝୋଲିଆ କବୀର । ଆମ୍ଭେ ଆସିଛୁଁ ତୋହଠାର ॥
ଗୃହଦ୍ୱାରେ ତୋ କୀରତି । ଶୁଣୁ ଯେ ଥାଉ ନିତ ନିତ ॥
କବୀର ପ୍ରାୟେ ଏକ ଜଣେ । ନାହିଁ ନ ଥିବ ଏ ଭୁବନେ ॥
ଦରିଦ୍ର ହେଲେ କିସ ହୋଇ । ଯେ ଯାହା ମାଗିଲେ ଦିଅଇ ॥
ଏମନ୍ତେ ଶୁଣି ଆମ୍ଭେ କର୍ଣ୍ଣେ । ଅତି ଭରସା କରି ମନେ ॥
ଆସିଣ ଅଛୁଁ ତୋର ପାଶେ । କିଛି ମାଗିବାର ଆଶେ ॥
ଦିଅ ନ ଦିଅ ତୋର ମନ । କହିଲୁଁ ସ୍ୱରୂପ ବଚନ ॥
ତା ଶୁଣି ଝୋଲିଆ କବୀର । ବିପ୍ରଙ୍କୁ କଲା ନମସ୍କାର ॥
ବୋଇଲା ଶୁଣ ହେ ଗୋସାଇଁ । ଏହା ଯେ କହିଲ କିପାଇଁ ॥
ଦେବା ଦିଆଇବାକୁ ହରି । କରତା ଅଟନ୍ତି ସଂସାରି ॥
ମୋ ଠାରୁ କେତେକ ଶକତି । ଦେବାକୁ ହେବ ମୋର ମତି ॥
ହେଲେ କି ମାଗୁଛ ଗୋସାଇଁ । କହ ଶୁଣଇ କିମ୍ପା ମୁହିଁ ॥
ତା ଶୁଣି ପ୍ରଭୁ ଦାମୋଦର । ଅଶେଷ ବ୍ରହ୍ମାଣ୍ଡ ଠାକୁର ॥
ମେଘ ଗମ୍ଭୀର ଧୀରବାଣୀ । କହନ୍ତି ପ୍ରଭୁ ଚକ୍ରପାଣି ॥
ଦେଖ ମୁଁ ଦରିଦ୍ର ବ୍ରାହ୍ମଣ । କବୀର ଭଲେ ଏହା ଶୁଣ ॥
ବସ୍ତ୍ର ଖଣ୍ଡିଏ ମୋତେ ଦିଅ । ଅଶେଷ ଲୋକେ ଯଶ ପାଅ ॥
ଅଧିକ କି କହିବ ତୋତେ । ଏତେକ ମାଗିଲି ଯୁକତେ ॥
ତା ଶୁଣି ଝୋଲିଆ କବୀର । ବୋଇଲା ଶୁଣ ବିପ୍ରବର ॥
ମୋର ଶକ୍ୟକୁ ବସ୍ତ୍ରର । ଯାହା ଦିଆଇଥିବେ ହରି ॥
କେତେକେ ସନ୍ତୋଷ ହୋଇବ । ମୋହର ଭାଗ୍ୟରେ ଲାଗିବ ॥

ଏମନ୍ତ ବୋଲି ବସ୍ତ୍ର ଧରି । ଚିରିଲା ବେନିଖଣ୍ଡ କରି ॥
ଖଣ୍ଡେକ ବିପ୍ରହସ୍ତେ ଦେଇ । ବାକ୍ୟ କହିଲା ଗୃହଁଆଇ ॥
ଆରେକ ଖଣ୍ଡ ହସ୍ତେ ଧରି । ଘଡ଼ି ଥୋଇଲା ଯତ୍ନକରି ॥
ବୋଇଲା ଘେନ ହୋ ବ୍ରାହ୍ମଣ । ତା ଶୁଣି କମଳାରମଣ ॥
ଅତି ଆନନ୍ଦ ହୋଇ ମନେ । ପିନ୍ଧିଲେ କବୀର ବଚନେ ॥
ଛିଣ୍ଡା ଲେଙ୍ଗୁଟା କନା ଯେତେ । ପିନ୍ଧିବା ଦୋଷଡ଼ା ସହିତେ ॥
ଅନ୍ତର କରି ତା ପକାଇ । ରହିଲେ ଆନନ୍ଦିତ ହୋଇ ॥
ତା ଦେଖି ବୋଲଇ କବୀର । ହେ ବିପ୍ରବର ବିବେକର ॥
ମୁଁ ଏବେ ଯାଉଅଛି ତୁରିତେ । ଏ ଖଣ୍ଡି ବିକିବା କେମନ୍ତେ ॥
ଦେଖ ମୋ ଦୁଃଖ ବିପ୍ରବର । ବିକି ଆସିଲେ ଘରେ ମୋର ॥
କୁଟୁମ୍ବଯାକ ସୁସ୍ଥ ହୋଇ । ଭୋଜନ କରିବେ ଗୋସାଇଁ ॥
ନୋହିଲେ ଉପବାସେ ଥିବେ । ତେଣୁ ମୁଁ ଯାଉଅଛି ଏବେ ॥
ତା ଶୁଣି ପ୍ରଭୁ ବ୍ରହ୍ମଋଷି । ଅଳପ ମନେ ମନେ ହସି ॥
ବୋଇଲେ ଶୁଣ ହୋ କବୀର । କାହିଁକି ଦାତାପଣ ତୋର ॥
କ୍ଷୁଧାର୍ତ୍ତ ଜନଙ୍କୁ ବସାଇ । ଯେ ଅନ୍ନ ଭୋଜନ ଦିଅଇ ॥
ତହିଁ ସେ ଫଳ ନାହିଁ କିଛି । ଅଧିକ ପାତକ ଲେଖିଛି ॥
ଆବର ବିପ୍ରଙ୍କର କରେ । ଦାନ ଦିଅନ୍ତି ଯେଉଁ ନରେ ॥
ଯେବେ ତା ଦକ୍ଷିଣା ନ ଦେଇ । ତହିଁରେ ଫଳ ଆଉ ନାହିଁ ॥
ନୋହିଲେ ଦେଉଳ ଅଟ୍ଟାଳୀ । ବାପୀ ପୋଖରୀ ଥିବ ଖୋଳି ॥
କୂପାଦି ତଡ଼ାଗ ସହିତେ । ଆବର ଧର୍ମ ହୋଇ ଯେତେ ॥
ଏମାନ ପ୍ରତିଷ୍ଠା ନ କଲେ । ଫଳ ମିଳିବ କାହୁଁ ଭଲେ ॥
ପତି ନ ଥିଲା ପତ୍ନୀ ପ୍ରାୟେ । ଏସବୁ ବିଅର୍ଥକୁ ଯାଏ ॥
ଏଣୁ ମୁଁ କହୁଅଛି ତୋତେ । ଆବର ଖଣ୍ଡି ଦିଅ ମୋତେ ॥
ଦୋଷଡ଼ା କରି ଆଜ୍ଞେ ଯାଉଁ । ତୋର କୀରତି ରହିଥାଉ ॥
ନୋହିଲେ ନ ଦିଶଇ ଶୋଭା । ଅଧିକ କି କହିବି ଅବା ॥

ଦେଖ ମୁଁ ଦୁଃଖୀ ବିପ୍ରବର । ଏଥିରେ ସଂଶୟ ନ କର ॥
ତା ଶୁଣି କବିର ତୁରିତେ । ଆରେକ ଖଣ୍ଡି ଧରି ହସ୍ତେ ॥
ବ୍ରାହ୍ମଣ ହସ୍ତେ ଦେଲା ନେଇ । ବୋଇଲା ଶୁଣ ହେ ଗୋସାଇଁ ॥
ଏବେ ବହନ ବିଜେ କର । ମୋତେ କରୁଣା ରଖି ତୋର ॥
ତା ଶୁଣି ପ୍ରଭୁ ନାରାୟଣ । କରିଣ ଅନେକ କଲ୍ୟାଣ ॥
ସେଠାରୁ ବିଜେ କରିଗଲେ । ପିନ୍ଧା ଦୋଷଡ଼ା ପାଇ ଭଲେ ॥
ଏଣେ କବୀର ଗଲା ଚଳି । ଏକାନ୍ତ ସ୍ଥାନେ ଯାଇ ମିଳି ॥
ବସିଲା ନିଶ୍ଚଳ ଆସନେ । ହରିଙ୍କି ଚିନ୍ତାକରି ମନେ ॥
ବୋଇଲା ଆହେ ମହାମେରୁ । ଅଶେଷ ପ୍ରାଣୀଙ୍କର ଗୁରୁ ॥
ତୁମ୍ଭର ସଞ୍ଚିବାର ଅନ୍ନେ । ପ୍ରାଣ ପୋଷନ୍ତି ପ୍ରାଣୀମାନେ ॥
ଏଣୁ ମୋ କୁଟୁମ୍ବର ଚିନ୍ତା । ବୁଝ ହେ ପ୍ରଭୁ ଜଗତ୍କର୍ତ୍ତା ॥
ଏମନ୍ତ ବୋଲି ସୁଖେ ବସି । ମୁଖେ ଶ୍ରୀହରି ନାମ ଘୋଷି ॥
ଏଣୁ ସେ ଚଳିଲେ ଜନାର୍ଦ୍ଦନ । ସେ ପ୍ରଭୁ କାଳୀୟମର୍ଦ୍ଦନ ॥
ଗ୍ରାମରୁ ବାହାର ହୋଇଲେ । ବିପ୍ର ସ୍ୱରୂପ ଗୋପ୍ୟକଲେ ॥
ଭକତ ଘରେ ଘରଚାହିଁ । ଘରେ ଗୋପାଳ ରୂପ ହୋଇ ॥
ତକ୍ଷଣେ ଶକଟଗୋଟି କରି । ଅଶେଷ ଦ୍ରବ୍ୟ ତହିଁ ଭରି ॥
ଅରୁ ତଣ୍ଡୁଳ ମୁଗଡ଼ାଲି । ଘୃତ ନବୀତ ଦୁଧ ଦହି ॥
ହେଙ୍ଗୁ ମରିଚ ଫୁଲବଡ଼ି । ଲବଣ ସୋରିଷ କଉଡ଼ି ॥
ଏ ଆଦି ନାନା ଦ୍ରବ୍ୟମାନ । ପ୍ରସ୍ତୁତ କରି ଭଗବାନ ॥
ଘରି ବହିଣ ବନମାଳୀ । ଭକତ ହିତେ ଗଲେ ଚଳି ॥
ଅନ୍ତ୍ୟନ୍ତ ସନ୍ଧ୍ୟା ସମୟରେ । ମିଳିଲେ କବୀରର ଦ୍ୱାରେ ॥
ଦ୍ୱାରେ ବହିଣ ନରହରି । ଡାକିଲେ ଡାକ ଗୋଟା ତିନି ॥
ତେତେଣେ ସେ କବୀରର ମାତା । ବସିଣ କରୁଛନ୍ତି ଚିନ୍ତା ॥
ପୁଅ ମୋ ନେଲା ବସ୍ତ୍ର ବିକି । ଘରକୁ ନଇଲା କାହିଁକି ॥
କିବା କାରଣ ତାର ହୋଇ । ବସ୍ତ୍ର କି ବିକା ହୋଇନାହିଁ ॥

ଚୌଦିଶୁ ସେ ଶକ୍ତା କରି ଚିତ୍ତେ । ବସିଣ ଅଛଇ ଏକାନ୍ତେ ॥
ଏମନ୍ତ ବୋଲି ବସି ଘରେ । ଡାକ ଶୁଭିଲା କର୍ଣ୍ଣବରେ ॥
ତ୍ୱରିତେ ଧାଇଁଲା ତୁରିତେ । ଦ୍ୱାରେ ଦେଖିଲା ଅଦ୍‌ଭୁତେ ॥
ଅତି ବିଶାଳ ବାହୁ ଦୁଇ । କରେ କଙ୍କଣ ବିରାଜଇ ॥
ମହା ବିଶାଳ ବକ୍ଷସ୍ଥଳ । ସ୍ଫୁଲନ ସୁକଣ୍ଠ କପୋଳ ॥
ରଙ୍ଗ ଅଧର ମନ୍ଦହାସେ । ସମ୍ପୂର୍ଣ୍ଣ ଚନ୍ଦ୍ରମୁଖ କି ସେ ॥
ଏମନ୍ତ ରୂପ ତାଙ୍କ ହେରି । ବଚନେ କହି ତ ନ ପାରି ॥
ବିଚାରି କରଇ ମନରେ । କିସ ଏ ଆସିଅଛୁ ଘରେ ॥
କାହୁଁ ଏ ଅଇଲା ଯୁଗତେ । ଏହା ମୁଁ ଜାଣିବି କେମନ୍ତେ ॥
ଏମନ୍ତ ବୋଲି ପଚାରଇ । କାହୁଁ ଅଇଲ ବାପ ଭାଇ ॥
କହିବ ବାହାର କେଉଁଠି ଘର । ରଖିଣ କହ ମୋ ଆଗର ॥
ତା ଶୁଣି ପ୍ରଭୁ ଦେବରାଯେ । ବୋଲନ୍ତି ଶୁଣସି ଗୋ ମାଏ ॥
ତୁମ୍ଭର ପୁତ୍ର ଦାଣ୍ଡେ ବସି । ଆମ୍ଭଙ୍କୁ ଦେଇଛନ୍ତି ପେଷି ॥
କିସ ଅଛଇ ଏଥେ ଦେଖ । ନେଇଣ ଭଲ କରି ରଖ ॥
ଊଣା ଅଧିକ ଥିଲେ କେତେ । ଏବେହେଁ କହ କିନା ମୋତେ ॥
ଆମ୍ଭେ ଯେ ମହତ ବୋଲାଉ । ପଛକୁ ବୋଲଣା ନ ପାଉ ॥
ଏମନ୍ତ ବୋଲି ଭାର ଥୋଇ । ବଢ଼ାଇ ଦ୍ୟନ୍ତି ଭବଗ୍ରାହୀ ॥
କବୀର ମାତା ଧେନା ଯାଇ । ମନ୍ଦିରେ ରଖି ଆସୁଥାଇ ॥
ଏହି ପ୍ରକାରେ କେତେ ଥର । ନେଇଣ ପୂର୍ଣ୍ଣ କଲା ଘର ॥
ଆଉ ଥୋଇବା ଠାବ ନାହିଁ । ବୋଇଲା ଗଉଡ଼କୁ ଚାହିଁ ॥
ଆଉ କି ଭାର ଅଛି ତୋର । ଘରେ ତ ସ୍ଥାନ ନାହିଁ ମୋର ॥
ତା ଶୁଣି ପ୍ରଭୁ ଜଗନ୍ନାଥ । ବୋଇଲେ ଶୁଣସି ଗୋ ମାତ ॥
ତୋ ଘରେ ଯେବେ ନାହିଁ ସ୍ଥାନ । ମୋ ଭାର ହୋଇଲାଣି ଶୂନ୍ୟ ॥
ଆସିଣ ଦେଖିଯାଅ ତୁହି । ଏବେ ଗୋ ଯାଉଅଛି ମୁହିଁ ॥
ତା ଶୁଣି କବୀରର ମାତା । ହସି ବୋଲଇ ଏ କି କଥା ॥

ଆଜ ଦଣ୍ଡକ ମାତ୍ର ରହ । ରନ୍ଧନ କରେ ଭୁଞ୍ଜି ଯାଅ ॥
ନୋହିଲେ ଶୀତଳ ମଣୋହି । କରି ଯାଅରେ ବାପ ଭାଇ ॥
ଚରଣ୍ଣ ନ କରଣ ଯେବେ । ତୁମ୍ଭଙ୍କୁ ଗୁଡ଼ ଦେବ ତେବେ ॥
ସୁତ ଯେ କି ବୋଲିବ ମୋତେ । ଏ କଥା ନୋହେ କଦାଚିତେ ॥
ତା ଶୁଣି ବୋଲନ୍ତି ଶ୍ରୀବତ୍ସ । ଅଶେଷ ବୟସ୍ୟା ମୋ ଅଛି ॥
କ୍ଷଣେ ରହିବା ତର ନାହିଁ । ଏବେ ପାଇଲି ସବୁ ମୁହିଁ ॥
ଏ ଘର ବୁହା ମୂଲ ଯାହା । ଆଗନ୍ତୁ ପାଇଅଛି ତାହା ॥
ଏମନ୍ତ କହି ମଧୁହାସି । ସେଠାରୁ ଗଲେ ବଢେଇକରି ॥
ଭକତବନ୍ଧୁ ଭଗବାନ । ତତକ୍ଷଣେ ହେଲେ ଅନ୍ତର୍ଦ୍ଧାନ ॥
ଏଥିଅନ୍ତରେ ଶୁଣ ମନ । କବୀର ଜନନୀ ବଚନ ॥
ଅନ୍ତ ଯେ ଉଦ୍ଧାବଡ଼ା କଲା । ଯାଇଣ ସୁତଙ୍କୁ ଡାକିଲା ॥
ତା ଶୁଣି କବୀର ହରଷେ । ଯାଇ ମିଳିଲା ମାତା ପାଶେ ॥
ବୋଇଲା ମାତା ମୁଖ ଚାହିଁ । ମୋତେ ଡାକିଲୁ କାହିଁ ପାଇଁ ॥
କାହିଁ ଯେ ମିଳିଲା ଭୋଜନ । କହ ଗୋ ସ୍ୱରୂପ ବଚନ ॥
କି ଅବା ମାଗି ପାତି କଲୁ । ଉଧାର କରି କି ଆଣିଲୁ ॥
କେଉଁ ପ୍ରକାରେ ଦେଲେ ହରି । କହ ଗୋ ସଂଶୟ ନ କରି ॥
ପୁତ୍ରର ଏମନ୍ତ ବଚନ । ଶୁଣି ବୋଇଲେ ମାତା ପୁଣ ॥
ବାତୁଳ ହେଲୁ କି ରେ ସୁତ । ମୋତେ ଲାଗିଲା ଆଚମ୍ବିତ ॥
ଖାଦ୍ୟସାମଗ୍ରୀ କରି ଘର । ପେଷି ଯେ ଥିଲୁ ଆମ୍ଭ ଘର ॥
ଭରୁଆ ତାହା ଆଣିଦ୍ୟନ୍ତେ । ରନ୍ଧନ କଲି ମୁଁ ତୁରିତେ ॥
ତା ଶୁଣି ବୋଲିଲା କବୀର । ମନରେ କରଣ ବିଚାର ॥
ମୁଁ ତ କାହାକୁ ନାହିଁ ପେଷି । କେ ଘର ଦେଇଗଲା ଆସି ॥
ଆନର ନୋହେ ଏ ଚରିତ । ନିଶ୍ଚେ ସେ ପ୍ରଭୁ ଜଗନ୍ନାଥ ॥
ହେ ମାତ ଘରବୁହା ବେଳେ । ଦେଖିଲୁ କିବା ଚର୍ମ ଡୋଳେ ॥
ମାତା ବୋଲଇ ଆରେ ସୁତ । ତୁ ତ କହିଲୁ ବପରୀତ ॥

ଆମ୍ଭର ଦ୍ୱାରେ ଭକ୍ତ ହୋଇ । ଡାକନ୍ତେ ଅଇଲି ମୁଁ ଧାଇଁ ॥
ଦେଖିଲି ଅପୂର୍ବ ସ୍ୱରୂପ । ଯେସନେ ନବଘନ ରୂପ ॥
ଘରରୁ ଆଣି ମୋର ହସ୍ତେ । ବଢ଼ାଇ ଦେଉଥିଲେ ମୋତେ ॥
ମୁଁ ନେଇ ରଖୁଥିଲି ଘରେ । ପୂରିଲା ମନ୍ଦିର ମୋହର ॥
ତାହାର ଘର ଶୂନ୍ୟ ହେଲା । ଯିବାକୁ ମେଲାଣି ମାଗିଲା ॥
ମୁଁ ଯେ ରଖିଲି ନାନାମତେ । ରହିଲେ ନାହିଁ କଦାଚିତେ ॥
ମୂଲ ମୁଁ ଯାଚିଲି ନ ନେଲେ । ଆଗକୁ ପାଇବୁ ବୋଇଲେ ॥
ଶୁଣି କବୀର ଭାବବେଗେଲେ । ନମିଲା ମାତା ପାଦତଳେ ॥
ଉଠି କପାଳେ ଯୋଡ଼ି କର । ବୋଇଲା ଧନ୍ୟ ଜୀବ ତୋର ॥
ଏବେ ମୁଁ ତୋର ରୂପ ଦେଖି । ସଫଳ କଲି ଚର୍ମ ଆଖି ॥
ମାତା ବୋଲଇ ରେ ନନ୍ଦନ । ମୋ ଗୁରୁ କେତେକ ଜୀବନ ॥
ତୋତେ ମୁଁ ପୂଜା କଲି ପାଇଁ । ତେଣୁ ଦେଖିଲି ଭାବଗ୍ରାହୀ ॥
ଏମନ୍ତ ବୋଲି ପୂଜା କରି । ଧରି ଚଳିଲା ନିଜ ପୁର ॥
ବୋଇଲା ଶୁଣପିତେ ବାବୁ । ଘରେ ତୋ ପୂରିଅଛି ସବୁ ॥
ଶୁଣି କବୀର ଦେଲା ଗୁହାଁ । ମନ୍ଦିରେ କାହିଁ ଠାବ ନାହିଁ ॥
ନାନାଦି ଦ୍ରବ୍ୟମାନଙ୍କରେ । ପୂରି ରହିଛି ସବୁଠାରେ ॥
ତା ଦେଖି ବିସ୍ମରଇ ମନ । ଧନ୍ୟ ମହିମା ଭଗବାନ ॥
ଅତ୍ୟନ୍ତ ଦୀନ ଜନଠାରେ । କି ଅବା ଅରକ୍ଷିତ ନରେ ॥
ହୁଅନ୍ତି ସେ ଏତେ ସପକ୍ଷ । କୋଟି ବ୍ରହ୍ମାଣ୍ଡେ ନାହିଁ ଲକ୍ଷ୍ୟ ॥
ଏମନ୍ତ ପ୍ରଭୁଙ୍କର ସେବା । ଛାଡ଼ି ଯେ ଭଜେ ଅନ୍ୟ ଦେବା ॥
ଧିକ ତା ଧିକ ତା ଜୀବନ । ସ୍ୱଅର୍ଥେ ବଞ୍ଚାଇବା ଦିନ ॥
କେବଳ ନରଦେହ ଧରି । ପଶୁଙ୍କ ପ୍ରାୟେ ସେ ବଞ୍ଚଇ ॥
ଏବେ ତୁ ଶୁଣ ମୋ ଉତ୍ତର । ସାଧୁ ଶ୍ରୀକୃଷ୍ଣ ନାମ ସାର ॥
ଯାହାରେ ସତ୍ୟ ଏହୁ କଥା । ଆଉ ସକଳ କଥା ମିଥ୍ୟା ॥
ଏଣୁଟି ପ୍ରଭୁ ଆଦିମୂଳ । ଭଜନ କଥା ଆମ୍ଭ ମୂଳ ॥

ଏମନ୍ତ ବୋଲି ମାଏ ଶୋଏ । ଶ୍ରୀହରି ପାଦେ କରି ଲୟେ ॥
ଶ୍ରୀହରି ଶ୍ରୀଛନ୍ଦେ ଦେଇ ମନ । ଆନନ୍ଦେ ବଞ୍ଚାଇଲେ ଦିନ ॥
ଏମନ୍ତ କୁମ୍ଭାରର ଯଶ । ଜଗତେ ହୋଇଛନ୍ତି ପ୍ରକାଶ ॥
ଶୁଣ ସୁମନ ହେତୁ ଦେଇ । ଏ ଦାର୍ଢ୍ୟ ଭକତ ଅଟଇ ॥
ଏହା ଯେ ଶୁଣି କରେ ଶ୍ରଦ୍ଧା । ଲାଗଇ ନାହିଁ ପାପ ବାଧା ॥
କହଇ ବସ୍ତ୍ର ରାମ ଦାସ । ମୋ ପ୍ରଭୁ କମଳାବିଳାସ ॥

ଇତି ଶ୍ରୀଦାର୍ଢ୍ୟଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ
'ଖୋଳିଆ କୁମ୍ଭାର ଦାର୍ଢ୍ୟଭାବେ ବସ୍ତ୍ରଦାନ କଥା ବର୍ଣ୍ଣନେ
ନାମ ସପ୍ତଦଶୋଽଧ୍ୟାୟଃ ।

—*—

## ଅଷ୍ଟାଦଶ ଅଧ୍ୟାୟ

ମଣିଦାସ ସମ୍ବାଦ

### ଚୈତନ୍ୟ ଉବାଚ

କହେ ଚୈତନ୍ୟ ମହାଜ୍ଞାତା । ଭକତଭାବେ ଯେଉଁ କଥା ॥
ଶୁଣ ହେ ମନ ନୃପଗଣ । ଦାର୍ଢ୍ୟଭକ୍ତିର ଯେ ଲକ୍ଷଣ ॥
ପୁରୁଷୋତ୍ତମେ ତାର ଘର । ଜାତିରେ ଅଟେ ମାଳାକାର ॥
ନାମ ତାହାର ମଣିଦାସ । କୁଟୁମ୍ବ ସ୍ନେହ କରେ ବାସ ॥
କରି ଆପଣା ନିଜ ବୃତ୍ତି । ଦୁଃଖ ସୁଖରେ ବଞ୍ଚୁଥାନ୍ତି ॥
ଏମନ୍ତ କେତେ ଦିନ ଗଲା । ଦଇବ ପାହା ଭଆଇଲା ॥
କୁଟୁମ୍ବଯାକ ଗଲେ ନାଶ । ଏକା ରହିଲା ମଣିଦାସ ॥
ଚିତ୍ତେ ବୈରାଗ୍ୟ ହେଲା ତାର । ବୋଇଲା ଧିକ ଏ ସଂସାର ॥
କା ହେଲା ଦାରା ସୁତ ମୋର । କେହି ତ ନୁହନ୍ତି କାହାର ॥
କେବଳ ଜୀବର ଉଦ୍ଧାର । ହେବାକୁ ହରିନାମ ସାର ॥



ମଣିଦାସ ଜଗନ୍ନାଥଙ୍କ ଆଗରେ ଗଡ଼େଇଡାଳ ଧରି ଗୀତ ଗାଇ ନାଚୁଛନ୍ତି ।

ସଂସାରେ ଅନ୍ୟ କର୍ମ ଯେତେ । କେବଳ ମିଥ୍ୟା ଏ ସମସ୍ତେ ॥
ଏମନ୍ତ ବୋଲି ମଣିଦାସ । ବୈଷ୍ଣବପଣେ କଲା ଆଶ ॥
ଡୋର କୌପୁନ ଆଚ୍ଛେକରି । ସବେଶ ଭଜଇ ଶ୍ରୀହରି ॥
ପ୍ରଭାତୁଁ ସ୍ନାନ ସେ କରଇ । ଦ୍ୱାଦଶ ତିଳକ ଘେନଇ ॥
ଉତ୍ତମ ତୁଳସୀର ହାର । ଗଳାରେ ଭରିଥାଇ ତାର ॥
ନଡ଼ିଆ ସଜାଇ କପାଳ । କିରଣ ଥାଇ କରତାଳ ॥
କାଖେ ଯାକଣ କନା ଖଣ୍ଡେ । ମେଲଇ ଆସୁଥାଇ ଦାଣ୍ଡେ ॥
ମିଳଇ ସିଂହଦ୍ୱାରଠାରେ । ପତିତପାବନ ସମ୍ମୁଖରେ ॥
ନୃତ୍ୟ କରଇ ଦାଣ୍ଡେ ରହି । ଅନେକ ଦଣ୍ଡବତ ହୋଇ ॥
ତହୁଁ ଚଳଇ ଶ୍ରଦ୍ଧା ମନେ । ମିଳଇ ଶ୍ରୀଜଗମୋହନେ ॥
ଗରୁଡ଼ ପଛେ ଉଭାହୋଇ । ପ୍ରଭୁଙ୍କ ଶୋଭାକୁ ଅନାଇ ॥
ସାଷ୍ଟାଙ୍ଗେ କରି ଦଣ୍ଡବତ । ଉଠି କପାଳେ ଯୋଡ଼ି ହସ୍ତ ॥
ତୁମ୍ଭେ ମୋ ଜୀବର କାରଣ । ଦରିଦ୍ର ଲୋକଙ୍କର ଧନ ॥
ବୋଲନ୍ତି ନିସ୍ତରିଲି ମୁହିଁ । କଳା ଶ୍ରୀମୁଖକୁ ଅନାଇ ॥
ଏମନ୍ତ ବୋଲି କରେ ନୃତ୍ୟ । ମୁଣ୍ଡ ହଲାଇ ଗାଏ ଗୀତ ॥
ପ୍ରଭାଇ ତାଳ କରେ ଧରି । ବଜାଇ ଅଛ ଆଣ୍ଠୁକରି ॥
ଜନତାସୁତ ପାଟେ ଯାଇ । ଧାଇଁଣ ପୁଣି ଆସୁଥାଇ ॥
କଣ୍ଠେ ନା ଅର୍ଗଳି ବାହକୁ । ଗୃହ୍ଣିଣ କଳା ଶ୍ରୀମୁଖକୁ ॥
ପଛକୁ ଘୁଞ୍ଚି ଆସୁଥାଇ । ଜୟ ଦେବ ଭୁଣେ ଗାଇ ॥
ଆନନ୍ଦେ ବେନିଭୁଜ ତୋଳି । ନାଚଣ ପଡ଼ୁଥାଇ ଢଳି ॥
ମୁଣ୍ଡେ ଯେ ବେନିକର ଧରି । ତୁଣ୍ଡେ ଅନେକ ସ୍ତୁତି କରି ॥
ଜୟ ତୁ ହିପତ୍ରକାଳିଆ । ଜୟ ତୁ କାଇଞ୍ଚକାଳିଆ ॥
ନାନାକୁସୁମ ମାଳା ଯେତେ । ଭଲ ସେ ଶୋଭା ଦେଲେ ତୋତେ
ହୃଦପଦ୍ମରେ ପଦ୍ମମାଳା । ତହିଁ କମଳା କରେ ଲୀଳା ॥
ଅନେକ ରତ୍ନ ଅଳଙ୍କାର । ଶୁଣରେ ତୋ ସବାଙ୍କପାକର ॥

ଶ୍ରବଣେ ମକର କୁଣ୍ଡଳ । କି ରବିମଣ୍ଡଳ ଯୁଗଳ ॥
ଶିରେ କାଞ୍ଚନ ଝିଙ୍କେନ୍ତି । କି ଅବା ନବଗ୍ରହ ପନ୍ତି ॥
ସେ ଚାନ୍ଦମୁଖ ମୁଖ ଦେଖି । ଭକତଜନ ହୁଏ ସୁଖୀ ॥
ସୁନ୍ଦର ଶ୍ରୀପଦ୍ମ ଡୋଳା । ଭୃତ୍ୟ ଆର୍ତ୍ତନାଶିନ୍ତି ଭେଳା ॥
ଯେ ତୋର ଶ୍ରୀଭୁଜ ଯୁଗଳ । ଅଶେଷ ପ୍ରାଣୀଙ୍କ ମଙ୍ଗଳ ॥
ସେ ଭୁଜେ ଶଙ୍ଖ ଚକ୍ର ଦେଖି । ସିନ୍ଧୁକୁ ନ ପାରଇ ଆଖି ॥
ତହୁଁ ନୀଳୋତ୍ପଳ ମଞ୍ଜୁ ଯାର । କି କରପାତେ ଶୀତ ତାର ॥
ତୋହର ଅଭୟ ଚରଣ । ଭକତ ଭୟ ନିବାରଣ ॥
ସେ ପାଦପଦ୍ମ ବିନା ଆନେ । ଭରସା ନାହିଁ ମୋର ଅନ୍ୟେ ॥
ଏମନ୍ତ ବୋଲି ଗୀତ ଗାଇ । ନାଚଇ ଜନମତ୍ତ ହୋଇ ॥
ସର୍ବାଙ୍ଗ ନାଦ ମୁଖ ଧ୍ୱନି । ଚରଣ ଝଙ୍କନ୍ତେ ମେଦିନୀ ॥
କମ୍ପଇ ଦୁଲୁଦୁଲୁ ହୋଇ । ତା ଭଙ୍ଗି କହି ନ ସରଇ ॥
ଏହି ପ୍ରକାରେ ପ୍ରତିଦିନେ । ନାଚଇ ଶ୍ରୀଜଗମୋହନେ ॥
ଏମନ୍ତେ କେତେଦିନ ଅନ୍ତେ । ଶୁଣ ସୁମନା ଶୁଦ୍ଧଚିତ୍ତେ ॥
ଶ୍ରୀଜଗମୋହନ ନିବାସେ । ସୁବର୍ଣ୍ଣ ପଣ୍ଡା ଅତିତୋଷେ ॥
ବସିଣ ପୁରାଣ କହନ୍ତି । ଅନେକ ଲୋକ ଶୁଣୁଥାନ୍ତି ॥
କହିବା ଭକ୍ତିରସେ କରି । ସଭିଙ୍କ ମନ ଅନୁ ହରି ॥
ଏମନ୍ତ ବେଳେ ମତ୍ତଦାସ । ଆସିଣ ହୋଇଲା ପ୍ରବେଶ ॥
ପଡ଼ଇ ଗରଜନ କରି । ମୁଖେ ବୋଲଇ ନାମ ହରି ॥
ଘରଣ ତୋଳି ନୃତ୍ୟକରେ । ଶ୍ରୀଦାରୁବ୍ରହ୍ମଙ୍କ ଛାମୁରେ ॥
ମନ ନିବେଶି ପଦ୍ମପାଦେ । ଚିତ୍ତେ କାହାକୁ ନାହିଁ ଭେଦେ ॥
ପୁରାଣ ନିକଟେ ଗଞ୍ଜନ । କୁହାଇ କ୍ରନ୍ଦନ ନ୍ରାହ୍ମଣ ॥
ତା ଦେଖି ପଣ୍ଡା କୋପଚିତ୍ତେ । ପୁସ୍ତକ ରଖିଲେ ତୁରିତେ ॥
ବୋଇଲେ ଆରେ ଶୁଣ ମୂର୍ଖ । ଏ ବଡ଼ ପୁରାଣର ପାଖ ॥
ଚରଣ ଟେକି ନାଚୁଅଛୁ । କହୁଛି ମାନ୍ୟ ମୂଳ ଭାଙ୍ଗୁ ॥

ଉତ୍ତମ ଲେକେ ବସିଛନ୍ତି । ଦେବଙ୍କ ସମାନ ଦିଶନ୍ତି ॥
ଏଥେଁ ଗରବ ତୋର ଏତେ । ନାଚୁ ଝୁମୁକା ବାନ୍ଧି ଗୋଡ଼େ ॥
ବୋବାଇ ମରୁଥାଉ ଏଣେ । ପୁରାଣ ନ ଶୁଣୁ ତୋ କର୍ଣ୍ଣେ ॥
ଏମନ୍ତ ବୋଲି ପଣ୍ଡା କୋପେ । ଗାଳି ଦିଅନ୍ତି ଯେତେରୂପେ ॥
ମଣିଆ ଦାସ ନ ଶୁଣଇ ପ୍ରଭୁଙ୍କୁ ଆନ ନ ଜାଣଇ ॥
ତାହା ଶୁଣିଣ ଅନ୍ୟ ଜନ । ବୋଲନ୍ତି ଶୁଣରେ ଅଜ୍ଞାନ ॥
ପଣ୍ଡାଙ୍କ ବଚନ ନ ଶୁଣୁ । ଇତର ଜନ ପ୍ରାୟେ ମଣୁ ॥
ପ୍ରାଭବ ପାଇବୁ ଅପାର । ରଖିବ କେଉଁ ବାପ ତୋର ॥
ତୁ ଏବେ ଲୋଡୁଛୁ କହୁଣୀ । ଜାଣିଥା ହେବ ଏହିକ୍ଷଣି ॥
ନ ଥାଇ ବେଗ ହୋଇ ଚଳ । ଯେବେ ତୋ ଅଦୃଷ୍ଟ କୁଶଳ ॥
ନୋହିଲେ ମରିବୁ ଅବଶ୍ୟ । ତାହା ଶୁଣିଣ ମଣିଦାସ ॥
କ୍ରୋଧରେ ଗଦ ଗଦ ହୋଇ । ବଦନୁ ବାକ୍ୟ ନ ସ୍ଫୁରଇ ॥
କଲା ଶ୍ରୀମୁଖକୁ ଅନାଇ । ନେତ୍ରୁ ଲୋତକ ଧାରା ବହି ॥
ବୋଲଇ ଆହେ ମହାବାହୁ । ଶରଣ ପଞ୍ଜର ବୋଲାଉ ॥
ତୋଳି ବସିଛୁ ବାହୁ ଦୁଇ । ଶରଣ ସମ୍ଭାଳିବା ପାଇଁ ॥
ମୁଁ ଯେ ଅଟଇ ତୋ ଶରଣ । ମୋତେ ବାହିଲୁ ଏ କଷଣ ॥
ଇତର ଲୋକ ହୋଇଥିଲେ । ଶରଣ ସମ୍ଭାଳନ୍ତା ଭଲେ ॥
ଜାଣିଲି ତୋର ପ୍ରଭୁପଣ । ଭୃତ୍ୟରେ ବଢ଼ଇ ଦାରୁଣ ॥
ଏମନ୍ତ ବୋଲି କ୍ରୋଧଭରେ । ସଢ଼ାଇ ତାଳ ଧରି କରେ ॥
ପ୍ରଭୁ ଶ୍ରୀମୁଖକୁ ଫିଙ୍ଗି ଦେଲେ । ମଣିଆ ଦାସ ରୁଷି ଗଲେ ॥
ମନରେ ହୋଇଣ ନିରାଶ । ମଠରେ ହୋଇଲେ ପ୍ରବେଶ ॥
ଶଉ ନିବେଦି ପ୍ରଭୁ ପାଶେ । ଶୋଇଲେ ମନର ବିରସେ ॥
ଏମନ୍ତେ ହେଲା ଦିନ ଶେଷ । ରଜନୀ ହୋଇଲା ପ୍ରବେଶ ॥
ସନ୍ଧ୍ୟା ଧୂପକୁ ମଣି ଦାସେ । ନ ଗଲେ ମନର ବିରସେ ॥
ଅନ୍ନ ଭୋଜନ ଘର ନାହିଁ । ଉପବାସରେ ଅଛି ଶୋଇ ॥

ଏଣେ ଯେ ପ୍ରଭୁସେବା ଯେତେ । ଶ୍ରୀହରି ପହୁଡ଼ ସନ୍ଧ୍ୟତେ ॥
ଭଣ୍ଡାର ଘର ମୁଦ ଦେଇ । ଦେଉଳ ନିଶୋଧ କରାଇ ॥
କବାଟ ଲଗାଇ ତ୍ବରିତେ । ସେବକ ଗଲେ ଯେଝାମତେ ॥
ଏଥି-ଅନ୍ତରୁ ଆଦିମୂଳ । ସେ ପ୍ରଭୁ ଭକତବତ୍ସଳ ॥
ନ ସହେ ସେବକ ବେଦନା । ଏଥି ନିମନ୍ତେ ଚଳେ ବାନା ॥
ଓଡ୍ରେ ଯେ ଅଛି ନିରନ୍ତରେ । ଭୃତ୍ୟ ଆରତ ଖଣ୍ଡିବାରେ ॥
ତେଣୁ ଭକ୍ତବତ୍ସଳ ହରି । ତତ୍କ୍ଷଣେ ଗଲେ ବେଗେ କରି ॥
ସେ ମହାରାଜାଙ୍କର ପାଶ । ବିଜୟ କମଳା ବିଳାସ ॥
ରାଜା ଯେ ନିଦ୍ରା ଅଛୁ ଯାଇ ତା ସୀମସ୍ଥାନେ ଉଭାହୋଇ ॥
ମଣିଆ ଦାସ ଅଳିମାନେ । ରାଜାଙ୍କୁ କହିଲେ ସ୍ବପନେ ॥
ବୋଇଲେ ଶୁଣରେ ନୃପତି । ତୁ ତ ଅଜ୍ଞାନେ ହେଲୁ ମତ୍ତ ॥
ତୋ ରାଜ୍ୟ ହାନିଲଭ ଯେତେ । ତାହା ନ ବୁଝୁ କି ନିମନ୍ତେ ॥
ଏବେ ମୋ ଶୁଣ ଶୁଦ୍ଧଚିତ୍ତେ । ମୁଁ ଯାହା କହୁଅଛି ତୋତେ ॥
ମୋର ମଣିଆ ଦାସ ଆସି । ଜଗମୋହନ ଘରେ ପଶି ॥
ସତାଇ ତାଳି କରେ ଧରି । ଅନେକ ନାମ ଧ୍ୱନି କରି ॥
ନୃତ୍ୟ କରଇ ଆମ୍ଭପାଖେ । ଆମ୍ଭେ ତା ଶୁଣୁଥାଉ ସୁଖେ ॥
ମୋର ତହିଁରେ ଯେତେ ଲଭ । ଶୁଣ କହିବା ତହିଁ ଭାବ ॥
ତୋହର ଯେସନେ ନନ୍ଦନ । ପାଞ୍ଚ ସାତରେ ସେହୁ ସ୍ଥାନ ॥
କରେ ସେ ପୂରଣ ନ ଥାଇ । ଆସଇ ଗେହ୍ଲାଇ ଗେହ୍ଲାଇ ॥
କହଇ ଦରେଟି ବଚନ । କେବଳ ଅମୃତ ସମାନ ॥
ତାହା ଯେମନ୍ତେ ଶୁଣୁ ତୁହି । ତହୁଁ ଅଧିକ ମୋତେ ସେହି ॥
ତାକୁ ପୁରାଣ ପଣ୍ଡା ତୋର । ମାରି ମୋ ପାଶୁ କଲା ଦୂର ॥
ତେଣୁ ଭକତ ରୁଷି ଗଲା । ଆମ୍ଭକୁ ମୋହର ନଇଲା ॥
ତେଣୁ ମୁଁ ଉପବାସେ ଅଛି । ତାକୁ ମୁଁ ନ ପାରିବି ମୁଞ୍ଚି ॥
ଭୃତ୍ୟ ଅଇଲା ଯାଏ ମୋର । ମଣୋହି ନାହିଁ ନୃପବର ॥

ଏବେ ତୁ ବେଗ ହୋଇ ଯିବୁ । ମୋର ଭକ୍ତକୁ ଡକାଇବୁ ॥
ଅନେକ ଗଉରବ କରି । ଘେନାଇ ଯିବୁ ଦଣ୍ଡଧାରୀ ॥
ଘେନିଣ ଶ୍ରୀଜଗମୋହନେ । ନୃତ୍ୟ କରିବ ପ୍ରତି ଦିନେ ॥
ତେବେ ମୁଁ କରିବି ଭୋଜନ । ଏ କଥା ସତ୍ୟ ବୋଲି ଜାଣ ॥
ଆବର କହୁଅଛୁ ତୋତେ । ମୋର ଭକତଜନ ହିତେ ॥
ଅତ୍ୟନ୍ତ ହରଷ ମନରେ । ନିର୍ମାଣ ବିଶ୍ୱକର୍ମା କରେ ॥
କରିଛି ଶ୍ରୀଜଗମୋହନ । ବିସ୍ତାର କରିଛି ଯତନ ॥
ଭକତ ଜନ ତହିଁ ମିଳି । ରଙ୍ଗେ ବଜାଇ କରତାଳି ॥
ମୋ ରଙ୍ଗ ଅଧରକୁ ଚାହିଁ । ମୋ ପାଦପଦ୍ମକୁ ସେ ଧ୍ୟାଇ ॥
ମୋ ନାମ କରିଣ କୀର୍ତ୍ତନ । ଆନନ୍ଦ କରୁଥିବେ ମନ ॥
ଭାବରେ ଯାଉଥିବେ ଗଡ଼ି । ଉଠି କପାଳେ କର ଯୋଡ଼ି ॥
ଅନେକ ସ୍ତୁତି କରି ମୋତେ । ଜଣାଉଥିବେ ଦୁଃଖଗତେ ॥
ତାହା ମୁଁ ଶୁଣୁଥିବି ବସି । ଭକତ ଜନ ମନ ତୋଷି ॥
ଜଗମୋହନ ଏଥିପାଇଁ । ଆନେ ମୋ ପ୍ରୟୋଜନ ନାହିଁ ॥
ପୁରାଣପଣ୍ଡା ଆଜଠାରୁ । ମୋ ଆଗେ ପୁରାଣ ନ କରୁ ॥
ପାରିଲେ ଲକ୍ଷ୍ମୀଙ୍କ ମୋହନେ । ପୁରାଣ କରୁ ପ୍ରତିଦିନେ ॥
ନିତ୍ୟକୁ କଲେ ମୋର ଦୁର । ସହିବ ନାହିଁ ନିରାଧାର ॥
ଏମନ୍ତ ଆଜ୍ଞା ତାଙ୍କୁ ଦେଇ । ବିଜୟ କଲେ ଭାବଗ୍ରାହୀ ॥
ମଣିଆ ଦାସ ପାଶେ ବେଗେ । କଲେ ଦେବାଧିଦେବରାଜେ ॥
ବୋଇଲେ ଶୁଣ ଆହେ ଦାସେ । ତୁ କିପାଁ ଅଛୁ ଉପବାସେ ॥
ଏବେ ଭୋଜନ କରୁ କିନା । କାଲି ମହିମା ବୁଝୁ ସିନା ॥
ଏମନ୍ତ କହି ପୀତବାସ । ଶ୍ରୀନୀଳାଚଳରେ ପ୍ରବେଶ ॥
ଦାସେ ଉଠିଲେ ତାହା ଶୁଣି । ଆନନ୍ଦେ ପ୍ରଭୁ ଗୁଣ ଗୁଣି ॥
ହରଷ କରି ପଞ୍ଚମନ । ସନ୍ତୋଷେ କଲେକ ଭୋଜନ
ତେଣୁ ନୃପତି ଚେତା ପାଇ । ପାଶେ ଦେଖିଲ କେହି ନାହିଁ ॥

ଜାଣିଲେ ନିଚେଷ୍ଟ ଜଗନ୍ନାଥେ । କରୁଣା କଲେଗଲେ ମୋତେ ॥
ମୋ ଜୀବ ଉଦ୍ଧାର ନିମନ୍ତେ । ପବନ ହେଲ ତ ଜଣତେ ॥
ଏମନ୍ତ ମନେ ମନେ ଗୁଣି । ଉଠିଲ ନୃପ ଚୂଡ଼ାମଣି ॥
ଅଶ୍ୱ ଉପରେ ଲାଗି ହୋଇ । ମିଳିଲ କ୍ଷେତ୍ରବରେ ଯାଇ ॥
ବେଳ ପ୍ରହରେ ଅଛି ହୋଇ । ନୃପତି ଅଶ୍ୱରୁ ଓହ୍ଲାଇ ॥
ମଣିଆ ଦାସଙ୍କୁ ହକାରି । କୋଳେ ବସାଇ ଦଣ୍ଡଧାରୀ ॥
ଅନେକ ଗୌରବ କଲେ । ହସ୍ତ ଧରିଣ ଘେନିଗଲେ ॥
ସଙ୍ଗତେ ଘେନି ଶ୍ରଦ୍ଧାମନେ । ପ୍ରବେଶ ଶ୍ରୀଜଗମୋହନେ ॥
ନୃପତି ବାନ୍ଧି ଦେଲେ ପାଠ । ବୋଇଲେ ଦାସେ କର ନାଟ ॥
ସଡ଼ାଇ ତାଳ ଧରି ହସ୍ତ । ଅନେକ ଗାଉଥାଅ ଗୀତ ॥
ପ୍ରଭୁଙ୍କ ମନ କର ତୋଷ । ଶୁଣି ଆନନ୍ଦ ମଣି ଦାସ ॥
ସେମନ୍ତ ପ୍ରକାରେ କରି ଗୀତ । ଗାଇ ତମାଳ କରେ ନୃତ୍ୟ ॥
ତହୁଁ ପୁରାଣ ମନା କଲେ । ଲକ୍ଷ୍ମୀଙ୍କ ମୋହନେ ଗାଇଲେ ॥
ଶୁଣ ସୁମନ ଶୁଦ୍ଧଚିତ୍ତେ । ପ୍ରଭୁଙ୍କ ମହିମା ଏମନ୍ତେ ॥
ବିଷ୍ଣୁ ପୁରାଣ କଲେ ମନା । ଭକତ ଖେଦ ମୂଳ ଚିହ୍ନା ॥
ସଡ଼ାଇ ନାଟ କଲେ ମୂଳ । ଭକତବନ୍ଧୁ ଆଦିମୂଳ ॥
ଏହି ଯେ ପ୍ରଭୁଙ୍କର ଭଜନ । ମୂଳ ତୁ କର ହୋ ସୁମନ ॥
ଏ ଭବଜଳ ହେବ ପାର । ଗୋଷ୍ପଦ ଜଳର ପ୍ରକାର ॥
ସେ ହରି ଛାଡ଼ି ଯେ ଭଜନ । କରଇ ଅନ୍ୟ ଦେବମାନ ॥
ସେ କାହୁଁ ତରଇ ସଂସାର । ବ୍ୟର୍ଥ କର୍ମରେ ଶ୍ରମ ତାର ॥
ଅନ୍ଧ ଯେସନେ ଅନ୍ଧକାରେ । କେବେହେଁ ଗମିଣ ନ ପାରେ ॥
ମୃଗତୃଷ୍ଣାକୁ ଆଶାକରି । ଧାଇଁଲେ ତୃଷ୍ଣା କିକି ହରି ॥
ସେହି ପ୍ରକାରେ ଭ୍ରମି ମରେ । ବୁଲିଣ ଦେହ ନାଶ କରେ ॥
ଏ ଦାର୍ଢ୍ୟଭକ୍ତି ରସାମୃତ । କେବଳ ଶ୍ରବଣେ ମୁକତ ॥
ହେ ପ୍ରାଣୀ ଶୁଣ ଶ୍ରଦ୍ଧାକରେ । ଅଶେଷ ଜନ୍ମ ପାପ ହରେ ॥



ଭଗବାନ ରାଜାଙ୍କୁ ସ୍ୱପ୍ନରେ କହୁଛନ୍ତି, "ତୋର ଯଦି ପ୍ରାଣରେ ଆଶା ଅଛି, କଷ୍ଟ ଦାସକୁ ଛାଡ଼ିଦିଅ ।"

ବାଞ୍ଛା ସମ୍ପୂର୍ଣ୍ଣ ହେବ ତାର । ନ ଯିବ ଯମର ମନ୍ଦିର ।
କହଇ ରାମଦାସ ଦ୍ୱିଜ । ମୋ ପ୍ରଭୁ ଶଙ୍ଖ ଚକ୍ରଙ୍କ ॥
ଏ ଭବ-ସଂସାରକୁ ଡରି । ଶରଣ ମାଗୁଅଛି ହରି ।
ତୁମ୍ଭେ ଯେ ପତିତପାବନ । ମୁହିଁ ଅଟଇ ପାପୀଜନ ।
ନିସ୍ତାର ନ କର ଗୋସାଇଁ । ଅନ୍ୟ ଶରଣ ମୋର ନାହିଁ ।
ତୁମ୍ଭର ପାଦପଦ୍ମ ଧୂଳି । ମସ୍ତକ ହେଉ ମୋ ମଉଳି ॥
ତରିବ ଅବା ନ ତରିବ । ଅନ୍ୟ ଭରସା ନାହିଁ ମୋର ॥
ସୁଜନେ ଏହି ରସେ ରସ । ହରି ମହିମା ନାବେ ବସ ।
ସକଳ ଅମଙ୍ଗଳ ନାଶ । ଏ ଭବ ଜାଲରେ ନ ଭାସ ॥

ଇତି ଶ୍ରୀ ଦାର୍ଢ୍ୟଭକ୍ତି ରସାମୃତେ ମନ ଚୈତନ୍ୟ ସମ୍ବାଦେ ମଣିଦାସ ଦାର୍ଢ୍ୟଭାବ ବର୍ଣ୍ଣନେ ନାମ ଅଷ୍ଟାଦଶୋଽଧ୍ୟାୟଃ ।

---

## ଊନବିଂଶ ଅଧ୍ୟାୟ

### କୃଷ୍ଣ ଦାସ ସମ୍ବାଦ

### ଚୈତନ୍ୟ ଉବାଚ

ଶୁଣ ସୁମନ ଶୁଚିଚିତ୍ତେ । ମୁଁ ଯାହା କହୁଅଛି ତୋତେ ॥
ଏ କଳିଯୁଗ ଧର୍ମ କଥା । ଶୁଣି ଖଣ୍ଡିବ ଭବବ୍ୟଥା ।
କେବଳ ସ୍ଥିର କରି ଚିତ୍ତ । କହୁଅଛି ଦୁର୍ଲଭ ଚରିତ ॥
ପୁରୁଷୋତ୍ତମେ ତାର ବାସ । ନାମ ତାହାର କୃଷ୍ଣଦାସ ॥
ଜାତିରେ ଅଟଇ କରଣ । ପଣ୍ଡିତ ବିବେକ ସୁଜାଣ ॥
ଧୀର ଚତୁର ସର୍ବସହ । ନିରତେ ପରଲୋକ ପ୍ରିୟ ॥
ସକଳ ଲୋକେ ଦୟା କରେ । ଦାର୍ଢ୍ୟଭକତି ଭାବନାରେ ॥
ସକଳ ଗୁଣେ ସେ ନିପୁଣ । କବିତ୍ୱ ପଠଣ ବିଚକ୍ଷଣ ॥
ବୋଲଇ ନିର୍ଦ୍ଦୋଷ କବିତ୍ୱ । ପ୍ରବନ୍ଧ କଲା ଅପ୍ରମିତ ॥

ଶ୍ରୀହରି ବିନା ଅନ୍ୟ କଥା । ଗୀତ ସେ ନ ବୋଲେ ସର୍ବଥା ॥
ଶ୍ରୀକୃଷ୍ଣ ଜନ୍ମ କର୍ମ ଗୁଣ । ସେ ସବୁ କରଇ ବଖାଣ ॥
ଭକତ ଜନ ଅଧିକାର । ଯହିଁ ଯେମନ୍ତ ବ୍ୟବହାର ॥
ବୃନ୍ଦାବନ ସନ୍ତ ପାଳ । ଗୋପୀ ଗୋପାଳ ରାସ କେଳି ॥
କେବଳ ଏହି କଥାମାନ । ପ୍ରବନ୍ଧେ କରଣ ଗାୟନ ॥
ମାଗେ ଉତ୍ତମ ଜନଠାରେ । ନିଜ କୁଟୁମ୍ବ ପୋଷିବାରେ ॥
ଯେ ଅବା ମିଳେ ଭାଗେ୍ୟ ତାର । ଘେନି ଚଳଇ ନିଜ ପୁର ॥
ପ୍ରାଣ ପୋଷନ୍ତି ତାହା ଖାଇ । ଯାଚକ ଜନେ କିଛି ଦେଇ ॥
ଏମନ୍ତେ ବଞ୍ଚୁଥାଇ ଦିନ । ନ ଜାଣେ ଅନ୍ୟ କଥାମାନ ॥
କେତେକ ଦିନର ଉତ୍ତାରେ । ତା କୀର୍ତ୍ତି ଜଗତେ ପ୍ରଚୁରେ ॥
ଲୋକେ ବୋଇଲେ ଧନ୍ୟ ଧନ୍ୟ । ଏ କୃଷ୍ଣଦାସର ଜୀବନ ॥
ଶ୍ରୀକୃଷ୍ଣ କଥାମୃତ ପାନ । କେବଳ ଅମୃତ ସମାନ ॥
ଚିତ୍ତକୁ ପାତେ ବନ୍ଦୀ କରି । ଶ୍ରବଣେ ପାପୀ ପାପ ହରି ॥
ଏମାନ ପ୍ରବନ୍ଧ ସେ ଯେତେ । କଲା ଅଶେଷ ପ୍ରାଣୀହିତେ ॥
ଧନ୍ୟ ସେହି କୃଷ୍ଣ ଦାସ ମତି । ବୋଲିଣ ପ୍ରଶଂସା କରନ୍ତି ॥
ଏମନ୍ତେ କେତେ ଦିନ ଅନ୍ତେ । ସେ ରାଜ୍ୟ ନୃପତି ଅଗ୍ରତେ ॥
ଉତ୍ତମ ଲୋକ ମାନେ ଆସି । କହନ୍ତେ ଉତ୍ତମ ପ୍ରଶଂସି ॥
ଶୁଣ ନୃପତି ଚୂଡ଼ାମଣି । ଏ ବଡ଼ ଅପୂର୍ବ କାହାଣୀ ॥
କରଣ ନାମେ କୃଷ୍ଣଦାସ । ଅଛଇ ଶ୍ରୀହରିର ଦାସ ॥
ତାହା ସମାନେ କବିପଣେ । ରାଜ୍ୟେ ନ ଥିବେ ଅନ୍ୟ ଜଣେ ॥
ବୋଲଇ ଉତ୍ତମ କବିତ୍ୱ । ଶ୍ରବଣେ ହରୁଅଛି ଚିତ୍ତ ॥
କୃଷ୍ଣ କଥାରୁ ନାହିଁ ଅନ୍ୟ । ଡକାଇ ଶୁଣ ହୋ ରାଜନ ॥
ତାହା ଶୁଣିଣ ନୃପରାଣ । ତକ୍ଷଣେ ଡଗର ପେଷିଣ ॥
କୃଷ୍ଣଦାସଙ୍କୁ ଶୁଦ୍ଧ ଚିତ୍ତେ । ଡକାଇ ଆଣିଲେ ତୁରିତେ ॥
ପ୍ରବେଶ ହେଲେ ଯେତେବେଳେ । ଆଜ୍ଞା ସେ ଦେଲେ ମହୀପାଳେ ।

ସଭର ମଧ୍ୟେ କଥା ରସେ । ବୋଇଲେ ଶୁଣ କୃଷ୍ଣ ଦାସେ ॥
ବୋଲୁଛନ୍ତି କ କ ଗୀତମାନ । ଶୁଣିବା କର ହେ ଗାୟନ ॥
ତାହା ଶୁଣିଣ କୃଷ୍ଣଦାସ । ଶବ୍ଦେ ଶବ୍ଦେ ଗୀତବାସ ॥
ଧୀର ଗମ୍ଭୀର ମୃଦୁସ୍ୱରେ । କହିଲେ ନୃପତି ଗ୍ରାମୁରେ ॥
ମୋ ଗ୍ଭର ନୁହଇ ଭଜନ । ବୋଇଲେ ଶୁଣ ହେ ରାଜନ ॥
ଗୀତ ବୋଲିବା ତୁମ୍ଭ ପାଶେ । ଏ କଥା ମନକୁ ନ ଆସେ ॥
ନାହିଁ ବଳାୟ ଦେବରାଜ । ଏରି ନୁହଇ ରବ ତେଜ ॥
ଏ ରାଜସଭରେ କବନ୍ତି । ମୁଁ କି କହିବେ ସମର୍ଥି ॥
ଶୁଣି ବୋଲନ୍ତି ନୃପବର । କାହିଁ ପାଶ୍ଚ୍ୟ ନ କର ॥
ବସ ହୃଦୟୁ କର ଦୃଢ଼ । ଯାହା କରଛ ତାହା ପଢ଼ ॥
ତା ଶୁଣି କୃଷ୍ଣଦାସ ତୋଷେ । ବସିଲେ ନୃପତିଙ୍କ ପାଶେ ॥
ପ୍ରବନ୍ଧ ଟିହାଇ ପଢ଼ିଲେ । ଅର୍ଥହିଁ ବୁଝାଇ କହିଲେ ॥
ଯେତେ କବନ୍ତି ଥିଲେ କରି । ସବୁ ଶୁଣିଲେ ଦଣ୍ଡଧାରୀ ॥
ହୋଇଣ ପରମ ସନ୍ତୋଷ । ଦାସଙ୍କୁ କଲେ ପରତୁଷ ॥
ନାନାଦି ଅଳଙ୍କାର ଭୂଷଣ । ଅନେକ ଅନ ବସ୍ତ୍ର ଦେଲେ ॥
ସଭରେ ଥିଲେ ଯେତେ ଜନ । ହରଷ ସବୁଙ୍କର ମନ ॥
ଏଥିଉତ୍ତାରୁ ଶୁଣ ମନ । ବୋଇଲେ ସେ ମହାରାଜନ ॥
ଶୁଣ ହେ କବି କୃଷ୍ଣଦାସ । ହୋଇଣ ଥିବ ଦବ୍ୟ ବେଶ ॥
ସୁନ୍ଦର ମଧୁର କଠିନ । ଗୀତ କରିଣ ନାମେ ଭଣ ॥
ତୁମ୍ଭଙ୍କୁ କରିବା ପୌରୁଷ । ତାହା ଶୁଣିଣ କୃଷ୍ଣଦାସ ॥
ପିଣ୍ଡରୁ ଉଡ଼ିଲା ସାହସ । ମୂର୍ଚ୍ଛେ କି ପଡ଼ିଲା କୁଳାଶ ॥
ହୃଦପଦ୍ମରେ କଲା ଚ୍ଚିନ୍ତ । ବୋଲଇ ଶୁଣ ହେ ଶ୍ରୀପତି ॥
ଏ ଘୋର ସଙ୍କଟୁ ଉଦ୍ଧର । ନୋହିଲେ ଗତି ନାହିଁ ମୋର ॥
ତୁମ୍ଭେ ଯେ କାମୀ କାମଧେନୁ । ବୋଲି ଗୁଡ଼ିଲା ଭୟ ମନୁ ॥
ବୋଇଲେ ଶୁଣ ନୃପନାଥ । କେବଳ ଦେବ ଜଗନ୍ନାଥ ॥

ଏ ପିଣ୍ଡ ଥିବା ଅଛି ତାରେ । ଗୀତ ମୁଁ ନ ବୋଲେ ଅନ୍ୟରେ
ଏ କଥା ଅନ୍ୟ ହେବ କାହୁଁ । ଦୁଃଖ ନ କର ଆଜ୍ଞା ହେଉ ॥
ତାହା ଶୁଣିଣ ଦଣ୍ଡଧର । ପୁଣି ବୋଇଲେ ଗୀତ କର ॥
ମୋ ନାମେ ଭାଣିଲେ ଅବଶ୍ୟ । ଅନେକ ଦେବି ଗ୍ରାମ ଦେଶ ॥
ମୋ ରାଜ୍ୟେ ଦେବି ଅଧିକାର । ଦେଖ ମୁଁ ଜଗତଈଶ୍ୱର ॥
ନୋହିଲେ ମରିବୁ ଅବଶ୍ୟ । ଗ୍ରୀଡ଼ା ତୁ ଜୀବନର ଆଶ ॥
କେ ଆସି ରଖିବଟି ତୋତେ । ଏହା ତୁ କହୁଅଛୁ ମୋତେ ॥
ଦାସେ ବୋଇଲେ ତାହା ଶୁଣି । ଶୁଣ ହେ ନୃପ ଚୂଡ଼ାମଣି ॥
ତୁମ୍ଭଙ୍କ ନାହିଁ ମୋର ଡର । ମୋ ପ୍ରଭୁ ବଳେ ବଳୀୟାର ॥
ଜଗତ ସୃଷ୍ଟି ଆନ ହେଲେ । ଗୀତ ମୁଁ ଆନକୁ ନ ବୋଲେ ॥
ଏକଥା ଅଟଇ ପ୍ରମାଣ । ଶୁଣି ଚଳିଲେ ନୃପଗଣ ॥
ବୋଇଲେ ଧର ହେ ଏହାକୁ । କେବଣ ବାପ ଆସି ରଖୁ ॥
ସଭାରେ ଲୋକେ ଆଚମ୍ବିତେ । ଅନାଇଛନ୍ତି ସ୍ତମ୍ଭିଭୂତେ ॥
ନିବନ୍ଧ କରି ବନ୍ଧାଇଲେ । ପାଦେ ଶାଙ୍କୋଳି ପିନ୍ଧାଇଲେ
ଶ୍ରୀପୁରୁଷୋତ୍ତମ ମଧ୍ୟରେ । ରଖାଇ ଗଲେ ବନ୍ଦୀଘରେ ॥
ବନ୍ଦୀ ମନ୍ଦିରେ ଯତ୍ନ କରି । ଖଣା ଖୋଳାଇ ହାତ ଚାରି ॥
ତହିଁରେ ଦାସଙ୍କୁ ରଖାଇ । ଉପରେ କାଠ ପଟା ଦେଇ ॥
ସେ କାଠ ପଟା ପରେ ଭଲେ । ପଥରମାନ ମଡ଼ାଇଲେ ॥
ନିବନ୍ଧେ କବାଟ କିଳାଇ । ଯେମନ୍ତେ ନ ଯିବ ପଳାଇ ॥
ଅନେକ ଲୋକଙ୍କୁ ହକାରି । ଲଗାଇ ଦେଲେ ଦଣ୍ଡଧାରୀ ॥
ଜାଗ୍ରତ ରଖି ଜଗୁଆଳ । କହି ଚଳିଲେ ମହୀପାଳ ॥
ସଭାରେ ଥିଲେ ଯେତେ ନର । କହିବା ଶକ୍ତି ଅଛି କାର ॥
ମହା ପ୍ରତାପୀ ନୃପବର । ଚଳିଣ ଗଲେ ନିଜପୁର ॥
ଲୋକେ ଯେ ଗଲେ ଯେଝାପୁରେ । ଦାସେ ରହିଲେ ବାନ୍ଧଣରେ
ମହା ସଙ୍କଟେ ଦାସେ ପଡ଼ି । ଆର୍ତ୍ତେ ଶିରେ କର ଯୋଡ଼ି

ଚଢେ ଶତ୍ରୁଲେ ବଳଦେବ । ମୋତେ କାଟିବେ ଆଜ୍ଞା ହେବ ।
ଦେଖି ତୋ କରୁଣା ଲଗଲ । ମୋ ଆର୍ତ୍ତି ହସ୍ତୀନାକୁ ଯାଇ ॥
ରଖ ମାଳାଦ୍ର ସିଂହବର । ମୋର ଆରତ ବଳୀୟାର ॥
ରଖ ହେ କୃଷ୍ଣଦାସ ପ୍ରାଣ । କାରଣ ଆର୍ତ୍ତନିବାରଣ ॥
ରଖ ସେବକ ସତକାର । ଭାନୁ ତନୟା ମନୋହାରୀ ॥
ଏ ମହା ସଙ୍କଟ ବନ୍ଧନ । ଫେଡ଼ ହେ ଶ୍ରୀନନ୍ଦନନ୍ଦନ ॥
ରଖ ବରଜ ଦୁଃଖହର । ଏ ଦୃଢ଼ ବନ୍ଧନୁ ଉଦ୍ଧର ॥
ହେ ସୁଦର୍ଶନ ଚକ୍ରଧର । ମୋ ଆର୍ତ୍ତଚକ୍ରକୁ ନିବାର ॥
ତୁମ୍ଭେ ନ ରଖିଲେ ଗୋସାଇଁ । ଏଠାରେ ମୋର ସାହା ନାହିଁ ॥
ତୋ ପଦଚକ୍ର ଉଦେକର । ମୋ ଆର୍ତ୍ତି ଅନ୍ଧକାର ହର ॥
ତୁମ୍ଭେ ନ ରଖିଲେ ନିଶ୍ଚିତ । ମୋର ମରଣ ହେଲା ସତ ॥
ଦାସ ବିନାଶ ହେଲେ ସତ । କି ବୋଲି ବୋଲିବେ ଜଗତ ॥
ଏଥକୁ ହୃଦରେ ବିଚାର । ମୋର ମରଣେ ନାହିଁ ଡର ॥
ସଂସାର ମଧ୍ୟେ ମହାବାହୁ । ମହିମା ରବ ଅସ୍ତ ନୋହୁ ॥
ଲୋକେ ବୋଲିବେ କୃଷ୍ଣଦାସ । କୃଷ୍ଣ ଚରଣେ କଲା ଆଶ ॥
ତାର ବିନାଶକାଳେ ହରି । ପାଶେ ନାହିଁ ରକ୍ଷାକରି ॥
ଆଉ କାହାକି ଏ ସଂସାରେ । ଭଜିବେ ଶ୍ରୀହରି ପଦରେ ॥
ଜଗତେ ଏହା ପ୍ରକାଶିବ । ମହିମା ଲିଭିନ ଯିବ ॥
ଏଥକୁ ନାହିଁ ମୋର ଦୁଃଖ । ଖଣ୍ଡ ତମ ପୁଣ୍ଡରୀକ ମୁଖ ॥
ଏ ଦଣ୍ଡଧର ଦଣ୍ଡ ମୋତେ । ଭଙ୍ଗର ଦଣ୍ଡ ତୋର ହସ୍ତେ ॥
ଏମନ୍ତ ବୋଲି ସ୍ତୁତି କରି । ବେନି ନୟନୁ ବହେ ବାରି ॥
କୃଷ୍ଣ ଚରଣେ ଚିତ୍ତ ଦେଇ । ଏକାନ୍ତେ ସ୍ତୁତି ସେ କରଇ ॥
ତାହା ଜାଣିଲେ ଭଗବାନ । ସେ ପ୍ରଭୁ ଜଗତଜୀବନ ॥
ଭକତ ଅପମାନ କଥା । ସେ ହରି ନ ସହେ ସର୍ବଥା ॥
ସମ୍ପୂର୍ଣ୍ଣ ଅଙ୍ଗେ କମ୍ପ ସ୍ଥ । ଭୂତ୍ୟର ପାଶେ ଉଦ୍ଧାରକରି ॥

କର ପଲ୍ଲବ ଶିରେ ଧରି । ସବାଙ୍ଗେ ବୁଲାଇଲେ ହରି ॥
ଶ୍ରୀଭକ୍ତ ଅଙ୍ଗେ ତାର ଲାଗି । ପାଦ ଶାଙ୍କୋଳି ଗଲା ଭାଙ୍ଗି ॥
ଫିଟିଲା ଅଶେଷ ବନ୍ଧନ । ବୋଇଲେ ପ୍ରଭୁ ଭଗବାନ ॥
ଭକ୍ତବତ୍ସଳ ବାନା ମୋର । ତୋ ମନେ ସଂଶୟ ନ କର ॥
ଏମନ୍ତ ବୋଲି ସବଗ୍ରାହୀ । ଦିବ୍ୟ ଭୋଜନ ପାତ୍ରେ ଥୋଇ
ଭୁଞ୍ଜ ବୋଲିଣ ଆଜ୍ଞା ଦେଲେ । ତକ୍ଷଣେ ଅନ୍ତର୍ଦ୍ଧାନ ହେଲେ ॥
ଏମନ୍ତ ବେଳେ କୃଷ୍ଣଦାସ । ନିଦ୍ରା ତେଜିଣ ଚଉପାଶ ॥
ଅନାଇ ଦେଖିଲେ କେହି ନାହିଁ । ଅଦ୍ଭୁତ ମନେ ବିସ୍ମରଇ ॥
ପାଦେ ଶାଙ୍କୋଳି ମୋର ନାହିଁ । ବନ୍ଧନ କେ ଦେଲା ଫିଟାଇ ॥
କରପଲ୍ଲବ ଶିରେ ଅଛି । ପ୍ରସାଦ ଥୋଇ କେ ଯାଇଛି ॥
ଏମନ୍ତ ବୋଲି କରେ ଧରି । ମୁଣ୍ଡେ ଛୁଆଇଁ ତୁଣ୍ଡେ ଭରି ॥
କୈବଲ୍ୟ ପାଇ ଅତିତୋଷେ । ବୋଇଲେ ମନର ହରଷେ ॥
ନିଶ୍ଚେ ଏ ଗୋବିନ୍ଦର ମାୟା । ବୋଲି ପୁଲକ କଲା କାୟା ॥
ଆନନ୍ଦେ ବୋଲେ ହରି ହରି । ମୁକୁନ୍ଦ ମାଧବ ମୁରାରି ॥
ଶ୍ରୀରାମକୃଷ୍ଣ ବାସୁଦେବ । ପରମାନନ୍ଦ ପଦ୍ମନାଭ ॥
ଆନନ୍ଦ ଅଚ୍ୟୁତ ଗୋବିନ୍ଦ । ବ୍ରଜ କେଶବ ସଦାନନ୍ଦ ॥
ଶ୍ରୀନାରାୟଣ ଚକ୍ରପାଣି । ବ୍ରଜବଲ୍ଲଭ ପ୍ରାଣମଣି ॥
ବନମାଳୀ ଶିରୀପତି । ଦୀନବାନ୍ଧବ ଦାଶରଥି ॥
ଲକ୍ଷ୍ମୀବଲ୍ଲଭ ଶ୍ରୀପତି । ଏମନ୍ତ ପ୍ରଭୁ ନାମ ଶତ ॥
ଭଜନ କରି ନିଜ ମୁଖେ । ରଜନୀ ବଞ୍ଚାଇ ସୁଖେ ॥
ଭକ୍ତବତ୍ସଳ ହଳପାଣି । ଭକତର ଚିନ୍ତା ମନେ ଜାଣି ॥
ସେ ରାଜ୍ୟ ରାଜାପାଖେ ଗଲେ । ହଳ ଲଙ୍ଗଳ ଦେଖାଇଲେ ॥
ବୋଇଲେ ବ୍ରାହ୍ମଣ ଯେବେ ଆଣ । ଗୃହ ତୁ ଦିଅ କୃଷ୍ଣ ଦାସ ॥
ନୋହିଲେ ତୁ ନିଶ୍ଚେ ମରିବୁ । ଭୃତ୍ୟକୁ କି କରି ପାରିବୁ ॥
ଏମନ୍ତ ଆଜ୍ଞା ତାଙ୍କୁ ଦେଲେ । ଫଣିମଣ୍ଡଳ ବଳେ କଲେ ॥

ସେ ବିଦ୍ୟସିଂହ ମହାରଥା । ସ୍ୱପନେ ଦେଖି ଏହି କଥା ॥
ହୃଦପଦ୍ମରେ କଲ ପ୍ରୀତି । ଚିନ୍ତିଲା ବଳଦେବ ମୂର୍ତ୍ତି ॥
ଏମନ୍ତେ ରଜନୀ ପାହିଲା । ନୃପତି ବିଜେ କରିଗଲା ॥
ବନ୍ଦୀ ମନ୍ଦିରେ ବିଜେକଲେ । କବାଟ ଫିଟାଇଣ ଦେଲେ ॥
ପଥର କାଢ଼ି କାଠ ଫେରି । ଦାସଙ୍କୁ ଦେଲେକ ଅନାଇ ॥
ବନ୍ଧନ ଅଛି ଫିଟାହୋଇ । ପାଦେ ଶାଙ୍କୋଳି ତାର ନାହିଁ ॥
ପ୍ରଭୁଙ୍କ ଅଙ୍ଗ ରୂପହାର । ତା ଅଙ୍ଗେ ଦିଶଇ ସୁନ୍ଦର ।
ନମିଣ ଭଜୁଅଛି ହରି । ଦେଖି ତୋଳିଲେ ଦଣ୍ଡଧାରୀ ॥
ଏମନ୍ତ ସମୟେ ସେବକେ । ଆସି ମିଳିଲେ ରାଜା ପାଖେ ॥
ବୋଇଲେ ଶୁଣ ନରନାଥ । ଆମ୍ଭେ ଦେଖିଲୁ ବିପରୀତ ।
କବାଟ ଫିଟା ଅବକାଶେ । ଯାଇ ମିଳିଲୁ ପ୍ରଭୁ ପାଶେ ।
କରପଲ୍ଲବ କରେ ନାହିଁ । ଶ୍ରୀଅଙ୍ଗ ଅଛି ଭୁକ୍ତା ହୋଇ ।
ଦେଖି ଅଇଲୁ ଏହିକ୍ଷଣି । ବୁଝିବା ହେଉ ନୃପମଣି ॥
ତାହା ଶୁଣିଣ ନୃପରାୟେ । ଯାଇ ଦେଖିଲେ ଭୃତ୍ୟଠାଏ ॥
ସ୍ୱପନ କଥା ମନେ ଚିନ୍ତି । ଅତି ଆନନ୍ଦ ସେ ନୃପତି ॥
କୃଷ୍ଣଦାସଙ୍କୁ ଧରି କୋଳେ । ମୁଖେ ଚୁମ୍ବନ ଦେଲେ ହେଳେ ।
ବୋଇଲେ ଧନ୍ୟ ତୋ ଜୀବନ । ତୋତେ ଦେଖିଲି ମୁହିଁ ଧନ୍ୟ ।
ଧନ୍ୟ ତୋ କର୍ଣ୍ଣ ମୁଖ ନାସା । ଧନ୍ୟ କହିବା ତୋର ଭାଷା ॥
ଧନ୍ୟ ତୋ ମନ ବୁଦ୍ଧି ଯେତେ । ପ୍ରଭୁଙ୍କ ଏତେ ଦୟା ତୋତେ ॥
ସଂସାରେ ହରିଭକ୍ତ ସାର । ଧିକ ମୋ ନୃପତି ହେବାର ॥
ଧିକ ଏ ଅନ୍ୟ କର୍ମ ଯେତେ । ଧନ୍ୟ ସଂସାରେ ହରିଭକ୍ତେ ॥
ଦେଖ ମୋହର ମୂଢ଼ପଣ । ସାଧୁଙ୍କୁ ଦେଲି ମୁଁ କଷଣ ।
ଏଥେ ଅପ୍ରାଧ ମୋର ଯେତେ । କେବେହେଁ ନ ଘେନିବ ଚିତ୍ତେ ॥
ତୁମ୍ଭର ନାହିଁ ପରାପର । ମୋହର ଦୋଷ କ୍ଷମା କର ॥
ଏମନ୍ତ ବୋଲି ନୃପମଣି । ଅନେକ ଧନବସ୍ତ୍ର ଆଣି ॥

କୃଷ୍ଣଦାସଙ୍କୁ ତାହା ଦେଲେ । ନୃପତି ଚନ୍ଦ୍ର ଚଳିଗଲେ ॥
ସମସ୍ତେ ଜୟ ଜୟ କଲେ । ଶ୍ରୀକୃଷ୍ଣ ଦାସ ବଢେଇଲେ ॥
ପ୍ରଭୁଙ୍କୁ ଦରଶନ କରି । ଚଳିଣ ଗଲେ ନିଜପୁରୀ ॥
ଶୁଣ ସୁମନ ଏକଚିତ୍ତେ । ପ୍ରଭୁଙ୍କ ମହିମା ଏମନ୍ତେ ॥
ଭକତଙ୍କଠାରେ ଏତେକ ଦୟା । ନ ଥିବ ନିଜ ପୁତ୍ରେ ତାହା ॥
ହରି ଭକତମାନଙ୍କର । ମହିମା ଅଟନ୍ତି ଅପାର ॥
କେ ମୁଖେ କହିବାକୁ କ୍ଷମ । ଏ କଥା ନୁହଇ ଭଜନ ॥
ସଂସାରେ ପ୍ରାଣୀ ଭକ୍ତି ଯେତେ । ଯେ ଏବା ଶୁଣେ ଶ୍ରଦ୍ଧାଚିତ୍ତେ ॥
ସେବା ପଢ଼ିବ ଶୁଦ୍ଧମନେ । ନ ଯିବ ଶମନ ଦର୍ଶନେ ॥
ଅଶେଷ ରସ ବନ୍ଧ ପାଶ । ଲାଗିବ ନାହିଁଟି ଅବଶ୍ୟ ॥
ନରପତିଙ୍କ ଦଣ୍ଡ ଯେତେ । ଲାଗିବ ନାହିଁ କଦାଚିତେ ॥
କହଇ ବିପ୍ର ରାମଦାସ । ମୂଳଟି ଅଟଇ ବିଶ୍ୱାସ ॥
ଏଣୁଟି ପ୍ରେମ କୃଷ୍ଣ ପାଦେ । ମୋ ଚିତ୍ତ ରହୁ ଅପ୍ରମାଦେ ॥
ସାଧୁଜନଙ୍କ ପାଦଧୂଳି । ଦଣ୍ଡେ ନ ଛାଡ଼ୁ ମୋ ମଉଳି ॥
ସୁଜନେ ଏହି ରଚେ ରସ । ଏଣୁ ଅନ୍ୟରେ ନାହିଁ ଆଶ ॥
ସାଧୁ ଶ୍ରୀକୃଷ୍ଣ ନାମ ବିନେ । ଜୀବ ଉଦ୍ଧାର ନାହିଁ ଅନ୍ୟେ ॥

ଇତି ଶ୍ରୀ ଦାର୍ଢ୍ୟଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ
କୃଷ୍ଣଦାସ ଦାର୍ଢ୍ୟଭାବ କୀର୍ତ୍ତନେ ନାମ
ଊନବିଂଶୋଽଧ୍ୟାୟଃ ।

---

## ବିଂଶ ଅଧ୍ୟାୟ

ତୁଳସୀ ମହାପାତ୍ର ସମ୍ବାଦ

ଚୈତନ୍ୟ ଉବାଚ

ଏବେ ମୋ ଶୁଣ ମନରାୟେ । କହିବ ଦୁର୍ଲଭ କଥାଏ ॥
ଦାର୍ଢ୍ୟଭକତି ଉପାଖ୍ୟାନ । ଭକତ ମଧ୍ୟେ ମୋକ୍ଷ ପାନ ॥



ଜଗନ୍ନାଥଙ୍କ ମୁଣ୍ଡରୁ ରକ୍ତ ବାହାରିବାରୁ ରାଜା ସବୁ ସତ ବୋଲି ଜାଣି ଚଳନ୍ତି ମହାପାତ୍ରଙ୍କଠାରେ କ୍ଷମା ମାଗୁଛନ୍ତି ।

ପୁରୁଷୋତ୍ତମେ ତାର ଘର । ଜାତରେ ଅଟେ ବିପ୍ରବର
ସେବକ ମଧ୍ୟେ ଅଧିକାର । ଶୁଣ ମହିମା ଏବେ ତାର
ତଳିଛ ନାମେ ମହାପାତ୍ର । ଶୁଣ କହିବା ତା ଚରିତ
ସକଳ ପାଠ ଶାସ୍ତ୍ରେ ଜ୍ଞାତା । ଜାଣଇ ସର୍ବ ଧର୍ମକଥା ॥
ସର୍ବଦା କାଳେ ଶୁଚିମନ୍ତ । ଭଜନ ମାର୍ଗେ କାଷ୍ଠାଚିତ୍ତ ॥
ଶାନ୍ତ ସୁ·ଶୀଳ ସର୍ବସହ । ସୁଜନ ସଙ୍ଗତରେ ପ୍ରିୟ ॥
ଦୁଃଖୀ ଭୋଜନ ଦିଏ ନିତ୍ୟେ । ସ୍ନେହ ତା ରହେ କଥାମୃତେ
ଶ୍ରୀନୀଳାଚଳ ପୁରବାସୀ । ପ୍ରଭୁ ପରମ ବ୍ରହ୍ମରାଶି ॥
ଅଶେଷ ପ୍ରାଣୀଙ୍କର ଗତି । କମଳା ଦେବୀ ପ୍ରାଣପତି ॥
ଯେ ସଙ୍କର୍ଷଣ ହଳପାଣି । ରେବତୀ ଦେବୀ ପ୍ରାଣମଣି ॥
ରୋହିଣୀ ଦେବୀଙ୍କ ନନ୍ଦନ । ଅଶେଷ ମୁନିଙ୍କ ବନ୍ଦନ ॥
ସୁଭଦ୍ରା ଦେବୀ ଜଗନ୍ମାତା । ଅଶେଷ ପ୍ରାଣୀ ପତ୍ନିଦାତା ॥
ଏ ତିନିଦେବ ସେବା ବିନେ । ଅନ୍ୟ ନ ଜାଣେ ତାର ମନେ ॥
ପାହାନ୍ତି ଅବକାଶଠାରୁ । ପ୍ରଭୁଙ୍କ ପହଡ଼ ସେବାରୁ ॥
ଏଥିମଧ୍ୟରେ ସେବା ଯେତେ । କରୁ ଯେ ଥାଇ ନିତ୍ୟେନିତ୍ୟେ ॥
କିରୀଟ କର୍ଣ୍ଣାଞ୍ଚଳ ଚୂଳ । ହାର କେୟୁର ଧଣ୍ଡାମାଳ ॥
ହୃଦପଦ୍ମରେ ପଦ୍ମହାର । ବୀର ବାହୁଟି ଖଞ୍ଜିବାର ॥
ନାନାକୁସୁମେ ହାର ଯେତେ । ତୁଳସୀ ଧଣ୍ଡାର ସହିତେ ॥
ଯେ ଅଷ୍ଟଭିନ୍ନ ଅଳଙ୍କାର । ଭୂଷଣ ପ୍ରଭୁମାନଙ୍କର ॥
ଯେତେବେଳରେ ସେବା ଯେତେ । ସବୁ ଯେ କରୁଥାଇ ହସ୍ତେ ॥
ଶ୍ରୀମୁଖ ସିଂହାର କରିବା । ଯେ ବସ୍ତ୍ରମାନ ପିନ୍ଧାଇବା ॥
ଗନ୍ଧ ଚନ୍ଦନ ଯେ କସ୍ତୁରୀ । ତିଳକ ସେବା ଆଦି କରି ॥
ଟେ ଧୂପ ଆଳତି କରିବାର । କର୍ପୂର ଦୀପ ଜାଳିବାର ॥
ତ୍ତା ଶ୍ରୀହାର ବିନା ଅନ୍ୟ ନରେ । କ୍ଷେମ ନୁହନ୍ତି କରିବାରେ ॥
ସେ ଷ୍ଟ୍ରୁ ମାଘି ନିଶି ଦିବସରେ । ମନ ବଚନ କର୍ତ୍ତବ୍ୟରେ ॥

ଡଳଛ ମହାପାତ୍ର ପୃଷ୍ଠା ୧୬୦-୧୬୧



ଜଗନ୍ନାଥଙ୍କ ମୁଣ୍ଡରୁ ରକ୍ତ ବାହାରିବାରୁ ରାଜା ସବୁ ସତ ବୋଲି ଜାଣି ଡଳଛ ମହାପାତ୍ରଙ୍କଠାରେ କ୍ଷମା ମାଗୁଛନ୍ତି ।

ପୁରୁଷୋତ୍ତମେ ତାର ଘର । ଜାତରେ ଅଟେ ବିପ୍ରବର ।
ସେବକ ମଧ୍ୟେ ଅଧିକାର । ଶୁଣ ମହିମା ଏବେ ତାର ।
ତଳିଛ ନାମେ ମହାପାତ୍ର । ଶୁଣ କହିବା ତା ଚରିତ୍ର ।।
ସକଳ ପାଠ ଶାସ୍ତ୍ରେ ଜ୍ଞାତା । ଜାଣଇ ସର୍ବ ଧର୍ମକଥା ।।
ସର୍ବଦା କାଟଲ ଶୁଚିମନ୍ତ । ଭଜନ ମାର୍ଗେ ଜାଗ୍ରତ ।।
ଶାନ୍ତ ସୁଶୀଳ ସର୍ବସହ । ସୁଜନ ସଙ୍ଗତରେ ପ୍ରିୟ ।।
ଦୁଃଖୀ ଭୋଜନ ଦିଏ ନିତ୍ୟେ । ସ୍ନେହ ତା ରହେ କଥାମୃତେ
ଶ୍ରୀନୀଳାଚଳ ପୁରବାସୀ । ପ୍ରଭୁ ପରମ ବ୍ରହ୍ମରାଶି ।।
ଅଶେଷ ପ୍ରାଣୀଙ୍କର ଗତି । କମଳା ଦେବୀ ପ୍ରାଣପତି ।।
ଯେ ସଙ୍କର୍ଷଣ ହଳପାଣି । ରେବତୀ ଦେବୀ ପ୍ରାଣମଣି ।।
ରୋହିଣୀ ଦେବୀଙ୍କ ନନ୍ଦନ । ଅଶେଷ ମୁନୀଙ୍କ ବନ୍ଦନ ।।
ସୁଭଦ୍ରା ଦେବୀ ଜଗନ୍ମାତା । ଅଶେଷ ପ୍ରାଣୀ ପଦ୍ମଦାତା ।।
ଏ ତିନିଦେବ ସେବା ବିନେ । ଅନ୍ୟ ନ ଜାଣେ ତାର ମନେ ।।
ପାହାନ୍ତ ଅବକାଶଠାରୁ । ପ୍ରଭୁଙ୍କ ପହଡ଼ ସେବାରୁ ।।
ଏଥିମଧ୍ୟରେ ସେବା ଯେତେ । କରୁ ଯେ ଥାଇ ନିତ୍ୟେନିତ୍ୟେ ।।
କଣ୍ଠ କର୍ଣ୍ଣାଞ୍ଜଳ ଚୂଳ । ହାର କେୟୁର ଧଣ୍ଡାମାଳ ।।
ହୃଦପଦ୍ମରେ ପଦ୍ମହାର । ବୀର ବାହୁଟି ଖଞ୍ଜିବାର ।।
ନାନାକୁସୁମେ ହାର ଯେତେ । ତୁଳସୀ ଧଣ୍ଡାର ସହିତେ ।।
ଯେ ଅଷ୍ଟରତ୍ନ ଅଳଙ୍କାର । ଭୂଷଣ ପ୍ରଭୁମାନଙ୍କର ।।
ଯେତେବେଳରେ ସେବା ଯେତେ । ସବୁ ଯେ କରୁଥାଇ ହସ୍ତେ ।।
ଶ୍ରୀମୁଖ ଶିଙ୍ଗାର କରିବା । ଯେ ବସ୍ତ୍ରମାନ ପିନ୍ଧାଇବା ।।
ଗନ୍ଧ ଚନ୍ଦନ ଯେ କସ୍ତୁରୀ । ତିଳକ ସେବା ଆଦି କରି ।।
ଧୂପ ଆଳତି କରିବାର । କର୍ପୂର ଦୀପ ଜାଳିବାର ।।
ତାହାର ବିନା ଅନ୍ୟ ନରେ । କ୍ଷମ ନୁହନ୍ତି କରିବାରେ ।।
ସେ ପୁଣି ନିଶି ଦିବସରେ । ମନ ବଚନ କର୍ମକ୍ୟରେ ।।

କେବଳ ସେବଥାଇ ତାଙ୍କୁ । ନ ଜାଣେ ଅନ୍ୟଦେବତାଙ୍କୁ ॥
ଦିବ ଦାଇବ ଗୁରୁଜନ । ଇଷ୍ଟଦେବତା ବନ୍ଧୁଜନ ॥
କେବଳ ପ୍ରଭୁ ଦାରୁବ୍ରହ୍ମ । ଏଥୁ ନ ଜାଣେ ଅନ୍ୟ କର୍ମ ॥
ସୁତ ସମର୍ପି ଦାସ ପ୍ରାଣ । ସମର୍ପି ଶ୍ରୀ ହରି ଚରଣ ॥
ଆନନ୍ଦେ ବଞ୍ଚୁଥାଇ ଦିନ । କରଣ ସେ ପ୍ରଭୁ ଭଜନ ॥
ଏମନ୍ତେ କେତେ ଦିନ ଅନ୍ତେ । ଶୁଣ ସୁମନ ଏକଚିତ୍ତେ ॥
ଦିନେକ ସେ ମହାରାଜନ । ପ୍ରଭୁ ଦର୍ଶନେ ଆଗମନ ॥
ଅନେକ ସୈନ୍ୟ ସଙ୍ଗେ ଧରି । ପ୍ରତାପରୁଦ୍ର ବଜେକରି ॥
ବଜାଇ ବୀରତୂରମାନ । ଆଗେ ଶୁଭଇ କମ୍ବୁସ୍ୱନ ॥
ଅନେକ ବାଦ୍ୟ ଘୋରନାଦ । ଘେନାଇ ଅନେକ ସମ୍ପଦ ॥
ବଜାଯ୍ତ ଅନେକ ସମ୍ଭାରେ । ପ୍ରବେଶ ହେଲେ କ୍ଷେତ୍ରବରେ ॥
କେହ୍ନି କହ୍ନି ଯେ ନରପତି । ପ୍ରବେଶ ସିଂହଦ୍ୱାର କତ ॥
ରାଜାଙ୍କୁ ଦେଖିଣ ସେବକେ । ଦେଖିଲେ ଧାଇଁଗଲେଥୋକେ ॥
କହିଲେ ମହାପାତ୍ର ପାଶେ । ନୃପତି ବଜେ କରି ଆସେ ॥
ଦେଖିଲେ ପଶିଲେଣି ଆସି । କହ୍ନି କହ୍ନି ସେ ରଜା ବଶି ॥
ସେ ମହାପାତ୍ର ଦେଖି ତାଙ୍କୁ । ଧାଇଁଲେ ପ୍ରଭୁଙ୍କ ସମ୍ମୁଖୁ ॥
ଅତ୍ୟନ୍ତ ଚଳ ହୋଇ ମନେ । ଉଠିଲେ ରତ୍ନସିଂହାସନେ ॥
ଦେଖିଲେ ପ୍ରଭୁଙ୍କ ମଉଳ । କୁସୁମ ନାହିଁ ମନେ ଭଳ ॥
କା ବୁଦ୍ଧି କରିବ ମୁଁ ଏବେ । ନୃପତି ଆସିଲେଣି ଯେବେ ॥
ପ୍ରଭୁଙ୍କ ମସ୍ତକର ଫୁଲ । ଯେ ରଜାପ୍ରସାଦ ଅମୂଲ୍ୟ ॥
ମୂଳ ଏ ରଜାଙ୍କୁ ଦେବାର । ନ ଦେଲେ ମହତ ମୋହର ॥
ଏଠାରେ ଆଉ ନ ରହିବ । ମୁଣ୍ଡରେ ହାତ ଦେଲେ ଭବ ॥
ନିଜ ମସ୍ତକୁଁ ଫୁଲ ନେଇଲେ । ପ୍ରଭୁଙ୍କ ମସ୍ତକେ ଥୋଇଲେ ॥
ଏମନ୍ତ ଯାଇ ନୃପବର । ମିଳିଲେ ପ୍ରଭୁଙ୍କ ସମ୍ମୁଖର ॥
ଯେ ବଧିମତରେ ଦର୍ଶନ । ସମସ୍ତ ସାରିଲେ ରାଜନ ॥

ପ୍ରଭୁ ସମ୍ମୁଖରେ ମହାବଳୀ । ପ୍ରସାଦ ଅର୍ଥେ କରି ତୋଳି ॥
ତାହା ଦେଖିଣ ମହାପାତ୍ର । ଜଳେ ଧୋଇଲେ କରପତ୍ର ॥
ପ୍ରଭୁ ମସ୍ତକୁଁ ପୁଷ୍ପ ନେଇ । ନୃପତି ହସ୍ତେ ତାହା ଦେଇ ॥
ରାଜେ ପ୍ରସାଦ ଆଣିଦେଲେ । ଘେନି ନୃପତି ଚଳିଗଲେ ॥
ନବରେ ହୋଇଲେ ପ୍ରବେଶ । ଏମନ୍ତେ ଦିନ ହେଲା ଶେଷ ॥
ଦିବ୍ୟ ଆସନେ ରାଜା ବସି । ପ୍ରସାଦ ଫୁଲ ଧରି ତୋଷି ॥
ଏକେତ ଯାଈଫୁଲ ଗଭା । ଶୁକ୍ଳେ ଦିଶଇ ଅତି ଶୋଭା ॥
ତହିଁ ଦେଖିଲେ ବିପରୀତ । ଦିଶିଲା ବାଳ ଗୋଟିଏ ତ ॥
ଦେଖି ବଚାରେ ନୃପବର । ଏ ତ ଅଟଇ ବଡ଼ମ୍ବନ ॥
ପ୍ରଭୁଙ୍କ ମଥାର ଫୁଲରୁ । ବାଳ ଅଇଲା କେଉଁଠାରୁ ॥
ନିଶ୍ଚେ ଏ କଥା ହେଲା ନାଶ । ବ୍ରାହ୍ମଣ ମୁଣ୍ଡ ଛଡ଼ାପୁଷ୍ପ ॥
ପ୍ରଭୁଙ୍କ ଶିରରେ ଥୋଇଲା । ପ୍ରସାଦ ବୋଲି ମୋତେ ଦେଲା ॥
ଏମନ୍ତ ବୋଲି ଦଣ୍ଡଧାରୀ । ପେଷିଲେ ଲୋକ ଜଣ ଚାରି ॥
ତୁମ୍ଭେ ରେ ଯାଅ ବେଗ ହୋଇ । ଭଳାଙ୍କ ମହାପାତ୍ର ଠାଇଁ ॥
ବନ୍ଧନ ହୋଇ ଘେନିଆସ । ବିଳମ୍ବ କଲେ ଯିବ ନାଶ ॥
ଆଜ୍ଞା ପ୍ରମାଣେ ବେଗେ ଗଲେ । ଦେଉଳେ ପ୍ରବେଶ ହୋଇଲେ ॥
ମହାପାତ୍ରଙ୍କୁ ଘେନିଗଲେ । ନୃପତି ଆଗେ ଉଭା କଲେ ॥
ଦେଖି କୋପିଲେ ନୃପସାଇଁ । କାଳ ଭୁଜଙ୍ଗ ପ୍ରାୟେ ହୋଇ ॥
ବୋଇଲେ ଶୁଣ ମହାପାତ୍ର । ଆମ୍ଭେ ଦେଖିଲୁ ବିପରୀତ ॥
ପ୍ରଭୁଙ୍କ ମଉଳିରେ ବାଳ । ଉଠିବା ହେଲା କେତେକାଳ ॥
ବେଗେ ତୁ କହ ମୋର ପାଶ । ଯେବେ ଜୀବନେ ତୋର ଆଶ ॥
ନୋହିଲେ ମରିବୁ ଅବଶ୍ୟ । ଦେଖ ପ୍ରସାଦ ଫୁଲେ କେଶ ॥
ତା ଶୁଣି ଶ୍ରୀହରିସେବକ । ମନେ ଚିନ୍ତିଲେ ପ୍ରଭୁ ରଖ ॥
ନିଶ୍ଚେ ମରଣ ହେଲା ମୋର । ଏ ଯେ ପ୍ରତାପୀ ଦଣ୍ଡଧର ॥
କି ଦଣ୍ଡ ବିହିବ ଏ ମୋତେ । ଏଠାରୁ ବଞ୍ଚିବ କେମନ୍ତେ ॥

ମିଥ୍ୟା ମୁଁ କହିବି କଥାଏ । ଏଠାରୁ ବଞ୍ଚିଯିବା ଯାଏ ॥
ପଛକେ ଯାହା ହେବ ହେଉ । ଏ ରାଜଦଣ୍ଡ ଆଗେ ନୋହୁ ॥
ଏମନ୍ତ ବୋଲି ମହାପାତ୍ର । କାଖେ ଧରିଣ କରପତ୍ର ॥
ବୋଇଲେ ଶୁଣ ହେ ନରେଶ । ହେଲାଣି ପ୍ରଭୁ ମୁଣ୍ଡେ କେଶ ॥
ଆଜଯାଏ କି ଦଣ୍ଡଧର । ତୁମ୍ଭଙ୍କୁ ନୋହିଛି ଗୋଚର ॥
ଶୁଣି ବୋଇଲେ ନରନାଥେ । ଦେଖାଇ ଦେବୁଟି କି ମୋତେ ॥
ତା ଶୁଣି ମହାପାତ୍ର କହି । ନିଶ୍ଚେ ଦେଖାଇ ଦେବି ମୁହିଁ ॥
ଯେବେ ଦେଖାଇ ନ ପାରିବ । ଦଣ୍ଡକୁ କାରଣ ହୋଇବ ॥
ଶୁଣି ବୋଇଲେ ମହାରଥୀ । କାଲି ବୁଝିବା ତୁମ୍ଭ କଥା ॥
ଯେବେ ପ୍ରଭୁଙ୍କ ଶିରେ କେଶ । ଦେଖାଇ ଦେବୁଟି ଅବଶ୍ୟ ॥
ତେବେଟି ତୁମ୍ଭର କୁଶଳ । ନୋହିଲେ ରାଜ୍ୟ ଛାଡ଼ି ଚଳ ॥
ଅଧିକ କି କହିବ ତୋତେ । ତୁମ୍ଭେ ତ ଜାଣିଅଛ ମୋତେ ॥
ଏମନ୍ତ ବୋଲି ଦଣ୍ଡପାଣି । ତାହାଙ୍କୁ ଦେଲେ ସେ ମେଲାଣି ॥
ତହୁଁ ଚଳିଲେ ଦ୍ୱିଜବର । ମିଳିଲେ ପ୍ରଭୁଙ୍କ ଛାମୁର ॥
ସେ ରାଜା ଧୂପ ଅବକାଶ । ଶ୍ରୀହରି ଫୁଲଲାଗି ବେଶ ॥
ଆଳତି ବନ୍ଦାପନା ସେବା । ଚଢ଼ାଇ ଲାଗି ବେଶ ଅବା ॥
ପ୍ରଭୁ ମଣୋହି ଆଦିକରି । ବଡ଼ସିଂହାର ବେଶ ସାରି ॥
ଯେ ନିତ୍ୟକର୍ମ ବିଧି ଯେତେ । ପ୍ରଭୁଙ୍କ ପହଡ଼ ସହିତେ ॥
ସକଳ ସେବା ବଢ଼ାଇଲେ । ଛାମୁରେ ଉଭା ହୋଇ ଭଲେ ॥
ସାଷ୍ଟାଙ୍ଗେ ଦଣ୍ଡବତ କରି । ଉଠି କପାଳେ କର ଭରି ॥
ବୋଇଲେ ଆହେ ମହାବାହୁ । ଛାମୁରେ କି କହିବି ଆଉ ॥
ଇତର ଲୋକେ ବଡ଼ପଣ । ଦେଲେଟି ପ୍ରଭୁ ନାରାୟଣ ॥
କାଳେ ଏ ହୁଅଇ ଏମନ୍ତ । ସରଇ ପ୍ରଭୁଙ୍କ ମହତ୍ତ୍ୱ ।୧୦୦।
ସ୍ୱାନକୁ ଆଶ୍ୱାସନା କଲେ । ମୁଖେ ଚୁମ୍ବନ ଦେଇ ଭଲେ ॥
ସର୍ପକୁ ଦେଲେଟି ପୀୟୂଷ । କାଳେ ସେ ଉଦ୍ଗାରଇ ବିଷ ॥

ଏଣୁ ମୋ ସ୍ବର ପାପିଜନ । ସ୍ବମୁକ୍ତ ନୁହଇ ଭାଜନ ॥
ଯେବଣ ପାଦପଦ୍ମ ତଳେ । ବ୍ରହ୍ମା ଇନ୍ଦ୍ରାଦି ଶିର ଲୁଳେ ॥
ଯେ ପାଦପଙ୍କଜର ମୂଳେ । କମଳା ସେବେ ନିରନ୍ତରେ ॥
ଯେବଣ ପାଦପଦ୍ମ ବାରି । ଶଙ୍କର ମଉଳରେ ଧରି ॥
ଯେ ପଦ ଅରବିନ୍ଦ ବାରି । ପବନ କଲା ତିନିପୁରୀ ॥
ଶୁକ ସନକ ସନାତନ । ଯେ ପାଦେ ନୁହନ୍ତି ଭାଜନ ॥
ଶାରଦା ଆଦି ସୁରଦେବେ । ଯେ ପାଦେ ନିରନ୍ତରେ ସେବେ
ଯେବଣ ପାଦପଦ୍ମ ଧ୍ୟାଇ । ଯୋଗୀଏ ଯୋଗମାର୍ଗେ ଥାଇ
ସେ ପାଦପଦ୍ମ ସେବାକରି । ମୋ ସ୍ବର ନରଦେହ ଧରି ॥
କୋଟିଏ ଜୀବରୁ ନିଊନ । ମୁଁ ନୋହେ ତାହାଙ୍କ ଭାଜନ ॥
ଯେଣୁ ତୁ ଦେଲୁ ଭାବଗ୍ରାହୀ । ତେଣୁ ମୁଁ ମତ୍ତଗର୍ବ ବହି ॥
ପ୍ରଭୁଙ୍କୁ ଚିହ୍ନି ନ ପାରିଲି । ମୁଁ ମୂଢ଼ ମନ୍ଦ କର୍ମ କଲି ॥
ମୋ ମୁଣ୍ଡ ଛଡ଼ା ଫୁଲ ନେଇ । ତୋ ମୁଣ୍ଡେ ଥୋଇଲି ଗୋସାଇଁ
ଏହା କହୁଛି ମୋର ତୁଣ୍ଡ । ଚକ୍ରେ ବିନାଶ ମୋର ମୁଣ୍ଡ ॥
ରାଜାର ଦଣ୍ଡ ଯାଏ ନୋହୁ । ଏ ପାପୀ ଶରୀର ନ ଥାଉ ॥
ଅଧିକ କି କହିବ ତୋତେ । ତୁ ଯେ ଭକତଜନ ହିତେ ॥
ଅନେକ ପାଇଛୁ କଷଣ । ଏହା ମୁଁ କରିଛି ଶ୍ରବଣ ॥
ଅଦ୍ୟାପି ଶ୍ରୀବତ୍ସପଦ୍ମର । ବହିଛୁ ହୃଦପଦ୍ମେ ତୋର ॥
ତାହା ମୁଁ ନୟନେ ଦେଖିଛି । ତେଣୁ ମୋ ଭୟ ନାହିଁ କିଛି ॥
ତୁ ନାଥ ପରମ ଦୟାଳୁ । ଭୃତ୍ୟ ଦଣ୍ଡକୁ ନାହିଁ ଛଳୁ ॥
ଏଣୁ ମୁଁ କହୁଅଛି ତୋତେ । କହିଛି ନୃପତି ଅଗ୍ରତେ ॥
କହି ଅଇଲି ଭାବଗ୍ରାହୀ । ତାହା ତ ଜାଣିଥିବୁ ତୁହି ॥
ତୁ ଅନ୍ତର୍ଯାମୀ ଏ ଜଗତେ । କିସ କହିବାର ଅଛି ତୋତେ ॥
ରାଜ ପାଇଲେ ନରନାଥେ । ଧରାଇ ଦେଇଥିବେ ମୋତେ
ଅନେକ ଦଣ୍ଡ ସେ ବହିବ । ସେ ଦଣ୍ଡ କେ ସହି ପାରିବ ॥

ଏଣୁ ତା ହସ୍ତରୁ ନ ଥିବ । ଗରଳ ଖାଇଣ ମରିବ ॥
ଏ କଥା ଶାସ୍ତ୍ରରେ ପ୍ରମାଣ । ଗୁରୁମୁଖରେ ଶୁଣ ନିତବେଦନ ॥
ଏମନ୍ତ କହି ବେଗ ହୋଇ । ଲେଉଟି ପାଦେ ଫେଡ଼ ଦେଇ ॥
ଉଠି ବହନ ଚଳିଗଲେ । ଦେଉଳେ କବାଟ କିଲିଲେ ॥
ବେଢ଼ା ନୀତିଶୋଧ କରି ଭଲେ । ସେବକ ଯେ ଯାହାର ଗଲେ ॥
ସେ ମହାନ୍ତ ଗଲେ ଘରେ । ଅତ୍ୟନ୍ତ ସନ୍ତାପ ମନରେ ॥
ଗରଳ ଆଣି ରଖାଇଲେ । ଭୁଞ୍ଜିବି ରଜନୀ ପାହିଲେ ॥
ଯାଇଁ ଶ୍ରୀହରି କୃପା କରି । କରିବେ ବୋଲି ମନେ ଅଛି ॥
ତେଣୁ ଶୋଇଲା ଉପବାସେ । ଚିତ୍ତ ବୁଡ଼ାଇ ପ୍ରଭୁ ପାଶେ ॥
ବେନି ନୟନ ଅଶ୍ରୁଧାରା । ଗଳି ପଡ଼ଇ ବସୁନ୍ଧରା ॥
ଏମନ୍ତେ ନିଦ୍ରାରେ ମୋହିତ । ତାହା ଜାଣିଲେ ଜଗନ୍ନାଥ ॥
ସେବକ ମନ ପ୍ରଭୁ ଜାଣି । ବିଜୟ କଲେ ଚକ୍ରପାଣି ॥
ଉଭିଲେ ମହାନ୍ତ ଘରେ । ଭକତ ଶୟନ ସ୍ଥାନରେ ॥
ଉଭା ହୋଇଣ ଧବଳାଙ୍ଗୀ । ସ୍ୱପନେ ଆଜ୍ଞା ତାକୁ ଦେଇ ॥
ବୋଇଲେ ଶୁଣ ରେ ଭକତ । ତୁ କିପାଁ ଚିନ୍ତା କରୁ ଚିତ୍ତ ॥
ମୋ ପାଇଁ ପ୍ରଭୁ ସେବା କରି । ଆନ ଗୁରୁକୁ କିପାଁ ଡରି
ମୁଁ ଥିଲେ ନୀଳାଚଳେ ବସି । କି କରି ପାରେ ରାଜା ଆସି ।
କୋଟିଏ ନୃପତି ଅଇଲେ । କି କରିପାରେ ତୋତେ ଭଲେ
ଆବର କହୁଅଛି ତୋତେ । ତୁ ଡରୁ ଯାହାଁର ନିମନ୍ତେ ॥
ମୁଁ ତ ତତମନ୍ତେ ଲଣ୍ଡା ନୋହେ । ତୋ ମନେ କିପାଁ କରୁ ଭୟେ
କେଶ କି ନାହିଁ ମୋର ମାଥେ । ଦିଶଇ ନାହିଁ କି ନା ତୋତେ
ଏବେ କି ଡର ମନେ କରୁ । ନିଶ୍ଚେ ମୋ ମୁଣ୍ଡେ କେଶ ଅଛୁ
କାଲି ତୁ ପ୍ରତ୍ୟକ୍ଷ ଦେଖିବୁ । ରାଜାକୁ ଦେଖାଇଣ ଦେବୁ ॥
ସ୍ୱନ ଥାଇ ମୋ ଆଗେ ଆସ । କହି ଚଳିଲେ ପୀତବାସ ॥
ବିଜୟ ସୁବର୍ଣ୍ଣ ପଲଙ୍କେ । କମଳା ଦେବୀଙ୍କର ଅଙ୍କେ ॥

ଏଣେ ସେ ଇନ୍ଦ୍ର ନିଦ୍ରା ତେଜି । ଉଠିଲା ପ୍ରଭୁ ନାମ ଭଜି ॥
ଦେଖିଲା ପାଶେ କେହୁ ନାହିଁ । ଜାଣିଲା ନଷ୍ଟେ ସ୍ୱପ୍ନଗ୍ରାହୀ ॥
କରୁଣା କରି ଗଲେ ମୋତେ । ଏହା ମୁଁ ଜାଣିବି କେମନ୍ତେ ॥
ଏମନ୍ତ ବୋଲି ବେଗକରି । ସ୍ନାନାଦି କର୍ମ ମାନ ସାରି ॥
ସିଂହ ପ୍ରସ୍ଥରେ ଥାଇଁ ଗଲେ । ଦେଉଳେ ପ୍ରବେଶ ହୋଇଲେ ।
କବାଟମାନଙ୍କୁ ଫିଟାଇ । ସେ ବେଗେ ପଶିଲେ ଧସାଇ ।
ଜାଳି ଅନେକ ଦୀପାବଳୀ । ପ୍ରଭୁ ସମ୍ମୁଖରେ ଯାଇ ମିଳି ॥
ଭଳାଛ ମହାପାତ୍ର ଯାଇ । ଉଠିଲେ ସିଂହାସନ ଠାଇଁ ॥
ମନରେ ଭୟ ଅଛି ଭଲେ । ପ୍ରଭୁ ସମ୍ମୁଖକୁ ଗୃହିଁ ଦେଲେ ॥
ଦେଖିଲେ ମସ୍ତକରେ କେଶ । ଦିଶଇ ଭ୍ରମର ସଦୃଶ ॥
ନାନାକୁସୁମରେ ସୁବେଶ । ପଡ଼ିଅଛଇ ପୃଷ୍ଠଦେଶ ॥
ଜୁଡ଼ା ପଡ଼ିଛି କଟିଭାଗେ । ସେ ରତ୍ନସିଂହାସନ ଲାଗେ ॥
ଦେଖିଣ ଏମନ୍ତ ବିଧାନ । ଅତି ଆନନ୍ଦ ମହାପାତ୍ର ॥
ଅଶେଷ ଭରସା ପାଇଲେ । ପ୍ରଭୁଙ୍କ ସେବାରେ ରହିଲେ ॥
ଏଥିଉତ୍ତାରୁ ଶୁଣ ମନ । ସେ ମହାପ୍ରତାପୀ ରାଜନ ॥
ସେ କଥା ଅଛି ମନେ ଧରି । ବେଗେ ଆଇଲେ ବିଜେକରି ॥
ଦେଉଳେ ପ୍ରବେଶ ହୋଇଲେ । ପ୍ରଭୁଙ୍କୁ ଦରଶନ କଲେ ॥
ବିପ୍ରଙ୍କୁ ବୋଇଲେ ନରେଶ । ଦେଖାଅ ପ୍ରଭୁ ମୁଣ୍ଡେ କେଶ ॥
ତା ଶୁଣି ବୋଲେ ବିପ୍ରବର । ହେ ରାଜା ମୋତେ କି ପଚାର
ମୁଁ କିସ ଦେଖାଇବି ରାଜ୍ୟେ । ଦେଖ ହୋ ଆପଣା ଇଚ୍ଛାଏ ॥
ଶୁଣି ନୃପତି ଚଳିଗଲେ । ପ୍ରଭୁ ପଛକୁ ଗୃହିଁ ଦେଲେ ॥
ଦେଖିଲେ ପ୍ରଭୁ ମସ୍ତକର । ସୁନ୍ଦର ଦିଶେ କେଶଭାର ॥
ଅତ୍ୟନ୍ତ କଳା ଅତି ଲମ୍ବ । ଜୁଡ଼ା ସେ ପଡ଼ିଛି ନିତମ୍ବ ॥
ତା ଦେଖି ବୋଲେ ଦଣ୍ଡଧାରୀ । ସ୍ୱରୂପ କହ ଏ କଥାରି ॥
ଜଡ ମହଣ କି କରାଳ । କାହୁଁ ଖଞ୍ଜିଲ ଏତେ ବାଳ ॥

ଏକଥା ବଡ଼ଇ ବିଚାର । ଶୁଣି ବୋଲଇ ମହାପାତ୍ର ॥
ହେ ରାଜା ଅପ୍ରତେ ହୋଇଲେ । ଆଁଶେ ବୁଝି କାହା ଭଲେ ॥
ତାହା ଶୁଣିଣ ନରନାଥ । ବଢ଼ାଇଦେଲେ ନିଜ ହସ୍ତ ॥
ପ୍ରଭୁ ମସ୍ତକ କେଶ ଧରି । ଝିଙ୍କିଣ ଦେଲେ ଗୋଛା ଗୁରି ॥
ତକ୍ଷଣେ ରୁଧିର ବାହାର । ହୋଇଲା ପ୍ରଭୁ ମସ୍ତକର ॥
ତାହା ଦେଖିଣ ନୃପମଣି । ଢଳିଣ ପଡଲେ ଧରଣୀ ॥
ଉଠି ବ୍ରାହ୍ମଣ ପାଦେ ପଡ଼ି । କହଇ ଶିରେ କରଯୋଡ଼ି ॥
ହେ ଦ୍ୱିଜବର ମୋତେ ରଖ । ମୁଁ ମୂଢ଼ ବଡଇ ମୂରୁଖ ॥
ପ୍ରଭୁରେ ଅପରାଧୀ ହେଲି । ଏବେ ସାକ୍ଷାତେ ନାଶ ଗଲି ॥
ପ୍ରଭୁଙ୍କ ଦୟା ଏତେ ତୌତେ । ବୋଲି ମୁଁ ଜାଣିବି କେମନ୍ତେ ॥
ଏବେ ଜାଣିଲି ଭଗବାନ । ଭକତ ନୋହେ ଭିନ୍ନାଭିନ୍ନ ॥
ଭକତ ଅଭିମାନ ଯେତେ । ପ୍ରଭୁଙ୍କୁ ଲାଗଇ ସାକ୍ଷାତେ ॥
ମୁଁ ମୂଢ଼ ମନ୍ଦକୃତ୍ୟ କଲି । ଭକତେ ଅପରାଧୀ ହେଲି ॥
ତେଣିକି ଜ୍ୱଳନ୍ତା ହୁତାଶ । ଖାଇଲି କାଳକୂଟ ବିଷ ॥
କେମନ୍ତେ ହେବି ଏଥୁଁ ପାର । ହେ ବିପ୍ରବର ରକ୍ଷା କର ॥
ଏମନ୍ତ ବୋଲି ବିପ୍ରପାଦେ । ରାଜା ପଡଲେ ଅପ୍ରମାଦେ ॥
ତୋଳି ଧରିଲେ ବିପ୍ରବର । କଲ୍ୟାଣ କଲେ ଦଣ୍ଡଧର ॥
ତୁମ୍ଭର ନାହିଁ କିଛି ଦୋଷ । ସେ ହରି ମହିମା ବିଶେଷ ॥
ମୋ ଅପରାଧ କ୍ଷମାକରି । ଦୟା ଯେ କଲେ ଦାରୁହରି ॥
ଏମନ୍ତ ବୋଲି ଦୁହେଁ ଗଲେ । ପ୍ରଭୁଙ୍କ ପଛକୁ ଗୁହିଁଲେ ॥
ଦେଖିଲେ ମୁଣ୍ଡେ କେଶ ନାହିଁ । ନୃପତି ବୋଇଲେ ଗୋସାଇଁ ॥
ତୁମ୍ଭେ ଯେ ସବୁ କରିପାର । ଏଣୁ ବୋଲଉ ମହାମେରୁ ॥
ମହିମା ଦେବଙ୍କୁ ଦୁର୍ଲଭ । ମୁଁ କି ଜାଣିବି ତୁମ୍ଭ ଭାବ ॥
ଏବେ ଅପ୍ରାଧ ମୋର ଯେତେ । ପ୍ରଭୁ ନ ଧର କଦାଚିତେ ॥
ପର ଅପର ତୋର ନାହିଁ । ସକଳ ଜୀବର ଗୋସାଇଁ ॥



ବ୍ରହ୍ମର୍ଷିଙ୍କୁ ଯାହା ଦିଆଯାଉଛି ସେ ସବୁ ଖାଇ ଭସ୍ମ କରି ଦେଉଛନ୍ତି ।

ଏମନ୍ତ ବୋଲି ରାଜା ଧନ । ଅନେକ କଲ ଦାନ ପୁଣ୍ୟ ॥
ବିପ୍ରଙ୍କୁ କୋଟି ଧନ ଦେଇ । ପ୍ରଭୁଙ୍କ ମଣୋହ୍ମ କରାଇ ॥
ଆନନ୍ଦେ ଗଲେ ନୃପବର । ଶୁଣ ସୁମନ କଥା ସାର ॥
ଦେଖି ଏମନ୍ତ ଆଚମ୍ବିତ । ଲୋକେ ହୋଇଲେ ଅଲୋକିତ
ତଳିଛ ମହାପାତ୍ର ଭଲେ । ପ୍ରଭୁଙ୍କ ସେବାରେ ଲାଗିଲେ ॥
ସେ ହର ମହିମା ଏସନ । ଭକତଜନଙ୍କ ଜୀବନ ॥
ଭକତବନ୍ଧୁ ଆଦିମୂଳ । ଭକତ ପାଇବେ ହେଲେ ଭୋଳା ॥
ଅଶେଷ ପ୍ରାଣୀଙ୍କର ହିତେ । କହଇ ରାମଦାସ ଗୀତେ ॥
ଏ ମନ ଚୈତନ୍ୟ ସମ୍ବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥
ଯେ ଅବା ଶ୍ରଦ୍ଧାମନେ ଶୁଣେ । କି ଅବା ବଦନରେ ଗୁଣେ ॥
କାଟିଣ ଭବ ବନ୍ଧ ପାଶ । କାଳେ ଲଭିବ ସ୍ୱର୍ଗବାସ ॥
କହଇ ଲଛମନ ସୁତ । ହେ ପ୍ରଭୁ ନୀଳଗିରି ନାଥ ॥
ସେ ଦାରୁବ୍ରହ୍ମଙ୍କ ଚରଣେ ମେ ଚିତ୍ତ ରହୁ ଅନୁକ୍ଷଣେ ॥
ସୁଜନେ ଏହି ସବେ ରସ । ମୁଁ ତୁମ୍ଭ ଚରଣର ଦାସ ॥

ଇତି ଶ୍ରୀଦାର୍ଢ୍ୟଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ
ତଳିଛ ମହାପାତ୍ର ଦାର୍ଢ୍ୟଭାବ ବର୍ଣ୍ଣନେ ନାମ
ବିଂଶୋଽଧ୍ୟାୟଃ ।

---

## ଏକବିଂଶ ଅଧ୍ୟାୟ

ଅଙ୍କନା ଓ ମାଧନା ସମ୍ବାଦ

ଚୈତନ୍ୟ ଉବାଚ

କହେ ଚୈତନ୍ୟ ମହାଜ୍ଞାତା । ଦାର୍ଢ୍ୟଭକ୍ତିର ରସ କଥା
ଶୁଣ ସୁମନ ହେତୁ ଦେଇ । ମୁଁ ଯାହା କହୁଅଛି ବୁଝାଇ ॥
ଏ ବଡ଼ ଦୁର୍ଲଭ ଚରିତ । ଶୁଣିଲେ ହୋଇବ ପବିତ୍ର

କଳିଙ୍ଗ ବୋଲି ଏକ ଦେଶ । ସକଳ ଦେଶର ନରେଶ ॥
ନଦୀର ନାମ ଗୋଦାବରୀ । ସ୍ନାନ ମାତ୍ରକେ ପାପ ହରି ॥
ସେ ମହାପୁଣ୍ୟ ନଦୀଜଳେ । ଯୋଗେ ଅଯୋଗେଏକାବେଳେ
ସ୍ନାନ କରନ୍ତି ଯେଉଁ ନର । ବସନ୍ତି ଯାଇ ସ୍ୱର୍ଗପୁର ॥
ସେ ମହାପୁଣ୍ୟ ନଦୀତୀର । ସେ ରାଜମଣ୍ଡଳ ସହର ॥
ସେହି ନଗରେ ତାର ଘର । ବାଡବରେ ଅଛେ ଦ୍ୱିଜବର ॥
ଯୋଗେ ସେ ଜନ୍ମ ବିପ୍ର ସିନା । ନାମ ଯେ ଅଙ୍କନା ମାଧନା ॥
ସେ ବେନି ଭାଇ କଥା ଯେତେ । କହିବା ଶୁଣ ଏକଚିତ୍ତେ ॥
ସୁ...ରପଣେ ଜବା ମାର । ଭକତ ଦୟାହୃଦ ତାର ॥
ସହାନ୍ନ ପଣେ ବସୁ... । ପଣ୍ଡିତ ପଣେ ବୃହସ୍ପତି ॥
ଧୀରପଣରେ ମେରୁସମ । ବୀରପଣରେ ଦ୍ୱିତୀୟମ ॥
ବୁ...ରେ ଜବା ଗଣାଧିପ । ଦାତାପଣେକ ଶିବନୃପ ॥
କୁବେର ସମ ଧନବନ୍ତ । ସକଳ ଜୀବେ ଦୟା ଚିତ୍ତ ॥
ନ ଜାଣେ ପର ନାଶ କଥା । ନିତ୍ୟେ ଶୁଣଇ ବିଷ୍ଣୁ ଗାଥା ॥
ଧନ ସଞ୍ଚୟେ ନାହିଁ ମନ । ନିରତେ କରେ ଦାନ ପୁଣ୍ୟ ॥
ଶ୍ରୀ ପୁରୀ କାଞ୍ଚି କାଶୀ ଜିନ । ଅଯୋଧ୍ୟା ମଥୁରା ଏ ବେନି ॥
ବଦ୍ରି ଦ୍ୱାରକା ରାମେଶ୍ୱର । ଯେ ଭଦ୍ରନାଥ ପୁଣ୍ୟପୁର ॥
ଏ ଆଦି ପୁଣ୍ୟ ପୁର ଯେତେ । ଅଛି ସଂସାର ମଧ୍ୟଗତେ ॥
ବସାଇ ସଦାବର୍ତ୍ତମାନ । ଦେଇ ଯେ ଥାନ୍ତି ଅନ୍ନଦାନ ॥
ଯେତେକ ଧନ ତହିଁ ସରେ । ସେ ପୁରୁଥାଇ ନିରନ୍ତରେ ॥
ନିଜ ଦ୍ୱାରରେ ଦୁଃଖୀ ଜନ । କି ଅବା ଭିକ୍ଷୁକ ଦେଖିଣ ॥
ମନ ସନ୍ତୋଷେ ଧନ ଦେଇ । ବାକ୍ୟ କହଇ ଗୃହୁଁ ଆଇ ॥
ଯୋଗୀ ସନ୍ନ୍ୟାସୀ ବ୍ରହ୍ମଗୃହୀ । ସାଧୁ ବୈଷ୍ଣବ ଆଦିକରି ॥
ପ୍ରବେଶ ହେଲେ ତା ଭୁବନେ । ତାହାଙ୍କୁ ତୋଷେ ଅନ୍ନଦାନେ ॥
ବନ୍ଧୁ ସୋଦର ମିତ୍ରଜନ । ନିତ୍ୟ ଯେ କରନ୍ତି ଭୋଜନ ॥

ଏଥି ଉତ୍ତାରୁ ବେଳାବ୍ରାତ । କରନ୍ତି ଅଜନ୍ତ୍ର ସତ୍ୟବ୍ରତ ॥
ବ୍ରାହ୍ମଣ ଶତଅଷ୍ଟ ଜଣ । କରିଣ ଥାଆନ୍ତି ବରଣ ॥
ନିତ୍ୟେ ଏ ଭୋଜନର ବେଳେ । ବସନ୍ତି ଯାଇ ଏକମେଳେ ॥
ସଙ୍ଗତ ହୋଇଣ ବସନ୍ତି । ତେବେ ସେ ଭୋଜନ କରନ୍ତି ॥
ତନାଶ ପାଠିଏ ଦିନରେ । ଭୁଞ୍ଜନ୍ତି ଏହି ପରକାରେ ॥
ଗୋଟିଏ ବିପ୍ର ଊଣା ହେଲେ । ତାହା ଯେ ପୂରଣ ନୋହିଲେ ॥
ଭୁଞ୍ଜନ୍ତି ନାହିଁ ବେଳାଗଲେ । ରହନ୍ତି ଉପବାସୀ ହୋଇ ॥
ଏଥିଉତ୍ତାରୁ ଚତୁର୍ଦ୍ଦଶୀ । କିବା ଏକାନ୍ତି ପୂର୍ଣ୍ଣମାସୀ ॥
ଶୁଭ ନକ୍ଷତ୍ର ଆଦି ଯେତେ । ବୈଷ୍ଣବ ଲୋଡ଼ ଅପ୍ରମିତେ ॥
ଦିଅନ୍ତି ଅନ୍ନ ବସ୍ତ୍ରମାନ । ସନ୍ତୋଷେ କରାଇ ଭୋଜନ ॥
ଅନେକ ବିନୟେ କହନ୍ତି । କରିଣ ବିପ୍ର ପାଦେ ଭକ୍ତି ॥
ତାହା ଦେଖିଣ ବିପ୍ର ଯେତେ । ବୈଷ୍ଣବ ଆଦି ଅପ୍ରମିତେ ॥
ଅନେକ ପ୍ରଶଂସା କରନ୍ତି । ଯେ ଯାହା ପୁରେ ଚଳିଯାନ୍ତି ॥
ଏହି ପ୍ରକାରେ ବଞ୍ଚେ ଦିନ । ନ ଜାଣେ ଅନ୍ୟ କଥା ମାନ ॥
ଏମନ୍ତେ କେତେ ଦିନ ଅନ୍ତେ । ତା କୀର୍ତ୍ତି ପୂରିଲା ଜଗତେ ॥
ଗୃହ ଦିଗରେ ତାର ଯଶ । କ୍ରମଶଃ ହୋଇଲା ପ୍ରକାଶ ॥
ଲୋକେ ବୋଇଲେ ଧନ୍ୟ ଧନ୍ୟ । ଅର୍ଚ୍ଚନା ସାଧନା ଜୀବନ ॥
ତାଙ୍କ ସମାନେ ଦାନୀପଣେ । ନାହିଁ ନ ଥିବ ଏ ଭୁବନେ ॥
ଏମନ୍ତ ବୋଲିଣ ସମସ୍ତେ । ପ୍ରଶଂସା କରନ୍ତି ଜଗତେ ॥
ତାହା ଜାଣିଲେ ଦେବସ୍ୱାମୀ । ଯେ ପ୍ରଭୁ ସର୍ବ ଅନ୍ତର୍ଯାମୀ ॥
ବଡ଼ବାପାଇଁ ତାଙ୍କ ମନ । ବିଜୟ କଲେ ସେହି ସ୍ଥାନ ॥
ଛଦ୍ମ ଯେ କଲେ ନରହରି । ବ୍ରହ୍ମଚାରୀର ରୂପ ଧରି ॥
ବୃଦ୍ଧଶରୀର ରୂପ ବହି । ଗୃହନ୍ତି ଧୀର ଧୀର ହୋଇ ॥
ଶିରେ ଶୋଭିତ ପକ୍ୱକେଶ । ଶୁଭ୍ର ଗୃମର ପ୍ରାଚୁର୍ଯ୍ୟ ଦୃଶ୍ୟ ॥
ଅତି ପାତଳ ଓଷ୍ଠଦାନ୍ତ । ହୃଦପଦ୍ମରେ ଅଷ୍ଟ ପତ୍ର ॥

ଭାଲେ ତିଳକ ଶୋଭା ଦିଶି । ଅଳପ ମନ୍ଦେ ମନ୍ଦେ ହସି ॥
କର୍ଣ୍ଣେ କୁଣ୍ଡଳ ବିରାଜଇ । ତେଜେ ମାର୍ତ୍ତଣ୍ଡ ଗଞ୍ଜଇ ॥
ଯଜ୍ଞୋପବୀତ କନ୍ଧେ ଶୋହେ । ସ୍ୱରୂପେ ଜଗଜ୍ଜନ ମୋହେ ॥
ଡୋର କୌପୁନୀ କଟିମାଝେ । ପୃଷ୍ଠରେ ବ୍ୟାଘ୍ରଚର୍ମ ସାଜେ ॥
ତ୍ରିଦଣ୍ଡ କମଣ୍ଡଳୁ ପାଣି । ଏମନ୍ତ ବେଶେ ଚକ୍ରପାଣି ॥
ଅଙ୍କନା ମାଧନା ସଦନେ । ପ୍ରବେଶ ହେଲେ ଶ୍ରଦ୍ଧାମନେ ॥
ଦୈବଯୋଗେ ସେ ଦିନର । ଉତ୍ସବ ହୋଇଛି ତା ପୁର ॥
ବନ୍ଧୁ ସୋଦର ମିତ୍ରଜନେ । ଯେ ପରଗୃର ଲୋକମାନେ ॥
ଆସି ଅଛନ୍ତି ଅପ୍ରମିତେ । ଗଣନା ନୁହନ୍ତି ତା କେତେ ॥
ସକଳ ଜନମାନେ ଆସି । ଧର୍ମଶାଳାରେ ଛନ୍ତି ବସି ॥
ତହିଁ ମଧ୍ୟରେ ବେନିଭ୍ରାତ । ଧରିଣ ଜଳପାତ୍ର ହସ୍ତ ॥
ଯେତେକ ବିପ୍ର ଆସୁଥାନ୍ତି । ସବୁରି ପାଦ ଧୋଇ ଦ୍ୟନ୍ତି ॥
ପାଣିରେ ପାଣି ଅବଶେଷ । ଧରି କରନ୍ତି କିଛି ଗ୍ରାସ ॥
ବିପ୍ରେ ଆସନ ଦେଇ ପୂଜି । କହନ୍ତି ସୁମଧୁର ବାଣୀ ॥
ଏମନ୍ତ ବେଳେ ଦ୍ୱିବ୍ରାହ୍ମୀ । ମିଳିଲେ ସ୍ନେହସ୍ଥାନେ ଯାଇ ॥
ସଭାଜନଙ୍କୁ ଚାହିଁକରି । ଧୀରେ ପୁଚ୍ଛନ୍ତି ବ୍ରହ୍ମଚାରୀ ॥
ଅଙ୍କନା ମାଧନା ଏ ଦୁଇ । ଭାଇ ଅଛନ୍ତି କେଉଁଠାଇ ॥
ଶୁଣି ସମସ୍ତ ଲୋକେ ଭଲେ । ତାହାଙ୍କୁ ଦେଖାଇଣ ଦେଲେ ॥
ଦେଖି ଦୁହିଙ୍କି ବ୍ରହ୍ମଚାରୀ । ଅନେକ ଆଶୀର୍ବାଦ କରି ॥
ବୋଲନ୍ତି ଧନ୍ୟରେ ତୁମ୍ଭର । ଅଟନ୍ତି ଜନନୀ ପିଅର ॥
ଧନ୍ୟ ହୋ ତୁମ୍ଭେ ବେନିଭାଇ । ସଂସାରେ ଅଛ ଜାତ ହୋଇ ॥
ହୋଇଲ ଅପାତ୍ର ଅପାର । ଜଗତେ କୀର୍ତ୍ତି ତୁମ୍ଭର ॥
ଏମନ୍ତ ବୋଲିଣ ପ୍ରଶଂସି । ଶୁଣିଣ ବେନିଭାଇ ହସି ॥
ସେ ବ୍ରହ୍ମଚାରୀ ପାଦ ଧୋଇ । ଉଦକ ପାଇ ବେନିଭାଇ ॥
ତ୍ୱରିତେ ବସାଇ ଆସନେ । ପୁଚ୍ଛନ୍ତି କୋମଳ ବଚନେ ॥

ହେ ବ୍ରହ୍ମଗୃହୀ କହ ସତ୍ୟ । କପାଁ ମୋ ପୁରେ ଉପଗତ ॥
ସ୍ୱରୂପ କହ ହେ ବଚନ । ଶୁଣି ସନ୍ତୋଷ ହେଉ ମନ ॥
ତା ଶୁଣି ପ୍ରଭୁ ବ୍ରହ୍ମବାଶି । ତାଙ୍କ ମୁଖକୁ ଗୃହୀ ହସି ॥
ଆମ୍ଭେ ତ ଆଜନ୍ମ ସନ୍ନ୍ୟାସୀ । ନିତ୍ୟେ ହେ ଅନ୍ତୁ ପରବାସୀ ॥
ନିଶ୍ଚଳ ନୋହୁ କେଉଁଠାରେ । ନିରତେ ଭ୍ରମୁ ଏ ସଂସାରେ ॥
ଯେ ଗତାଗତ ପଥ ମୋର । ମୋତେ ତ ନୁହଇ ଗୋଚର ॥
କେବଳ ଅଛଇ କଥାଏ । ଭକତ ଦେଖୁଁ ଯେଉଁଠାଏ ॥
ନିର୍ଲୋଭ ସତ୍ୟବାଦୀ ଜନ । ଅକ୍ରୋଧୀ ମଧୁର ବଚନ ॥
ନିର୍ଭୟ ଶୋକ ମୋହ ନାହିଁ । ବିଷ୍ଣୁ ଭକତ ଦେଖୁଁ ଯହିଁ ॥
ଦୟାଳୁ ପରଲୋକପ୍ରିୟ । ସତ୍ୟ ଧାର୍ମିକ ସର୍ବସହ ॥
ନାମ ଭଜନ ଯେହୁ କରେ । ସେବଇ ଗୁରୁ ବିପ୍ରଠାରେ ॥
ସକଳ ମିଥ୍ୟା ବୋଲି ଜାଣେ । ସେବଇ ସାଧୁଙ୍କ ଚରଣେ ॥
ପର ଆପଣା ଏକ ମଣି । ସଂସାର ବିଷ୍ଣୁମାୟା ଜାଣି ॥
ଏମନ୍ତ ଲୋକ ଦେଖୁଁ ଯହିଁ । ଭୋଜନ କରୁ ଆମ୍ଭେ ତହିଁ ॥
ନ ପୁଚ୍ଛୁଁ ଜାତି ଗୋତ୍ର ତାର । ହେଉ ଆକୁଳ ଅବେଭାର ॥
ତା ହାତେ ଭୁଞ୍ଜିବା ପ୍ରମାଣ । ସେ ମୋର ବନ୍ଧୁ ବୋଲି ଜାଣ ॥
ନ ଦେଲେ ମାଗିଣ ଭୁଞ୍ଜଇ । ତହିଁ ମୋ ଅଭାବ ନ ଥାଇ ॥
ଏହା ନ ଦେଖୁଁ ଯାହା ଘରେ । ସେଯେତେଦ୍ରବ୍ୟଦେଲେମୋତେରେ
ତହିଁ ନ କରେ ମୁଁ ଭୋଜନ । ସେ ମୋତେ କୋଟିଏଯୋଜନ
ଏବେ ହୋ କହୁଅଛୁଁ ତୋତେ । ତୁ ଏବେ ଶୁଣ ଶୁଦ୍ଧଚିତ୍ତେ ॥
ଆମ୍ଭେ ଯେ ଥିଲୁ ନୀଳଗିରି । ଦେଖି ଅଇଲୁଁ ତୁମ୍ଭ ପୁରୀ ॥
ଅଇଲୁ ତୋର ଗ୍ରାମବାଟେ । ତୋ କୀର୍ତ୍ତି ଶୁଣି କର୍ଣ୍ଣପୁଟେ ॥
ଏଥିକୁ ଅଇଲୁ ଯେ ଥରେ । ତୁମ୍ଭ ଦୁହିଙ୍କି ଦେଖିବାରେ ॥
ଏବେ ହୋ ଯାଉଅଛୁଁ ଆମ୍ଭେ । ଏହି ଭାବରେ ଥାଅ ତୁମ୍ଭେ ॥
ଏମନ୍ତ ବାକ୍ୟ ଦୁହେଁ ଶୁଣି । କପାଳେ ନିବେଶିଲେ ପାଣି ॥

ବୋଇଲେ ଶୁଣ ହେ ଗୋସାଇଁ । ଆଜକ ମାନ ଏଥେ ରହ ॥
ଆମ୍ଭର ହେଉଅଛି ଉତ୍ସବ । ଭୋଜନ କରି ତୁମ୍ଭେ ଯିବ ॥
ଏତେ ସୁକୃତ ଅଛି ହୋଇ । ନାନାଦି ସନ୍ୟାସ ଗୋସାଇଁ ॥
ତା ଶୁଣି ବ୍ରହ୍ମଗୃହୀ କହି । ଶୁଣ ହେ ତୁମ୍ଭେ ଦୁଇଭାଇ ॥
ମୁଁ ଏଥେଁ ରହିଲେ ଅବଶ୍ୟ । ଦେଇ ନ ପାରୁ ମୋତେ ଗ୍ରାସ ॥
ଦାଇବେ ଦେଖୁ ଅବା ଯେବେ । ଅନେକ ଲୋକେ ଭୋକେ ଯିବେ ॥
ଶୁଣି ବୋଇଲେ ସତେ ହେଉ । ଆମ୍ଭେ ପଛକେ ଭୋକେ ଯାଉ ॥
ତୁମ୍ଭେ ଭୋଜନ ଆଗେ କର । ଦେଖିବା ତୁମ୍ଭ ଭୁଞ୍ଜିବାର ॥
ସେ ବେନି ଭାଇ ନାନାମତେ । ପଣ୍ଡ ସନ୍ୟାସ ପାଦଗତେ ॥
ରହିଲେ ଅତ ବଳ କରି । ନିମନ୍ତ୍ର କରି ବ୍ରହ୍ମଗୃହୀ ॥
ଏଥିଉତ୍ତାରୁ ବେନିଭାଇ । ରନ୍ଧନ କରାଇଲେ ଯାଇ ॥
କ୍ଷୀର ଖେଚୁଡ଼ି ଶାଳି ଅନ୍ନ । ନାନାଦି ପ୍ରକାରେ ବ୍ୟଞ୍ଜନ ॥
ଅନେକ ବର୍ଣ୍ଣେ ପିଠାମାନ । ଘୃତରେ କଲେକ ରନ୍ଧନ ॥
ଦଧି ଯେ ଅନେକ ପ୍ରକାର । ଘୃତ ନବାତ ଦୁଧସର ॥
ପଇଡ଼ ପାଣି ସରପଣା । ସ୍ୱାଦୁରେ ଏକୁ ଏକ ଜଣା ॥
ଷଡ଼ରସରେ ଦ୍ରବ୍ୟ ଯେତେ । ରନ୍ଧନ କଲେ ବିଧିମତେ ॥
ଅନେକ ଜଣ ବ୍ରାହ୍ମଣିଆ । ରନ୍ଧନ କଲେ ଅଗ୍ନିଶିଆ ॥
ବେଳ ପ୍ରହରେ ଅଛି ହୋଇ । ସମସ୍ତ ନିର୍ଭା କରି ଥୋଇ ॥
ଦଶସହସ୍ର ମନୁଷ୍ୟଙ୍କୁ । ଭୋଜନ ଅଣ୍ଟିବ ସବୁଙ୍କୁ ॥
ଏତେ ଯେ ଦ୍ରବ୍ୟ ନିର୍ମାକରି । ଡାକ ଆଣିଲେ ବ୍ରହ୍ମଗୃହୀ ॥
ଅନ୍ୟନ୍ତ ବିସ୍ତାର ମନ୍ଦିର । ଯେସନେ ଚନ୍ଦ୍ରଶାଳ ପୁର ॥
ଠାଇଁ ବସାଇ ଦିବ୍ୟାସନେ । କହନ୍ତି ବିନୟ ବଚନେ ॥
ଅନେକ ଲୋକେ ହସ୍ତ ବେଢ଼ି । ସେ ବେନିଭାଇ କରଯୋଡ଼ି ॥
ବୋଲନ୍ତି ଶୁଣ ହେ ଅତଥ । କର ଭୋଜନ ବିଧିମତ ॥
ତୁମ୍ଭ ବଚନ ଯେବେ ଶୁଣି । ମୁଖରେ ପରଶିବୁଁ ଆଣି ॥

କହ ହେ ବିଳମ୍ବ ନ କର । ପୁଣ ବୋଲନ୍ତି ବ୍ରହ୍ମଗୃହୀ
ଶୁଣ ହେ ଦାତା ବେନିଭ୍ରାତେ । ସ୍ୱରୂପ କହୁଅଛୁଁ ତୋତେ
ମୋତେ ଯେ ଅନ୍ନ ଯାଚ ଦିଅ । ପଛେ ନିସତ ଅବା ନୁହ
ଅତିଥି ଭୁଞ୍ଜାଇ ବସାଇ । ଅଧା କର ଯେ ନ ଉଠଇ
ଏଥକୁ ବିଗୁରିଣ କହ । ଦେବା ବୋଇଲେ ଆଣି ଦିଅ ।
ନୋହିଲେ ଚଳଉଛି ଯାଉଛୁ । ଏଥେ ଶୋଚନା ନାହିଁ କିଛି ।
ସମସ୍ତ ଲୋକେ ତାହା ଶୁଣି । ମନୁଷ୍ୟ ପ୍ରାପ୍ତ ତାଙ୍କୁ ମଣି ।
ବୋଇଲେ ଭୁଞ୍ଜ ହେ ଅତିଥି । କପାଇଁ ହୋଇବୁ ନିସତ ।।
ଯେତେ ପାରିଲେ ଭୁଞ୍ଜ କିନା । ବଳିଲେ ଆମ୍ଭେ ଭୁଞ୍ଜୁ ସିନା ।
ତା ଶୁଣି ବୋଇଲେ ସନ୍ନ୍ୟାସ । ଯେବା ରନ୍ଧନ୍ତି ଭୋଜନଆସ ।।
ରଖିଣ ମୋହର ଅଗ୍ରତେ । ପକାଅ ପନି ଗୋଟି କେତେ ।।
ସକଳ ଦ୍ରବ୍ୟ ତହିଁ ଭରି । ଗୋପାଳ ମୁଦ୍ରା ବେଗେ କରି ।
ନୃସିଂହଦେବ ଚାନ୍ଦ ଚତ୍ରେ । ବଢ଼ାଇ ଦେଉଥାଅ ମୋତେ ।।
ଯହୁଁ ଶୁଣିଲେ ଏ ବଚନ । ଆନନ୍ଦ ସମସ୍ତଙ୍କ ମନ ।।
ସେ ବେନି ଭ୍ରାତ ଚଳିଗଲେ । ଯେବା ରନ୍ଧନ କରିଥିଲେ ।
ତହୁଁ ଅନେକ ଦ୍ରବ୍ୟ ଧରି । ବୁହାଇ ବୋଝ ଭାର କରି ।
ଅତିଥି ସମ୍ମୁଖରେ ଥୋଇଲେ । ଅନେକ ପନି ପକାଇଲେ ।
ସକଳ ଦ୍ରବ୍ୟ ତହିଁ ଭରି । ଅନ୍ନ ବ୍ୟଞ୍ଜନ ଆଦି କରି ।।
ନାନାଦି ପିଠାମାନ ଯେତେ । ଯେ କ୍ଷୀରି ଖେଚଡ଼ି ସହିତେ ।।
ସକଳ ସାମଗ୍ରୀ ପରଷି । ଅନେକ ଲୋକ ବେଢ଼ି ବସି ।
ଭୁଞ୍ଜେ ନୃସିଂହ ନାମ ଧରି । ବଳିଲେ ମୁଦ୍ରା ମୁଦ୍ରା କରି ।
ତାହା ଦେଖିଣ ସେ ସନ୍ନ୍ୟାସୀ । ସନ୍ତୋଷେ ପୁଣ୍ୟାସନେ ବସି ।।
ନୃସିଂହ ନାମ ଗୋଟି ଧରି । ବସିଲେ ଉର୍ଦ୍ଧ୍ୱ ମୁଖ କରି ।
ଶ୍ରୀକରେ ମୁଦ୍ରାମାନ ଧରି । ମୁଖ ବିସ୍ତାରି ଦନ୍ତ ଭରି ।।
ମୁଦ୍ରାକୁ ମୁଦ୍ରା ଧରି କରେ । ଡିଆଇଁ ଦିଅନ୍ତି ତୁଣ୍ଡରେ ।।

ଏତେକ ସମ୍ଭାଷଣ ଥିଲେ । ଦଣ୍ଡକ ମାନେ ଭୁଞ୍ଜି ଦେଲେ ॥
ବୋଇଲେ ଆଜ ଘେନ ଆସ । କ୍ଷଣେହେଁ ନ କର ଅଳସ ॥
ଶି ଅନେକ ଲୋକ ଯାଇ । ଆଣନ୍ତି ବୋଷଘରୁ ବହି ॥
ହରେ ଦିଅନ୍ତି କୁଢ଼ାଇ । ମୂଦା ବଳନ୍ତି ଲୋକେ ଯାଇ ॥
ସେ ମାତ୍ସ୍ୟାଦି ସବୁ ଧରି । ମୁଖରେ ଦେଉଥାନ୍ତି ଭରି ॥
ଯେସନେ ଗୋବର୍ଦ୍ଧନ ଗିରି । ପୂଜାରେ ଭୁଞ୍ଜିଲେ ଶ୍ରୀହରି ॥
ଅନଳେ ଘୃତ ଯେତେ ପଶି । ସେ ଯେସନେ ହୋଏ ଭସ୍ମରାଶି ॥
ଅଶେଷ ନଦୀଜଳମାନ । ଯେସନେ ସାଗରେ ହୋଏ ଲୀନ ॥
ସେହି ପ୍ରକାରେ ବ୍ରହ୍ମରୂପୀ । ଦିଅନ୍ତି ବଶ୍ୱଗର୍ଭେ ଭରି ॥
ବୋଲନ୍ତି ଘେନଆସ ଆଜ । ଦେବା କଥାରେ ହେଲା ନୋହୁ ॥
କ୍ଷୁଧାରେ ଜଳୁଛି ଉଦର । ବହୁତ ଲୋକେ ମୁଦାକର ॥
ତାହା ଶୁଣିଣ ବେନିଭାଇ । ଅନେକ ଡଗର ପେଷାଇ ॥
ରାନ୍ଧିବା ଲୋକେ ରାନ୍ଧୁଛନ୍ତି । ବହିବା ଲୋକେ ବହୁଛନ୍ତି ॥
କୁଢ଼ାନ୍ତି ଏକଠାବେ ନେଇ । ସହସ୍ର ଲୋକେ ବସିଥାଇ ॥
ଦିଅନ୍ତି ମୁଖେ ମୁଦା ବଳି । ବସି ଭୁଞ୍ଜନ୍ତି ମହାବଳୀ ॥
ଏମନ୍ତେ ଦଣ୍ଡଘଡ଼ିଯାଏ । ସବୁ ଭୁଞ୍ଜିଲେ ଦେବରାୟେ ॥
ଯେତେ ପଦାର୍ଥ ଥିଲେ ଭରି । ସବୁ ଭୁଞ୍ଜିଲେ ବେଗକରି ॥
ଦଶସହସ୍ର ଲୋକ ଗ୍ରାସ । ସବୁ ସାରିଲେ ସେ ସନ୍ନ୍ୟାସ ॥
ବୋଇଲେ ଆଜ ଆଣ କନା । ଆଣ ହୋ ଅଙ୍କନା ମାଧନା ॥
ତାହା ଶୁଣିଣ ବେନିଭାଇ । ସନ୍ନ୍ୟାସ ପଦତଳେ ଶୋଇ ॥
ବୋଇଲେ ଦଣ୍ଡେ ମଠ ହେଉ । ରନ୍ଧନ ହେଉଅଛି ଆଉ ॥
ମୋ ଘରେ କେତେକ ମାତର । ତୁମ୍ଭଙ୍କୁ ଦେବାକୁ ଆହାର ॥
ମତ୍ତଗର୍ବରେ ଦେବ ବୋଲି । ଏବେ ମୁଁ ଅପରାଧ କଲି ॥
ଏଥର ଦୋଷ କ୍ଷମାକର । ଦଣ୍ଡକେ ବସ ବ୍ରହ୍ମରୂପୀ ॥
ଆଉ ଯା ଦେଇଛନ୍ତି ହରି । ତୁମ୍ଭରେ ଦେବ ଆଣିକରି ॥

ପୂରୁ ନ ପୂରୁ ତୋ ଉଦର । ମୋର ଅପ୍ରାଧ କ୍ଷମା କର ॥
ଏମନ୍ତ ବାକ୍ୟ ତାର ଶୁଣି । ହସି ବୋଲନ୍ତି ଚକ୍ରପାଣି ॥
ଏବେ ମୁଁ ହୋଇଲି ସନ୍ତୋଷ । ଦିଅ ତୁ ବିପ୍ରଜନେ ଗ୍ରାସ ॥
ଏମନ୍ତ ବୋଲି ଉଠଗଲେ ସେ ବେନି ଭ୍ରାତ ଗୋଡ଼ାଇଲେ
ଅନେକ ବିପ୍ର ତାଙ୍କ ପାଖେ । ଗୋଡ଼ାଇ ଅଛନ୍ତି ପ୍ରତ୍ୟକ୍ଷେ ॥
ଅଦ୍ଭୁତେ କାହୁଁ ଏ ଅଇଲେ । ଅଶ୍ରୁତ ଅଗୋଚର କଲେ ॥
ଏମନ୍ତ ବୋଲି ଯେତ୍ଥାମତେ । ଗୋଡ଼ାଇ ଅଛନ୍ତି ସମସ୍ତେ ॥
ପ୍ରବେଶ ଗୋଦାବରୀ ଜଳେ । ପ୍ରଭୁ ପଶିଲେ ଯାଇ ଜଳେ ॥
ଉଚ୍ଛିଷ୍ଟ ମୁଖ ଜଳେ ଧୋଇ । ଜଳ ପିଇଲେ ମୁଖ ଦେଇ ॥
ଅନେକ ଶୁଖିଗଲା ବାରି । ଘୂର୍ଣ୍ଣିଣ ଗଲା ଗୋଦାବରୀ ॥
ତାହା ଦେଖିଣ ବେନିଭାଇ । ରହିଲେ ସ୍ତମ୍ଭୀଭୂତ ହୋଇ ॥
ବଦନୁ ନ ସ୍ଫୁରେ ବଚନ । ଦେଖି ବୋଇଲେ ଭଗବାନ ॥
ତୁମ୍ଭେ ରେ ଯାଅ ବେନି ଭାଇ । ଆମ୍ଭ ବଚନ ଶିରେ ଦେଇ ॥
ଆମ୍ଭ ଅଳପ ଦାନେ ପୁଣ । ଲଭିବ ପରମ କାରଣ ॥
ଏ ପିଣ୍ଡ ଗୁଢ଼ ବେନି ଭାଇ । ବସିବ ସ୍ୱର୍ଗ ଲୋକେ ଯାଇ ॥
ଏଥେ ସଂଶୟ ନାହିଁ କିଛି । ଆଜ ମୁଁ ଅନ୍ତର ହେଉଛି ॥
ମୁହିଁଟି ପ୍ରଭୁ ନାରାୟଣ । ଦେଖ ମୋ ଶଙ୍ଖ ଚକ୍ର ଚିହ୍ନ ॥
ଏମନ୍ତ ବୋଲି ବ୍ରହ୍ମବଣି । ଅନ୍ତର ହେଲେ ଜଳେ ପଶି ॥
ଶ୍ରୀଭୁଜ ଦୁଇ ତୋଳି ଦେଲେ । ଯେ ଶଙ୍ଖ ଚକ୍ର ଦେଖାଇଲେ ॥
ତାହା ଦେଖିଲେ ବେନିଭାଇ । ଆନ କାହାକୁ ଦୃଶ୍ୟ ନୋହି ॥
ସେ ବେନି ଭାଇଙ୍କର ଭାବ । ଶତେ ଜନମେ କେ ପାଇବ ॥
ସଙ୍ଗତେ ଯେନ ବିପ୍ର ଯେତେ । ଲେଉଟି ଗଲେ ସେ ସମସ୍ତେ ॥
[illegible]ରେ ହୋଇଲେ ପ୍ରବେଶ । ସଭୁଙ୍କୁ ଦେଲେ ଅନ୍ନ ଗ୍ରାସ ॥
ଅନେକ ଧନ ବସ୍ତ୍ର ଦେଲେ । ମେଲାଣି କଲେ ତାଙ୍କୁ ଭଲେ ॥
ଆନନ୍ଦେ ଶୁଣ ହେ ସୁମନ । ପ୍ରଭୁଙ୍କ ମହିମା ଏସନ ॥୨୦୩॥

ଏ କଳିଯୁଗ ଭକ୍ତଙ୍କର । ମହିମା ଅପାରୁ ଅପାର ॥
ସାଧୁଜନଙ୍କୁ ଦୃଶ୍ୟ ହୋଇ । ମୂର୍ଖ ଜନଙ୍କୁ ପ୍ରତେ ନାହିଁ ॥
ଏ ମନ ଚୈତନ୍ୟ ସମ୍ବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥
କହଇ ବିପ୍ର ରାମଦାସ । ସେ ନାରାୟଣ ପାଦେ ଆଶ ॥
ସୁଜନେ ଏହି ରସେ ରସ । ମୋହର ନ ଦେଖିବ ଦୋଷ ॥

ଇତି ଶ୍ରୀଦାର୍ଢ୍ୟଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ
ଅଙ୍କନା ମାଧନା ଅନ୍ନଦାନ କଥା ବର୍ଣ୍ଣନେ
ନାମ ଏକବିଂଶୋଽଧ୍ୟାୟଃ ।

---

## ଦ୍ୱାବିଂଶ ଅଧ୍ୟାୟ
### କୀର୍ତ୍ତିଚନ୍ଦ୍ର ସମ୍ବାଦ
### ଚୈତନ୍ୟ ଉବାଚ

ଏଥିଉତ୍ତାରୁ ଶୁଣ ମନ । କହିବା ଅପୂର୍ବ ବିଧାନ
ଏ କଳିଯୁଗର ଚରିତ । ଶ୍ରବଣେ ହୋଇବ ମୁକତ
ଯେ ଜମ୍ବୁଦ୍ୱୀପ ମହାଦେଶେ । ପୁଣ୍ୟସଳିଳା ଗଙ୍ଗା ପାଶେ
ରାଜ୍ୟ ପଞ୍ଚାଶ ଯୋଜନରେ । ସେ ରାଜ୍ୟେ ରାଜପଣ କରେ
ନାମ ତାହାର କୀର୍ତ୍ତିଚନ୍ଦ୍ର । ଶ୍ରୀକୃଷ୍ଣ ଭକତ ନରେନ୍ଦ୍ର
ଅତି ନିର୍ମଳ ତାର ମତି । ଅଚଳାଚଳ ତା ସମ୍ପତ୍ତି
ପ୍ରଜାଙ୍କୁ କରି ପୁତ୍ର ପ୍ରାୟେ । ସେ ରାଜା ପ୍ରତିପାଳି ଥାଏ
ତାହାର ଭାର୍ଯ୍ୟା ତ୍ରିପୁରସତୀ । ଅତି ସୁନ୍ଦରୀ ମହାସତୀ
ପଦ୍ମିନୀ ନାମ ତା ବିହିତ । ସ୍ୱାମୀର ଆଜ୍ଞା ଅଲଙ୍ଘିତ
ନିରତେ ପତି ସେବା କରେ । ରାଜାହିଁ ଅତି ସ୍ନେହ କରେ
ଏମନ୍ତେ ରାଜା ରାଣୀ ଥାନ୍ତି । ଶ୍ରୀକୃଷ୍ଣ ପାଦେ ଦେଇ ମତି
ନିରତେ କୃଷ୍ଣ ଚିନ୍ତା ହୃଦେ । ସେବା କରନ୍ତି ଅପ୍ରମାଦେ

**କୀର୍ତ୍ତିଚନ୍ଦ୍ର** ପୃଷ୍ଠା ୧୨୪ ୧୨



କୀର୍ତ୍ତିଚନ୍ଦ୍ର ରାଜା ରାଣୀଙ୍କ ସଙ୍ଗେ ସନ୍ନ୍ୟାସୀର ଭେଟ କରାଉଛନ୍ତି ।

ଜୀବହତ୍ୟାକୁ ମହାଭୟ । ଦୁଃଖୀ ଜନଙ୍କ ସେ ସଦୟ ॥
ନରତେ ପରନିନ୍ଦା କଥା । ଖର ନ ଶୁଣଇ ସର୍ବଥା ॥
ରାଜ୍ୟେ ତା କୀରତ ଅପାର । ଜଳ ଦେଉଳ ସେ ସ୍ଥାବର ॥
ପାଞ୍ଚ କୋଶରେ ସଦାବର୍ତ୍ତ । ରଖାଇ ଅଛୁ ଅପ୍ରମିତ ॥
ରାଜ୍ୟେ ଘୋଷଣା ଦେଇ ତାର । କହୁ ଯେ ଥାଇ ନିରନ୍ତର ॥
ଯେବଣ ଗ୍ରାମରେ ଅତିଥ । ଆସି ହୋଇବେ ଉପଗତ ॥
ତାହାଙ୍କୁ ଚରଣ କରିବ । ମନ ସନ୍ତୋଷେ ଅନ୍ନଦେବ ॥
ଯେତେ ପଦାର୍ଥ ବ୍ୟୟ ହେବ । ଲେଖି ମୋ ଭଣ୍ଡାରରୁ ନେବ ॥
ମୋ ରାଜ୍ୟେ ଯେଉଁ ଗ୍ରାମଦେଶ । ଅତିଥି ଗଲେ ଉପବାସ ॥
ତାଙ୍କ ସକଳ ଧନ ହରି । ରାଜ୍ୟରୁ ଦେବ ଦୂରକରି ॥
ଏମନ୍ତ ବୋଲଣ ଟମକ । ବଜାଉଥାନ୍ତି ରାଜ୍ୟଯାକ ॥
ସେ ରାଜ୍ୟ ପରଜାଙ୍କୁ ରାଇ । ତିଆରୁ ଥାଇ ନୃପସାଇଁ ॥
ସାଧୁଙ୍କ ପାଦେ ସେବା କର । ଶ୍ରୀହରି ଭଜ ନିରନ୍ତର ॥
ବିପ୍ର ବୈଷ୍ଣବେ କର ପ୍ରୀତି । ଦୃଢ଼ ଭକତି କର ନିତି ॥
ଏମନ୍ତ ବୋଲଣ ତିଆରି । ସେ ପ୍ରଜା ନଗ୍ର ଦଣ୍ଡଧାରୀ ॥
ପୁର ତା କରିଛି ବିଚିତ୍ର । ସବୁହିଁ ରାଧାକୃଷ୍ଣ ଚିତ୍ର ॥
ଯେଣେ ଚାହିଁଲେ ସେହିରୂପ । ଦର୍ଶନ କରୁଥାନ୍ତି ନୃପ ॥
ଦ୍ୱାରେ ତା ଧର୍ମଧ୍ୱଜା ପୋତି । ନେତ ଚଉଳ ବାନ୍ଧିଛନ୍ତି ॥
ଅନେକ ଧର୍ମଶାଳାମାନ । ତୋଳାଇ ଅଛନ୍ତି ରାଜନ ॥
ତାହାଙ୍କ ମୁଖୁଁ ନାମ ଶୁଣି । ଅତି ଆନନ୍ଦ ନୃପମଣି ॥
ଅନେକ ଧନ ବସ୍ତ୍ର ରାଏ । ପ୍ରଜାମାନଙ୍କୁ ଦେଉଥାଏ ॥
ପାଟଣା ଯାକ ପ୍ରତିଦ୍ୱାରେ । ତୁଳସୀ ଆରୋପଣ କରେ ॥
ଠାବ ଠାବକେ ସଂକୀର୍ତ୍ତନ । କରାଇ ଶ୍ରୀହରି ଭଜନ ॥
ଅନେକ ଶୁଆ ଶାରୀ ବଣି । ପୋଷି ଅଛନ୍ତି ଗୃହେ ଆଣି ॥
ଶ୍ରୀରାଧା କୃଷ୍ଣ ଗୁଣ କୀର୍ତ୍ତି । ସେ ରାଜା ଶୁଣୁଥାଇ ନିତି ॥

ଧର୍ମ ହିଁ ଅଟେ ତାର ମୂଳ । ସତ୍ୟ ବଚନ ନିରାଧାର ॥
ଗ୍ରାମ ବାହାରେ ଦୂତ ପେଷି । ଅତିଥି ବରି ଘେନିଆସି ॥
ଇଚ୍ଛା ଭୋଜନ ଦେଉଥାନ୍ତି । ସେବା ଯତ୍ନରେ କରେ ମତ ॥
ଦରିଦ୍ର ଦେଖି ନ ସହଇ । ଯେ ଯାହା ମାଗିଲେ ଦିଅଇ ॥
ଏମନ୍ତେ କେତେ ଦିନ ଗଲା । ତା ଯଶ ଜଗତେ ପୂରିଲା ॥
ତାହା ଜାଣିଲେ ଦୟାନିଧି । ବଢ଼ିବା ପାଇଁ ରାଜା ବୁଦ୍ଧି ॥
ସେ ଅନ୍ତର୍ଯ୍ୟାମୀ ବ୍ରହ୍ମରାଶି । ସକଳ ଘଟେ ଛନ୍ତି ବସି ॥
ତାହାଙ୍କୁ କିସ ଅଗୋଚର । ନାହିଁ ନିକଟ ତାଙ୍କୁ ଦୂର ॥
ମାୟାରେ ହୋଇଣ ତପସ୍ୱୀ । ମିଳିଲେ ରାଜା ପାଶେ ଆସି ॥
ଅଖଣ୍ଡ ନଖ କାଢ଼ି କେଶ । କି ବ୍ରହ୍ମବେତାଳ ସଦୃଶ ॥
ତୁଳସୀମାଳା ଶୋଭେ ଗଳେ । କର୍ଣ୍ଣେ କୁଣ୍ଡଳ ବେନି ଲୁଳେ ॥
ଜଟାମୁକୁଟ ମାଳ ଶୋଭା । ଭକ୍ତଜନଙ୍କ ମନଲୋଭା ॥
ଡୋର କୌପୁନି କଟିମାଝେ । ସର୍ବାଙ୍ଗେ ବିଭୂତିବିରାଜେ ॥
ଯଜ୍ଞୋପବୀତ କନ୍ଧେ ଶୋହେ । ରୂପେ କି ଜଗଜ୍ଜନ ମୋହେ ॥
ଏମନ୍ତ ବେଶେ ଚକ୍ରପାଣି । ନୃପତି ଆଗେ ବେଦ ଭଣି ॥
କହି ଅନେକ କୃଷ୍ଣରସ । ରାଜାର ମନ କଲା ତୋଷ ॥
ତାହାଙ୍କୁ ଦେଖି ମହାରାଜା । କଲା ଆନନ୍ଦେ ପାଦପୂଜା ॥
ବେଗେ ଚରଣ ଦୁଇ ଧୋଇ । ଚରଣାମୃତ ଆପେ ଖାଇ ॥
ଧୀରେ କହନ୍ତି ଦଣ୍ଡଧର । ଆଜ ପବିତ୍ର ମୋର ପୁର ॥
ତୁମ୍ଭର ପାଦରଜ ପଡ଼ି । ଅଶେଷ ପାପ ଗଲା ଛାଡ଼ି ॥
ହେ ସ୍ୱାମି କିପାଇଁ ଆଗତ । ମିଥ୍ୟା ନ କର କହ ସତ ॥
ତା ଶୁଣି ପ୍ରଭୁ ଚକ୍ରପାଣି । ବୋଇଲେ ଶୁଣ ନୃପମଣି ॥
ଆମ୍ଭେ ଯେ ଆଜନ୍ମ ସନ୍ନ୍ୟାସୀ । ବନରେ ତପ କରୁଁ ବସି ॥
ବନରେ ଫଳ ମୂଳ ଖାଇ । ଦିନ ବଞ୍ଚିଲୁ ଦୁଃଖ ସହି ॥
ଯାହା ବିଚାରୁଥିଲୁଁ ମନେ । ପୂର୍ଣ୍ଣ ହୋଇଲା ଏତେ ଦିନେ ॥

ତେଣୁଟି ବନରୁ ବାହାର । ତୋ କୀର୍ତ୍ତି ଶୁଣି ଦଣ୍ଡଧାରୀ ॥
ତହୁଁ ତୋ କାରଣ ଶୁଣିଲୁଁ । ତେଣୁ ତୋ ଗ୍ରାମକୁ ଅଇଲୁଁ ॥
କନ୍ଥୁଣ୍ଡି ମାଗିବାର ପାଇଁ । ଦେବୁ କି ନାହିଁ ନୃପସାଇଁ ॥
ତା ଶୁଣି ବୋଲନ୍ତି ରାଜନ । ଯା ଇଚ୍ଛା ମାଗ ତୋ ବହନ ॥
ଯାହା ମାଗିବ ତାହା ଦେବ । ନ ଦେଲେ ଅପରାଧୀ ହେବ ॥
ଗଜ ତୁରଙ୍ଗ ଭୂମିଦାନ । ଧନ କାଞ୍ଚନ ବସ୍ତ୍ରମାନ ॥
ସ୍ୱରାଜ ପଦହିଁ ସହିତେ । ମାଗ ହେ ଯାହା ତୁମ୍ଭ ଚିତ୍ତେ ॥
ଶୁଣି ବୋଇଲେ ବ୍ରହ୍ମଋଷି । ଏକାନ୍ତେ ଶୁଣ ଦଣ୍ଡଧାରୀ ॥
ଅନେକ ଦିନୁ ତପଋଷି । ଥିଲୁ ଯେ କାମ ପରିହରି ॥
ଏବେ ସେ କାମ ଦେବ ମୋତେ । ପୀଡ଼ା ଯେ ଦେଲା ନାନାମତେ ॥
ତାହା ମୁଁ ସହି ନ ପାରିଲି । ନରରେ କାମ ଇଚ୍ଛାକଲି ॥
ତେଣୁ ଅଇଲି ତୋର ପାଶେ । କେବଳ ଏହି ପ୍ରତିଆଶେ ॥
ଶୁଣିଲି ତୋର ପ୍ରିୟବତୀ । ସ୍ୱାମୀ ଭକତା ମହାସତୀ ॥
ତାହାକୁ ଆଣି ମୋତେ ଦେବୁ । ରାଜନ ସୁଖେ ରାଜ୍ୟ କରିବୁ ॥
ଏତେକ ମାତ୍ର ମୋର ବାଞ୍ଛା । ଦିଅ ନ ଦିଅ ତୋର ଇଚ୍ଛା ॥
ଶୁଣି ନୃପତି ଅତି ତୋଷ । ବୋଇଲେ ଏହି ଗ୍ରାର କସ ॥
ପ୍ରାଣ ମାଗିଲେ ଦେଇପାରେ । ସଂଶୟ ନାହିଁଟି ଏଥିରେ ॥
ଏମନ୍ତ ବୋଲି ସେ ରାଜନ । ଆଣିଲେ ଉତ୍ତମ ଭୋଜନ ॥
ଭୁଞ୍ଜିଣ ସନ୍ତୋଷ ତପସ୍ୱୀ । ଏମନ୍ତ ରାଜ ହେଲା ଆସି ॥
ସେ ମହାରାଜା ଚଳିଗଲେ । ପତ୍ନୀର ପାଶରେ ମିଳିଲେ ॥
ଅନେକ କହିଲେ ତଥାରେ । ବୋଇଲେ ଶୁଣ ପ୍ରାଣେଶ୍ୱରୀ ॥
ଏକଇ ତପସ୍ୱୀଏ ଆସି । ବଚନେ ମୋର ମନ ତୋଷି ॥
ହସଇ ବ୍ରହ୍ମବେତ୍ତା ପ୍ରାୟେ । ସେ ମୋତେ ମାଗିଲେ କଥାଏ ॥
ତା ଶୁଣି ଦେବା ସତ୍ୟ କଲି । ମାଗ ହୋ ବୋଲି ମୁଁ ବୋଇଲି ॥
ସେ ଯେ ମାଗିଲେ ମୋତେ ଯାହା । ଶୁଣ କହିବ ତୋତେ ତାହା ॥

ତୋହର ସଙ୍ଗେ ପ୍ରୀତିଭାବ । ଆଜକ ସନ୍ନ୍ୟାସୀ କରିବ ॥
ସତ୍ୟ ମୁଁ କହୁଛି ଯୁକତେ । ଅବଶ୍ୟ ଦେବ ତାକୁ ତୋତେ ॥
ଏଥକୁ କହ କ ଉତ୍ତର । ତା ଶୁଣି ବୋଇଲା ସୁନ୍ଦରୀ ।୯୦
ଯେଉଁ ଧନରୁ ପିତା ମୋତେ । ସମର୍ପି ଦେଲେ ତୁମ୍ଭ ହସ୍ତେ ॥
ସେଧନୁ ହୋଇଛି ତୁମ୍ଭର । ତୁ ନାଥ ଯାହା ଇଚ୍ଛା କର ॥
ଏଥକୁ ଯେ ତୋହର କଥା । ତହିଁରେ ନାହିଁ ମୋ ଅନ୍ୟଥା ॥
ରାଣୀବଦନୁ ଏହା ଶୁଣି । ଅତି ଆନନ୍ଦ ନୃପମଣି ॥
ବୋଇଲେ ଶୁଣରେ ସୁନ୍ଦରୀ । ମୋଠାରୁ ଶତେଗୁଣ କରି ॥
ସେବା କରିବୁ ତାଙ୍କ ପାଦେ । କପଟ ନ ରଖି ତୋ ହୃଦେ ॥
ଏମନ୍ତ କହି ସେ ରାଜନ । ସନ୍ନ୍ୟାସୀ ନିକଟେ ଗମନ ॥
ସନ୍ନ୍ୟାସୀ ଘେନିଣ ସଙ୍ଗରେ । ପ୍ରବେଶ ହେଲେ ନିଜପୁରେ ॥
ରାଣୀ ସଙ୍ଗତେ କଲେ ଭେଟ । ନିବନ୍ଧେ କିଳିଲେ କବାଟ ॥
ଅନେକ ଦାସୀ ପରିବାରୀ । ଯୋଗାଇ ଦେଲେ ଦଣ୍ଡଧାରୀ ॥
ଅନ୍ତର ହୋଇଣ ରହିଲେ । ତପୀ ରହିଲେ ରାଣୀ ଭୁଲେ ॥
ସେ ମହାସତୀ ବେଗେ ଉଠି । ସନ୍ନ୍ୟାସୀ ପାଦତଳେ ଲୋଟି ॥
ଉଠିଣ ହୋଇଲେ ବିନମ୍ରୀ । ଆସନେ ବସାଇଲେ ନେଇ ॥
ହେ ପ୍ରଭୁ ଶରଣ ତୁମ୍ଭର । ପବସ ହେଲା ମୋର ପୁର ॥
ଏମନ୍ତ ବୋଲନ୍ତେ ସେ ରାଣୀ । ଉତ୍ତର କଲେ ଚକ୍ରପାଣି ॥
ଧନ୍ୟ ଏ ଦୁହିଙ୍କର ଭାବ । ସଂସାର ମଧ୍ୟରେ ଦୁର୍ଲ୍ଲଭ ॥
ଯେତେକ ଛନ୍ଦ ମୁହିଁ କଲି । କେବେହେଁ ଯଶ ନ ପାଇଲି ॥
ଏବେ ମୁଁ ଏମନ୍ତ କରିବି । ଏ ରାଣୀ ଜୀବନ ହରିବି ॥
ତାହା ଜାଣିଲେ ଦଣ୍ଡଧାରୀ । ଧର୍ମକୁ ଅବା ନିନ୍ଦା କରି ॥
ଦେଖଇ କନା ରାଜା ଭାବ । ଏମନ୍ତ ବୋଲି ପଦ୍ମନାଭ ॥
ରାଣୀଙ୍କ ନିଦ୍ରାଗତେ ମୋହି । ସକଳ ଅଲଙ୍କାର ଫେଇ ॥
ଆଜ୍ଞା ଯେ ଦେଲେ ମହାବାହୁ । ଏ ନାରୀ ପ୍ରାଣ ହରିଥାଉ ॥

ଏମନ୍ତ ବୋଲି ଭଗବାନ । ତତକ୍ଷଣେ ହେଲେ ଅନ୍ତର୍ଦ୍ଧାନ ॥
ଏମନ୍ତେ ରଜନୀ ପାହିଲା । ବେଲ ପ୍ରହରେ ଆସି ହେଲା ॥
ତା ଦେଖି ଦାସୀ ପରସ୍ପରେ । ବେଗେଣ ଗଲେ ଅନ୍ତଃପୁରେ ॥
ଦେଖିଲେ କବାଟ ଫିଟିଛି । ରାଣୀ ପଲଙ୍କେ ଶୋଇଅଛି ॥
ପାରୁଣେ ମିଳିଲେକ ଯାଇ । ଦେଖିଲେ ପିଣ୍ଡେ ପ୍ରାଣ ନାହିଁ ॥
ତପସ୍ୱୀ ଯାଇଛନ୍ତି ଗୁଡ଼ି । ତାହା ଦେଖିଣ ଡକା ପାଡ଼ି ॥
କହିଲେ ନୃପତିଙ୍କ ଯାଇଁ । ସମ୍ବାଦ ସରିଲା ଗୋସାଇଁ ॥
ତପସ୍ୱୀ ରାଣୀକି ମାଇଲା । ସକଳ ଅଳଙ୍କାର ନେଲା ॥
କେବଣ ବାଟେ ପଳାଇଲା । ଦେଖ ଯା ପନ୍ଥୀ ଚୋର ମଲା ॥
ତାହା ଶୁଣିଣ ନୃପମଣି । ବୋଇଲେ ଶୁଣ ରେ ତରୁଣି ॥
ରାଣୀ ଅପ୍ରାଧ କରି ମଲା । କହ ସନ୍ନ୍ୟାସୀ କେଣେ ଗଲା ॥
ଏମନ୍ତ ବୋଲି ନରନାଥ । ପେଷାଇ ଶୀଘ୍ରବେଗେ ଦୂତ ॥
ବୋଇଲେ ଶୀଘ୍ର ଘେନିଆସ । ଦେଖିଲେ ସେ ମହାସନ୍ନ୍ୟାସ ॥
ଯେବେ ମୁଁ ଦେଖିବି ନୟନେ । ତେବେଟି ରହିବି ଜୀବନେ ॥
ନୋହିଲେ ମରିବି ଅବଶ୍ୟ । ଜୀବନେ ନାହିଁ ମୋର ଆଶ ॥
ତା ଶୁଣି ଚଳିଗଲେ ଦୂତେ । ତପୀ ଖୋଜନ୍ତି ଯେଣାମତେ ॥
ସେ ଅନ୍ତର୍ଯାମୀ ଭଗବାନ । ଜାଣିଲେ ନୃପତିର ମନ ॥
ଅଛନ୍ତି ପଥେ ଛନ୍ତି ବସି । ଦୂତେ ଭେଟିଲେ ତାଙ୍କୁ ଆସି ॥
ଅନେକ ବିନୟେ କହିଲେ । ସଙ୍ଗତେ ଘେନି ଚଳିଗଲେ ॥
ରାଜା ଛାମୁରେ କଲେ ନେଇ । ଦେଖି ଉଠିଲେ ନୃପସାଇଁ ॥
ସେ ମହାତପୀ ପାଦତଳେ । ନୃପତି ପୁଣ ପୁଣ ଲୁଚେ ॥
ଉଠି କପାଳେ ଦେଇ ପାଣି । କହିଲା ମଧୁରସ ବାଣୀ ॥
ହେ ମହାଯୋଗୀ ଯୋଗେଶ୍ୱର । ଅପ୍ରାଧ କଲା ସ୍ତ୍ରୀ ମୋର ॥
ତହିଁକି ଦୁଃଖ ଘେନି ହୃଦେ । ମୋତେ ତ ନ କହିଲ ପଦେ ॥
ତା ଶୁଣି ବୋଇଲେ ସନ୍ନ୍ୟାସ । ଶୁଣ ନୃପତି ହୋଇ ତୋଷ ॥

ଏ.ଆମ୍ଭ ପୂର୍ବର ସ୍ୱଭାବ । କେ ତାହା ଅନ୍ୟଥା କରିବ ॥
ଯେ ଆମ୍ଭପାଦେ ସେବାକରେ । ଅତ୍ୟନ୍ତ ହରଷ ମନରେ ॥
ତାହାକୁ ଦେଉ ଆମ୍ଭେ ଦୁଃଖ । ସେ ଯେବେ ହୋଇବ ବିମୁଖ ॥
ତାହାକୁ ଛାଡ଼ି ଆମ୍ଭେ ଯାଉଁ । ଲୋଡ଼ିଲେ ନ ପାଏ ସେ ଆଉ ॥
ଯେ ଦୁଃଖ ସୁଖ ଚାଇ ହୃଦେ । ସେବୁ ଯେ ଥାଇ ଆମ୍ଭ ପାଦେ ॥
ତାହାକୁ ଛାଡ଼ି ତ ନ ପାରୁ । ସେ କାହିଁ ଯିବ ମୋ ଆଗରୁ ॥
ସେ ମୋତେ ଛାଡ଼ିବ ବୋଇଲେ । ତାକୁ ମୁଁ ନ ଛାଡ଼ଇ ଭଲେ ॥
ସେ ମୋତେ ଛାଡ଼ିଲେ ଅବଶ୍ୟ । ମୁଁ ଯେ ନ ଛାଡ଼େ ତାର ପାଶ ॥
ଯେତେତେହେଁ ଦୂରେ ଥିଲେ ରହି । ଚିନ୍ତିଲେ ପାରୁଶେ ମିଳଇ ॥
ଏ ମୋର ଜନ୍ମର ପ୍ରକୃତି । ଯାହା ଲେଖିଛି ପ୍ରଜାପତି ॥
କେ ତାହା କରିବଟି ଆନ । ଏ କଥା ବୁଝ ହେ ରାଜନ ॥
ଏବେ ଅଇଲୁ ତୋ ଗ୍ରାମର । ତୁ ରାଜା ଯାହା କଲେ କର ॥
ତାହା ଶୁଣିଣ ମହାରାଜା । ତପୀ ଚରଣେ କଲା ପୂଜା ॥
ସଙ୍ଗତେ ଘେନ ବେଗେ ଚଳି । ପତ୍ନୀ ପାରୁଶେ ଯାଇ ମିଳି ॥
କନକଝଙ୍ଗା ନୀର ଭରି । ବେଗେ ଆସିଣ ଦଣ୍ଡଧାରୀ ॥
ତପୀର ପାଦପଦ୍ମ ଧୋଇ । ରାଣୀବଦନେ ଦେଲା ନେଇ ॥
ବୋଇଲା ଶୁଣରେ ଯୁବତୀ । କରୁଣା କଲେ ବ୍ରହ୍ମପତି ॥
ସାଧୁଙ୍କ ପାଦରଜ ଲାଗି । ତୁ ଯେ ହୋଇଲୁ ମୋକ୍ଷଭାଗୀ ॥
ଅଶେଷ ଜନ୍ମର କଳୁଷ । ଆଜୁଁ ହୋଇଲା ତୋର ନାଶ ॥
ସେ ସାଧୁ ପାଦରଜ ବାରି । ପିଇ ମସ୍ତକେ କଲୁ ଧରି ॥
ଏପରି ଲେଖିଅଛି ଧର୍ମ । କେବଳ ଗଙ୍ଗାସ୍ନାନ ସମ ॥
ଏ କଥା ସତ୍ୟ ଅଟେ ଯେବେ । ପ୍ରାଣ ତୁ ପାଇ ଉଠ ତେବେ ॥
ରାଜା ବଦନୁ ଏହା ଶୁଣି । ତକ୍ଷଣେ ପ୍ରାଣ ପାଇ ରାଣୀ ॥
ନଦୁଁ ଉଠିଲା ପ୍ରାପ୍ତ ହୋଇ । ବସିଲା ରାଜା ମୁଖ ଚାହିଁ ॥
ତାହା ଦେଖିଣ ସେ ରାଜନ । ଅନେକ ଆଣି ଦେଲା ଧନ ॥

ତପୀ ଚରଣ ତଳେ ଥୋଇ । ବୋଇଲା ନଅ ହେ ଗୋସାଇଁ ॥
ସେ ଅଳଙ୍କାର ସ୍ୱର କେତେ । କେତେ ଧନକୁ ହେବ ତୋତେ
ଏ ସବୁ ଧନ ଦେନଯାଅ । ମୋଠାରେ ଦୟା କରିଥାଅ ॥
ଶୁଣି ବୋଇଲେ ଭଗବାନ । ଧନ୍ୟ ହେ ରାଜା ତୋ ଜୀବନ ॥
ଧନ୍ୟ ଅଟଇ ତୋର ରାଣୀ । ସ୍ତ୍ରିରାଙ୍କ ମଧ୍ୟେ ତାକୁ ଗଣି ॥
ସଂସାରେ ଯାହା କଲୁ ତୁମ୍ଭେ । ଆନ କେ କରି ପାରଇ ॥
ଏବେ କଲ୍ୟାଣ ହୋଇଥାଉ । ସକଳ କର୍ମେଂ ଯଶ ହେଉ ॥
ଜୀଅନ୍ତେ ସୁଖେ ଧନ ନଅ । ମଲେ ବୈକୁଣ୍ଠ ଗତି ପାଅ ॥
ଏଥେ ସଂଶୟ କରୁ ନାହିଁ । ଏବେ ହୋ ଯାଉଅଛୁ ମୁହିଁ ॥
ଆମ୍ଭେଟି କମଳାବିଳାସ । ଦେଖ ଆମ୍ଭର ନିଜ ବେଶ ॥
ଏମନ୍ତ ବୋଲି ଦେବରାଜ । ଦେଖାଇ ଶଙ୍ଖ ଚକ୍ର ଭୁଜ ॥
ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ । ଗଗନେ ବିଜୁଳି ଯେସନ ॥
ସେ ରାଜା ରାଣୀ ତାହା ଦେଖି । ସୁଫଳ କଲେ ଚର୍ମ ଆଖି ॥
ଅନେକ କଲେ ଦାନପୁଣ୍ୟ । ଆନନ୍ଦେ ବଞ୍ଚାଇଲେ ଧନ ॥
କାଳେ ବୈକୁଣ୍ଠ ପରାପତ । ଶୁଣ ହେ ମନ ନୃପନାଥ ॥
ହରିଭକତ ଜନଙ୍କର । ମହିମା ଅପାରୁଁ ଅପାର ॥
ଆବର ଶ୍ରୀହରି ମହିମା । ଜାଣି ନ ପାରେ ବେଦବ୍ରହ୍ମା ॥
ମୋର ଶକତି ଅବା କେତେ । କହିବ ତୋହର ଅଗ୍ରତେ ॥
ଏ ଦାର୍ଢ୍ୟଭକ୍ତି ରସାମୃତ । କେବର୍ଣ୍ଣ ଶ୍ରବଣେ ପବିତ୍ର ॥
କହଇ ରାମଦାସ ଗୀତେ । ଅଶେଷ ପ୍ରାଣୀଙ୍କର ହିତେ ॥
ଶୁଣିଣ କ୍ଷମାକର ଦୋଷ । ମୁଁ ତୁମ୍ଭ ଦାସଙ୍କର ଦାସ ॥
ବୁଡ଼ି ମରୁଛି ଭବଜଳେ । ଉଦ୍ଧରି ଥୁଅ ନେଇ କୂଳେ ॥

ଇତି ଶ୍ରୀ ଦାର୍ଢ୍ୟଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ କୀର୍ତ୍ତିଚନ୍ଦ୍ର ରାଜା ରାଣୀ ସନ୍ନ୍ୟାସୀ ସେବା କଥନେ ନାମ ଦ୍ୱାବିଂଶୋଽଧ୍ୟାୟଃ ।

# ତ୍ରୟୋବିଂଶ ଅଧ୍ୟାୟ

## ଗଣପତି ଭଞ୍ଜ ସମ୍ବାଦ

### ଚୈତନ୍ୟ ଉବାଚ

ଚୈତନ୍ୟରାଜା ଶ୍ରଦ୍ଧାଭାବେ । କହଇ ମନରାଜା ଆଗେ ॥
ହେ ରାଜା ସାବଧାନେ ଶୁଣ । ଏ ଦାର୍ଢ୍ୟଭକ୍ତିର ଲକ୍ଷଣ ॥
କେବଳ ସୁଧାସମ ବାଣୀ । ପବିତ୍ର ହେବୁ ଯାହା ଶୁଣି ॥
ଉତ୍କଳ ଖଣ୍ଡ କଥାରସ । କର୍ଣ୍ଣାଟ ନାମେ ଏକ ଦେଶ ॥
ଦଇବେ ନିଯୋଜନା କରି । ଗ୍ରାମ ନାମ ଯେ କାଣିଆରି ॥
ସେ ଗ୍ରାମେ ଅଟେ ତାର ଘର । ଜାତିରେ ଅଟେ ଦ୍ୱିଜବର ॥
ନାମ ତା ଗଣପତି ଭଞ୍ଜ । ଭକତଗଣେ ସେ ଗରିଷ୍ଠ ॥
ନିର୍ଲୋଭ ନିର୍ମୋହ କୃପାଳୁ । ନିରତେ ପରମ ଦୟାଳୁ ॥
ସକଳ ଶାସ୍ତ୍ର ଅଛି ପଢ଼ି । ବିଷୟାରସ ଦୂରେ ଏଡ଼ି ॥
ଇନ୍ଦ୍ରିୟଗଣଙ୍କୁ କରି ହତ । ମନକୁ କରିଣ ଆୟତ ॥
କେବଳ ବିଷ୍ଣୁ ପଦେ ଭକ୍ତି । ବିନା ନ ଜାଣେ ଅନ୍ୟଗତି ॥
ଏମନ୍ତେ ତାର ମନ ଜାଣେ । ଅନ୍ୟ ଦେବଙ୍କୁ ସେ ନ ଗଣେ ॥
କେବଳ ଜଗନ୍ନାଥ ବ୍ରହ୍ମ । ସଂସାରେ ଶୁଭାଶୁଭ କର୍ମ ॥
ସୁର ଅସୁର ଦିଗପାଳ । କରି ସମାଧି ଆଖଣ୍ଡଳ ॥
ମେରୁ ବସୁଧା ପାରାବାର । ସ୍ଥାବର ଆଦି ଚରାଚର ॥
ସବୁ କରନ୍ତି ଆତଯାତ । କେବଳ ଦେବ ଜଗନ୍ନାଥ ॥
ତାହାଙ୍କ ପାଦେ ଆଶ୍ରେ କରି । ପ୍ରାଣୀ ସଂସାରୁ ଯାନ୍ତି ତରି ॥
ସେ ପରଂବ୍ରହ୍ମ କୃପା ବିନେ । ଜୀବ ଉଦ୍ଧାର ନାହିଁ ଅନ୍ୟେ ॥
ଏମନ୍ତ ଭାବ ସେ ମନରେ । ବୁଲୁଣ ଥାଇ ନିରନ୍ତରେ ॥
କାଳେ ଦେଖିବ ବ୍ରହ୍ମ ମୂର୍ତ୍ତି । ସ୍ଥୂଳ ସ୍ୱରୂପେ ଥିବେ ରହି ॥
ଦର୍ଶନେ ମୁକତି ଲଭିବ । ଯାତନା ପଥେ ନ ଦେଖିବ ॥



ଜଗନ୍ନାଥ ଗଜାନନ ରୂପରେ ଗଣପତଙ୍କୁ ଦେଖା ଦେଉଛନ୍ତି ।

ଏମନ୍ତ ବିଚାରଣ ମନେ । ଶାସ୍ତ୍ର ଖୋଜଇ ପ୍ରତିଦିନେ ॥
କେତେଦିନେ ଦିନର ଅନ୍ତରେ । ଖୋଜିଲେ ବ୍ରହ୍ମ ପୁରାଣରେ ॥
ସ୍ଥୂଳସ୍ୱରୂପ ଗୋଟି ଧରି । ବ୍ରହ୍ମ ଅଛନ୍ତି ନୀଳଗିରି ॥
ତାଙ୍କୁ ଦେଖନ୍ତି ଯେଉଁମାନେ । ମୁକତି ହୁଅନ୍ତି ଦର୍ଶନେ ॥
ନ ଗମେ ଯମ ଦରଶନ । ସକଳ ଶାସ୍ତ୍ରେ ଏ ପ୍ରମାଣ ॥
ଏମନ୍ତ ପୁରାଣରେ ଶୁଣି । ବ୍ରାହ୍ମଣ ହୃଦପଦ୍ମେ ଗୁଣି ॥
ବୋଇଲା ଧିକ ଏ ସଂସାର । ଧିକ ଏ ମାୟାଜାଲ ମୋର ॥
ଧିକ ମୋ ଦାରା ସୁତ ଧନ । ଧିକ ଅଟଇ ଏ ଜୀବନ ॥
ଏ ମର୍ତ୍ତ୍ୟପୁରେ ଦେହଧରି । ବ୍ରହ୍ମ ଅଛନ୍ତି ନୀଳଗିରି ॥
ଆଜର ଯାଏ ମୁଁ ନ ଜାଣେ । ଭ୍ରମୁ ଅଛଇ ଅକାରଣେ ॥
ଯାହାଙ୍କୁ ନୟନେ ଦେଖିଲେ । ଜୀବ ନିସ୍ତାର ହୋଏ ଭଲେ ॥
ଯେ ଗତାଗତ ପଥ ଜାଣି । ରହେ ବ୍ରହ୍ମର ଦେହେ ମଣି ॥
ସେ ବ୍ରହ୍ମ ଛାଡ଼ି ମୂଢ଼ ପଣେ । ଏଥି ଥିବି କି କାରଣେ ॥
ଦାରା ତନୟ ଧନ ଯେତେ । କେ ଯିବ ମୋହର ସଙ୍ଗତେ ॥
ଦେହେ ସମର୍ଥ ଥିବା ଯାଏ । ସଭିଏଁ ବନ୍ଧା ହୋଇଥାଏ ॥
ବୟସ ହେବ ଯେବେ ଶେଷ । ଦାରା ପୁତ୍ରଙ୍କୁ ହେବ ବିଷ ॥
ଆଉ କେ ଅଟଇ କାହାର । ଦେହ ତ ନୋହେ ଆପଣାର ॥
ଏତେ ବିଚାରି ତାର ଚିତ୍ତେ । ବୋଲଇ ଯିବି ମୁଁ ତ୍ୱରିତେ ॥
ସେ ବ୍ରହ୍ମ ଦର୍ଶନ କରିବି । ହେଲେ ମୁଁ ମୁକତି ଲଭିବି ॥
ଏ କଥା ଅଟଇ ମୋ ମୂଳ । ବୋଲଣ କଲା ଅନୁକୂଳ ॥
ହୋଇଣ ପରମ ସନ୍ତୋଷ । ଛାଡ଼ି ସଂସାର ଦେହ ଆଶ ॥
ସେ ବ୍ରହ୍ମପୁରଣ ଧଇଲା । ବ୍ରହ୍ମ ସୁମରି ବାହାରିଲା ॥
କେତେଦିନେ ମାସ କେତେଦିନ । ପଥରେ କଲାକ ଗମନ ॥
ଭିକ୍ଷା ମାଗିଣ ସେ ଜୀଅଇ । ନ ମିଳେ ଉପବାସେ ଥାଇ ॥
କୋମଳ ପତ୍ର ଫଳମୂଳ । ନଦୀ ପୋଖରୀ କୂପଜଳ ॥

ପାନ କରିଣ ଚଳିଯାଏ । ମନରେ ଚିନ୍ତା ଯେ ନ ଥାଏ ॥
ବ୍ରହ୍ମରେ ଲାଗିଅଛି ଲୟ । ଯେଣୁ ତା କିଛି ନାହିଁ ଭୟ ॥
ଏମନ୍ତେ କେତେଦିନ ପରେ । ପ୍ରବେଶ ଅଠର ନଳାରେ ॥
ଯହିଁ ପ୍ରବେଶ ହେଲେ ପ୍ରାଣୀ । ଯମଦଣ୍ଡକୁ ଯାନ୍ତି ଜିଣି ॥
ସେ ଦିବ୍ୟ ସ୍ଥାନଟିଗୋଟି ଦେଖି । ନିର୍ମଳ କଲା ଚର୍ମ ଆକ୍ଷି ॥
ବସିଲା ନିର୍ମଳ ଆସନେ । ବ୍ରହ୍ମକୁ ଚିନ୍ତା କରି ମନେ ॥
ଏଥିଉତ୍ତାରୁ କଥା ଶୁଣ । ପ୍ରଭୁଙ୍କ ଦର୍ଶନ ସାରଣ ॥
କ୍ଷେତ୍ରୁ ଆସନ୍ତି ଜଣ କେତେ । ଅଭଡ଼ାମାନ ଧରି ହସ୍ତେ ॥
ଗୀତ ଗାଇଣ ରଙ୍ଗେ ହସି । ମିଳିଲେ ବିପ୍ର ପାଶେ ଆସି ॥
ଦେଖିଣ ତାହାଙ୍କର ହୃଷ୍ଟ । ପୁଚ୍ଛଇ ଗଣପତି ଭଟ୍ଟ ॥
ଶୁଣ ପଥୁକ ଜନମାନେ । ଏଡ଼େ ଆନନ୍ଦ କିମ୍ପା ମନେ ॥
କେଉଁଠାରୁ ଆସୁଅଛ । କହ କି ଲାଭ ପାଇଅଛ ॥
ସଂଶୟ ନ କରିଣ ମନେ । କହସି ସ୍ୱରୂପ ବଚନେ ॥
ଶୁଣି ପଥୁକ ଜନ କହି । ଶୁଣ ହେ ବିପ୍ରବର ତୁହି ॥
ଆମ୍ଭେ ଯେ ଶ୍ରୀନୀଳକନ୍ଦରେ । ଯାଇଣ ଥିଲୁ ଦର୍ଶନରେ ॥
ତହିଁ ରହିଣ ପାଞ୍ଚଦିନ । ବ୍ରହ୍ମକୁ କରିଣ ଦର୍ଶନ ॥
ମେଲାଣି ହୋଇ ଯେଝାମତେ । ଚେଣ୍ଟି ଆସୁଁ ଶ୍ରଦ୍ଧାଚିତ୍ତେ ॥
ଦେଖ ଏ ପରମ ଦୁର୍ଲ୍ଲଭ । ଏଥିଉତ୍ତାରୁ କିସ ଲାଭ ॥
ତା ଶୁଣି ବିପ୍ର ଆଚମ୍ବିତେ । ଦଣ୍ଡକେ ରହି ସ୍ତମ୍ଭୀଭୂତେ ॥
ପୁଚ୍ଛଇ ପୁଣ ପୁଣ ତାଙ୍କୁ । ଦେଖିଛ ଠିକ ହେ ବ୍ରହ୍ମକୁ ॥
ହୋଇ ବୋଲିଣ ଗଲେ ଚଳି । ବସିଣ ବିପ୍ର ତହିଁ ଭାଳି ॥
ବ୍ରହ୍ମ ଥିବାର ଏଥେ ମିଛ । ଦେଖି ତ ନାହାନ୍ତି ପ୍ରତ୍ୟକ୍ଷ ॥
ଯାହାର ଦର୍ଶନେ ମୁକତି । ଏ କିମ୍ପା ଲେଉଟି ଆସନ୍ତି ॥
ବ୍ରହ୍ମଦର୍ଶନରେ ନ ମିଶିଲେ । କେମନ୍ତେ ଲେଉଟି ଆସିଲେ ॥
ଏମନ୍ତ ବିଚାରିଣ ମନେ । ଲୋକେ ଆସନ୍ତି ହୋଇଛନ୍ତି ॥

ନରକେ ଯିବା ଆସିବାର । ଦଣ୍ଡେ ନ ଦେଖି ଅବସର ॥
ପୁଛିଲେ ସେହୁ କଥା କହ । ପୁଣି ସଂଶୟ ମନେ ପାଇ ॥
ପୁରାଣ ଫିଟାଇ ତକ୍ଷଣେ । ଲେଉଟି ପଢ଼ିଲେ ଆପଣେ ॥
ବ୍ରହ୍ମ ଅଛନ୍ତି ନୀଳଗିରି । ପଢ଼ଇ ପୁଣ ପୁଣ କରି ॥
ବିପ୍ରର କଲ୍ଲ ତା ହୃଦର । କି ବୁଦ୍ଧି କରିବ ଏଥର ॥
ଏହୁ ପୁରାଣେ ଲେଖିଛନ୍ତି । ଲୋକେ ତ ଏମନ୍ତ ବୋଲନ୍ତି ॥
ଏତ ସାକ୍ଷାତ କଥାଗୋଟି । ଏକେ ପୁରାଣ ପଥସୃଷ୍ଟି ॥
ଏଥକୁ କି ବୁଦ୍ଧି କରିବ । କେଣିକି ଯାଇ ନ ପାରିବ ॥
ଖାଇବ କାଳକୂଟ ବିଷ । ଲାଗିବ ଆତ୍ମହତ୍ୟା ଦୋଷ ॥
ଏମନ୍ତ ବିପ୍ରରୁ ତା ମନ । ଜାଣିଲେ ପ୍ରଭୁ ଭଗବାନ ॥
ସେ ସର୍ବ ଅନ୍ତର୍ଯାମୀ ହରି । ସକଳ ଘଟେ ଛନ୍ତି ପୂରି ॥
ଭକତ ମନ ଯାର ଘର । ତାହାକୁ କିସ ଅଗୋଚର ॥
ତକ୍ଷଣେ ଭକ୍ତ ମନ ଜାଣି । ବିଜୟ କଲେ ଚକ୍ରପାଣି ॥
ବିପ୍ରସ୍ୱରୂପ ଗୋଟି ହୋଇ । ମିଳିଲେ ବିପ୍ର ପାଶେ ଯାଇ ॥
ଭୃତ୍ୟ ସେ ବସିଅଛି ଦୁଃଖେ । ପ୍ରଭୁ ମିଳିଲେ ତାର ପାଖେ ॥
ପୁଛନ୍ତି ବିପ୍ର ମୁଖ ଚାହିଁ । ହରଷେ ବ୍ରହ୍ମାଣ୍ଡ ଗୋସାଇଁ ॥
କାହୁଁ ଅଇଲ ବିପ୍ରବର । କପାଁ ବସିଛ ଏ ଠାବର ॥
କହ କେଣିକି ଏବେ ଯିବ । କପାଇଁ ମନେ ଦୁଃଖ ଭାବ ॥
ସଂଶୟ ନ ଥୋଇ ତୋ ଚିତ୍ତେ । ହେ ବିପ୍ର କହ କଥା ମୋତେ ॥
ପ୍ରଭୁ ଶ୍ରୀମୁଖୁଁ ଏହା ଶୁଣି । ସେ ଗଣପତି ଭଞ୍ଜ ଭଣି ॥
ହେ ବିପ୍ର ପଚାରିଲ ଯେବେ । ଶୁଣ କହିବା ଯଥାଭାବେ ॥
ଆମ୍ଭେ ସେ ବ୍ରହ୍ମ ପୁରାଣରେ । ଶୁଣିଲୁ ଏମନ୍ତ ପ୍ରକାରେ ॥
ବ୍ରହ୍ମ ବିଜୟ ନୀଳଗିରି । ଦର୍ଶନମାତ୍ରେ ଦୁଃଖ ହରି ॥
ଏ କଥା ଜାଣି ମୋର ମନେ । ଅଇଲି ବ୍ରହ୍ମ ଦରଶନେ ॥
ଏବେ ଶୁଣିଲି ବ୍ରହ୍ମ ନାହିଁ । ତେଣୁ ମୁଁ ଅଛି ଏଥେ ରହି ॥

ତା ଶୁଣି ପ୍ରଭୁ ଗ୍ରବଗ୍ରାହୀ । କହନ୍ତ ଭକ୍ତ ମୁଖ ଗ୍ରହିଁ ॥
ବ୍ରହ୍ମ ନାହାନ୍ତ ବୋଲ ଏଥେ । ତା ତୁମ୍ଭେ ଜାଣିଲ କେମନ୍ତେ ॥
ବିପ୍ର ବୋଇଲେ ତାହା ଶୁଣି । ଶୁଣ ହେ ବିପ୍ର ଚୂଡ଼ାମଣି ॥
ଯେ ବ୍ରହ୍ମସ୍ୱରୂପେ ମିଶଇ । ଜୀବ ଲେଉଟି ନ ଆସଇ ॥
ତାହାଙ୍କୁ କରି ଦରଶନ । ଲେଉଟି ଆସୁଛନ୍ତ ଜନ ॥
ଏହା ମୁଁ ଦେଖିଲି ପ୍ରତ୍ୟକ୍ଷ । ତେଣୁଟି ବ୍ରହ୍ମ ଥିବା ମିଛ ॥
ତାହା ଶୁଣିଣ ବ୍ରହ୍ମବାଣୀ । ଅଳପ ମନ୍ଦେ ମନ୍ଦେ ହସି ॥
ବୋଇଲେ ଶୁଣ ବିପ୍ରବର । ତୋ ମନେ ସଂଶୟ ନ କର ॥
ବ୍ରହ୍ମ ନ ଥିବା ଏ ପ୍ରମାଣ । ତାହା କହିବା ଏବେ ଶୁଣ ॥
ଯେ ଆତ୍ମା କଳ୍ପତରୁ ହରି । ଯେ ଯାହା ମନେ ବାଞ୍ଛାକରି ॥
ତାହାଙ୍କୁ ସେହି ଫଳ ଦେଇ । ତେଣୁଟି ବାଞ୍ଛାନିଧି ସେହି ॥
ଯେବଣ ପ୍ରାଣୀ ଏଥେ ଆସି । ଦର୍ଶନ କରେ ବ୍ରହ୍ମବାଣୀ ॥
କଳ୍ପନା କରି ତାଙ୍କ ମନେ । ଲେଉଟି ଯିବାକୁ ସଦନେ ॥
ତାହାଙ୍କୁ ଯଦ୍ୟପି ରଖିଲେ । କି ବାଞ୍ଛାନିଧି ବୋଲାଇଲେ ॥
ଏଣୁ ଯେ ଯାହା କଳ୍ପିଥାଇ । ତାହାକୁ ସେହି ଫଳ ଦେଇ ॥
ପୋଷନ୍ତ ପ୍ରଭୁ ମହାମେରୁ । ତେଣୁଟି ବାଞ୍ଛା କଳ୍ପତରୁ ॥
ଯେବଣ ଲୋକ ମୁକ୍ତି ଅର୍ଥେ । ନିଶ୍ଚୟ ଆସିଥିବେ ଏଥେ ॥
ମନରେ ସଂଶୟ ନ କର । ବ୍ରହ୍ମଙ୍କୁ ଦରଶନ କର ॥
ଏମନ୍ତେ କହି ଗଲେ ହରି । ବିପ୍ର ଚଳିଲା ନୀଳଗିରି ॥
ପ୍ରବେଶ ହେଲା ସିଂହଦ୍ୱାରେ । ପତିତପାବନ ସମ୍ମୁଖରେ ॥
ଦଇବଯୋଗେ ସେହିଦିନ । ହୋଇ ଅଛଇ ଦେବସ୍ନାନ ॥
ଦେଖିଲା ତେଜ ଦେବତ୍ରୟେ । ସ୍ନାହାନ ମଣ୍ଡପେ ବିଜୟେ ॥
ସ୍ନାହାନ କରିବା ନିମନ୍ତେ । ଚକାରେ ବିଜେ ଜଗନ୍ନାଥେ ॥
ଅଶେଷ ତୀର୍ଥଜଳ ଧରି । ସେବକେ ଜୟ ଜୟ କରି ॥
ବେଢ଼ି ଅଛନ୍ତ ଚଉପାଶେ । ପ୍ରଭୁଙ୍କ ଦେବାର୍ଚ୍ଚନ ଆଶେ ॥
ସ୍ୱର୍ଗୁ ଦେବତାମାନେ ଆସି । ମାୟାରେ ନରଲୋକେ ମିଶି ॥

ଦର୍ଶନ କରୁଛନ୍ତ ରଙ୍ଗ । ଅନେକ ଉତ୍ସବ କସଇ ॥
ଏମନ୍ତ ବେଳେ ଗଣଭକ୍ତ । ମିଳଲେ ପ୍ରଭୁଙ୍କ ନକଟ ॥
ଦେଖିଲେ ଦାରୁବ୍ରହ୍ମ ମୂର୍ତ୍ତି । ମଣ୍ଡପେ ବଜେ କରଛନ୍ତ ॥
ନରେ୍ଗପି ଅନାଇଣ ଦେଲେ । ଗଜବଦନ ନ ଦେଖିଲେ ॥
ଗଜବଦନ ନାହିଁ ଏଥେ । ବ୍ରହ୍ମ ନୁହଇ କଦାଚତେ ॥
ଥୋଇ ବହାନେ ମୁଖ ଶୂନ୍ୟ । ଦେଖି ବସ୍ମୟ କଲ ମନ ॥
ଏମନ୍ତ ବୋଲ ଲେଉଟିଲ । ସେ ପ୍ରଭୁ ପଦେ ନ ନମିଲ ॥
ଅତ୍ୟନ୍ତ ମନେ ଦୁଃଖ ହୋଇ । ବାହୁଡ଼ ଗଲକ ଚଳାଇ ॥
ଦେଖ ତାହାର ଦାର୍ଢ୍ୟମନ । କେବଳ ବ୍ରହ୍ମ ଗଜାନନ ॥
ବୋଲ ଜାଣଇ ତାର ମନେ । ଅନ୍ୟ ଦେବତାଙ୍କୁ ନ ଗଣେ ॥
ତେଣୁଟି ଲେଉଟିଣ ଗଲ । ମସ୍ତକେ ହସ୍ତହିଁ ନ ଦେଲ ॥
ଏଥିଉତ୍ତରୁ ଶୁଣ ମନ । ସେ ଅନ୍ତର୍ଯାମୀ ନାରାୟଣ ॥
ଭକତ ଜନ କାଙ୍କ୍ଷା ଜାଣି । ତକ୍ଷଣେ ଶଙ୍ଖ ଚକ୍ରପାଣି ॥
ମୃଦରଥ ସେ ରାଜପାକେ । ଅନଦ୍ରା ଥିଲେ ପ୍ରଭୁପାଖେ ॥
ତେଣୁ ସେ ନଦ୍ରାଳସ ହୋଇ । ଜଗମୋହନ ଥିଲେ ଶୋଇ ॥
ତାର ପାରୁଶେ ବଜେ କଲେ । ସ୍ୱପନ ମାର୍ଗେ ଆଜ୍ଞା ଦେଲେ ॥
ବୋଇଲେ ଶୁଣ ମୃଦରଥ । ଉତ୍ତର ଦେଶୁ ମୋ ଭକତ ॥
ଆସିଣ ଅଛୁ ଅତ୍ତତୋଷେ । ମୋହର ଦରଶନ ଆଶେ ॥
ତେଣୁ ମୋ ଗୁମ୍ଫକୁ ଅଇଲ । ମୋର ମୁଖକୁ ଚାହିଁ ଦେଲ ॥
ଗଜବଦନ ମୋ ନ ଦେଖି । ମନରେ ହୋଇ ମହାଦୁଃଖୀ ॥
ବାହୁଡ଼ ଯାଉଅଛୁ ସେହ୍ୱ । ବେଗେ ତୁ ଯେନଆସ ଯାଇଁ ॥
ବୋଲବୁ କପାଁ ଯାଉ ରୁଷି । ଦର୍ଶନ କର ବ୍ରହ୍ମରାଶି ॥
ନଷ୍ଚଳ କର ତୋ ନୟନ । ଗୁହାଁ ଦେଖିବୁ ଗଜାନନ ॥
ଏମନ୍ତ ବୋଲ ଯେନ ଆସ । କହ୍ୱ ଚଳଲେ ପୀତବାସ ॥
ସେ ମୃଦରଥ ବେଗେ ଉଠି । ଭକଣ ହରନାମ ଗୋଟି ॥

ଧାଇଁଣ ଗଲା ଅତିବେଗେ । ମିଳିଲା ଗଣଭକ୍ତ ଆଗେ ॥
ବୋଇଲା ଶୁଣ ବିପ୍ରଗୋଟି । କହଁ ଯାଉଛୁ ତୁ ଲେଉଟି ॥
ବ୍ରହ୍ମଙ୍କୁ ଦରଶନ କର । ବାଞ୍ଛା ସମ୍ପୂର୍ଣ୍ଣ ହେବ ତୋର ॥
ଯେ ଚତୁର୍ବର୍ଗ ଫଳ ଦାତା । ଅଶେଷ ଜୀବନ କରତା ॥
ଭକତଜନ ପ୍ରାଣବନ୍ଧୁ । ନାମ କରୁଣାମୟ ସିନ୍ଧୁ ॥
ଯେ ଯାହା ବାଞ୍ଛାକରେ ଚିତ୍ତେ । ତାହାକୁ ତାହା ଦେବା ଅର୍ଥେ ॥
ବିଜୟ ନୀଳାଚଳ ଗିରି । ଶ୍ରୀଦାରୁବ୍ରହ୍ମ ରୂପଧରି ॥
ତାହାଙ୍କୁ ଛାଡ଼ି ମୂଢ଼ପଣେ । ଲେଉଟି ଯାଉ କି କାରଣେ ॥
ସେ ଗଣପତି ଭକ୍ତ ଶୁଣି । କ୍ରୋଧେ ବୋଲଇ କଟୁବାଣୀ ॥
ବ୍ରହ୍ମ ଅଛଇ କେଉଁଠାରେ । କପାଳଁ ଭଣ୍ଡ ତୁ ମୋହରେ ॥
ଯାହାର ଗଜାନନ ନାହିଁ । ସେ ବ୍ରହ୍ମ ବୋଲାଇବ କାହିଁ ॥
ଶୁଣ୍ଢ ନ ଦେଖି ଯାହାଠାରେ । ବ୍ରହ୍ମ ନ ବୋଲୁ ଆମ୍ଭେ ତାରେ ॥
ଏଣୁ ତୁ ଯାଅ ହୋ ବାହୁଡ଼ି । ମୁହିଁ ତ ନାହିଁ ତୋତେ ଲୋଡ଼ି ॥
ତୁ କହିଁ ଲେଉଟାଉ ମୋତେ । ଶୁଣି ବୋଲଇ ମୁଦିରଥେ ॥
ଏବେ ତୁ ଛାଡ଼ି ମତିଭ୍ରମ । ସାକ୍ଷାତେ ବିଜେ ଦାରୁବ୍ରହ୍ମ ॥
ନିଶ୍ଚଳ କରି ତୋ ନୟନ । ମୁହିଁ ଦିଶିବେ ଗଜାନନ ॥
ଏଥେ ସଂଶୟ କିଛି ନାହିଁ । ବୋଲିଣ ନେଲା ଲେଉଟାଇ ॥
ବିପ୍ର ବଦନୁ ଏହା ଶୁଣି । ଆନନ୍ଦ ଭକ୍ତଚୂଡ଼ାମଣି ॥
ଲେଉଟି ଗଲା ଅତି ତୋଷେ । ମିଳିଲା ଦାରୁବ୍ରହ୍ମ ପାଶେ ॥
ସକଳ ଦୁଃଖ ପରିହରି । ଚଞ୍ଚଳମନ ସ୍ଥିର କରି ॥
ସାକ୍ଷି କମଳ ହରିଙ୍କ ପାଦେ । । ମୁହିଁଲା ନିଶ୍ଚଳ ନୟନେ ॥
ଦେଖିଲା ପ୍ରଭୁ ଭଗବାନ । ହୋଇଅଛନ୍ତି ଗଜାନନ ॥
ଲମ୍ବି ଅଛଇ ଥୋର ହସ୍ତ । ଶୋଭା ଦିଶଇ ଏକଦନ୍ତ ॥
ଅଦ୍ଭୁତ ବିଶ୍ୱରୂପ ଧରି । ଭୃତ୍ୟଙ୍କୁ ଡାକୁଛନ୍ତି ହରି ॥
ତାହା ଶୁଣିଣ ମହାମତି । ବୋଲେ ନମସ୍ତେ ଗଣପତି ॥

ନମୋ ନମସ୍ତେ ଗଜାନନ । ନମସ୍ତେ କପିଳବଦନ ॥
ନମସ୍ତେ ଦାରୁବ୍ରହ୍ମ ସ୍ୱାମି । ନମୋ ନମସ୍ତେ ବିଶ୍ୱବାସୀ ॥
ତବ ଦର୍ଶନେ ଦାରୁବ୍ରହ୍ମ । ଛୁଟିଲା ମୋର ମତିଭ୍ରମ ॥
ଲଭିଲି ପରମ କାରଣ । ଏବେ ଯା ମାଗୁଅଛି ଶୁଣ ॥
ଆଜଠୁ ଏ ଦେବସ୍ନାନ ଯାତ । ଯେବେ ହୋଇବ ଜଗନ୍ନାଥ ॥
କେବଳ ହସ୍ତୀବେଶ ହୋଇ । ବିଜେ କରିବ ଭାବଗ୍ରାହୀ ॥
ଏତେକ ମାନ ଆଜ୍ଞା ହେଉ । ଏ କଥା ଯୁଗେ ଯୁଗେ ଥାଉ ॥
ଏତେକ କହି ପାଦେ ପଡ଼ି । ଉଠିଲେ ଶିରେ କର ଯୋଡ଼ି ॥
ବ୍ରହ୍ମସ୍ୱରୂପ କରି ଧ୍ୟାନ । ତକ୍ଷଣେ ଛାଡ଼ିଲା ଜୀବନ ॥
ଝଟକେ ବିନ୍ଦୁ ପ୍ରାପ୍ତ ହେଲି । ବ୍ରହ୍ମଶରୀରେ ଗଲା ମିଶି ॥
ସମସ୍ତେ ଜୟ ଜୟ କଲେ । ପ୍ରଭୁଙ୍କ ସେବାରେ ଲଗିଲେ ॥
ଦେଖଏ ପ୍ରଭୁଙ୍କ ମହିମା । ଯାହାଙ୍କୁ ଭଜେ ବେଦବ୍ରହ୍ମା ॥
ଏଣୁ ଏ ଭକତ ଛଳରେ । ଏବେ ହେ। ହସ୍ତୀବେଶ ଧରେ ॥
ତେଣୁଟି ପ୍ରଭୁ ଭାବଗ୍ରାହୀ । ଭକତ ଜୀବନ ବୋଲାଇ ॥
ଦେଖି ସେ ଭକତଙ୍କ ହୃଦ । ସେତେବେ ଲଭିଲେ ଏତେ ପଦ ॥
ଆନ କେ ଭାଜନ ହୋଇବ । ବ୍ରହ୍ମାଦି ଦେବଙ୍କୁ ଦୁର୍ଲଭ ॥
ଏଣୁ ଏ ସଂସାର ମଧ୍ୟେଣ । ପ୍ରଭୁ ଭକତ ବଡ଼ପଣ ॥
ଭକ୍ତଙ୍କୁ ନ କରିବୁ ଆନ । ଭକ୍ତ ବଶ୍ୟ ଭଗବାନ ॥
ଶୁଣ ସୁମନ ହେଉ ଦେଇ । ଏ ଦାର୍ଢ୍ୟ ଭକତ ଅଟଇ ॥
ଏଥେ ନିର୍ମଳ ଯାର ହୃଦ । ନିଶ୍ଚେ ଲଭିବ ମୁକ୍ତପଦ ॥
ପଠନେ ଶ୍ରବଣେ ଯା ଆଶ । ସେ ପ୍ରାଣୀ ଯିବେ ସ୍ୱର୍ଗବାସ ॥
କହଇ ବିପ୍ର ରାମଦାସ । ସେ ଦାରୁବ୍ରହ୍ମ ପାଦେ ଆଶ ॥
ସାଧୁଜନଙ୍କ ପାଦପଦ୍ମ । ମୋ ମନଭୃଙ୍ଗ କରେ ସାଧ ॥
ସୁଜନେ ଏହି ଭାବେ ଭାବ । ହେଲେ ସଂସାରୁ ତରିଯିବ ॥

ଇତି ଶ୍ରୀ ଦାର୍ଢ୍ୟଭକ୍ତି ରସାମୃତେ ମନ ଚୈତନ୍ୟ ସମ୍ବାଦେ ଗଣପତିଭିଛ ଦାର୍ଢ୍ୟଭାବ ମୋକ୍ଷଣେ ନାମ ସପ୍ତୋବିଂଶୋଽଧ୍ୟାୟଃ

---

# ଚତୁର୍ବିଂଶ ଅଧ୍ୟାୟ

## ଅନନ୍ତା ଶବର ସମ୍ବାଦ

### ମନ ଉବାଚ

ଅତି ଆନନ୍ଦେ ମନରଜା । ଚୈତନ୍ୟ ପାଦେ କରି ପୂଜା ॥
ବୋଇଲେ ଶୁଣ ଯୋଗମଣି । ତୁମ୍ଭ ବଚନ ସାଧୁବାଣୀ ॥
ଶୁଣିଲି ଭକତଙ୍କ କଥା । ଘୁଞ୍ଚିଲା ଭବଭୟ ବ୍ୟଥା ॥
ଏ ଭବେ କରି ଦାନ ପୁଣ୍ୟ । ନାମହିଁ କରଣ ଭଜନ ॥
ତରିଣ ଗଲେ ପ୍ରାଣୀମାନେ । ଶୁଣିଲି ତୁମ୍ଭର ବଚନେ ॥
ଏ ଭବେ ନାମ ଭଜିକରି । କେ ଏଥେ ଯାଇଛନ୍ତି ତରି ॥
ଜାଣିଣ ଥିଲେ ମୋତେ କହ । ଶୁଣି ପବିତ୍ର ହେଉ ଦେହ ॥

### ଚୈତନ୍ୟ ଉବାଚ

କହେ ଚୈତନ୍ୟ ତାହା ଶୁଣି । ଶୁଣ ହେ ମନ ନୃପମଣି ॥
ତୁ ଯାହା କଲୁ ହୋ ପ୍ରଶନ । କେ ତାହା କହିବା ଭାଜନ ॥
ନାମର ଅଶେଷ ମହିମା । ଜାଣି ନ ପାରେ ବେଦବ୍ରହ୍ମା ॥
ଶେଷ ଅଶେଷ ମୁଖେ ଭଣି । ସେ ପୁଣି ନ ପାରିଲେ ଜାଣି ॥
ପଞ୍ଚମ ଆନନେ ଧୂର୍ଜଟି । ନାମ ମହିମା ମୁଖେ ରଟି ॥
ସେ ଅବା ଜାଣିଛନ୍ତି କେତେ । ଅନ୍ୟ ନ ଜାଣେ କଦାଚିତେ ॥
ନାମର ଆଦି ଅନ୍ତ ନାହିଁ । ଅନ୍ତର ବହୁତ ନୁହଇ ॥
ରୂପ ଅରୂପରୁ ବାହାର । ଏ ତ ଅଲେଖ ଅଗୋଚର ॥
ସବୁରେ ଅଛି କାହିଁ ନାହିଁ । ମନ ଗୋଚରେ ଭେଦ କାହିଁ ॥
ସ୍ଥୂଳ ସୂକ୍ଷ୍ମରୁ ସେ ବାହାର । ଅଶେଷ ଲୋକେ ଅଗୋଚର ॥
ସେ ଯେ ଅନ୍ତର ରୂପରାଶି । କାହାର ନୟନେ ନ ଦିଶି ॥
ତାହା କହିବା ସାଧ୍ୟ କାର । ଶୁଣ ହେ ମନ ନୃପବର ॥
ଯେବଣ ରାମ ନାମ ଗୋଟି । ଭୁଷଣ୍ଡି ହୃଦେ କରି ଗଣ୍ଠି ॥
କୋଟିଏ କୋଟି ଯୁଗ ଗଲେ । ଗୋଟିଏ ରାମ ତା ନ ଟଳେ ॥
ରହିଲା ଅକ୍ରାମର ହୋଇ । ଏକା ଅକ୍ଷର ବ୍ରହ୍ମ ଧ୍ୟାୟି ॥

ଅନନ୍ତା ଶବର  ପୃଷ୍ଠା ୧୯୦-୧୯ ୨

ଅନନ୍ତା ଶବରର ଆତ୍ମାକୁ ବିଷ୍ଣୁଦୂତମାନେ ଯମଦୂତଙ୍କଠାରୁ ଛଡ଼ାଇନେବାକୁ ଆସିଛନ୍ତି ।

ଆବର କହୁଅଛି ଶୁଣ । ରାବଣ ଭାଇ ବିଭୀଷଣ ॥
ଭଜିଣ ରାମନାମ ଗୋଟି । ହେଲେ ମରଣ ଗଲ ମେଣ୍ଟି ॥
ପବନସୁତ ହନୁମାନ । ସେ ରାମ ନାମକୁ ଭଜଣ ॥
ହେଲେ ତରିଲ ସିନ୍ଧୁବାରି । ଗୋଷ୍ପଦ ଜଳପ୍ରାୟ କରି ॥
ହୋଇଲ ଅଜ୍ୟାମର କାୟେ । ଯାବତ ଚନ୍ଦ୍ର ସୂର୍ଯ୍ୟ ଥାଏ ॥
ଅନନ୍ତ ରାମନାମ ଧ୍ୟାୟି । ଧରା ମଣ୍ଡଳ ଅଛି ବହି ॥
ବିଶେଷ ମୁନିବୃନ୍ଦ ଯେତେ । ସେ ନାମ ଭଜି ହୃଦଗତେ ॥
ସଂସାର ମାୟାରଜ୍ଜୁ କାଟି । ଜନ୍ମ ମରଣ ଗଲେ ମେଣ୍ଟି ॥
ଆବର କହୁଅଛି ତୋତେ । ବ୍ରହ୍ମା ଇନ୍ଦ୍ରାଦି ସୁର ଯେତେ ॥
ଯକ୍ଷ ଗନ୍ଧର୍ବ ଯେ କିନ୍ନର । ଚନ୍ଦ୍ର ବରୁଣ ଦିବାକର ॥
ପୃଥିବୀ ପବନ ଅନଳ । ଯେ ଅପସରା ଦିଗପାଳ ॥
ନର ଅସୁର ଆଦି ଯେତେ । ସ୍ୱରୂପ କହୁଅଛି ତୋତେ ॥
ସେ ନାମ ଭଜନ ନ କରି । ସଂସାରେ ନୁହେ ଅଧିକାରୀ ॥
ଶ୍ରୀରାମ ନାମ ଆଶ୍ରା ବିନେ । ଜୀବେ ଉଦ୍ଧାର ନାହିଁ ଆନେ ॥
ଏ ନାମ ଅକ୍ଷର ଯୁଗଳ । ଅଶେଷ ପ୍ରାଣୀଙ୍କ ମଙ୍ଗଳ ॥
କଳି କଲ୍ମଷ ଅନ୍ଧକାର । ନାଶନେ ଚନ୍ଦ୍ର ଦିବାକର ॥
ଏ ନାମ ଭଜନର ବିନା । ଅନ୍ୟନ୍ତ ଧର୍ମ ଭ୍ରମ ସିନା ॥
ତୁ ଯେ ବୋଇଲୁ ଏ ସଂସାରେ । ଏ ଦେହ ନର ଗୁଣ୍ଡ ହେଲେ ॥
ଅଂଶବେ ନାମ ଭଜିକରି । କେ ଅବା ଯାଇଛନ୍ତି ତରି ॥
ତାହା କହିବା ଏବେ ତୋତେ । କେବଳ ଶୁଣ ଶୁଦ୍ଧଚିତ୍ତେ ॥
ଦୁର୍ବେ ହୋ ବିଷ୍ଣୁ ପୁରାଣରେ । ନାରଦ ମୁନିଙ୍କ ବାକ୍ୟରେ ॥
ଯାହା ମୁଁ କରିଛି ଶ୍ରବଣ । ତାହା କହିବା ଏବେ ଶୁଣ ॥
ଅନନ୍ତା ନାମେଣ ଶବର । ଶବର ପଲ୍ଲୀରେ ତା ଘର ॥
ଅଠାକାଣ୍ଡିଆ ବେଣ୍ଟ କରି । ପକ୍ଷୀ ଆଣଇ ନିତ୍ୟେ ମାରି ॥
କପୋତ ପାରୁଆ ଗୁଣ୍ଡୁରି । କୀର ଗୋବରା ଆଦି କରି ॥

ବକ ସାରସ ଯେ ଡାହୁକ । କାକ କୋକିଳ ଶାରୀ ଶୁକ ॥
ଏ ଆଦି ଯେତେ ପକ୍ଷୀମାନ । ମାରଇ ନିତ୍ୟ ପଶି ବନ ॥
ଯେ ପକ୍ଷୀ ମାରେ ଘେନିଆସେ । ବିକଇ ପୁର ଗ୍ରାମ ଦେଶେ ॥
ଯେ ଅବା ମୂଲ୍ୟ ତହିଁ ପାଇ । ପ୍ରାଣ ପୋଷଇ ତାହା ଖାଇ ॥
ଥୋକାଏ ମାଂସ ରାନ୍ଧି କରି । ଭକ୍ଷଇ ପୁତ୍ର ସଙ୍ଗେ ଭରି ॥
ଏମନ୍ତେ ବଞ୍ଚୁଥାଏ ଦିନ । ନ ଜାଣେ ଅନ୍ୟ କଥାମାନ ॥
ଦାନ ଧର୍ମାଦି ବୋଲି ଯାହା । ଶ୍ରବଣେ ଶୁଣେ ନାହିଁ ତାହା ॥
ଆବର ତପ ତୀର୍ଥ ଯେତେ । ତାହା ସେ ଜାଣିବ କେମନ୍ତେ ॥
ନାମ ଭଜନ କରିବାର । ସ୍ୱପନେ ନ ଜାଣେ ଶବର ॥
ଦେବ ବ୍ରାହ୍ମଣ ସେ ନ ଜାଣେ । ବଞ୍ଚଇ ମୂର୍ଖ ମୂଢ଼ପଣେ ॥
ଏମନ୍ତେ କେତେ ଦିନ ଅନ୍ତେ । ଦିନକେ ବୁଲନ୍ତେ ବନସ୍ତେ ॥
ଜାହାର ପୋଷା ଶୁଆ ଗୋଟି । ଲୁହା ଶାଙ୍କୋଳି ଥଣ୍ଟେ କାଟି ॥
ମନ୍ଦିରୁ ପଳାଇଣ ଆସି । ବୃକ୍ଷ ଉପରେ ଥିଲା ବସି ॥
ସେ ପକ୍ଷୀ ଦେଖିଣ ଶବର । ସଧୀରେ ବଢ଼ାଇ ପୟର ॥
ଧରିଲା ଅଠାକାଠି ହାତେ । ପକ୍ଷୀକି ଲଗାଇ ତୁରିତେ ॥
ସେ ପକ୍ଷୀ ତ୍ରାଣରେ ବିକଳେ । ପଡ଼ିଲା ଶବର ହସ୍ତରେ ॥
ବଦନେ ରାମ ନାମ ଭଣି । ଶବର କର୍ଣ୍ଣେ ତାହା ଶୁଣି ॥
ଶୁଣ ସୁଜନେ ତୋଷମନେ । ପକ୍ଷୀକି ଆଣିଲା ବନ୍ଧନେ ॥
ଆଜ ବା କେତେ ପକ୍ଷୀ ମାରି । ଚଳିଣ ଗଲା ନିଜ ପୁରୀ ॥
ସେ ଶୁଆ ଗୋଟି ଘେନିଗଲା । ଗ୍ରାମ ଦେଶରେ ବୁଲାଇଲା ॥
ଉତ୍ତମ ଲୋକ ମୁଖ ଚାହିଁ । ଆନନ୍ଦେ ଶବର ବୋଲଇ ॥
ଶୁଣ ହେ ଆଚମ୍ବିତ ବାଣୀ । ଏ ଶୁଆ ରାମନାମ ଭଣି ॥
ଏ ବଡ଼ ଆଚମ୍ବିତ କଥା । ଶୁଣି ଲାଗିଲା ମୋତେ ବ୍ୟଥା ॥
କେତେହେଁ ପକ୍ଷୀ ମୁଁ ମାଇଲି । ଏହା ତ ଦିନେ ନ ଶୁଣିଲି ॥
ଏହୁ ସଂଶୟ ଫେଡ଼ ମୋର । ସେ ଭଲଲୋକ କହେ ଗିର ॥

ଏ କାହା ପୋଷା ଶୁଆଗୋଟି ; ତେଣୁଟି ରାମନାମ ରଟି ॥
ଏମନ୍ତ ବୋଲି ଧନ ଦେଲା । ସେ ଶୁଆ ଗୋଟିକି କିଣିଲା ॥
ଶବର ଧନ ଘେନି ଚଳି । ନିଜ ଭୁବନେ ଯାଇ ମିଳି ॥
ଏମନ୍ତେ କେତେଦିନ ଗଲା । ଶବର ଜୀବନ ହାରିଲା ॥
ତକ୍ଷଣେ ମୃତ୍ୟୁକାଳ ଜାଣି । ଦୂତ ପେଷିଲା ଦଣ୍ଡପାଣି ॥
ସେ ଯମଦୂତମାନେ ଆସି । ଗଳେ ଲଗାଇ କାଳପାଶୀ ॥
ନିବନ୍ଧ କରଣ ଧଇଲେ । ଅନେକ ମାଡ଼ହିଁ ମାଇଲେ ॥
ଧରଣ ଘେନିଯାନ୍ତେ ପଥେ । ଆସି ମିଳିଲେ ବିଷ୍ଣୁଦୂତେ ॥
ଯମଦୂତଙ୍କୁ କ୍ରୋଧଭରେ । ବୋଇଲେ ଶୁଣରେ ପାମରେ ॥
ଏ ପୁଣ୍ୟ ଶବରକୁ କେଣେ । ବାନ୍ଧି ନେଉଛ କି କାରଣେ ॥
ତୁମ୍ଭର କେଉଁ ବାପ ବଳେ । ପାଶ ଲଗାଇ ଏହା ଗଳେ ॥
କିଙ୍କି ନେଉଛ ଅନ୍ତରୀକ୍ଷେ । ଆମ୍ଭେ ତ ଦେଖୁଛୁ ପ୍ରତ୍ୟକ୍ଷେ ॥
ସାମାନ୍ୟ ଭରସା ତୁମ୍ଭର । ବିଷ୍ଣୁ ଭକ୍ତକୁ ମାଡ଼ ମାର ॥
ଏବେ ରେ ପ୍ରାଣେ ଥିଲେ ଆଶ । ବେଗେ ଫିଟାଅ କାଳପାଶ ॥
ଧ୍ରୁଡ଼ଣ ପଳାଅ ତୁରତେ । ଶୁଣି ବୋଇଲେ ଯମଦୂତେ ॥
ଶୁଣ ହେ ବିଷ୍ଣୁ ଦୂତମାନେ । ଏହା ଯେ କହିଲ ବଚନେ ॥
ଏ ମହା ପାପିଷ୍ଠ ଚଣ୍ଡାଳ । ପାପୀ ଆଗ୍ରରେ ଗଲା କାଳ ॥
ଅନେକ ଜୀବ ହତ୍ୟାକର । ଅଛୁ ଏ ପାପକୁ ନ ଡର ॥
ପୁଣ୍ୟ ଏହାର ଲେଶ ନାହିଁ । ଏହାକୁ ଘୁଞ୍ଚିବୁ କପାଇଁ ॥
ନାମ ମହିମା ପ୍ରଭୁଙ୍କର । ଶୁଣିଲ କାହିଁ କି ତୁମ୍ଭର ॥
ସବେ ଅଜ୍ଞାନେ ଯେଉଁ ପ୍ରାଣୀ । ବଦନେ ରାମ ନାମ ଭଣି ॥
ସେ ଅବା ଶୁଣିଥାଇ କର୍ଣ୍ଣେ । ନୋହିଲେ ଚିନ୍ତୁଥାଇ ମନେ ॥
ଅଶେଷ କୋଟି ଜନ୍ମ ଯାଏ । ସେ ଯେବେ ପାପ କରୁଥାଏ ॥
ଦଣ୍ଡକେ ହୋଏ ଭସ୍ମରାଶି । ସ୍ନେହ ସେ ବିଷ୍ଣୁ ଲୋକେ ବସି ॥
ତେଣୁଟି ଏ ପୁଣ୍ୟ ଶବର । ପାତକ ନାହିଁଟି ଏହାର ॥

ତେଣୁଟି ହେଲ ବନ୍ଧୁ ଦାସ । ବେଗେ ଫିଟାଅ କାଳପାଶ ॥
ନୋହିଲେ ମରିବ ସମସ୍ତେ । ରଖି ନ ପାରେ ଜନ୍ମନାଥେ ॥
ତା ଶୁଣି ଯମଗଣେ ଆସି । ଫିଟାଇ ଦେଲେ କାଳପାଶୀ ॥
ନମିଲେ ତାହାଙ୍କ ଚରଣେ । ପଳାଇ ଗଲେ ତତକ୍ଷଣେ ॥
ଭେଟିଲେ ଯମର ଅଗ୍ରତେ । ସବୁ କହିଲେ ବିଧିମତେ ॥
ଶୁଣ ହେ ଜନ୍ତୁଙ୍କର ନାଥ । ଆମ୍ଭେ ଦେଖିଲୁ ବିପରୀତ ॥
ମୃତ୍ୟୁ ମଣ୍ଡଳେ ଦେହ ବହି । ଜାତକରେ ଶବର ଅଟଇ ॥
ଅନେକ ଜୀବହତ୍ୟା ତାର । ପାତକ କରିଛି ଅପାର ॥
ସଞ୍ଚିତ ପୁଣ୍ୟ ତାର ନାହିଁ । କେବଳ ଶୁଣ ଜନ୍ମସାଇଁ ॥
ଶୁଆ ମୁଖରୁ ରାମବାଣୀ । ଥରେ ତା କର୍ଣ୍ଣେ ଥିଲା ଶୁଣି ॥
ଏମନ୍ତ ପାତକୀ କି ଧରି । ଆଣୁ ଯେ ଥିଲୁ ବନ୍ଦୀକରି ॥
ତାହାଙ୍କ ବନ୍ଧୁ ଗଣେ ଆସି । ଆମ୍ଭଙ୍କୁ ଅନେକ ଝିଙ୍ଗାସି ॥
ଫିଟାଇ ଦେଲେ କାଳପାଶୀ । ତାହାକୁ କଲେ ସ୍ୱର୍ଗବାସୀ ॥
ତେଣୁଟି ଅଇଲୁ ପଳାଇ । ଏ କଥା ବୁଝ ହେ ଗୋସାଇଁ ॥
ଯମ ନୃପତି ତାହା ଶୁଣି । ଦୂତଙ୍କ ମୁଖ ଗୁହିଁ ଭଣି ॥
ବୋଇଲେ ଶୁଣ ଆରେ ମୂର୍ଖ । ଆଜ୍ଞ ଏକଥା ମନେ ରଖ ॥
ସବେ ଅଗବେ ଯେଉଁ ପ୍ରାଣୀ । କର୍ଣ୍ଣରେ ରାମନାମ ଶୁଣି ॥
କି ଅବା ମୁଖେ ଘୋଷୁଥିବ । ତାହାର ପାଖକୁ ନ ଯିବ ॥
ଯଦ୍ୟପି ଯିବ ତାର ପାଶ । ନିଶ୍ଚେ ମୋ ଯମପଣ ନାଶ ॥
ଆବର କହୁଅଛୁ ତୋତେ । ଶୁଣିଣ ଥାଅ ରେ ସମସ୍ତେ ॥
ଯା ମୁଣ୍ଡେ ତୁଳସୀମଞ୍ଜରୀ । ତୁଣ୍ଡେ ନିର୍ମାଲ୍ୟ ଥିବ ଭରି ॥
ଗଳେ ତୁଳସୀ ମାଳ ଥିବ । ହୃଦେ ଶ୍ରୀରାମ ଜପୁଥିବ ॥
ଦିବ୍ୟ ବସନ ପିନ୍ଧିଥିବ । କୁସୁମ ଗନ୍ଧବାସ ଥିବ ॥
ଯେ ଅବା ସାଧୁଙ୍କ ସଙ୍ଗତେ । ଯେ ସ୍ନାନ କରେ ଗଙ୍ଗାଜଳରେ ॥
ଯେ ଅବା କରେ କ୍ଷେତ୍ରବାସ । ଯେ କରିଥିବେ ହରି ବଶ ॥

ଯେ ଅବା ଗୁରୁପାଦଗତେ । ସେବା କରନ୍ତି ଅବିରତେ ॥
ଯେ ଅବା ଦେଇ ଦୟାକରେ । କି ଅବା ପର ଉପକାର ॥
ଏମନ୍ତ ଲୋକଙ୍କର କଥ । ଗଲେ ମୋ ସରିବ ସମସ୍ତି ॥
ଏତେ ଛଆନ୍ତି ଜନୁରାଜେ । ନିଜ ଭୁବନେ କଲେ ବିଜେ ॥
ଏବେ ହୋ ଶୁଣ ଶୁଦ୍ଧମନେ । ସେ ଯେତେ ବିଷ୍ଣୁ ଗଣମାନେ
ଅନନ୍ତା ଶବରକୁ ଧରି । ଅନେକ ଅଳଙ୍କାର ଭରି ॥
ଦିବ୍ୟ ବସନ ପିନ୍ଧାଇଲେ । କୁସୁମ ଗନ୍ଧବାସ ଢୁଳିଲେ ॥
ରଥରେ ବସାଇଲେ ନେଇ । ଜୟ ଶବଦ ତୁଣ୍ଡେ ଗାଇ ॥
ଜାଇ ଜୟ ଜମ୍ବୁ ସ୍ୱନ । ରଥ ବାହିଲେ ଘନ ଘନ ॥
ପୁଷ୍ପବିମାନେ ବସାଇଲେ । ବିଷ୍ଣୁ ଲୋକକୁ ଘେନିଗଲେ ॥
ଶୁଣ ସୁମନ ଏ ଚରିତ । ନାମର ମହିମା ଏମନ୍ତ ॥
କୋଟିଏ ଦାନ ପୁଣ୍ୟ କରି । ନାମ ଗୋଟିକି ନୋହେ ସରି ॥
ଏଣୁ ତୁ ନାମ ଆଶ୍ରେ କରି । ଏ ଭବଜଳୁ ହୁଅ ପାରି ॥
ଏ ଦାର୍ଢ୍ୟଭକ୍ତି ରସାମୃତ । କେବଳ ଶ୍ରବଣେ ଅମୃତ ॥
କହଇ ବିପ୍ର ରାମଦାସ ଶ୍ରୀରାମ ପାଦେ ମୋର ଆଶ ॥
ଜାନକୀ ବଲ୍ଲଭ ଚରଣେ । ମୋ ଚିତ୍ତ ରହୁ ଅନୁକ୍ଷଣେ ॥
ସେ ରାମ ନାମଗୋଟି ଚିତ୍ତେ । ନିରତେ ରହୁ ଦୃଢମତେ ॥
ଦଣ୍ଡେ ନ ଛାଡ଼ୁ ମୋର ମନ । ଏ ଆଜ୍ଞାକର ସାଧୁଜନ ॥
ସୁଜନେ ନାମ ଆଶ୍ରେ କର । ଜନ୍ମ ମରଣକୁ ନ ଡର ॥
ଏ ମନ ଚୈତନ୍ୟ ସମ୍ବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥
ଯେବଣ ପ୍ରାଣୀ ଏହା ହେଳେ । ଶ୍ରବଣ କରନ୍ତିଟି ବେଳେ ॥
ନୋହିଲେ ନିର୍ମଳ ଭାବରେ । ଗାୟନ କରେ ଏକାଥରେ ॥
ସକଳ କର୍ମ ଫଳ ହେବ । ଗ୍ରହପୀଡ଼ାହିଁ ନ ଲାଗିବ ॥
ସକଳ ଚିନ୍ତା ହେବ କ୍ଷୟ । ଯେଣିକି ଗଲେ ହେବ ଜୟ ॥
ନିଶ୍ଚେ ସେ ଯିବ ସ୍ୱର୍ଗବାସ । ଯମଦଣ୍ଡକୁ ନାହିଁ ତ୍ରାସ ॥

ଇତି ଶ୍ରୀଦାର୍ଢ୍ୟଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ
ଅନନ୍ତାଶବର ଶୁକମୁଖେ ରାମନାମ ଶ୍ରବଣେ .
ନାମ ଚତୁର୍ବିଂଶୋଽଧ୍ୟାୟଃ

# ପଞ୍ଚବିଂଶ ଅଧ୍ୟାୟ

## ମେଳଛ ସମ୍ବାଦ

## ଚୈତନ୍ୟ ଉବାଚ

ଚୈତନ୍ୟ ଦେବ ଅତିତୋଷେ । କହଇ ମନରାଜା ପାଶେ ॥
ଶୁଣ ସୁମନ ଶୁଦ୍ଧଭାବେ । ମୁଁ ଯାହା କହୁଅଛୁ ଏବେ ॥
ନାମର ମହିମା ଅପାର । ନାମଟି ସର୍ବ ଶାସ୍ତ୍ରେ ସାର ॥
ନାମଟି ଗତି ମୁକ୍ତିଦାତା । ନାମଟି ଜୀବର କରତା ॥
ନାମଟି ଠୁଲଶୂନ୍ୟମୟୀ । ତାହାକୁ ବ୍ରହ୍ମ ବୋଲି କହି ॥
ବ୍ରହ୍ମ ଓଁ କାରୁ ଜାତ ହୋଇ । ତହୁଁ ଜନ୍ମିଲେ ମହାମାୟୀ ॥
ତାହାଙ୍କ ତନୁଁ ଅବତାର । ହୋଇଲେ ବ୍ରହ୍ମା ବିଷ୍ଣୁ ହର ॥
ତାହାଙ୍କ ତହୁଁ ଏ ସଂସାର ଜନ୍ମିଲେ ଅପାରୁ ଅପାର ॥
ଅଣ୍ଡରୁ ଜାତ ହେଲା ଦୁଇ । ସେ ରଜ ବୀର୍ଯ୍ୟଟି ବୋଲାଇ ॥
ଏ ଗୃହଖାନି ଚରାଚର । ଦେଖ ଏ ଜନ୍ମର ବେଭାର ॥
ଏଥିରେ ନାମ ମୂଳବୀଜ ... ନ ହେତୁ କର ବୁଝ ॥
ତେଣୁଟି ନାମେ ଆଶ୍ରେ କର । ହେଲେ ତରିବୁ ଏ ସଂସାର ॥
ଆବର କହୁଅଛୁ ତୋତେ । ହେ ମନ ଶୁଣ ଶୁଦ୍ଧଚିତ୍ତେ ॥
ଅମୃତ କଥା ରସାମୃତ । ଭୁଷଣ୍ଡପୁରାଣେ ଉକତ ॥
ବଶିଷ୍ଠ ମୁନିଙ୍କ ଆଗରେ । ଯେ ଯାହା ଭୃଷଣ୍ଡ ବାକ୍ୟରେ ॥
ଯାହା କହିଣଛନ୍ତି ତୋତେ । ନାମର ମହିମା ବିଶେଷେ ॥
ମହାପୁରାଣେ ଅଛୁ ଶୁଣି । ଏ ମୋର ହୃଦଗତେ ଗୁଣି ॥
ତାହା କହିବା ତୋତେ ଏବେ । ହେ ମନ ଶୁଦ୍ଧ ଚିତ୍ତ ଭାବେ ॥



ମେଳଛ ଶୂକରଙ୍କୁ "ହାରମ୍" କହୁଛି ।

ପୂର୍ବେ ଯେ ମେଳଣ୍ଟ ଗୋଷ୍ଠାଏ । ଅଡହିଁ ଦୁରଗୃର କାଯ୍ୟେ ॥
ଭାଡରେ ଅଛଇ ସ୍ଥାଣ । ଅତ ପାପିଷ୍ଟ ମୂଢ଼ଜନ ॥
ଅନେକ ପାପ ଅଛୁ କରି । କୋଟି ସଂଖ୍ୟାରେ ଜନ୍ତୁମାରି ॥
ଗୋବଧ କଲା ଅପ୍ରମିତେ । କେ ଅବା କହିବ ତା ଚତ୍ରେ ॥
ବ୍ରହ୍ମହତ୍ୟାହିଁ ଅଛି କରି । ଅନେକ ପରସ୍ତ୍ରି ସ୍ତ୍ରୀ ହରି ॥
ମେଷ ମହିଷ ଆଦି ଯେତେ । ଦେଖିଲେ ମାରଇ ତୁରତେ ॥
ସୁରା ତାହାକୁ ନ ମିଳିଲେ । ଭୋଜନ ନ କରଇ ଭଲେ ॥
ଆବର ଶ୍ରୀଫଳ ପଞ୍ଜାର । ନୟନେ ଦେଖିଲେ ସ୍ଥାବର ॥
ବୃକ୍ଷମୂଳରୁ ଯାଏ କାଟି । କୂପଭିତରେ ଭରେ ମାଟି ॥
ଦେଖିଲେ ମଣ୍ଡପ ଅଟ୍ଟାଳି । ଅନଳ ସଙ୍ଗେ ଦିଏ ଜାଳି ॥
ଶିବଲିଙ୍ଗକୁ ଦେଖି ଭାଙ୍ଗେ । ବିଷ୍ଣୁ ପ୍ରତିମା ଦେଖି ଗଞ୍ଜେ ॥
ଦେଖିଲେ ସାଧୁ ବ୍ରହ୍ମଚାରୀ । ପଛେ ଗୋଡ଼ାଇ ତାଙ୍କୁ ମାରି ॥
ଉଚ୍ଛୁଡ଼ ନିଏ ପରଧନ । ଦୟା ନ ଥାଇ ତାର ମନ ॥
ଆଉ ଇତର ପାପ ଯେତେ । କେପାଁ କରିବ ତାର ଚତ୍ରେ ॥
ଏମନ୍ତେ ଅସତ୍ତ ମାର୍ଗରେ । ଦିନ ବଞ୍ଚଇ ନିରନ୍ତରେ ॥
ଯେତେକ କଥା ଅମଙ୍ଗଳ । କେବଳ ତାର କର୍ମମୂଳ ॥
ଏମନ୍ତ ପାପୀ ଦିନକର । ଯାଇଣ ଅଛୁ ଦେଶାନ୍ତର ॥
ଦଇବଯୋଗେ ଆସି ଜ୍ୱର । ଘୋଟିଲା ତାର କଳେବର ॥
ଅନେକ ପୀଡ଼ା ସେ ପାଇଲା । ଭୋଜନ ଭଲେ ନ ରୁଚିଲା ॥
ଅତି ଦୁର୍ବଳ ହେଲା ଦେହ । ପାଶେ ଟି ସାହା ସଖା ନାହିଁ ॥
ଗ୍ରାମ ବାହାରେ ଅଛୁ ପଡ଼ି । ଊର୍ଦ୍ଧ୍ୱ ନିଃଶ୍ୱାସ ଖରେ ଛାଡ଼ି ॥
ମଳ ବାହାରେ ଗୁହ୍ୟ ଦ୍ୱାରେ । ମାଛିଏ ବସିଲେ ତହିଁରେ ॥
ମରଣ କାଳ ଆସି ହେଲା । ନୟନ ବେନି ବୁଲାଇଲା ॥
ଏମନ୍ତ ସମୟରେ ତହିଁ । ଗ୍ରାମ ଶୂକର ଢ଼ଗାଟି ଯାଇ, ॥
ଚରୁ ଯେ ଥିଲା ଖଣ୍ଡିକରେ । ଦୁର୍ଗନ୍ଧ ପାଇ ନାସାଦ୍ୱାରେ ॥

ଧାଇଁଣ ଗଲା ଅତି ବେଗେ । ମିଳିଲା ପଠାଣର ଆଗେ ॥
ବେଢ଼ି ରହିଲା ତାର ପାଶେ । ଗର୍ଜ୍ଜଇ ଦୁର୍ଗନ୍ଧର ଆଶେ ॥
ତାହାକୁ ଦେଖି ସେ ମେଳିଛ । ସେ ତାର ଭକ୍ଷଇଁ ଅଭକ୍ଷ ॥
ମହା ଅସୁଖ ଭବ ହୋଇ । ହାରାମ ବୋଲି ଗାଳି ଦେଇ ॥
ପ୍ରାଣ ଛାଡ଼ିଲା ସେହୁ ଯେତେବେ । ଦୁତେ ବେଢ଼ିଲେ ତତକ୍ଷଣେ ॥
ଗଳାରେ କାଳପାଶ ଦେଲେ । ସେ ଯମ ଦୁତେ ଘେନିଗଲେ ॥
ଏମନ୍ତ କଣ୍ଟୁ ନୂର ନ୍ୟନ୍ତେ । ଆସି ମିଳିଲେ ବିଷ୍ଣୁ ଦୁତେ ॥
ଯବଧ ମାନ୍ତ୍ର ତାଙ୍କୁ ମାର । ସେ କାଳପାଶ ଦୂର କର ॥
ମ୍ଲେଛଙ୍କୁ ଧରି ଘେନିଗଲେ । ଦେବ ବିମାନେ ବସାଇଲେ ॥
ଅନେକ ଜୟ ଜୟ କରି । ପୁଷ୍ପଅଞ୍ଜଳିମାନ ଧରି ॥
ବୃଷ୍ଟି ଯେ କଲେ ତା ମଉଳି । ଦେଇ ଅନେକ ହୁଳହୁଳି ॥
ଆନନ୍ଦ ହେଉଛି ମେଦିନୀ । ବାଜଇ ଜୟଶଙ୍ଖ ଧ୍ୱନି ॥
ରଥ ବାହୁଣ ଗଲେ ଚଳି । ବିଷ୍ଣୁ ଲୋକରେ ଯାଇ ମିଳି ॥
ବିଷ୍ଣୁଙ୍କୁ ଦରଶନ କଲା । ଦେବଲୋକରେ ଜଣା ହେଲା ॥
ଏଣେ ଯେ ଯମଦୁତମାନେ । ପଳାଇଗଲେ ଅଭିମାନେ ॥
କହିଲେ ଯମର ଆଗରେ । ହେ ରାଜା ବୁଝ ଧାଡକାରେ ॥
ଆମ୍ଭେ ଦେଖିଲୁ ଯାହା ଆଜ । କହି ନୁହଇ ଜନ୍ମୁରାଜ ॥
କିପାଇଁ ଦଣ୍ଡ ମିଥ୍ୟା ହେଲା । ତୋର କି ଯମପଣ ଗଲା ॥
ଅତ୍ୟନ୍ତ ମହାପାପୀ ଜାଣ । ଜାତରେ ଅଟଇ ପଠାଣ ॥
ତାହାକୁ ଆଣିଥିଲୁ ଧରି । ଆମ୍ଭଙ୍କୁ ବିଷ୍ଣୁଗଣେ ମାରି ॥
ପାପୀକି ଛଡ଼ାଇଣ ନେଲେ । ପୁଷ୍ପକ ରଥେ ବସାଇଲେ ॥
ଅନେକ ଜୟ ଜୟ ଡାକେ । ଘେନିଣ ଗଲେ ବିଷ୍ଣୁଲୋକେ ॥
ଏତ ବଡ଼ଇ ଆଚମ୍ବିତ । ବହନ ବୁଝ ଜନ୍ମୁନାଥ ॥
ଦୂତଙ୍କ ମୁଖୁଁ ଏହା ଶୁଣି । ସେ ମହା କାଳଦଣ୍ଡପାଣି ॥
ଭରତେ ପେଷିଣ ଦୂତଙ୍କୁ । ପୁଚ୍ଛିଲେ ଚିତ୍ରଗୁପତଙ୍କୁ ॥

ବୁଝିଲେ ପାପପୁଣ୍ୟ କଥା । ସେ ମହାପାପୀର ବ୍ୟବସ୍ଥା ॥
ତାହା ଶୁଣିଣ ମନ୍ତ୍ରୀ ବେନ । ଯେ ପାପପୁଣ୍ୟ ପାଞ୍ଜି ଘେନ ॥
କହିଲେ ରାଜାର ଅଗ୍ରତେ । ମ୍ଳେଚ୍ଛ ପାତକ ଅଛୁ ଯେତେ ॥
ହେ ରାଜ ଶୁଣ ମନ ଦେଇ । ସେ ମହାପାତକୀ ଅଟଇ ॥
ଏ ଜନ୍ମେ ଅନ୍ୟଜନମେ ସେ । ପୁଣ୍ୟ ତ କରିନାହିଁ ଲେଶେ ॥
ଏ ତ ନିଷ୍ଠୁର ପାପୀ ଜାଣ । ଜାତିରେ ଅଟଇ ପଠାଣ ॥
ଲେଖି ମୋ ପତ୍ରେ ଠାବ ନାହିଁ । ଅଧିକ କି କହିବ ମୁହିଁ ॥
ମାହିକ ପଠାଣଙ୍କ ଜାତ । ଶୂକରେ ହାରାମ ବୋଲନ୍ତି ॥
ତେଣୁ ଏ ମରିବାର ବେଳେ । ଘୁଷୁରି ଦେଖି ବେନଡୋଳେ ॥
ହାରାମ ବୋଲି ଡକାପାଡ଼ି । ପିଣ୍ଡୁ ପରାଣ ଗଲା ଛାଡ଼ି ॥
ଏତେକ ବୋଲନ୍ତି କେବଳ । ଆଉ ତ କିଛି ନାହିଁ ଫଳ ॥
ଏଥିରୁ ବୁଝ ହେ ରାଜନ । କେତେକ ବା ହେଲା ତାର ପୁଣ୍ୟ ॥
ତା ଶୁଣି ଧର୍ମରାଜବତ୍ସା । ଧର୍ମ ସଭାକୁ କଲା ପୁଚ୍ଛା ॥
ବୁଝ ହେ ପାପ ପୁଣ୍ୟ ତାର । କେ ଊଣା ଅଧିକ ତାହାର ॥
ତା ଶୁଣି ଧର୍ମସଭା ଜନେ । କହନ୍ତି ରାଜା ସନ୍ନିଧାନେ ॥
ଶୁଣ ହେ ଜନ୍ତୁଙ୍କର ନାଥ । ଆମ୍ଭେ ଯା କହୁଅଛୁଁ ସତ ॥
ତାହାର ଯେତେ ପାପରାଶି । ସମସ୍ତେ ହେଲେ ଭସ୍ମରାଶି ॥
ସୁକୃତ ବଢ଼ିଲା ତାହାର । ତୋହର ନାହିଁ ଅଧିକାର ॥
ତାଠାରେ ପ୍ରଖ୍ୟପଣ କଲେ । ସମସ୍ତେ ନାଶ ଗିବା ଭଲେ ॥
ସାକ୍ଷାତେ ରାମ ନାମ ତାର । ମୁଖରୁ ହୋଇଲା ବାହାର ॥
ହାରାମ ଶବଦ ହୋଇଲା । ପିଣ୍ଡୁ ପରାଣ ଛାଡ଼ିଗଲା ॥
ପାତକ ହୋଇ ଥିର କେତେ । ବଜ୍ରର କର ଭୂହି ଛତ୍ରେ ॥
ପାଞ୍ଚଶକୋଟି ବସୁନ୍ଧରା । ମେରୁ ସାଗର ଆଦିକରି ॥
ସଂସାରେ ଯୁ ଭୂଦ୍ରବ୍ୟ ଯେତେ । ଅପରେ ପୁଣ୍ୟ ଆଉ କେତେ ॥
କାକତ ଘେନି ଯେବେ ତୁଳି । ପଢ଼ିବ ରାମନାମ ବଳି ॥
ତୁ କି ନ ଜାଣୁ ଦେବରାଜ । ଆମ୍ଭଙ୍କୁ ଖୋଜିବା କି କାର୍ଯ୍ୟ ॥

ଶୁଣି ଆନନ୍ଦ ହେଲା ଯମ । ଭଜନ କଲା ରାମନାମ ॥
ଶୁଣ ସୁମନ ଶୁଦ୍ଧଚିତ୍ତେ । ନାମର ମହିମା କି ଏତେ ॥
ଏବେ ହୋ ଶୁଣ ମନଦେଇ । ତୋତେ ଯେ କହିବା କଥାଏ
ସଂସାରେ ପ୍ରାଣୀମାନଙ୍କର । ଯମକୁ ଯିବା ଏତେ ଡର ॥
କହିବା ତହିଁକି ଉପାୟ । ଯେମନ୍ତେ ନୋହିବଟି ଭୟ ॥
ହୋଇ ଅଛନ୍ତି ଅବତାର । ଯମ ସଙ୍ଗତେ ଯୁଦ୍ଧ କର ॥
ତହିଁକି ଶାସ୍ତ୍ରମାନ ଅଛି । ଆଗହୁଁ ରଖିଥାଅ ବାଛି ॥
ବେଶ ବସନ ଆଦି ଯେତେ । ରଖିଣ ଥାଅ ତୋ ଅଗ୍ରତେ ॥
ଯେ ନାମ ଭକେ ଝଙ୍କଧର । ସେ ଅଟେ ବକ୍ଷମ ହୋପର ॥
ତାହାକୁ ଶିରେ ଥିଲେ ଧରି । ଶତ୍ରୁ ଦେଖିଣ ଭୟ କରି ॥
ଶ୍ୟାମସୁନ୍ଦର ମାଳା ଗଳେ । ପକାଇ ଥାଅ ସବୁବେଳେ ॥
ଶ୍ରୀ ବାସୁଦେବ ବାଜୁବନ୍ଧ । ଭୁଜରେ ଆଣ୍ଟିକରି ବାନ୍ଧ ॥
ରଙ୍ଗଅଧର ରଙ୍ଗଗୁଣ୍ଡି । ସର୍ବାଙ୍ଗଯାକ ଥାଅ ମଣ୍ଡି ॥
ଶ୍ରୀକୃପାସିନ୍ଧୁ ଯେ କମର ମହିମା ଅଛି ଅଗୋଚର ॥
ଆଣ୍ଟେ କଟିରେ ଥାଅ ଭିଡ଼ି । ନ ଯିବ ସଂଗ୍ରାମକୁ ଛାଡ଼ି ॥
ପରମାନନ୍ଦ ଫରିଗୋଟି । ବ୍ରହ୍ମାଣ୍ଡ ଯାକ ଥିବ ଘୋଟି ॥
ବାମହସ୍ତରେ ତାହା ଧରି । କେବଳ ଆଣ୍ଟୁକରି ମାରି ॥
କୃଷ୍ଣ କୃପାଳୁ ଅଛି ଗାଢ଼ । ତହିଁରୁ ଖଣ୍ଡା ନାହିଁ ଦାଢ଼ ॥
ହାଣିଲେ ମେରୁ ଛିଣ୍ଡିଯିବ । ଶତ୍ରୁ ଦେଖିଲେ ପଳାଇବ ॥
ତାହା ଦକ୍ଷିଣ କରେ ଧରି । ଯମ ସଙ୍ଗତେ ଯୁଦ୍ଧ କରି ॥
ସେ ଖଣ୍ଡା ଥିଲେ ତୋର କର । କି କରିପାରେ ଯମ ଛାର ॥
ଆଉରି କହୁଅଛୁ ତୋତେ । ଧନୁର ବିଦ୍ୟା ଅଛୁ ଯେତେ ॥
ଶୋଭନ ଚନ୍ଦ୍ର ଚନ୍ଦନା । ଶିରେ ତୁ ଭରିଥାଅ କନା ॥
କରୁଣା କର କର୍ଣ୍ଣାଞ୍ଚଳ । ଖଞ୍ଜିଣ ଥାଅ କର୍ଣ୍ଣମୂଳ ॥
ଚନ୍ଦ୍ର ପଦ୍ମନାଭ ଉଦକ । ହୃଦପଦ୍ମରେ ତାହା ରଖ ॥

ବ୍ରଜ ବଚ୍ଛୋଦ ବୀରବାନା । ବାହେ ବାନ୍ଧୁଛି କରୁ କନା ॥
କାଳିନ୍ଦୀକୂଳଆ କାଚ୍ଛେଣୀ । କଟିରେ ଭିଡ଼ ଥାଅ ପୁଣି ॥
ଶ୍ରୀ ଜନାର୍ଦ୍ଦନ ଧନୁ ଯେଟି । ଅଚଳାଚଳ ବଳ ସେଟି ॥
ଲଗାଅ ଗୁଣ ମଣି ପୁଣ । ଯେବଣ ନାମ ନାରାୟଣ ॥
ସେ ଧନୁ ଗୋଟି କରେ ଧର । କୃଷ୍ଣ କଷଣୀ ଥିବୁ ଭର ॥
ଅନନ୍ତ ଅକ୍ଷୟ ତୂଣିର । ବାମଡ଼ାହାଣେ ତାହା ଭର ॥
ମୁକୁନ୍ଦ ମନଭେଦୀ ଶର । ବସାଇ ଧନୁର୍ଗୁଣେ ଭର ॥
ଆଣ୍ଠୁ କରଣ ତାହା ସନ୍ଧ । ଯେତେ ପାରିଲେ ତେତେ ବନ୍ଧ
ନୃସିଂହ ନାମେ ଯେ ନାରାଚ । କୋଟିଏ ଅଗ୍ନି ପ୍ରାୟେ ତେଜ ॥
ଶ୍ରୀହରି ନାମେ ଯେଉଁ ଶର । ବିଷମ ମୂନ ଅଟେ ତାର ॥
ଗୋବିନ୍ଦ ନାମେ ଯେଉଁ କାଣ୍ଡ । ତେଜେ ଗଞ୍ଜିଇ ମାର୍ତ୍ତଣ୍ଡ ॥
ସେ ଶରମାନ ଥିଲେ କର । କି କରିପାରେ ନାଶକର ॥
ମଥାରେ ବାନ୍ଧ ଯଥାସ୍ତବେ । ପୁରୁଷୋତ୍ତମ ପାଦ ଲବେ ॥
ଯେ ପୀତାମ୍ବର ପୀତ ନୀଳ । ଅଙ୍ଗେ ଉହାଡ଼ ଥାଅ ତୋର ॥
ଓଙ୍କନାଶନ ଜାଲ ଗୋଟି । ଯତ୍ନେ ଘୋଡ଼ାଇ ଥାଅ ପିଠି ॥
କୃପାସମୁଦ୍ର କଣ୍ଠାସ୍ତିକ । କଟିସ୍ଥଳରେ ଥାଅ ରଖି ॥
ତ୍ରୈଲୋକ୍ୟନାମ ଚରୁଆସି । ଜାଗ୍ରତେ କରେ ଥାଅ ଧରି ॥
ଶ୍ରୀ ବାସୁଦେବ ଯେ ବରଛି । ଦକ୍ଷିଣ କରେ ଥାଅ ରଖି ॥
ସେ ମହାକ୍ଷମାଶୀଳ ଶେଲ । କୋଟିଏ ଯମଦାଢ଼ ତୁଲ ॥
ରକ୍ଷଣ ଥିବୁ ଯେବେ କତ । କି କରିପାରେ ଯମଭୀତ ॥
ଏମନ୍ତ ହୋଇ ଯୁଦ୍ଧ କଲେ । ଯମ ପଳାଇ ଯିବ ଭଲେ ॥
ନୋହିଲେ ଏମନ୍ତ ତୁ କର । ସେବେ ନଳୀଆ ରୂପଧର ॥
ଶ୍ରୀବନମାଳି ନାମେ ନଳୀ । ଭୁଜେ ପାରିବୁ ଯେବେ ତୋଳି ॥
ଯେ ଦାରୁବ୍ରହ୍ମ ବାହୁଦର୍ହିଁ । ଗୋବିନ୍ଦ ଗୁଳାକୁ ପକାଇ ॥
ଗଜଉଦ୍ଧାର ଗଜକାଠି । ନଳୀରେ ଧରିଥାଅ ଯୋଖି ॥

ନନ୍ଦୁଆଡ଼କୁ ସଳଖିବୁ । ଗ୍ରନ୍ଥରେ ପକାଇ ରଖିବୁ ॥
ଶ୍ରୀମଧୁସୂଦନ ମାଣ୍ଡୁକ । ମନ ନଷ୍ଟନ ଥିବୁ ରଖି ॥
ଯେ ରଘୁନାଥ ରଞ୍ଜକରେ । ଭରିବୁ ସେ ନଳୀ ରନ୍ଧ୍ରରେ ॥
ଅନନ୍ତ ଅନଳ ଲଗାଇ । ଆଗହୁଁ ରଖିଥିବୁ ଭୁଇଁ ॥
ଶ୍ରୀରାମ ସୁମର ଲଣ୍ଠବୁ । ନିର୍ଭୟ ହୋଇ ଏକା ଥିବୁ ॥
ଶ୍ରୀଜଗନ୍ନାଥ ନାମଗୋଟି । ଛୁଟିଲେ ମେରୁ ଯିବ ଫୁଟି ॥
ନବଦ୍ଧ ଶୁଣି ଜନ୍ତୁମାନେ । ପଡ଼ିବ ମୂର୍ଚ୍ଛାଗତ ହୋଇ ॥
ଚେତନା ପାଇଣ ଉଠିଲେ । ପଞ୍ଚକୁ ନ ଗୃହିଁବ ଭଲେ ॥
ପୁତକୁ ତାର ପଳାଇବ । ଥିଲେ କି ଜୀବନ ପାଇବ ॥
କହିଲି ଛନ୍ଦିବିଦ୍ୟାସାର । ତୋ ମନ ଯାହା ଇଚ୍ଛା କର ॥
ଆବର କହୁଅଛୁ ତୋତେ । ସଂସାରେ ବ୍ୟାଧି ଅଛି ଯେତେ ॥
ତହିଁକି ଉପାୟ ଯେ ଅଛି । ତାହା ତୋ ଆଗରେ କହୁଛି ॥
ସକଳ ମହୌଷଧି ମୂଳ । ଯେ ପ୍ରଭୁନାମ ଆଦ୍ୟମୂଳ ॥
ପତିତପାବନ ପିପ୍ପଳ । ଯେତେ ବା ଖାଇବାକୁ ଭଲ ॥
ତେତେ ମାତ୍ରକ ବାଛି ଧର । ଶ୍ରୀକୃଷ୍ଣ ନାମେ ସୁଣ୍ଠି କର ॥
ଗୋବିନ୍ଦ ନାମରେ ମରିଚ । ବ୍ରଜଚନ୍ଦ୍ରଙ୍କ ଖଣ୍ଡ ପାଞ୍ଚ ॥
ଯେ ଦମ୍ଭାନାଧି ଦେବଦାରୁ । ଖଣ୍ଡିଏ କରିବ ତହିଁରୁ ॥
ଶ୍ରୀହରି ଅଳାଇଚ କାଣ୍ଡ । ଯେଉଁ ଗୋଟି କେତେ ବାଛି ॥
ନୃସିଂହ ନାମେ ନାଗେଶ୍ୱର । ତୋଳା ପ୍ରମାଣେ ତାହା କର ॥
ଶ୍ରୀରଘୁନାଥ ନାମ ସାର । ରସରେ ସେ ରସସିନ୍ଦୂର ॥
ଯେ ପୀତାମ୍ବର ସୀତା କାନ୍ତି । ଘେନ ଏ ନବ ଦ୍ରବ୍ୟ ବାଛି ॥
ଶ୍ରୀବାସୁଦେବ କ୍ଷମାଶୀଳ । ରଖ ସମସ୍ତ ଏକଠୁଳ ॥
ଶ୍ରୀପତି ଶିଳପୁଆ ଧରି । ଗୋବିନ୍ଦ ନାମେ ଗୁଣ୍ଡାକରି ॥
ଅନନ୍ତ ଅଦାରସ ସଙ୍ଗେ । ଗୋବିନ୍ଦ ଚେତଣ ଶ୍ରୀଅଙ୍ଗେ ॥
ମଧୁସୂଦନ ମହୁ କାଛି । ପରୀକ୍ଷ କରିବ ତହିଁକି ॥

ଶ୍ରୀରାମ ସୁମର ପିଇବ । ଅଜର ଅମର ହୋଇବ ॥
କହିଲ ଯେବଣ ଔଷଧି । ଏଣେ ଖଣ୍ଡିଲ ଭବବ୍ୟାଧି ॥
ଏଥେ ମିଶଇ ଚିତ୍ତ ଯାର । କି କରି ପାରେ ବ୍ୟାଧି ଜ୍ୱର ॥
ଶୁଣ ସୁମନ ହେତୁ ଦେଇ । ଏଥେ ନିର୍ମଳ ଚିତ୍ତ ହୋଇ ॥
ଯେବଣ ପ୍ରାଣୀ ଥିବ ଶିଖି । ହୃଦପଦ୍ମରେ ଥିବ ରଖି ॥
ସେ ଯେଣେ ଇଚ୍ଛା ତେଣେ ଯାଉ । କାହିଁ ଭୟ ନାହିଁ ଆଉ ॥
ଘୋର ସଂଗ୍ରାମେ ରାଜଦ୍ୱାରେ । ବନ ଗହନ ବିପିନରେ ॥
ଜଳ ପବନ ହୁତାଶନ । କି ଅବା ବିଦେଶେ ଗମନ ॥
ଖଳ ପଶୁଙ୍କ ଦନ୍ତ ଘାତ । ଭୁଜଙ୍ଗ ବିଷର ସହିତ ॥
ଖଣ୍ଡି ଯେ ଚଉର୍ଯ୍ୟ ସହିତେ । ଗ୍ରହପୀଡ଼ାହିଁ ପ୍ରେତ ଯେତେ ॥
ଲଗିବ ନାହିଁ ଏଥୁଁ ଭୟ । ଯେବେ ଏଥିରେ ଥିବ ଲୟ ॥
ପ୍ରଭୁଙ୍କ ନାମ ଯେତେ ସତ । ସ୍ୱରୂପ ଯେବେ ସାଧୁପଥ ॥
ମହିମା ଯେବେ ସତ୍ୟ ପୁଣ । ତେବେ ଏ କଥା ପରମାଣ ॥
ଏ ଦାର୍ଢ୍ୟଭକ୍ତି ରସାମୃତ । ପ୍ରାକୃତବନ୍ଧେ କଲି ଗୀତ ॥
ସଦା ସମ୍ପୂର୍ଣ୍ଣ ଜୟ କର । ରାମଚରିତ ଧନୁର୍ଦ୍ଧାରୀ ॥
ଜାନକୀବଲ୍ଲଭ ଚରଣେ । ମୋ ଚିତ୍ତ ରହୁ ଅନୁକ୍ଷଣେ ॥
ସୁଜନେ କ୍ଷମା କର ଦୋଷ । ମନରେ ନ ଘେନିବ ରୋଷ ॥
କେବଳ ନ କର ନିରାଶ । ମୁଁ ତୁମ୍ଭ ଦାସଙ୍କର ଦାସ ॥
ଏ ମୋର ଦୀନ ମୂଢ଼ମତି । ନ ଜାଣେ ପାଠଶାସ୍ତ୍ର ଗତି ॥
ନ ବସେ ସାଧୁଙ୍କ ସଙ୍ଗତେ । ପାପକୁ ଭୟ ନାହିଁ ଚିତ୍ତେ ॥
ଦାମ୍ଭିକ ନାସ୍ତିକ କପଟୀ । ନିରତେ ବିଷୟଲମ୍ପଟୀ ॥
ଆସନ ଶୟନ ସ୍ୱପନେ । କେବଳ ଧ୍ୟାନ ଚିନ୍ତା ମନେ ॥
ନାରୀ ସଙ୍ଗମ ମହାସୁଖ । ଦେବା ଦୟାରେ ମୁଁ ବିମୁଖ ॥
ପରହିଂସକ ବାଦୀ କ୍ରୋଧୀ । ସାଧୁ ସେବାରେ ନାହିଁ ବୁଦ୍ଧି ॥
ମୋ ମନ ମୋହର ଆୟତ୍ତେ । ରହିଲ ନାହିଁ କଦାଚିତେ ॥

ଏଣୁ ମୁଁ ସାଧକ ଚରଣେ । ଶରଣ ମାଗେ ଅନୁକ୍ଷଣେ ॥
ସୁଜନେ ଏହା ଯେବେ ଶୁଣିବ । ଏ ଭବ ସଂସାରୁ ତରିବ ॥
ଏ ବଡ଼ ଅପୂର୍ବ ଚରିତ । ଶୁଣି ଶରଧା ଯାର ଚିତ୍ତ ॥
ତାର କଳୁଷ ଥିବ ଯେତେ । ରହିବ ନାହିଁ କଦାଚିତେ ॥
ଜୀବନ୍ତେ ଇହଲୋକେ ବାସ । ମଲେ ବୈକୁଣ୍ଠେ ପରବେଶ ॥
ଅପୁତ୍ର [illegible]କୁ ଲଭିବ । ଅନ୍ଧହିଁ ଲୋଚନ ପାଇବ ॥
ଏ କଥା ଅଟଇ ପ୍ରମାଣ । ସୁଜନେ ମନଦେଇ ଶୁଣ ॥
କହଇ ରାମଦାସ ଦ୍ୱିଜ । ବିଶ୍ୱାସ ଅଟେ ମୂଳବୀଜ ॥
ବିଶ୍ୱାସ ବିନା ଯେତେ କର୍ମ । ପର ଅପର ଗୃହାଶ୍ରମ ॥
ଏ ଦାର୍ଢ୍ୟଭକ୍ତି କଥାମାନ । ପଚିଶ ଅଧାରେ ସମ୍ପୂର୍ଣ୍ଣ ॥
ଶ୍ରୀବୀରକେଶରୀ ଦେବଙ୍କ । ସମ୍ପୂର୍ଣ୍ଣ ବୟାଳିଶ ଅଙ୍କ ॥
ଯେ ତୁଳା ପଞ୍ଚମୀ ଦିବସେ । ଶୁଦ୍ଧ ଶୁକଳ ହରି ବାସେ ॥
ଚିତ୍ରା ନକ୍ଷତ୍ର ରବିବାରେ । ତୈତିଳ ନାମ କରଣରେ ॥
ଶୁଭ ନାମରେ ଯେଉଁ ଯୋଗ । ପଞ୍ଚାଶ ଦଣ୍ଡ ଥିଲ ଭୋଗ ॥
ଏମନ୍ତ ଶୁଭ ଅନୁକୂଳେ । ପ୍ରାଣୀଙ୍କ ଶ୍ରବଣ ମଙ୍ଗଳେ ॥
ସଂପୂର୍ଣ୍ଣ ହେଲା ଏ ଚରିତ । କହଇ ଲଛମନ ସୁତ ॥

ଇତି ଶ୍ରୀଦାର୍ଢ୍ୟଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ
ହାରାମ ଖଣ୍ଡେ ମ୍ଳେଚ୍ଛମୋକ୍ଷଣେ ନାମ
ପଞ୍ଚବିଂଶୋଽଧ୍ୟାୟଃ ।

---

ସମାପ୍ତ

ମୁଦ୍ରାକର—ଶ୍ରୀ ଚିନ୍ତାମଣି ମିଶ୍ର, ନବଜୀବନ ପ୍ରେସ୍, କଟକ-୨

# ଦାର୍ଢ୍ୟତାଭକ୍ତି ରସାମୃତ

## ଦ୍ୱିତୀୟ ଭାଗ

### ଷଡ଼୍‌ବିଂଶ ଅଧ୍ୟାୟ

### କୁଳଶେଖର ରାଜା ସମ୍ବାଦ

ଚୈତନ୍ୟ ଉବାଚ

ନମୋ ଶାରଦା ଗଣନାଥ । ତୁମ୍ଭ ଚରଣେ ମୋର ମାଥ ॥
କହେ ଚୈତନ୍ୟ ଅତିତୋଷେ । ସୁମନ ନୃପତିର ପାଶେ ॥
ହେ ରାଜା ଶୁଣ ଅବଧାନ । କହିବି ଅପୂର୍ବ ବିଧାନ ॥
ପବିତ୍ର ଓଡ଼ିଶା ଖଣ୍ଡରେ । ଏକ ନୃପତି ରାଜ୍ୟ କରେ ॥
ସମସ୍ତ ରାଜାଙ୍କ ଅଗ୍ରଣୀ । ନୃପତି ପଣେ ତାଙ୍କୁ ଗଣି ॥
ନାମ ତାଙ୍କ କୁଳ ଶିଖର । ବଡ଼ ପ୍ରତାପୀ ଦଣ୍ଡଧର ॥
ତେଜସ୍ୱୀପଣେ ଦିବାକର । ହୃଦୟ ଗମ୍ଭୀର ସାଗର ॥
ଧଇର୍ଯ୍ୟ ପଣେ ମହାମେରୁ । ଦାତା ପଣରେ କଳ୍ପତରୁ ॥
ପଣ୍ଡିତ ପଣେ ବୃହସ୍ପତି । ସହିଷ୍ଣୁ ପଣେ ବସୁମତୀ ॥
ସୁନ୍ଦର ପଣେ କାମଦେବ । କ୍ଷମୀସୁପଣେ ସଦାଶିବ ॥
ଶୁଦ୍ଧ ବିବେକ ଶୁଚିମନ୍ତ । ପାପକୁ ମହାଭୟ ଚିତ୍ତ ॥
ରାଜ ସମ୍ପଦ ଅପ୍ରମିତ । କୁବେର ସମ ଧନବନ୍ତ ॥
ଦୁଃଖୀ ଦରିଦ୍ର ଦୁଃଖ ହର । ପ୍ରଜା ପାଳଇ ପୁତ୍ରପର ॥

ଦେବ ବ୍ରାହ୍ମଣ ଅତିପ୍ରିୟ । ଶ୍ରୀଗୁରୁ ପାଦେ ଭକ୍ତିମୟ ॥
ସେ ରାଜା ଧର୍ମପରାୟଣ । ସେବଇ ଶ୍ରୀଗୁରୁ ଚରଣ ॥
ସାଧୁଙ୍କ ସେବା କରୁଥାଇ । ହରି ଚରଣେ ମନ ଦେଇ ॥
ଶ୍ରୀକୃଷ୍ଣ କଥା ବିନୁ ଆନ । ନ ଜାଣେ କେବେହେ ତାର ମନ ॥
ଶ୍ରୀହରି ଜନ୍ମ ରସ ଗୁଣ । ଶ୍ମରନ୍ତେ ପଠନ ଶ୍ରବଣ ॥
ସର୍ବଦା କାଳେ ଶୁଚିମନ୍ତ । ସତ୍ୟ ବଚନ ବ୍ରତମତ ॥
ଏମନ୍ତେ ରାଜା ଏକଦିନେ । ବିଜୟ ରତ୍ନସିଂହାସନେ ॥
ସୈନ୍ୟ ଅଛନ୍ତି ପଞ୍ଚୁଆଶ । ଗଜ ତୁରଙ୍ଗ ଆଦିକରି ॥
ସଭା ମଣ୍ଡାଇ ନୃପବର । କରିଅଛନ୍ତି ବିହରଣ ॥
ସାଧୁ ବୈଷ୍ଣବ ଆଦିକରି । ବିପ୍ର ସନ୍ନ୍ୟାସୀ ବ୍ରହ୍ମଚାରି ॥
ଦେଶୀ ବିଦେଶୀ ଏ ସଂସାରେ । ସମସ୍ତ ଗୋଷ୍ଠୀ ସେହିଠାରେ ॥
ଶ୍ରୀହରି ରସ କଥାମାନ । କହୁଅଛନ୍ତି ସାଧୁଜନ ॥
ରାଜା ଶ୍ରବଣ ତାହା କରି । ଅଛନ୍ତି ଦେହ ବୁଦ୍ଧି ହାରି ॥
ଏମନ୍ତ ସମୟରେ କଥା । ଶୁଣ ସୁମନ ମହାରଥା ॥
ଶ୍ରୀଗୁରୁଦେବ ତାହାଙ୍କର । ବିଜୟ କଲେ ସେହିଠାର ॥
ଦେଖି ସେ ରାଜା ଅତିତୋଷେ । ମିଳିଲେ ଯାଇ ଗୁରୁପାଶେ ॥
ସାଷ୍ଟାଙ୍ଗେ କରି ଦଣ୍ଡବତ । ଉଠି କପାଳେ ଯୋଡ଼ି ହସ୍ତ ॥
ଅତି ବିନୟ ଭାବ ହୋଇ । ଗୁରୁଙ୍କୁ ଦିବ୍ୟାସନ ଦେଇ ॥
ଦେଖି ସେ ନୃପତିର ଭାବ । ଆସନେ ବସି ଗୁରୁଦେବ ॥
ରାଜାଙ୍କୁ ବସ ହୋ ବୋଇଲେ । ଶୁଣି ନୃପତି ବିଜେ କଲେ ॥
ଶ୍ରୀଗୁରୁ ଆଜ୍ଞା ପାଇ ବସି । ପୁଣି ଶ୍ରୀହରି ଭାବେ ରସି ॥
ଏମନ୍ତ ବେଳେ ମାଛି ଗୋଟି । ଉଡ଼ି ସେ ଅଇଲା ଚହଟି ॥
ବସିଲା ରାଜାର କପାଳେ । ରୁଧିର ପିଏ ଆକୁଳ ହେଲେ ॥
ରାଜା ଅସୁଖ ଭାବ ହୋଇ । ଶ୍ରୀହସ୍ତେ ଦେଲେକ ଉଡ଼ାଇ ॥
ଲଲାଟେ ଶ୍ରୀହସ୍ତ ବାଜିଲା । ମାଛି ତକ୍ଷଣେ ଉଡ଼ିଗଲା ॥

କପାଳୁ ଦଣ୍ଡବତ ଧୂଳି । ଝଡ଼ି ପଡ଼ିଲା ମହୀସ୍ଥଳି ॥
ତା ଦେଖି ଗୁରୁଦେବ ହସି । ମଥା ପୋଛଣ ମୌନେ ବସି ॥
ତାହା ଜାଣିଲେ ନୃପମଣି । ସେ ତ ବିବେକ ଚୁଡ଼ାମଣି ॥
ତକ୍ଷଣେ ଉଠି ଉଭାହୋଇ । ଜଣାନ୍ତି ଗଦଗଦ ହୋଇ ॥
ମୁଖ ମଳିନ କି ନିମନ୍ତେ । ଏ କଥା ଆଜ୍ଞାହେଉ ମୋତେ ॥
ତା ଶୁଣି ଗୁରୁଦେବ ଭଣି । ଶୁଣ ହେ ନୃପତି ଅଗ୍ରଣୀ ॥
ଯେ ଜନ ଶ୍ରୀଗୁରୁ ଛାମୁରେ । ସାଷ୍ଟାଙ୍ଗେ ଦଣ୍ଡବତ କରେ ॥
ତା ଅଙ୍ଗେ ଲାଗେ ଯେତେ ଧୂଳି । ତେତେ ଜନ୍ମର ପାପ ଦଳି ॥
ସେ ଧୂଳି ଦେଖି ଯେଉଁ ନର । ହସ୍ତରେ ଝାଡ଼ି କରେ ଦୂର ॥
ତାର ପାତକ ହୁଏ କେତେ । ବିସ୍ତର କର ହୃଦଗତେ ॥
ତୋର ଶ୍ରୀହସ୍ତ ବାଜିବାରୁ । ଧୂଳି ଝଡ଼ିଲା କପାଳରୁ ॥
ତେଣୁ ପୋଛିଲୁ ଆମ୍ଭେ ମଥା । ତୁ କି ନ ଜାଣୁ ମହାରଥୀ ॥
ଶୁଣି ନୃପତି କମ୍ପମାନ । ବଦନୁଁ ନ ସ୍ଫୁରେ ବଚନ ॥
ଶୋକେ ପୂରିତ କଳେବର । କମ୍ପଇ ରାଜାର ଅଧର ॥
ସଜଳ କରି ନେତ୍ର ଦୁଇ । ରହିଲେ ସ୍ତମ୍ଭୀଭୂତ ହୋଇ ॥
କେତେହେଁବେଳେ ଗୃହେଁଦେଲେ । ଗୁରୁଙ୍କୁ ପାଟେ ନ ଦେଖିଲେ
ଉଭାରି ରାଜା ସଭାମୁଖେ । ପୁଚ୍ଛିଲେ ଅତି ମନଦୁଃଖେ ॥
ହେ ମହାସଭାଜନେ ଶୁଣ । ମୋ ପାପ ହୁଏ ଯା ପ୍ରମାଣ ॥
ଶ୍ରୀଗୁରୁଦ୍ରୋହ ଦୋଷ ମୋର । କେମନ୍ତେ ହେବ ଏବେ ଦୂର ॥
ଏଥକୁ ଦେଖ ଶାସ୍ତ୍ରପଥ । କିବା ଲେଖିଛି ପ୍ରାୟଶ୍ଚିତ୍ତ ॥
ନୋହିଲେ ମରିବି ଅବଶ୍ୟ । ଏ ରାଜପଦେ ନାହିଁ ଆଶ ॥
ତାହା ଶୁଣିଣ ବିପ୍ରଜନ । ଖୋଜି ସକଳ ଶାସ୍ତ୍ରମାନ ॥
ଶ୍ରୀଗୁରୁଦେବ ପଦ୍ଧତିରେ । ଦେଖିଲେ ଲେଖିଛି ତହିଁରେ ॥
ଅତଣାଧ୍ୟୁରେ କାହ୍ନା କଥା । କରି ଯେ ନୁହଇ ସର୍ବଥା ॥
ଏମନ୍ତ ଦେଖି ବୁଧଜନେ । ନ କହି ରହିଲେ ମଉନେ ॥

ତା ଶୁଣି ବୋଲେ ନୃପବର । ନ କହ କପଟ ଗୋପ୍ୟକର ॥
ଏ ମୋର ପାପକ୍ଷୟ ଅର୍ଥେ । ଯେ ବା ଲେଖିଛି ଶାସ୍ତ୍ରପଥେ ॥
ତାହା କରିବ ସତ୍ୟ ମୋର । ଏଥକୁ ସାକ୍ଷି ଦିବାକର ॥
ଏମନ୍ତ ଶୁଣି ବିପ୍ର ଭଲେ । ପ୍ରବନ୍ଧ ଫିଟାଇ ପଢ଼ିଲେ ॥
ହେ ରାଜା ଶୁଣ ସାବଧାନେ । ଗୁରୁଚରଣେ ଯେଉଁମାନେ ॥
ସାଷ୍ଟାଙ୍ଗେ ଦଣ୍ଡବତ କରି । ସମ୍ମୁଖରେ ରହନ୍ତି ଡରି ॥
ତା ଅଙ୍ଗେ ଥାଇ ରେଣୁ ଯେତେ । ତେତେ ଜନମ ପରିଯନ୍ତେ ॥
ସଞ୍ଚିଥାଇ ଯେ କଳୁଷ । ତକ୍ଷଣେ ହୋଇ ସର୍ବ ନାଶ ॥
ବନ୍ଦନାପଣେ ଯେଉଁମାନେ । ସେ ରେଣୁ ଝାଡ଼ନ୍ତି ଅଜ୍ଞାନେ ॥
ତାଙ୍କ ସୁକୃତ ଆଉ ନାହିଁ । କେବଳ କଥାଏ ଅଛଇ ॥
ଏମନ୍ତ କରି ଯେବେ ପାରି । ସେ ଗୁରୁଦ୍ରୋହ କଷ୍ଟ ତରି ॥
ତମ୍ବାପଟାଏ ଗଢ଼ାଇବ । ଦ୍ୱାଦଶ ହାତ ଦୀର୍ଘ ହେବ ॥
ପ୍ରସ୍ଥେ ଯେ ତିନି ହାତ ଜାଣ । ଚଉକେ ବହଳ ପ୍ରମାଣ ॥
ପୋଡ଼ାଇ ତମ୍ବା ଗୃହ ଖମ୍ବ । ସେ ପଟା କରିଥିବ ଦମ୍ଭ ॥
ଅଙ୍ଗାର ଅଗ୍ନି ତଥିତଳେ । ଦେଇଣ ମହାମନ୍ଦ ଜାଳେ ॥
ସେ ପଟା ତାତି ଅଗ୍ନି ପ୍ରାୟ । ଦିଶିବ ଅତି ଘୋରମୟ ॥
ତହିଁରେ ଶତ ଅଷ୍ଟବାର । ପ୍ରମାଣ କରିବ ସେ ନର ॥
ତେବେ ତ ଗୁରୁଦ୍ରୋହ ଦୋଷ । ତା ଦେହୁଁ ହୋଇବ ବିନାଶ ॥
ନୋହିଲେ ଆନେ ନାହିଁ ପାର । ଏହା ଲେଖିଛି ବେଦବର ॥
ଏମନ୍ତ ଶୁଣି ସେ ନରେନ୍ଦ୍ର । ମୁଖେ ବିକାଶେ ପୂର୍ଣ୍ଣଚନ୍ଦ୍ର ॥
ଲୋମ ଉଦ୍‌ଗମ ଭାବ ବନ୍ଧ । ଆନନ୍ଦ କେ ପାରିବ କହି ॥
ହସି କହଇ ନୃପରାଣ । ଏବେ ମୋ ହୋଇଲା କାରଣ ॥
ଏମନ୍ତ କହି ତାମ୍ରକାରଙ୍କୁ । ହକାରି ତୁରିତେ ପାଖକୁ ॥
ତମ୍ବା ଲେଖାଇ ଦେଲା ଯେତେ । ପଟା ନିର୍ଦ୍ଧାରିଅ ବିଧିମତେ ॥
ତାମ୍ରକାରମାନେ ଆଜ୍ଞା ପାଇ । ପଟା ନିର୍ମାଣ କଲେ ଯାଇ ॥

ରାଜା ଗୁମୁରେ ଦେଲେ ନେଇ । ଦେଖି ଆନନ୍ଦ ନରସାଇ ॥
ସୁଆଁସୀ ବଳକୁ ହକାରି । ଖମ୍ବ ପୋତଇ ନିର୍ଦ୍ଦେଶ କରି ॥
ସେ ପଟା ଥାପି ସେହି ଖମ୍ବେ । ନିଶ୍ଚଳ କରି ମହାଦମ୍ଭେ ॥
ତଳେ ଅଙ୍ଗାର ଅଗ୍ନି ଦେଇ । ଜାଳିଲେ ମହାହନ୍ତ ତାଇ ॥
ପ୍ରବଳ ହୋଇ ଅଗ୍ନି ଗୋଟା । ଲାଗି ପାଚିଲା ତମ୍ବା ପଟା ॥
ସେ ମହାଅଗ୍ନି ତେଜ ପାଇ । ପାଶେ ନ ପାରେ କେହି ରହି ॥
ଏମନ୍ତ ବେଳେ ସେ ରାଜନ । ତୀର୍ଥ ଜଳରେ କରିସ୍ନାନ ॥
କଣ୍ଠ ହୃଦରେ ବେନିଭୁଜେ । ଲଲାଟେ ତିଳକ ବିରାଜେ ॥
ମସ୍ତକେ ତୁଳସି ମଞ୍ଜରୀ । ଗଳାରେ ସେହି ମାଳା ଭରି ॥
ପିନ୍ଧଣ ଅମଳାନ ବାସ । କାଛିଛନ୍ତି ଯେସନ୍ତେ ବୀରବେଶ ॥
ବିଭୂତି ବିଲେପନ କାୟେ । ଦିଶନ୍ତି ବ୍ରହ୍ମବେତ୍ତା ପ୍ରାୟେ ॥
ଶ୍ରୀମୁଖେ ନିର୍ମାଲ୍ୟ କବଳ । କରି ବିଜୟେ ମହୀପାଳ ॥
ଗୃହ ବାଗରେ ନର ନାରୀ । ବେଢ଼ଣ ଶତେ ପୁର କରି ॥
ମନ୍ତ୍ରୀ ପାତ୍ର ଅମାତ୍ୟ । ବନ୍ଧୁ ବାନ୍ଧବ ଇଷ୍ଟ ମିତ୍ର ॥
ଯୋଗୀ ସନ୍ନ୍ୟାସୀ ବ୍ରହ୍ମଚାରୀ । ବୈଷ୍ଣବ ଦୁର୍ଭିକ୍ଷ ଭିକାରୀ ॥
ବ୍ରହ୍ମ କ୍ଷତ୍ରିୟ ଗୃହଜାତ । ଅପରେ କେତେ ଲୋକ ଛନ୍ତି ॥
ସ୍ତ୍ରୀ ପୁରୁଷ ଆଦିକରି । ଜନଗହଳେ ସୃଷ୍ଟି ପୂରି ॥
ସଂସାରେ ପଡ଼ୁଅଛି ଦୂରି । ଯେ ବାଳ ବୃଦ୍ଧ ଆଦିକରି ॥
ବାଦ୍ୟ ନିଶାଣ ମୁଖ ଗୋଳ । ମେଦିନୀ ହୁଏ ଟଳମଳ ॥
ଏମନ୍ତ ଦେଖି ସର୍ବଜନ । ବୋଲନ୍ତି ହେ ମହାରାଜନ ॥
ଏ କଥା କେବେହେଁ ନ କର । ବୃଥା ନ ନାଶ କଳେବର ॥
ଆମ୍ଭଙ୍କୁ ନ କର ଅନାଥ । ବୋଲି ମସ୍ତକେ ଦେଲେ ହସ୍ତ ॥
ତା ଶୁଣି ନୃପ ଚୂଡ଼ାମଣି । ବୋଲନ୍ତି ଶୁଣ ନରଶ୍ରେଣୀ ॥
କିପାଇଁ ହୋଇବ ଅନାଥ । ସବୁରି ପ୍ରଭୁ ଜଗନ୍ନାଥ ॥
ମୋ ଜୀବ ଯିବାକୁ ସଂଶୟ । ନ କର କାହାରି ହୃଦୟ ॥

ଜନ୍ମ ଲଭିଲେ ନିଶ୍ଚେ ମରି । ମରଣ ତ୍ରାସରେ କମ୍ପା ଡରି ॥
କ୍ଷମା ମୁଁ ଗୁରୁଦ୍ରୋହ ଦୋଷେ । ଗଞ୍ଜି ହୋଇବ ଯମପାଶେ ॥
ସ୍ଥାବର ଆଦି ଦେହ ବନ୍ଧ । ନିଶ୍ଚଳ ହୋଇ କେହି ନାହିଁ ॥
ଏକଥା ନୁହଇ ଉଚିତ । ନୋହିବ ମୋର ଆନ ମତ ॥
ଯାଉ ବା ରହୁ ଏ ଶରୀର । ଏହା ଜାଣନ୍ତୁ ଚକ୍ରଧର ॥
ତୁମ୍ଭେ ସମସ୍ତେ ବୋଲ ହରି । ବାଳକ ବୃଦ୍ଧ ଆଦି କରି ॥
ଏମନ୍ତ କହି ଦଣ୍ଡଧାରୀ । ଚିନ୍ତିଲେ ନୀଳାଦ୍ରି ବିହାରୀ ॥
ଜୟ ହେ ଶଙ୍ଖଚକ୍ରପାଣି । କମଳାଦେବୀ ପ୍ରାଣମଣି ॥
ବ୍ରହ୍ମା ଇନ୍ଦ୍ରାଦି ଏ ଜଗତ । ଯାର ଆଜ୍ଞାରେ ଯାତାୟାତ ॥
ଶଶାଙ୍କ ରବି ଆଖଣ୍ଡଳ । ଯେ ଆଦି ସର୍ବ ଦିଗପାଳ ॥
ମେରୁ ବସୁଧା ସିନ୍ଧୁ ବାରି । ଏ ନିତ୍ୟ ଯାର ଆଜ୍ଞାକାରୀ ॥
ସୁର ମହେଶ ପୁରନ୍ଦର । ଯକ୍ଷ ରାକ୍ଷସ ଯେ କିନ୍ନର ॥
ସିଦ୍ଧ ଯୋଗୀନ୍ଦ୍ର ମୁନିଗଣ । ଚିନ୍ତନ୍ତି ଯେ ହରି ଚରଣ ॥
ମୁଁ ଅବା ସାମାନ୍ୟ ମାନବ । କାହୁଁ ଜାଣିବି ତାଙ୍କ ଭାବ ॥
ହେ ପ୍ରଭୁ ତୁମ୍ଭେ ଆଦିମୂଳ । ସମସ୍ତେ ତୋର ପତ୍ର ଡାଳ ॥
ଏଣୁ ତୋ ଅଭୟ ଚରଣ । ଆଜ ମୁଁ ପଶିଲି ଶରଣ ॥
ତୁ ନାଥ ବାଞ୍ଛାକଳ୍ପତରୁ । ମହାମହିମା ମହାମେରୁ ॥
ଜନ ଆରତ ଖଣ୍ଡିବାରେ । ତୋ ସମ ନାହିଁ ବ୍ରହ୍ମାଣ୍ଡରେ ॥
ଚିନ୍ତାର୍ଥୀ ଚିନ୍ତା ତୃଣବନ । ତୁ ଯେ ପ୍ରବଳ ହୁତାଶନ ॥
ବିପତ୍ତିସାଗର ବିନାଶି । ତୁ ଯେ ଅଗସ୍ତି ମହାଋଷି ॥
ବିଷୟ ବିଷକୁ ଯେ ଗଦ । ତୋର ଅଭୟ ପଦ୍ମପାଦ ॥
ଭକ୍ତ୍ୟ କୁମୁଦବନପାଳ । ତୁମ୍ଭେ ଯେ ଚନ୍ଦ୍ରମା ମଣ୍ଡଳ ॥
ଚିନ୍ତାର୍ଥୀ ଜନ ଚିନ୍ତାମଣି । ଅଶେଷ ବ୍ରହ୍ମାଣ୍ଡ କାରେଣୀ ॥
ଏ ମୋ ଆରତ ନିବାରଣେ । ତୁମ୍ଭହୁଁ ନାହିଁ ଅନ୍ୟ ଜଣେ ॥
ଏ ମୋର ଅନଳ ଜ୍ୱାଳାରୁ । ଉଦ୍ଧର ଧର ମହାମେରୁ ॥



କୁଳଶେଖର ରାଜା ଜଳନ୍ତା ତମ୍ବାପାଟ ଉପରେ ଭଗବାନଙ୍କ କୃପାରୁ କଷ୍ଟ ଆଘାତ ପାଉନାହାନ୍ତି ।

ରଖ ନ ରଖ ତୁମ୍ଭ ଇଚ୍ଛା । ମୁଁ ଏବେ ଦେଖିଲି ଏ ଦୀକ୍ଷା ॥
ଯାଉ ବା ଥାଉ ଏ ଶରୀର । ନ ଲାଗୁ ଗୁରୁଦ୍ରୋହ ମୋର ॥
ଏମନ୍ତ ବୋଲି ମହାବଳୀ । ମୁଖେ ରଖିଲେ ନାମାବଳୀ ॥
ଶ୍ରୀରାମ ଶ୍ରୀକୃଷ୍ଣ ଶ୍ରୀହରି । ମୁକୁନ୍ଦ ମାଧବ ମୁରାରି ॥
ଅଚ୍ୟୁତ ଅନନ୍ତ ଗୋବିନ୍ଦ । ଶ୍ୟାମସୁନ୍ଦର ସଦାନନ୍ଦ ॥
ବ୍ରଜସୁନ୍ଦର ବଂଶୀପାଣି । ରାଧା ବଲ୍ଲଭ ପ୍ରାଣମଣି ॥
ଦୟାସାଗର ଦାଶରଥି । ଶ୍ରୀଧର ଶ୍ରୀକର ଶ୍ରୀପତି ॥
ଲକ୍ଷ୍ମୀନାୟକ ଚକ୍ରପାଣି । ସୀତାବଲ୍ଲଭ ରଘୁମଣି ॥
ହେ ବନମାଳୀ ହେ କଂସାରି । ଶ୍ୟାମସୁନ୍ଦର ଦଇତ୍ୟାରି ॥
ଶ୍ରୀବତ୍ସଲାଞ୍ଛନ କେଶବ । ଦୀନବାନ୍ଧବ ବାସୁଦେବ ॥
ଭବମୋଚନ ଭଗବାନ । ଜଗଜ୍ଜୀବନ ଜନାର୍ଦ୍ଦନ ॥
ଏମନ୍ତେ ନାମାବଳୀଗଣ । ମୂଖେ ଉଚ୍ଚାରେ ନାରାୟଣ ॥
ହରି କଥନେ କର୍ଣ୍ଣେଡେରି । ନୟନେ ହରିରୂପ ଧରି ॥
ହରି ସରଣ କରି ହୃଦେ । ମନ ନିବେଶି ହରି ପାଦେ ॥
ଅନେକ କରି ପ୍ରଶମିତ । ରାଜା ହରଷ କରି ଚିତ୍ତ ॥
ନମିଶ ଚନ୍ଦ୍ର ଦିବାକର । ଉଠିଲେ ପଞ୍ଚାର ଉପର ॥
ଅନଳ ତେଜ ମହାବଳୀ । କଞ୍ଚା ଦାରୁହିଁ ଯିବ ଜଳି ॥
ତହିଁ ନୃପତି ଦଣ୍ଡବତ । କରି ଉଠିଲେ ସେ ତ୍ୱରିତ ॥
ପ୍ରବଳ ଅଗ୍ନି ଶିଖା ତହିଁ । ଜଳି ଉଠିଲ ରାଜାଦେହୀ ॥
କର ଚରଣ ରାଜା ମୁଣ୍ଡ । ଛିଡ଼ ହୋଇଲ ଖଣ୍ଡଖଣ୍ଡ ॥
ତହିଁ ରାଜାର ନାହିଁ ଭୟ । ଚିତ୍ତେ ଚିନ୍ତଇ ଦେବରାୟ ॥
ପୁଣି କପାଳେ କର ଦେଇ । ସାଷ୍ଟାଙ୍ଗେ ପାଦେ ପଡ଼ଶୋଇ ॥
ତାହା ଜାଣିଲେ ଆଦିମୂଳ । ସେ ପ୍ରଭୁ ଭକତବତ୍ସଳ ॥
କରୁଣା କଲେ ଭବଗ୍ରାହୀ । ଅନଳ ଜଳପ୍ରାୟ ହୋଇ ॥
ରାଜା ଶ୍ରୀଅଙ୍ଗ କଅଁଳିଲା । ପୋଡ଼ବା ଶୀତଳ ହୋଇଲା ॥

ଏମନ୍ତ ଦେଖି ସର୍ବଜନ । ଆକୁଳେ କରନ୍ତି ରୋଦନ ॥
ମସ୍ତକ କରୁଡ଼ନ୍ତି କର । ବୋଇଲେ ଆହେ ନୃପବର ॥
ଆଉ କେ ଏ ରାଜ୍ୟ ପାଳିବ । ଆମ୍ଭଙ୍କୁ ଗୁଡ଼ିଲ ଦଇବ ॥
ଏମନ୍ତ ବଗୁରନ୍ତେ ଜନ । ସେକ୍ଷଣି ଉଠିଲେ ରାଜନ ॥
ତେଜ ବିରାଜମାନ କାୟେ । ଦଶନ୍ତି ଦ୍ୱିତୀ ସୂର୍ଯ୍ୟପ୍ରାୟେ ॥
ପୁଣି ମସ୍ତକେ ଦେଇ ହସ୍ତ । ଲେଉଟି କଲେ ଦଣ୍ଡବତ ॥
ପ୍ରବଳ ନଦୀଜଳେ ମିଳି । ହଂସ ଯେସନେ କରେ କେଳି ॥
ସେହ୍ନ ପ୍ରକାରେ ପୁଣି ପୁଣି । କେଶରୀ ବଂଶ ନୃପମଣି ॥
ପୁଣି କରନ୍ତି ଦଣ୍ଡବତ । ତା ଦେଖି ଲେକେ ଆଚମ୍ବିତ ॥
ଶନ୍ଦ ପ୍ରତିମା ପ୍ରାପ୍ତ ହୋଇ । ସମସ୍ତେ ଅଛନ୍ତି ଅନାଇଁ ॥
ଛତିଶବାର ଏହ୍ନପରି । ସେ ରାଜା ଦଣ୍ଡବତ କରି ॥
ମେଦିନୀ ହେଲ ଟଳମଳ । କମ୍ପିଲେ ଦଶଦିଗପାଳ ॥
ତାହା ଜାଣିଲେ ନରହରି । ବେଗେ ତେଜିଲେ ନୀଳଗିରି ॥
ଅତି ଅପୂର୍ବ ଶୋଭାକର । ବିଧାତା ନିର୍ମାଣୁ ବାହାର ॥
ଜଗନ୍ମୋହନ ରୂପ ଧରି । ପଠା ପାରୁଶେ ବିଜେକରି ॥
ଶ୍ରୀକର ବଢ଼ାଇଣ ଦେଲେ । ରାଜାଙ୍କୁ ଝିଙ୍କି ପକାଇଲେ ॥
ବୋଇଲେ ରହିଲ ତୋ କୀର୍ତ୍ତି । ପୃଥ୍ୱୀର ମଧ୍ୟେ ହେ ନୃପତି ॥
ତୋହର ପରି ପୁଣ୍ୟବନ୍ତ । ନାହିଁ ନୋହିବ ଏ ଜଗତ ॥
ସକଳ ପାପୁଁ ହେଲୁ ପାର । ଲଭ ପରମ ଗତି ସାର ॥
ତା ଶୁଣି ରାଜା କର ଯୋଡ଼ି । ବିପ୍ର ଚରଣ ତଳେ ପଡ଼ି ।
ବୋଇଲେ ମୋତେ କହ ସତ । କେ ତୁମ୍ଭେ ଅଟ ହେ ପବିତ ॥
ଏ ମୋର ଚର୍ମ ଚକ୍ଷୁ ଦେନି । ତୁମ୍ଭଙ୍କୁ ନ ପାରିଲି ଚିହ୍ନି ॥
ଶୁଣି ବୋଲନ୍ତି ଭଗବାନେ । ଉଠି ତୁ ଦେଖ ହୋ ନୟନେ ॥
ଯାହାକୁ ଚିନ୍ତୁଥିଲୁ ତୁହି । ନିଶ୍ଚୟ ଜାଣ ଆମ୍ଭେ ସେହି ॥
ଶୁଣି ନୃପତି ଉଭହେଲେ । ନିର୍ମଳ ନେତ୍ରେ ଅନାଇଲେ ॥

ଦେଖିଲେ ଶଙ୍ଖଚକ୍ରଧାରୀ । ଗଦା ପଙ୍କଜ ଭୁଜ ଚୁରି ॥
ଜଗନ୍ମୋହନ କୃପାସିନ୍ଧୁ । ଶରଣ ଜନଙ୍କର ବନ୍ଧୁ ॥
ଅଭୟବର ତାଙ୍କୁ ଦେଇ । ଅନ୍ତର ହେଲେ ଭବଗ୍ରାହୀ ॥
ପ୍ରଭୁ ମାୟାରେ ନରଶ୍ରେଣୀ । ଏ ସବୁ ନ ପାରିଲେ ଜାଣି ॥
ଶୁଣ ହେ ମନୁ ନୃପବର । ସେ ରଜା ଭାଗ୍ୟବନ୍ତ ପର ॥
ସାକ୍ଷାତେ ପ୍ରଭୁଙ୍କୁ ଦେଖିଲ । ସଂସାରେ କୀରତି ରଖିଲ ॥
ଅତି ଆନନ୍ଦେ ନରେଶ୍ୱର । ବିଜୟ କଲେ ଧୀର ଧୀର ॥
ସମସ୍ତେ ଧନ୍ୟ ଧନ୍ୟକରି । ଚଳିଣ ଗଲେ ଯେଝାପୁରୀ ॥
ସେ ରଜା ଅନ୍ତକାଳେ ଯାଇ । କେବଣ ଗତି ଥିବ ପାଇ ॥
ମୋତେ ତା ନୁହଇ ଗୋଚର । ହେ ମନ ତୋ ମନେ ବିଚାର ॥
ଏ କଳିଯୁଗେ ଏ ଚରିତ । ଶୁଣି ଲଗିବ ଆଚମ୍ବିତ ॥
ହରି ଭକତ ଜନମାନେ । ଶୁଣି ପ୍ରତ୍ୟୟ ଯିବେ ମନେ ॥
ଅଜ୍ଞାନ ଜନେ ଏହୁ କଥା । ଅବଶ୍ୟ ମଣିବେଟି ମିଥ୍ୟା ॥
ଶୁଣି ସାନନ୍ଦ ମନଗ୍ରୟ । ସିନ୍ଧୁ ଉଦୟ ଇନ୍ଦୁପ୍ରାୟ ॥
ଏ ଦାର୍ଢ୍ୟଭକ୍ତି ରସବାଣୀ । ସଂସାର ସିନ୍ଧୁକୁ ତରଣୀ ॥
ସୁଜନେ ଏଣେ କର ଲୟ । ଦୂର ହୋଇବ ଯମଭୟ ॥
କହଇ ବିପ୍ର ରାମଦାସ । ମୂଳଟି ଅଟଇ ବିଶ୍ୱାସ ॥
ଦାର୍ଢ୍ୟତା ବିନା ଯେତେ କର୍ମ । କଲେ ନୋହିବ ପୂର୍ଣ୍ଣକାମ ॥
ସାଧୁଜନଙ୍କ ପାଦଗତେ । ରାମ ବୋଲଇ ରଖ ମୋତେ ॥
ତୁମ୍ଭ ସଙ୍ଗତ ମୋତେ କର । ମୁଁ ତୁମ୍ଭ ଚରଣେ କିଙ୍କର ॥
ହେ ଦେବ ଗଦାପଦ୍ମଧର । ହେ ପଦ୍ମଯୋନିଙ୍କ ପିଅର ॥
ମୋ ମନ ହୋଇ ଷଟପଦ । ତୁମ୍ଭ ପଙ୍କଜପାଦେ ସଦ୍ମ ॥
କରି ପିଇବ ସୁଧାସାର । ହେ ପ୍ରଭୁ ଏତେ ମାନ କର ॥
କର ନା କର ତୁମ୍ଭ ଚିତ୍ତ । ଆଶା ମୁଁ କରିଛି ବହୁତ ॥

ଇତି ଶ୍ରୀ ଦାଢ଼୍ୟତାଭକ୍ତି ରସାମୃତେ ମନ ଚୈତନ୍ୟ ସମ୍ବାଦେ ଶ୍ରୀକୁଳ ଶିଖରରାଜା ଦାଢ଼୍ୟଭାବ ବର୍ଣ୍ଣନେ ନାମ ଷଡ଼୍‌ବିଂଶୋଽଧ୍ୟାୟଃ ।

---

## ସପ୍ତବିଂଶ ଅଧ୍ୟାୟ

## ଲାଲବେଗ ଓ ସାଲବେଗ ସମ୍ବାଦ

### ମନ ଉବାଚ

ପୁଣି ପୁଚ୍ଛଇ ମନପ୍ରାଣ । ଚୈତନ୍ୟଦେବଙ୍କ ପାଦେଣ ॥
ହେ ଶୁଦ୍ଧଚେତା ତୋର ବାଣୀ । କେବଳ ସୁଧାସମ ଜାଣି ॥
ପିଇ ମୋ ଶ୍ରବଣ ଯୁଗଳ । ସନ୍ତୋଷ ନୋହିଲା କେବଳ
ଏହି ପ୍ରକାରେ କଥା ଆଉ । ଥିଲେ କହିବା ମୋତେହେଉ ॥
ଶୁଣ ସୁଚେତା କହେ ହସି । ଶୁଣ ହେ ସର୍ବଘଟବାସି ॥
କଟକ ନାମେ ଯେ ସହର । ଲାଲବାଗରେ ତାର ଘର ॥
ଜାତିରେ ଅଟଇ ପଠାଣ । ତାହାର କଥା ଏବେ ଶୁଣ ॥
ମୋଗଲ ନାମେ ଲାଲବେଗ । ତାହାର ପୁତ୍ର ସାଲବେଗ ॥
ତାହାର ଜନ୍ମ କର୍ମ ଯେତେ । ଶୁଣ କହିବା ଶୁଦ୍ଧଚିତ୍ତେ ॥
ସେ ଲାଲବେଗ ଅତି ଦୁଷ୍ଟ । ଖଳ ପ୍ରପଞ୍ଚ ବୁଦ୍ଧି ନଷ୍ଟ ॥
ଶ୍ରୀଗଜପତି ଦଣ୍ଡଧାରୀ । ସଙ୍ଗତେ ଶତ୍ରୁପଣ କରି ॥
ଅନେକ ସୈନ୍ୟ ଠୁଳକଲା । ଓଡ଼ିଶା ଯୁଝିବାକୁ ଗଲା ॥
ବାଜିଲେ ବାଦ୍ୟନାଦ ଘୋଷ । ଓଡ଼ିଶା ରାଜ୍ୟରେ ପ୍ରବେଶ ॥
ସେ ମହାରାଜ୍ୟ କଲେ ଚୂର । ଧନ ବସନ ଅଳଙ୍କାର ॥
ଲୁଣ୍ଠଣ ବ୍ରାହ୍ମଣ ଶାସନ । ପଳାଇ ଗଲେ ସର୍ବଜନ ॥
ତହିଁ ଏକ ବିଧବା ନାରୀ । ଯାଇଥିଲା ସେ ସ୍ନାନକରି ॥
ଏକାକୀ ଜନ ଜଳଘାଟେ । ସୈନ୍ୟ ତା ଦେଖିଲା ନିକଟେ ॥
ଡରେ ସେ ନ ପାରିଲା ଯାଇ । ରହିଲା ସ୍ତମ୍ଭୀଭୂତ ହୋଇ ॥
ଏଟେକ ବ୍ରାହ୍ମଣୀ ଦୁଟେକ ଯୁବା । କେ କହିପାରେ ତାର ଶୋଭା ॥

ଚମ୍ପକପୁଷ୍ପ ପରା କାନ୍ତ । ମୁକୁତା ଶ୍ରେଣୀ ଦନ୍ତପନ୍ତ ॥
ସୁନାସା ସୁନ୍ଦର କପୋଳ । ବଦନ ଚନ୍ଦ୍ରମା ମଣ୍ଡଳ ॥
ନେତ୍ର କୁରଙ୍ଗ ଶୋଭା ଜିଣି । ଅପୂର୍ବ ଭଙ୍ଗିମା ଗ୍ରୀବାଣି ॥
ଅଞ୍ଜନ ବଳି କେଶ ଆଭା । ବାହୁ ଯୁଗଳ ଦିବ୍ୟ ଶୋଭା ॥
ହୃଦୟୁ ଭାଗ ଅତି ଉଚ୍ଚ । ଶ୍ରୀଫଳ ଜିଣି ବେନି କୁଚ ॥
କଟୀ କ୍ଷୀଣ ତା କହି ନୋହେ । ଶୋଭାରେ ଜନମନ ମୋହେ ॥
ଏମନ୍ତ ନାରୀ ନଦୀ କୂଳେ । ଉଭା ତ ଜୀବନ ବକଳେ ॥
ଏମନ୍ତ ବେଳେ ଲଲବେଗ । ଆସି ମିଳିଲା ତାର ଆଗ ॥
ଏକେ ସେ ଦୁଷ୍ଟ ବଳବନ୍ତ । ତା ସଙ୍ଗେ ବଳହିଁ ବାହୁନ୍ତ ॥
ଦେଖିଣ ଅତ୍ୟନ୍ତ ସୁନ୍ଦରୀ । ମଦନ ଶରେ ହେଲା ଧାରି ॥
ବଳେ ଧଇଲା ତାର ଭୁଜ । ମୃଗୀକୁ ଯେହ୍ନେ ମୃଗରାଜ ॥
ବସାଇ ଅଶ୍ୱର ଉପରେ । ସେ ନାରୀ ଦଇବ ସୁମରେ ॥
ବେଗେଣ ଚଳିଗଲା ବେଗେ । ସମସ୍ତ ସୈନ୍ୟଙ୍କର ଆଗେ ॥
କେ ତାକୁ ଚହ୍ନି ନ ପାରିଲେ । ସମସ୍ତ ସୈନ୍ୟ ଲେଉଟିଲେ ॥
ତା ପୁର ଦେଖି ସେ ଯୁବତୀ । ଅତି ସନ୍ତାପେ ମଥା ପୋଡି ॥
ନୟନୁ ଅଶ୍ରୁ ଧାର ଗଳେ । କାନ୍ଦି ଗଡ଼ଇ ମହୀତଳେ
ତା ନିଜ କୁଟୁମ୍ବ ସୁମରି । ବୋଲଇ ଦେବି ପ୍ରାଣ ହାରି ॥
ତାହା ଦେଖିଣ ସେ ପଠାଣ । ସେ ନାରୀ ଚରଣ ଧରିଣ ॥
ଅନେକ ବିନୟୀ କହିଲା । କୋଳେ ବସାଇ ଚୁମ୍ବ ଦେଲା
ଅନେକ ଅଳଙ୍କାର ମାନ । ତା ଅଙ୍ଗେ କଲଇ ମଣ୍ଡନ ॥
ଚିକ୍କଣ ବସନ ପିନ୍ଧାଇଲା । ନାନା କୁସୁମେ ବେଶ କଲା ॥
ସର୍ବାଙ୍ଗେ ଗନ୍ଧସାର ବୋଳି । ତା ସଙ୍ଗେ କଲା କାମକେଳି ॥
ନାନା ବିନୋଦେ ମନମୋହି । କୁଟୁମ୍ବ ଦେଲା ପାଶୋରାଇ ॥
ଦଇବେ ଅବଳା ଶରୀର । ସଙ୍ଗହିଁ ମିନା ମୂଳଦାର ॥
ତା ଠାରୁ ରତିସୁଖ ପାଇ । ରହିଲା ପତ୍ନୀ ପ୍ରାୟେ ହୋଇ ॥

ଏମନ୍ତେ କେତେଦିନ ଗଲା । ସେ ନାରୀ ପୁତ୍ର ପ୍ରସବିଲା ॥
ପୁତ୍ରକୁ ଦେଖି ଲାଲବେଗ । ତା ନାମ ଦେଲା ସାଲବେଗ ॥
ମାତା ପିତାଙ୍କ ସ୍ନେହ ପାଇ । କ୍ଷୀର ପାନରେ ପୁଷ୍ଟ ହୋଇ ॥
ଦିନକୁ ଦିନ ବର୍ଦ୍ଧମାନ । ହୋଇଲା ସେ ନବ ନନ୍ଦନ ॥
ପାଳିଲେ ବିଧିମତ କରି । ଅନେକ ଅଳଙ୍କାର ଭରି ॥
ଏମନ୍ତେ କେତେକାଳ ଗଲା । ଯୁବା ଅବସ୍ଥା ତାର ହେଲା ॥
ଶିଖିଲା କ୍ଷତ୍ରି ବୃତ୍ତି ଯେତେ । ଅଶ୍ୱାଦି ଚଢ଼ିବା ସହିତେ ॥
କାଣ୍ଡ ଖଣ୍ଡାରେ ବିଚକ୍ଷଣ । ଆଉ ଭିହାଣ୍ଡରେ ମାରଣ ॥
ଏମନ୍ତେ ନାନା ବିଦ୍ୟାମାନ । ଶିଖି ସେ କରଇ ଗୁମାନ ॥
ପଠାଣ ବଂଶେ ଜାତ ହୋଇ । ସେହି ସ୍ୱଭାବେ ଦିନ ନେଇ ॥
ଏମନ୍ତେ କେତେ ଦିନଗଲା । ତା ପିତା ଯୁଦ୍ଧେ ବାହାରିଲା ॥
ପିତାକୁ ଘେନି ସାଲବେଗ । ସୈନ୍ୟ ସଙ୍ଗତେ ଗମେ ବେଗ ॥
ପ୍ରବେଶ ହେଲା ସେ ସ୍ଥାନରେ । ଆଗ ହୋଇଲା ସେ ଯୁଦ୍ଧରେ ॥
ଯୁଦ୍ଧରେ ଅସ୍ତ୍ରାଘାତ ପାଇ । ଢଳି ପଡ଼ିଲା ରଣ ଭୂଇଁ ॥
ସପତ ଖଣ୍ଡ ଘାତ ହେଲା । ରୁଧିର ଧାର ବହିଗଲା ॥
ପଡ଼ିଲା ମୂର୍ଚ୍ଛାଗତ ହୋଇ । ଦେଖି ସଙ୍ଗର ଲୋକେ ଧାଇଁ ॥
ସାଲବେଗକୁ ବହିନେଲେ । ତା ନିଜପୁରେ ପ୍ରବେଶିଲେ ॥
ଦେଖି ତାହାର ଗର୍ଭଧାରୀ । ଗୁଣ ବାହୁନି ଶୋକ କରି ॥
ପିତା ତା ହୋଇ ଅତି କ୍ରୋଧୀ । ଅନେକ କଲା ମହୌଷଧି ॥
କେବେହେଁ କୁଶଳ ନୋହିଲା । ଏମନ୍ତେ କେତେଦିନ ଗଲା ॥
ଅତି ଆରତେ ସାଲବେଗ । କହିଲା ଜନନୀର ଆଗ ॥
ହେ ମାତ ଶୁଣ ମୋ ବଚନ । ଏଥର ଗଲାଟି ଜୀବନ ॥
ମରିବି ଆତ୍ମଘାତୀ ହୋଇ । ଏ କଷ୍ଟ ନ ପାରିବି ସହି ॥
ନଷ୍ଟ ମୋହର ପ୍ରତିଆଶା । ଆଜ୍ଟୁ ସରିଲା ମୋ ଭରସା ॥
ତୋର କି ବୁଦ୍ଧି ଅଛେ କହ । ନୋହିଲେ ପାସୋରିଣ ରହ ॥

ଶୁଣି ଜନନୀ ଶୋକଭରେ । କହିଲା ପୁତ୍ରର ଆଗରେ ॥
ମୋହର କଥା ଶୁଣ ବାବୁ । ତୋହର ଥିଲେ ମୋର ସବୁ ॥
ତୋ ବିନା ହୋଇବି ଅନାଥ । ସ୍ୱରୂପ କହିଲି ରେ ସୁତ ॥
ମୋତେ ତୁ ପଚାରିଲୁ ଯାହା । ଶୁଣ କହିବି ତୋତେ ତାହା ॥
ପଠାଣ ଅଟେ ତୋର ତାତ । ମୁହିଁ ବ୍ରାହ୍ମଣୀ ତୋର ମାତ ॥
ତୁ କାହିଁ ମୋ ବୋଲ କରିବୁ । ସ୍ୱରୂପ ଶୁଣ ଆରେ ବାବୁ ॥
ଏମନ୍ତ ଶୁଣି ସାଲବେଗ । କହିଲା ଜନନୀର ଆଗ ॥
ହେ ମାତ କହିଲୁ ଯା ମୋତେ । ଶୁଣି ସଂଶୟ ମୋର ଚିତ୍ତେ ॥
ସେ ଯେ ପଠାଣ ତୁ ବ୍ରାହ୍ମଣୀ । କି ରୂପେ ତୁ ତାର ଘରଣୀ ॥
ଏମନ୍ତ ଶୁଣି ତାର ମାତ । ବୋଇଲେ ଶୁଣସି ରେ ସୁତ ॥
ଗ୍ରାମମାନଙ୍କେ ଯେ ଉତ୍ତମ । ଦାଣ୍ଡମୁକୁନ୍ଦପୁର ନାମ ॥
ସେହି ଗ୍ରାମରେ ମୋର ଘର । ନ ଥିଲେ ମୋ ଶାଶୂ ଶ୍ୱଶୁର ॥
ତୋ ବାପ ଯୁଦ୍ଧେ ଯାଇଥିଲେ । ସଙ୍ଗେ ବହୁତ ସୈନ୍ୟ ଭୁଲେ ॥
ବାହୁଡ଼ି ଆସିବାର ବେଳେ । ସେ ଦିନ ଦଇବର ବଳେ ॥
ମୁଁ ଯାଇଥିଲି ସ୍ନାନ କରି । ତହୁଁ ଆଣିଲା ମୋତେ ଧରି ॥
ଏ କଥା ଶୁଣି ସାଲବେଗ । କହିଲା ଜନନୀର ଆଗ ॥
ହେ ମାତ ଶୁଣ ମୋର ବାଣୀ । ତୁ ମୋର ପିଣ୍ଡର କାରଣୀ ॥
ତୋ ଇଚ୍ଛା ଯାହା ତାହା କର । ତୋ କଥା ସିନା ଇଷ୍ଟ ମୋର ॥
ଏଥିକି ବୁଦ୍ଧି କିସ କହ । କେମନ୍ତେ ରହିବ ମୋ ଦେହ
ଏମନ୍ତ ଶୁଣି ତା ବଚନ । ବୋଲଇ ଶୁଣରେ ନନ୍ଦନ ॥
ମୋ କଥା ଶୁଣସି ରେ ବାବୁ । ଏ ଯେ ତୋହର ନିଜ ବାବୁ ॥
ତୋତେ ପାସୋରିସେବାଡାଲେ । ତା ନିଜ ସୁତ ଦାସୀମେଳେ ॥
ରହିଲି ଅଚିନ୍ତା ହୋଇଣ । ମୁଁ ସିନା ହେଲି ଅକାରଣ ॥
ମୋ ଯୁବା ବୟସ ସରିଲା । ତେଣୁ ସେ ମୋତେ ପାସୋରିଲା
ତୁ ହାଦେ ଦାସୀପୁତ୍ର ସିନା । ତାକୁ କି ଲାଗେ ତୋ ବେଦନା

ତୁ ଅଟୁ ମୋ ଜୀବନଧନ । ତୋ ବିନା ମୋର ସର୍ବଶୂନ୍ୟ ॥
ତୁହି ମୋ ଅଧରର ଲଉଡ଼ି । ତୁ ବିନା ମୋ ଧନ କଉଡ଼ି ॥
ତୁହି ମୋ କଣ୍ଠ ରତ୍ନମାଳା । ତୁହି ମୋ ନୟନପିତୁଳା ॥
ସ୍ୱରୂପ କହସି ରେ ବାବୁ । ସତେ କି ମୋ ବୋଲ କରିବୁ
ସତ୍ୟ ତୁ କର ମୋର ଆଗ । ତା ଶୁଣି ବୋଲେ ସାଲବେଗ
ହେ ମାତ ଲକ୍ଷବାର ସତ୍ୟ । ତୋ ବୋଲ କରିବ ନିଶ୍ଚିତ ॥
ତୁ ମୋତେ କହିବୁଟି ଯାହା । ମୋ ଶିର ଫୁଲଗଭ ତାହା ॥
ଏଥକୁ ସନ୍ଦେହ ନ କର । ବେଗେ ତୁ କହ ସୁବିସ୍ତର ॥
ମାତା ବୋଲଇ ପୁତ୍ର ଶୁଣ । ତୋ ମନେ ବିଶ୍ୱାସ କରଣ ॥
ଶ୍ରୀବୃନ୍ଦାବନଚନ୍ଦ୍ର ଭଜ । ସେ ଯେ ଅଶେଷ ଦେବରାଜ ॥
ଅଶେଷ ଔଷଧର ଘର । ଭଜିଲେ ନିଶ୍ଚେ ହେବୁ ପାର
ଏମନ୍ତ ଶୁଣିଣ ନନ୍ଦନ । ବୋଇଲା ଆଗୋ ମାତ ଶୁଣ ॥
ତୁ ଯାହା କହିଲୁଟି ମୋତେ । ତାହା ମୁଁ ଜାଣିବ କେମନ୍ତେ ॥
କେବଣ ସ୍ଥାନେ ତାଙ୍କ ଘର । କେ ତାଙ୍କ ଜନନୀ ପିଅର ॥
କେବଣ ଦେଶର ସେ ନୃପ । କେମନ୍ତ ଅଛଇ ସ୍ୱରୂପ ॥
ମୁଁ ତାଙ୍କୁ ଭଜିବି କେମନ୍ତେ । ବୁଝାଇ କହ ମାତ ମୋତେ ॥
ଶୁଣି ଜନନୀ ମନେ ହସି । ବୋଇଲା ଶୁଣ ବାଳଶିଶି ॥
ନନ୍ଦରାଜା ଯେ ତାଙ୍କ ତାତ । ଯଶୋଦାଦେବୀ ତାଙ୍କ ମାତ ॥
ଗୋପ ନଗରେ ତାଙ୍କ ଘର । ଅଶେଷ ପରଜା ତାଙ୍କର ॥
ରାଧିକା ନାମେ ତାଙ୍କ ନାରୀ । ସେ ଦୁହେଁ କିଶୋର କିଶୋରୀ
ସେ ଗୋପ ବୃନ୍ଦାବନ ଭୂପ । କହିବି ଶୁଣ ତାଙ୍କ ରୂପ ॥
ନବୀନ ଶ୍ୟାମଘନ ମୂର୍ତ୍ତି । ଦଳିତାଞ୍ଜନ ଜିଣି କାନ୍ତି ॥
ସୁଗୃରୁ ଇନ୍ଦ୍ର ନୀଳମଣି । ତାଙ୍କ ରୂପକୁ ନୁହେ ଜିଣି ॥
ନିକତି କେଶ ଛଟା ଚାର । ନାନାକୁସୁମେ ଶୋଭାକର ॥
ଶିରେ ଶିଖଣ୍ଡିଚୂଳ ସୋହେ । ଭକତ ଜନ ମନ ମୋହେ ॥

ମସ୍ତକେ ଅମୂଲ୍ୟ ମୁକୁଟ । ଅଷ୍ଟରତନେ ଝଟ ଝଟ ॥
ଲଲାଟେ ଗୋରଚନା ଚିତା । ଯାହା ଭାବନ୍ତ ଲକ୍ଷ୍ମୀ ରେତା ॥
ଶ୍ରବଣେ ମକରକୁଣ୍ଡଳ । ନିନ୍ଦଇ ତପନ ମଣ୍ଡଳ ॥
ସୁନେତ୍ର ଶ୍ଵେତପଦ୍ମ ଜିତା । ଦେଖି ଧଇର୍ଯ୍ୟ ହରେ ଧାତା ॥
ଭ୍ରୂଲତା କାମ ଶରାସନ । ଦେଖିଲେ ହରେ ପ୍ରାଣୀ ମନ ॥
ସୁନାସାପଟ୍ଟ କି ସୁନ୍ଦର । କୋଟିଏ କନ୍ଦର୍ପ କି ଗ୍ରର ॥
ଦ୍ୱିରଦ ମୋତି ନାସାପୁଟେ । ଗୁଞ୍ଜାସ୍ପାପାଟି ଭାଲପଟେ ॥
କୁନ୍ଦ କୋରକ ଶୋଭା ଜିଣି । ହୀରକ ପ୍ରାଏ ଦନ୍ତଶ୍ରେଣୀ ॥
ରଙ୍ଗ ଅଧରେ ମନ୍ଦହାସ । ଅଶେଷ ପୀୟୁଷର ରସ ॥
ମୁଖାରବିନ୍ଦ ଶୋଭା ଯେତେ । କେ କହି ପାରିବ ଜଗତେ ॥
ଦେଖି ଶ୍ରୀମୁଖ ଶୋଭା ତାର । ଛପି ରହିବ ନିଶାକର ॥
ପଙ୍କଜ ବଦନ ମୁକୁର । ଜିଣି ଦିଶଇ ଶୋଭାକର ॥
ଗୂଢ଼ ଚିବୁକ କମ୍ବୁଗ୍ରୀବ । ଦେଖି ମୋହିତ ସଦାଶିବ ॥
ତହିଁ ଲମ୍ବିତ ବନମାଳ । ସୁରତ୍ନହାର ବକ୍ଷସ୍ଥଳ ॥
ବଳୀନ ଯୁବାହୁ ଯୁଗଳ । ସୁନ୍ଦର ମଦନ ଗୋପାଳ ॥
ହୃଦରେ ଶ୍ରୀବତ୍ସର ଚିହ୍ନ । ସେହି ପଦ୍ମିତ ଉଦ୍ଧାରଣ ॥
ଭୁଜେ ବଳୟେ କାରବାନା । ସେହି ଅନାହ୍ନ ବଜ୍ରସେନ୍ନା ॥
ଶ୍ରୀକରଯୁଗଳେ କଙ୍କଣ । ନାନାରତନେ ସୁଘଟନ ॥
ରତ୍ନମୁଦ୍ରିକା କରାଙ୍ଗୁଳି । ସେ ଅଙ୍ଗତମିର ବଜୁଳି ॥
କରଜକାନ୍ତ ପୂର୍ଣ୍ଣଶଶୀ । ସାଧୁ କୁମୁଦାବନ ତୋଷି ॥
ଚନ୍ଦ୍ର ନ ପାରେ ବେଦବ୍ରହ୍ମା । କେ କହୁ ମୁଖେ ତା ମହିମା ॥
କମଳ ବଜ୍ରାଙ୍କୁଶମାନ । ବିରାଜେ ଅଷ୍ଟାଦଶ ଚିହ୍ନ ॥
କମଳା ଦେବୀଙ୍କ ବିଳାସ । ଯହିଁ କରଣ ଚତୁର୍ଦ୍ଦଶ ॥
ଅଶେଷ ବ୍ରହ୍ମାଣ୍ଡ ମଣ୍ଡଳ । ସେବଣ ପାଦପଦ୍ମେ ଲୁଳ ॥
ସିଦ୍ଧ ଯୋଗୀନ୍ଦ୍ର ମୁନିଗଣେ । ନିତ୍ୟ ଚିନ୍ତନ୍ତି ଯେ ଚରଣେ ॥

ସେ ପାଦେ ଆଶ୍ରେ ଥିବ ଯାର । ସଂସାରେ ଭୟ ନାହିଁ ତାର ॥
ତ୍ରିଭଙ୍ଗୀରୂପ ବଂଶୀଧର । ଭଙ୍ଗିମା ଶୃଙ୍ଗାରୀ ସୁନ୍ଦର ॥
ଏମନ୍ତ ସ୍ୱରୂପ ଅଟଇ । ଯହିଁ ଚିନ୍ତିବ ତହିଁ ଥାଇ ॥
ତୁ ବାବୁ ଏସ୍ୱରୂପ ଚିନ୍ତି । ମନରୁ ଛାଡ଼ି ଭୟ ଭ୍ରାନ୍ତି ॥
ଅନେକ ଦେବେ ଶେଷ ଶିବେ । ଯା ରୂପ ଚିନ୍ତି ନ ପାରିବେ ॥
ମୋ ଛାର କେତେକ ମାତର । କହିବି ରୂପ ଗୁଣ ତାର ॥
ତୋହର ପିତା ମୁଖୁ ଯାହା । ଶୁଣିଛି କହିଲି ମୁଁ ତାହା ॥
ଏମନ୍ତ ଶୁଣି ତାର ସୁତ । ବୋଇଲା ଶୁଣସି ଗୋ ମାତ ॥
ଏମନ୍ତ ସ୍ୱରୂପକୁ ଭାବି । କହ ମୁଁ କେମନ୍ତେ ଦେଖିବି ॥
ମାତା ବୋଇଲେ ରେ ତନୁଜ । ବିଶ୍ୱାସ ସିନା ମୂଳ ବୀଜ ॥
ଦୃଢ଼େ ତୁ ଯେବେ ତା ଭଜିବୁ । ଦ୍ୱାଦଶ ଦିନେ ଭଲ ହେବୁ ॥
ପୁତ୍ର ବୋଇଲା ହେଉ ହେଉ । ଏ କଥା ତୋର ମନେ ଥାଉ ॥
ଏବେ ମୁଁ ଭଜୁଅଛି ହରି । କଣ୍ଠ ବଳିଲେ ଦୁହେଁ ମରି ॥
ଏମନ୍ତ କହି ସେ ନନ୍ଦନ । କୃଷ୍ଣ ଭଜନେ ଦେଲା ମନ ॥
କୃଷ୍ଣ ସ୍ୱରୂପ ଚିନ୍ତି ହୃଦେ । ମନ ନିବେଶି ପଦ୍ମପାଦେ ॥
କରଯୁଗଳ ଶିରେ ଦେଇ । ନୟନେ କୃଷ୍ଣରୂପ ଥୋଇ ॥
କୃଷ୍ଣ କଥାରେ କର୍ଣ୍ଣ ଡେରି । ବଦନେ କୃଷ୍ଣ ନାମ ଧରି ॥
ସକଳ ଇନ୍ଦ୍ରିୟ ନିବାରି । କୃଷ୍ଣ ଭଜନ ହୃଦେ କରି ॥
ଛାଡ଼ିଲା ଦେହ ବୁଦ୍ଧି ତାର । ମଦ ମତ୍ସର ଯେ ବିକାର ॥
ଆନନ୍ଦ ସାଗରେ ବୁଡ଼ିଲା । କୃଷ୍ଣ ସ୍ୱରୂପକୁ ଚିନ୍ତିଲା ॥
ଯହିଁ ଯେମନ୍ତ ଅଳଙ୍କାର । ଖଞ୍ଜିଲା ମନେ ମନେ ତାର ॥
ଶ୍ରୀକୃଷ୍ଣ ସେବାମାନ ଯେତେ । କରି ଲାଗିଲା ତାର ହସ୍ତେ ॥
ଶ୍ରୀକୃଷ୍ଣ ବୃନ୍ଦାବନ ଲୀଳା । ଭାବି ଭାବରେ ହେଲା ଭୋଳା ॥
ଶ୍ରୀକୃଷ୍ଣ ବ୍ରଜଦେବଙ୍କର । ଯେ ସ୍ଥାନେ ଯେମନ୍ତ ବିହାର ॥
ଏ ସର୍ବ ମନେ କରି ଲୟେ । ବେନି ନୟନୁ ଅଶ୍ରୁ ବହେ ॥



ଭଗବାନ ରାତ୍ରରେ ଆସି ଲାଲବେଗ ହାତରେ ବନ୍ଧୁକ ଦେଉଛନ୍ତି ।

ପ୍ରେମ ପୁଲକ ହେଲା କାୟ । କଦମ୍ବ କୁସୁମ ପରାୟ ॥
ଶ୍ରୀକୃଷ୍ଣ ପାଦେ ଦେଇ ମତି । ମନେ ଅନେକ କଲା ସ୍ତୁତି ॥
ଜୟ ତୁ ବୃନ୍ଦାବନଚନ୍ଦ୍ର । ଜୟ ମୁକୁନ୍ଦ ଆନନ୍ଦକନ୍ଦ ॥
ଜୟ ଯମଳାର୍ଜୁନଭଞ୍ଜା । ତୃଣା ଶକଟା ଗର୍ବଗଞ୍ଜା ॥
ଜୟ ତୁ ଗନ୍ତା ବନାଞ୍ଜନ । ଗୋକୁଳଶିରି ବରଧନ ॥
ଜୟ ତୁ ବକଅଣ୍ଟ ଚିରା । ଅଘା ପ୍ରଲମ୍ବା ପ୍ରାଣହରା ॥
ବତ୍ସାପାଳନ ଦୈତ୍ୟକୁଳ । ଦହନେ ତୁ ପ୍ରଭୁ ଅନଳ ॥
ଦୁଷ୍ଟ ନିବାର ସନ୍ତ ପାନ୍ତ । ତୁ ନାଥ ପରମ ଦୟାନ୍ତ ॥
କାଳିନ୍ଦୀ କଲ୍ଲୋଳ ବିହାରୀ । କାଳୀ ମଉଳ ଶିରକାରୀ ॥
କଦମ୍ବ ତରୁମୂଳ ବାସୀ । ରଙ୍ଗେ ମୁରଲୀ ନାଦ ଘୋଷି ॥
ଶିରେ ମଣ୍ଡିତ ଗୁଞ୍ଜମାଳ । ମଉଳ ଖଞ୍ଜା କାମୁଡ଼ାଳ ॥
ଶ୍ରବଣେ ରଙ୍ଗ ଫୁଲକାପ । ଶୋଭଇ ଯେସନେ ଇନ୍ଦ୍ରଚାପ ॥
ଅଙ୍ଗେ ଶୋଭିତ ଗୋରୁଧୂଳି । ନାଚୁଆ କୁଳର ମଉଳି ॥
ଆବର ନାରୀ ଚିତ୍ତଚୋର । ବ୍ରଜ କାମିନୀ ବସ୍ତ୍ରହର ॥
କୁଟିଳ ଜନକୁ କପଟୀ । ଭାବୁକ ଭାବରେ ଲମ୍ପଟୀ ॥
ତୁ ଯାହା ବୋଇଲୁ ଗୋ ମାତ । ଭଲ ତ ନୋହିଲା ମୋ ଗାତ ॥
କଣ୍ଟ ତ ଆସି ପୂର୍ଣ୍ଣ ହେଲା । ଅଧିକେ ବେଦନା ବଢ଼ିଲା ॥
ନିଶ୍ଚୟ ହେବ ମୋ ମରଣ । ରହଇ ନାହିଁ ମୋର ପ୍ରାଣ ॥
ମାତା ବୋଲଇ ଆରେ ସୁତ । ସେ ହରି ମହିମା ଏମନ୍ତ ॥
ଅନେକ କଷ୍ଟ ତୁଳ କରି । ଦୟା କରନ୍ତି ନରହରି ॥
ଏମନ୍ତ କହି ତାର ମାତା । ମନେ ଚିନ୍ତଇ ଜଗନ୍ନେତା ॥
ଏତା ମନେ ସଂଶୟ ନ କର । ବିଶ୍ୱାସେ ଭଜ ବଂଶୀଧର ॥
ଏମନ୍ତ ବୋଲି ଚିନ୍ତାଭରେ । ଦୁହେଁ ଶୋଇଲେ ଏକାଘରେ ॥
ଚିତ୍ତ ନିବେଶି ପଦ୍ମପାଦେ । ବୋଲଇ ମନର ବିଷାଦେ ॥
ହେ ଆର୍ତ୍ତତ୍ରାଣ ଦୀନବନ୍ଧୁ । ଭକ୍ତବତ୍ସଳ କୃପାସିନ୍ଧୁ ॥

ମୋ ଆଜ୍ଞା ଖଣ୍ଡ ଦେବରାଜ । ବଳମ୍ବେ ନାହିଁ ଆଉ କାର୍ଯ୍ୟ ॥
କାର୍ଷ୍ଣେ ମରବୁଁ ମାଏ ପୋଏ । ହତ୍ୟା ହୋଇବୁଁ ତୁମ୍ଭ ପାଏ ॥
ଏମନ୍ତ ଦ୍ୱାଦଶ ଦିବସ । ଆସି ହୋଇଲା ଯହୁଁ ଶେଷ ॥
ମରିବା କଥା କଲେ ମୂଳ । ତାହା ଜାଣିଲେ ଆଦିମୂଳ ॥
ତେଜିଲେ ବେଗେ ବୃନ୍ଦାବନ । ନିଦ୍ରାରେ ମୋହି ତାଙ୍କ ମନ ॥
ବାଳମୁକୁନ୍ଦ ରୂପ ହୋଇ । ବିଜୟ କଲେ ଭାବଗ୍ରାହୀ ॥
ହୋଇଣ ଅତ୍ୟନ୍ତ ଉଦ୍‌ବେଗ । ଯହିଁ ଶୋଇଛି ସାଲବେଗ ॥
ତାହାର ସୀମସ୍ଥାନେ ବସି । କହିଲେ ମନ୍ଦ ମନ୍ଦ ହସି ॥
ବେଗେ ତୁ ଉଠରେ କୁମର । ଛାଡ଼ି ସକଳ ଚିନ୍ତା ତୋର ॥
ଧର ଏ ବିଭୂତି ମୁଠାଏ । ଲଗାଇ ଦିଅ ତୋର ଘାଏ ॥
ସମସ୍ତ ହୋଇବ କୁଶଳ । ଆଝୁଁ ମୋ ନାମ କର ମୂଳ ॥
ତା ଶୁଣି ଅତି ତୋଷ ହୋଇ । ବିଭୂତି ତାଙ୍କ ହସ୍ତୁ ନେଇ ॥
ସର୍ବାଙ୍ଗଯାକ ଦେଲା ବୋଳି । ଅଢ଼େକ ଦେଖିଲା ମଉଳି ॥
ପ୍ରଭୁଙ୍କୁ କଲା ଦରଶନ । ହରି ହୋଇଲେ ଅନ୍ତର୍ଦ୍ଧାନ ॥
ଦେହରେ ଦେହବୁଦ୍ଧି ନାହିଁ । ପୁଣ ସେ ପଡ଼ିଲାକ ଶୋଇ ॥
ରଜନୀ ପ୍ରଭାତରୁ ଉଠି । ନିଜ ଦେହକୁ ଦେଲା ଦୃଷ୍ଟି ॥
ଦେଖେ ତା ଘାଆ ନାହିଁ କିଛି । କେବଳ ଚିହ୍ନମାତ୍ର ଅଛି ॥
ଦେଖି ସେ ପରମ ଆନନ୍ଦ । ଚିତ୍ତେ ଚିନ୍ତଇ ବ୍ରହ୍ମାନନ୍ଦ ॥
ମାତାଙ୍କୁ ବୋଇଲା ଲୋ ଶୁଣ । ତୋ କଥା ହୋଇଲା ପ୍ରମାଣ ॥
ଶୁଣି ଜନନୀ ବେଗେ ଉଠି । ପୁତ୍ର ଦେହକୁ ଦେଲା ଦୃଷ୍ଟି ॥
ଦେଖିଲା ଶୁଭ କଥା ସବୁ । ବୋଲଇ ଦେଖିଲୁ ରେ ବାବୁ ॥
ସେ ହରି ମହିମାସାଗର । ଅନାଥଭଞ୍ଜନ ଠାକୁର ॥
ପୁତ୍ର ବୋଇଲା ସତ୍ୟ ଏହି । ଶବଦ କଲୁ ମୋର ଦେହୀ ॥
ମୁହିଁ ସନ୍ନ୍ୟାସୀ ହୋଇବଇ । ସଂସାର ସୁଖ ତେଜିବଇଁ ॥
ଏମନ୍ତ କହି ବସ୍ତ୍ର ଚିରି । ଡୋର କୌପୁନୀ ଆଶ୍ରେକରି ॥

ମାତାଙ୍କୁ ଦଣ୍ଡବତ କଲା । ଶୁଣ ଗୋ ଜନନୀ ବୋଇଲା ॥
ଏମନ୍ତ ପ୍ରଭୁ ଥାଉଁ ଥାଉଁ । ଯେ ଅନ୍ୟ ଆଶ୍ରେ କରେ ଆଉ ॥
ଧିକ ବୋଲିବା ତା ଜୀବନ । ଏ ଦେହେ କିସ ପ୍ରୟୋଜନ ॥
କେବଳ ଭଜୁଥାଅ ହରି । ତୋ ମନେ ସନ୍ଦେହ ନ କରି ॥
ଏମନ୍ତ କରି ଅନୁକୂଳ । କରି ଚଳିଲା ନୀଳାଚଳ ॥
ପ୍ରବେଶ ହେଲା କ୍ଷେତ୍ରବରେ । ସାଧୁ ବୈଷ୍ଣବଙ୍କ ସଙ୍ଗରେ ॥
କେତେହେଁ ଦିନ ତହିଁ ରହି । ପ୍ରତିମାମାନ ତ ଦେଖଇ ॥
ଶ୍ରୀଜଗନ୍ନାଥଙ୍କୁ ଦର୍ଶନ । କରିଣ ଚଳିଲା ଦକ୍ଷିଣ ॥
କାହିଁ କେମନ୍ତ କଲା ଅବା । ତାହା ଜାଣନ୍ତି ସୁରଦେବା ॥
ଶୁଣ ହେ ମନ ନୃପନାଥ । ଏ ସାଲବେଗର ଚରିତ ॥
ଜୀବନ୍ତେ ଶ୍ରୀନନ୍ଦକହ୍ନାଇ । ଦେଖିଲା ଚର୍ମନେତ୍ରେ ଗୁହିଁ ॥
ତା ଗତି ମୁକ୍ତ ଯେବା ହେଉ । ତାହା ଜାଣିବେ ମହାବାହୁ ॥
ଏ ଦାର୍ଢ୍ୟଭକ୍ତି ରସାମୃତ । ସୁଜନେ ଏଥେଁ ଦିଅ ଚିତ୍ତ ॥
ପଢ଼ ଶୁଣନ୍ତେ ମୋକ୍ଷଗତି । ଯମ ଦଣ୍ଡକୁ ନାହିଁ ଭୀତି ॥
ସକଳ କର୍ମସିଦ୍ଧି ହେବ । କେବଳ ବିଶ୍ୱାସ ଯା ଥିବ ॥
କହଇ ବିପ୍ର ରାମଚନ୍ଦ୍ର । ମୋ ପ୍ରଭୁ ବୃନ୍ଦାବନଚନ୍ଦ୍ର ॥
ସାଧୁଜନଙ୍କ ପାଦ ଧୂଳି । ମଣ୍ଡନ ହେଉ ମୋ ମଉଳି ॥

ଇତି ଶ୍ରୀଦାର୍ଢ୍ୟତାଭକ୍ତିରସାମୃତେମନଚୈତନ୍ୟ ସମ୍ବାଦେ
ସାଲିବେଗ ଦାର୍ଢ୍ୟଭାବ ବର୍ଣ୍ଣନେ ନାମ ସପ୍ତବିଂଶୋଽଧ୍ୟାୟଃ ।

---

## ଅଷ୍ଟାବିଂଶ ଅଧ୍ୟାୟ
## ଦାସିଆବାଉରୀ ସମ୍ବାଦ

ଚୈତନ୍ୟ ଉବାଚ

ଶୁଣ ସୁମନ ମହାରଥୀ । କହଇ ବିଷ୍ଣୁଭକ୍ତି କଥା ॥
କ୍ଷେତ୍ରକୁ ଛଅ କୋଶ । ବାଲିଗ୍ରାମରେ ତାର ବାସ ॥

ଜାତରେ ଅଟଇ ଖନ୍ଦାଳ । ନ ଜାଣେ ପାପ ପୁଣ୍ୟ ଫଳ ॥
ନାମ ତା ଦାସିଆ ବାଉରୀ । ଶବର ଜାତ ଭୁଲେ ସରି ॥
ନାହିଁ ତା ପୁତ୍ର ପୁତ୍ରୀ ଧନ । ଅତି ଦରିଦ୍ର ତା ଜୀବନ ॥
ପତ୍ନୀ ସହିତେ ବେନି ପ୍ରାଣୀ । ଧନ ବଞ୍ଚନ୍ତି ଲୁଗା ବୁଣି ॥
ସେ ଗ୍ରାମେ ବିପ୍ରଙ୍କର ଘରେ । ବ୍ରତ ଉତ୍ସବମାନଙ୍କରେ ॥
ନାମ ଗାୟନ ଯେବେ ହୋଇ । ତେବେ ଶୁଣଇ ସୁଖପାଇ ॥
ନ ଜାଣେ ଭାବ ଅର୍ଥ କିଛି । ଶୁଣିବା କଥା ତାର ଅଛି ॥
ଏମନ୍ତେ ଗଲା କେତେ ଦିନ । ତା ଦେହେ ଉପୁଜିଲା ଜ୍ଞାନ ॥
ହୋଇଲା ଗୁରୁମନ୍ତ୍ରଧାରୀ । ମାଳା ତିଳକ ନିତ୍ୟେ କରି ॥
ବସେ ସୁଜନଜନ ପାଶେ । ଅତ୍ୟନ୍ତ ମନର ହରଷେ ॥
ନିତ୍ୟ ଶୁଣଇ ହରି କଥା । ବୁଝଇ ପାପପୁଣ୍ୟ ମିଥ୍ୟା ॥
ଯେତେବେଳରେ ଯାହା ମିଳେ । ତାହା ଭୁଞ୍ଜଇ ସୁଖହେଲେ ॥
ଯେତେ ସେ ଦୁଃଖସୁଖ ପାଇ । ସମସ୍ତ ସମାନ ମଣଇ ॥
ଚିନ୍ତା ନ ଥାଇ ମନେ ତାର । ବୋଲଇ ଧନ୍ୟ ଏ ମୋହର ॥
ବିଧାତା ମୋତେ ଏହା କଲା । ନୀଚଜାତରେ ଜନ୍ମ ଦେଲା ॥
କାହୁଁ ପାଇବି ହରିଭକ୍ତି । ଜୀବନ ନୋହିବ ମୋ ମୁକ୍ତି ॥
ଏମନ୍ତ ବିଚାରେ ସେ ଚିତ୍ତ । ହୋଇଲା ଶ୍ରୀଗୁଣ୍ଡିଚା ଯାତ ॥
ସକଳଦେଶୁ ଲୋକମାନେ । ଆସନ୍ତି ପ୍ରଭୁ ଦରଶନେ ॥
ସ୍ତ୍ରୀ ପୁରୁଷ ଯୁବାନାରୀ । ବୃଦ୍ଧ ବାଳକ ଆଦିକରି ॥
ପଥରେ କରନ୍ତେ ଗମନ । ବିଚାର କଲା ତାର ମନ ॥
ବାରେ ମୁଁ ଯାତ୍ରା ଦେଖି ଯିବି । ପ୍ରଭୁଙ୍କୁ ଦର୍ଶନ କରିବି ॥
କେମନ୍ତ ରୂପ ଭଗବାନ । ଦେଖିବ ଏ ଚର୍ମନୟନ ॥
ଏମନ୍ତ ବିଚାରି ତା ଚିତ୍ତେ । ଗମିଲା ଲୋକଙ୍କ ସଙ୍ଗତେ ॥
ପ୍ରବେଶ ହେଲା କ୍ଷେତ୍ରବରେ । ଶ୍ରୀନନ୍ଦିଘୋଷ ପାରୁଶରେ ॥
ରଥେ ଦେଖିଲା ଜଗନ୍ନାଥ । ମଥାରେ ଦେଲା ବେନିହସ୍ତ ॥

କଲା ଶ୍ରୀମୁଖକୁ ଅନାଇ । ବେନି ନୟନୁ ଧାର ବହି ।
ରଙ୍ଗ ଅଧରେ କଲାଡ଼ୋଳା । ଦେଖି ଭାବରେ ହେଲା ଭୋଳା
ଗୁହାଁଲା ପ୍ରଭୁ ଚତୁର୍ଭୁଜ । ବୋଇଲା ନମୋ ଦେବରାଜ ।
ମୁଁ ମହାପାପୀ ଏ ଜଗତେ । ଉଦ୍ଧର ମୋତେ ଜଗନ୍ନାଥେ ।।
ନ କର ମୋ ବିଷୟେ ହେଳ । ମୋ ହୃଦେ ଜ୍ଞାନଦୀପ ଜାଳ ।।
ତୁମ୍ଭେ ଯେ ପତିତପାବନ । ମୋତେ ଉଦ୍ଧର ଭଗବାନ ।।
ଏମନ୍ତ ବୋଲି ଭୋଳ ହେଲା । ସାଷ୍ଟାଙ୍ଗେ ଦଣ୍ଡବତ କଲା ।।
ଉଠି ମଥାରେ କର ଦେଇ । କହିଲା ବହୁତ ବିନୟୀ ।।
ବୋଇଲା ତୁମ୍ଭେ ମାତ୍ର ସତ୍ୟ । ମିଥ୍ୟା ଏ କେବଳ ଜଗତ ।
ଏବେ ତୁ ସତ୍ୟ ଆଚ୍ଛୁ ମୂଳ । ଏ କଥା ଭାବଇ କେବଳ ।
ଏମନ୍ତ କହି ରୂପ ଗୁଣି । ଗ୍ରାମୁରୁ ହୋଇଲା ମେଲାଣି ।।
ଯାଇ ତା ମନ୍ଦିରେ ପ୍ରବେଶ । ପତ୍ନୀ ବୋଇଲା ଭୁଞ୍ଜି ବସ ।
ଶୁଣି ଚରଣ ଧୋଇ ବସି । ପତ୍ନୀ ତା ଭୋଜନ ପରଷି ।।
ଉଆ ଗୁଡ଼ଳ ପେଜ ଜାଉ । ବାନ୍ଧବାମାନଙ୍କେ ଓହଲାଉ ।।
ନୂଆ ହାଣ୍ଡିରେ ବାନ୍ଧକରି । ରଖି ଯେ ଥିଲା ତାରୁ ନାଗ ।
ହାଣ୍ଡିକି ସମାନ ହୋଇଛି । ଉଣା ଅଧିକ ନାହିଁ କିଛି ।।
ଉପରେ ପଡ଼ିଅଛି ସର । ଶାଗ ମେଞ୍ଚାଏ ତା ଉପର ।।
ରଖନ୍ତେ ପଡ଼ିଲା ଲହସି । ଅଳପ ଶେଷମାନେ ଦିଶି ।
ରଖିଲା ସ୍ୱାମୀ ଆଗେ ନେଇ । ସ୍ୱାମୀ ତା ଦେଲାକ ଅନାଇ ।
ସୁରଙ୍ଗ ଦିଶେ ହାଣ୍ଡିଧାର । ମଧ୍ୟେ ଧବଳ ପେଜ ସର ।।
ତା ମଧ୍ୟେ ଶାଗ ଦିଶେ କଳା । ବୋଲେ ଏ ଶ୍ୱେତପଦ୍ମଡ଼ୋଳା
ଏହା ମୁ ଖାଇବ କେମନ୍ତେ । ବୋଲେ ଭାବନା କରି ଚିତ୍ତେ ।
ଦେହ ହୋଇଲା କମ୍ପମାନ । ବଦନୁ ନ ସ୍ଫୁରେ ବଚନ ।।
ନେତ୍ରଯୁଗଳୁ ଲୁହ ଗଳି । ଟାଙ୍କୋଶିଗଲା ରୋମାବଳୀ ।
ଉଠିଲା ବାଇପ୍ରାୟ ହୋଇ । କାହାକୁ ଅବା କସ କହି ।।

କରେ ବଜାଇ କରତାଳ । ରଙ୍ଗେ ନାଚଇ ଢଳି ଢଳି ॥
ତା ଦେଖି ପତ୍ନୀ ଡକାପାରି । ସେ ଗ୍ରାମଲୋକଙ୍କୁ ହକାରି ॥
ଧାଇଁ ଆଇଲେ ଜଣକେତେ । କହିଲା ତାହାଙ୍କ ଅଗ୍ରତେ ॥
ସ୍ୱାମୀ ମୋ କ୍ଷେତେ ଯାଇଥିଲେ । ବାଦେ କେ କିସ କରିଦେଲେ ॥
ଦେଖ ସାକ୍ଷାତେ ହେଲେ ବାଇ । କି ବୁଦ୍ଧି କରିବଇଁ ମୁହିଁ ॥
ତାହା ଶୁଣିଣ ଜନେ ଧୀରେ । କହନ୍ତି ଦାସିଆ ଆଗରେ ॥
କହ ହୋ ତୁ କିମ୍ପା ଏମନ୍ତ । ଡେଉଁଛୁ ନ ଖାଇଣ ଭାତ ॥
ତା ଶୁଣି ଦାସିଆ କହଇ । ଶୁଣ ହେ ସମସ୍ତ ଗୋସାଇଁ ॥
ହାଣ୍ଡି ସୁରଙ୍ଗ ପେଜ ଧଳା । ତା ମଧ୍ୟେ ଶାଗ ଦଳେ କଳା ॥
ସାକ୍ଷାତେ ପଦ୍ମଡୋଳା ଏହି । ଗୋଳି କି ରୂପେ ଖାଇବଇଁ ॥
ଏମନ୍ତ କହି ଭାବଭୋଳେ । ନୃତ୍ୟ କରଇ ଅବହେଳେ ॥
ଏହା ଶୁଣିଣ ସର୍ବଜନ । ବୋଇଲେ ଧନ୍ୟ ତୋ ଜୀବନ ॥
ଏ ଭାବ ପାଇଲୁ ତୁ କାହିଁ । କୃପା କି କଲେ ଭାବଗ୍ରାହୀ ॥
ଆମ୍ଭେ ସମସ୍ତେ ହେଲୁ ତୋଷ । ତୋ ନାମ ବାଳଗ୍ରାମ ଦାସ ॥
ପତ୍ନୀକି ବୋଇଲେ ଲୋ ଶୁଣ । ସେ ହାଣ୍ଡି ଅଲଗା କରିଣ ॥
ଆଉ ହାଣ୍ଡିରେ ପେଜ ଭରି । ଶାଗକୁ ଦିଅ ଭିନ୍ନ କରି ॥
ସେ ପୁଣି ସେହିପରି କଲା । ସ୍ୱାମୀ ପାଖରେ ନେଇ ଦେଲା ॥
ତା ଦେଖି ବାଳଗ୍ରାମ ଦାସ । ଖାଇ ସେ ହୋଇଲା ହରଷ ॥
ମୁଖ ପଖାଳି ଭାବଭୋଳେ । ଚିତ୍ତ ନିବେଶି ପଦ୍ମଡୋଳେ
ସେ ଶବ୍ଦ ବିନା ଅନ୍ୟ ତାର । ପଶଇ ନାହିଁ କର୍ଣ୍ଣଦ୍ୱାର ॥
କେବଳ ଶ୍ୱେତପଦ୍ମଡୋଳା । ଭାବ ଭାବରେ ହେଲା ଭୋଳା ॥
ରାତ୍ର ଦିବସ ସେ ନ ଜାଣି । ବିଷୟୀ ବିଷପ୍ରାୟ ମଣି ॥
ଅନ୍ନ ଭୋଜନେ ଆଶା ନାହିଁ । ଯାଉ ବା ଥାଉ ନିଜ ଦେହୀ ॥
ସତ୍ୟ ବଚନ କଲା ସାର । ଯେ ମିଥ୍ୟା କହେ ସତ୍ୟ ତାର ॥
ଦୟା ବିନୟ ଶାନ୍ତ ଭାବ । ଚିନ୍ତଇ ମନେ ପଦ୍ମନାଭ ॥

ସକଳ ଇନ୍ଦ୍ରିୟ ନିବାରି । ଚନ୍ଦ୍ରଇ ଶଙ୍ଖଚକ୍ରଧାରୀ ॥
ସେ ଯେଉଁ ଶ୍ରୀମୁଖଲାବଣ୍ୟ । ନୟନ ବୁଜି କରେ ଧ୍ୟାନ ॥
ସେ ଯେଉଁ ନନ୍ଦଘୋଷ ରଥେ । ମନକୁ ଥୋଇଲା ନିରତେ ॥
ସେ ଯେଉଁ ଘଣ୍ଟା ବାଦ୍ୟସ୍ୱନ । ତହିଁକି ଡେରିଥାଇ କର୍ଣ୍ଣ ॥
ଅଭୟ ପାଦପଦ୍ମ ଗତେ । ମଉଳି ନିବେଶି ନିରତେ ॥
ବଦନେ ଏକା ଦାରୁ ହରି । ରହଇ ଦିବସ ଶର୍ବରୀ ॥
ବିଷୟ କର୍ମମାନଙ୍କରେ । ଚିତ୍ତ ନିବେଶି ହରିଠାରେ ॥
ଏମନ୍ତେ ଗଲା ଦିନାକେତେ । ତ ଭାବ ଜାଣି ଜଗନ୍ନାଥେ ॥
ଯେ ପ୍ରଭୁ ଭକତବତ୍ସଳ । ଭକତ ଭାବ ଯାର ମୂଳ ॥
ନାହିଁ ତା ଜାତି କ୍ରିୟା କର୍ମ । ନାହିଁ ତପସ୍ୟା ଦାନ ଧର୍ମ ॥
ନାନା ବ୍ରତାଦି ତୀର୍ଥ ଯେତେ । କିଛି ନ ରୁଚେ ତାର ଚିତ୍ତେ ॥
କିସ ହୋଇବ ଦାନ ପୁଣ୍ୟ । ଯେତେ ବା କଲେ ଦେବାର୍ଚ୍ଚନ ॥
ଏଣେ ପାଇବ ତାଙ୍କୁ କାହିଁ । ଯହିଁ ଲୋଡ଼ିଲେ ତହିଁ ଥାଇ ॥
ଭାବର ବନ୍ଧୁ ଭାବଗ୍ରାହୀ । ସକଳ ଜୀବେ ଦୟାବନ୍ତ ॥
ମନରୁ ଛାଡ଼ି ସବୁ ଭୟ । ନିରତେ ଆନନ୍ଦ ହୃଦୟ ॥
କରିବ ହରିନାମ ମୂଳ । ମୂଳଟି ବିଶ୍ୱାସ କେବଳ ॥
ଭୃତେ ଚନ୍ତଇ ତାଙ୍କୁ ଯେହି । ସେ ହରି ଥାଏ ତାର ତହିଁ ॥
ଏ କଥା ଅଛଇ ପ୍ରମାଣ । ଶୁଣ ହେ ମନ ନୃପବାଣ ॥
ସେ ଭକ୍ତ ସେହି ଭାବ ବନେ । କିଛି ନ ଜାଣେ ରାତ୍ରଦିନେ ॥
ଏକଦିନେ ସେ ଶୟନରେ । ମନ ନିବେଶି ଶ୍ରୀପୟରେ ॥
ହୋଇଣ ଅତି ତନ୍ଦ୍ରାବନ୍ତ । ବିଗୁରି କଲା ତାର ଚିତ୍ତ ॥
କୃପା କି କରିବେ ଶ୍ରୀହରି । ଦେଖିବି ଶଙ୍ଖଚକ୍ରଧାରୀ ॥
ତା ମନ ଜାଣି ଭଗବାନ । ତେଜିଲେ ରତ୍ନ ସିଂହାସନ ॥
ବିଜୟ କଲେ ପୀତବାସ । ମିଳିଲେ ଭକତର ପାଶ ॥
ଦେଖିଲା ନୟନ ପୂରାଇ । ବୋଇଲା ନମୋ ଭାବଗ୍ରାହୀ ॥

ରଥେ ମୁଁ ଦେଖିଥିଲି ଯାହା । ସାକ୍ଷାତେ ଦେଖିଲଇଁ ତାହା ॥
ବ୍ରହ୍ମା ଇନ୍ଦ୍ରାଦି ସୁରାସୁର । ଯକ୍ଷ ଗନ୍ଧର୍ବ ଯେ କିନ୍ନର ॥
ସିଦ୍ଧ ଯୋଗୀନ୍ଦ୍ର ମୁନିଗଣ । ଚିନ୍ତନ୍ତି ଯେ ହରି ଚରଣ ॥
ମନେ କରନ୍ତି ନିତ୍ୟେ ଭାବ । ତାଙ୍କୁ ତୋ ଦର୍ଶନ ଦୁର୍ଲଭ ॥
ମୁଁ ଯେ ଅଜ୍ଞାନ ହୀନ ଜାତି । ନାହିଁ ମୋ ଭକ୍ତିକି ସ୍ତୁତି ଗତି ॥
ବିଜୟ କଲ ମୋର ପୁର । ହେ ପ୍ରଭୁ ବ୍ରହ୍ମାଣ୍ଡ ଠାକୁର ॥
ତା ଶୁଣି ପ୍ରଭୁ ପୀତବାସ । ବୋଲନ୍ତି ଶୁଣ ଆରେ ଦାସ ॥
ସ୍ୱର୍ଗାଦି ଅପବର୍ଗ ଯେତେ । କେବେ ନ ରଚେ ମୋର ଚିତ୍ତେ ॥
ଭକତଭଵରେ ଯେ ଭଜଇ । ମୋ ମନ ତା ଠାରେ ମଜ୍ଜଇ ॥
ତେଣୁ ତୋ ଭାବ ମୋର ମୂଳ । ହେ ଭକ୍ତ ମାଗିନେନ ବର ॥
ଶୁଣି ବାଲିଆ ଦାସ ତୋଷେ । ଜଣାଏ ପ୍ରଭୁଙ୍କର ପାଶେ ॥
ପଦ୍ମ ଚରଣ ତୁମ୍ଭ ଭାବ । କୋଟିଏ ବାର ଲୁଚିଯିବ ॥
ବରେ ମୋ ପ୍ରୟୋଜନ ନାହିଁ । ଏତେକ ଦେବ ଭାବଗ୍ରାହୀ ॥
ତୋ ଭକ୍ତମାନଙ୍କ ଚରଣେ । ମୋ ମନ ଥାଉ ଅନୁକ୍ଷଣେ ॥
ଯେବେ ମୁଁ ମନରେ ଭାବିବ । ତୁମ୍ଭ ଦର୍ଶନ ପାଉଥିବ ॥
ଏ ବର ମୋତେ ଆଜ୍ଞା ହେଉ । ଅଧିକ ଲୋଡ଼ା ନାହିଁ ଆଉ ॥
ତା ଶୁଣି ପ୍ରଭୁ ଭଗବାନ । ବୋଇଲେ ଧନ୍ୟ ତୋ ଜୀବନ ॥
ତୁ ଯେବେ ଯିବୁ କ୍ଷେତ୍ରବରେ । ମୁଁ ଥିବ ନୀଳଚକ୍ର ପରେ ॥
ତହିଁ ଚିନ୍ତିବୁ ଯେଉଁ ରୂପ । ମୁଁ ହେବ ତେମନ୍ତ ସ୍ୱରୂପ ॥
ତୁ ଯେଉଁ ଦ୍ରବ୍ୟ ଯାଚି ଦେବୁ । ଆମ୍ଭେ ତା ଅବଶ୍ୟ ଭୁଞ୍ଜିବୁ ॥
ଏ ବର ତୋତେ ଅସ୍ତୁ ହେଉ । ବୋଲି ବିଜୟେ ମହାବାହୁ ॥
ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ । ଶୁଣ ହେ ସୁମନ ରାଜନ ॥
ଭକତ ଭାବରେ ସେ ବଶ । ଅଭାବେ ନ ପାଇବ ଲେଶ ॥
ଶୁଣ ହେ ମନ ନୃପନାଥେ । ଏଥି ଉତ୍ତରୁ କଥା ଯେତେ ॥
ଏମନ୍ତ ବର ଭକ୍ତ ପାଇ । ଆନନ୍ଦ କେ ପାରିବ କହି ॥

**ଦାସିଆ ବାଉରୀ** ପୃଷ୍ଠା ୨୩୨-୨୩୩



ଜଗନ୍ନାଥ ହାତ ବଢ଼ାଇ ଦାସିଆ ବାଉରୀ ପଠାଇଥିବା ନଡ଼ିଆ ନେଇ ଯାଉଛନ୍ତି ।

ରଜନୀ ପ୍ରଭାତରୁ ଉଠି । ଶ୍ରୀଜଗନ୍ନାଥ ନାମ ରଟି ॥
ବସ୍ତ୍ର ଖଣ୍ଡିଏ ଥିଲା ବୁଣି । ବାଣ କଉଡ଼ି ଗଲା ଆଣି ॥
ସେ ବସ୍ତ୍ର ବପ୍ରଘରେ ଦେଇ । ଦ୍ୱାରେ ଅଛଇ ଉଭା ହୋଇ ॥
ଦେଖିଲା ନାରିକେଳ ଗଛ । ବହୁତ ହୋଇନାହିଁ ଉଚ୍ଚ ॥
ଏକଇ ଫଳ ଫଳିଅଛି । ତା ଦେଖି ବ୍ରାହ୍ମଣଙ୍କୁ ପୁଚ୍ଛି ॥
ଏ ଫଳ ଗୋଟି ମୋତେ ଦିଅ । ବାଣ କଉଡ଼ି କାଟିନିଅ ॥
ତା ଶୁଣି ବ୍ରାହ୍ମଣ କହଇ । ପ୍ରଥମ ଫଳ ଗୋଟି ଏହି ॥
ଏ ଫଳଗୋଟି ଯେବେ ନେବୁ । କହ କଉଡ଼ି କେତେ ଦେବୁ ॥
ଦାସେ ବୋଲନ୍ତି ତୁମ୍ଭ ମନ । ଯେତେକ ଅଛି ତେତେ ଦେନ
ବ୍ରାହ୍ମଣ ବୋଲନ୍ତି ତୁ ଶୁଣ । ଏ ବସ୍ତ୍ର ଖଣ୍ଡି ଯେତେ ବାଣ ॥
ତେତେକ ଯେବେ ଛାଡ଼ିଦେବୁ । ତେବେ ଏ ଫଳ ଗୋଟି ନେବୁ
ଦାସେ ବୋଇଲେ ହେଉ ନିଅ । ଏ ଫଳ ଗୋଟି ମୋତେ ଦିଅ ॥
ଏମନ୍ତ ବୋଲି ଗଲା ଧାଇଁ । ସ୍ନାନ ଶଉଚ ଆଦି ହୋଇ ॥
ଲେଉଟି ଅଇଲା ତୁରିତ । ମିଳିଲା ବ୍ରାହ୍ମଣ ଅଗ୍ରତ ॥
ବ୍ରାହ୍ମଣ ତୋଳାଇ ସେ ଫଳ । ଛଡ଼ାଇ ରଖିଛି ବକଳ ॥
ସେ ଫଳ ଘେନିଗଲେ ଦାସେ । ଅତ୍ୟନ୍ତ ମନର ହରଷେ ॥
ଯାଉଁ ଯାଉଁ ସେ ପଥେ ପୁଣ । ଦେଖିଲା ଏକଇ ବ୍ରାହ୍ମଣ ॥
ପଇଡ଼ ଶ୍ରୀଫଳ ପଣସ । ଆମ୍ବ କଦଳୀ ଇକ୍ଷୁରସ ॥
ଛେନା ଗୁଡ଼ିକା ଦୁଧ ଦହି । ଘୃତ ନବାତ ଦିବ୍ୟ ଖଇ ॥
ଏମାନ ଘେନାଇ ସଙ୍ଗତେ । ପ୍ରଭୁଙ୍କ ମଣୋହି ନିମନ୍ତେ ॥
ଯାଇ ବ୍ରାହ୍ମଣେ ଯାଉଥିଲେ । ତାହାଙ୍କ ପାଶରେ ମିଳିଲେ ॥
ଦାସେ ବୋଇଲେ ବିପ୍ରବର । କଥାଏ ଶୁଣିବ କି ମୋର ॥
ଏ ତୁମ୍ଭ ଦ୍ରବ୍ୟମାନ ଯେତେ । ନେଇଣ ପ୍ରଭୁଙ୍କ ଅଗ୍ରତେ ॥
ମଣୋହି କରାଇ ଯାଇବ । ମୋ କଥା ମନେ ପକାଇବ ॥
ଏ ମୋ ଶ୍ରୀଫଳ ଗୋଟି ଧର । ଗରୁଡ଼ ପଛେ ରହି କର ॥

ବୋଲିବ ବାଲଗ୍ରାମ ଦାସ । ଦେଇଛୁ ନାଅ ପୀତବାସ ॥
ସେ ଯେବେ ଶ୍ରୀହସ୍ତ ବଢ଼ାଇ । ତୁମ୍ଭର ହସ୍ତରୁ ଛଡ଼ାଇ ॥
ନେଇବେ ତେବେ ତାଙ୍କୁ ଦେବ । ନୋହିଲେ ଆଣି ମୋତେ ଦେବ ॥
ଏମନ୍ତ ବୋଲି ଫଳ ଦେଲା । ଅନେକ ବଚନେ କହିଲା ॥
ତା ଶୁଣି ବିପ୍ର ହସିଦେଲେ । ସେ ଫଳ ନେଇ ଚଳିଗଲେ ॥
କ୍ଷେତ୍ରରେ ହୋଇଲେ ପ୍ରବେଶ । ଏଣେ ଘରକୁ ଗଲେ ଦାସ ॥
ଏଥିଅନ୍ତରେ ସେ ବ୍ରାହ୍ମଣ । ପ୍ରଭୁ ସେବକଙ୍କୁ ଘେନି ॥
ସକଳ ଦ୍ରବ୍ୟମାନ ଦେଲେ । ପ୍ରଭୁ ମଣୋହି କରାଇଲେ ॥
ଅତି ଆନନ୍ଦେ ମୋଦଭରି । ମହା ପ୍ରସାଦ ସେବା କରି ॥
ଉଠିଣ କରନ୍ତେ ଗମନ । ପଡ଼ିଲା ଦାସଙ୍କଥା ମନ ॥
ବୋଇଲେ ବାଲିଗାଁ ବାଉରି । ଶ୍ରୀଫଳ ଗୋଟି ଦେଇ କରି ॥
ଯାହା ସେ କହିଛନ୍ତି ମୋହରେ । ତା ଦେଖି ବୁଝିବାଟି ଥରେ ॥
ଏମନ୍ତ ମନେ ବିଚାରିଲେ । ଶ୍ରୀଫଳ ଗୋଟି ଅଣାଇଲେ ॥
ଗରୁଡ଼ ପଛେ ରହି କରି । ବୋଇଲେ ନମୋ ଦାରୁହରି ॥
ବାଲିଗାଁ ଦାସ ଅଛି ଦେଇ । ନେଇବ ଶ୍ରୀହସ୍ତ ବଢ଼ାଇ ॥
ନୋହିଲେ ନେଉଛି ନେବ । ନୟନ ବୁଜ ଏହା ଭାବ ॥
ତାହା ଜାଣିଲେ ଭାବଗ୍ରାହୀ । ଶ୍ରୀହସ୍ତ ଦେଲେକ ବଢ଼ାଇ ॥
ବିପ୍ର ହସ୍ତରୁ ନେଇଗଲେ । ସୁଖରେ ମଣୋହି ତା କଲେ ॥
କମଳା ନ ପାଇଲେ ଲେଶ । ଦେଖି ସେ ଭକତ ବିଶ୍ୱାସ ॥
ତା ଦେଖି ବିପ୍ର ଭାବେଭୋଳ । ନୟନୁ ବହେ ଅଶ୍ରୁଜଳ ॥
ବୋଇଲେ ଧନ୍ୟ ତୋ ଜୀବନ । ଧନ୍ୟ ତୋ ପିତା ମାତା ଧନ୍ୟ ॥
ଧନ୍ୟ ହେ ବାଲଗ୍ରାମ ଦାସ । ତୋତେ ପ୍ରସନ୍ନ ପୀତବାସ ॥
ଏମନ୍ତ ବୋଲି ସ୍ତୁତି କରି । ଦେଉଳେ ପଡ଼ିଗଲା ହରି ॥
ଶୁଣ ହେ ମନ ମହାରଥୀ । ଏଥି ଉତ୍ତରେ ଯେତେ କଥା ॥
ବାଲିଗାଁ ଦାସ ଏକଦିନେ । ବିଚାରି କଲା ତାର ମନେ ॥

ବୋଲେ ମୁଁ କ୍ଷେତ୍ରବରେ ଯିବ । ପ୍ରଭୁଙ୍କୁ ଦର୍ଶନ କରିବ ॥
କିସ ମୁଁ ଘେନିଯିବ ହସ୍ତେ । ସେ ପ୍ରଭୁ ମଣୋହି ନିମନ୍ତେ ॥
ଏମନ୍ତେ ବଗିଚରନ୍ତେ ବସି । ପାଚିଲା ଆମ୍ବ ବକା ଆସି ॥
ତା ଦେଖି ହୋଇଲା ହରଷ । ବାନ୍ଧୁ କଣିଣ ପୁଞ୍ଜା ଦଶ ॥
ଉତ୍ତମ ସୁରଙ୍ଗ ହୋଇଛୁ । ଅନ୍ୟ କଳଙ୍କ ନାହିଁ କିଛୁ ॥
ରସାଳ ତାଳର ସମାନ । ଦେଖି ହରଷ ହେଲା ମନ ॥
ଉତ୍ତମ ଶୁଚିମନ୍ତ ହୋଇ । ଘାର କରିଣ କନ୍ଧେ ବହି ॥
ପ୍ରବେଶ କ୍ଷେତ୍ରବରେ ହେଲେ । ଦେଖି ସେବକେ ଗୋଳ କଲେ ॥
କେ ବୋଲେ ମୁହିଁ ଘେନିଯିବ । ପ୍ରଭୁଙ୍କ ଆଗେ ନେଇ ଦେବ ॥
କେ ବୋଲେ ମୋ ର ସିନା ସବୁ । ଦେଖି କେମନ୍ତେ ତୁହି ନେବୁ ॥
କେ ବୋଲେ ଏଣେ ଘେନିଆସ । ଏ ଆମ୍ବ ନେବ ମୁଁ ଅବଶ୍ୟ ॥
ଏମନ୍ତ ବୋଲି ଝିଙ୍କାଝିଙ୍କି । ହୋଇ ଗୋଡ଼ାନ୍ତି ଆମ୍ବ ଦେଖି ॥
ତା ଦେଖି ବାଳିଗ୍ରାମ ଦାସ । ଅଳପ ହେଲା ହସ ହସ ॥
ବୋଇଲା ଶୁଣ ହେ ଗୋସାଇଁ । ମୁଁ ତ କାହାକୁ ଦେବ ନାହିଁ ॥
ଶୁଣି ସେବକେ କଲେ ରୋଷ । ବୋଇଲେ ଶୁଣ ଆରେ ଦାସ ॥
ଯେବେ ତୁ ଆମ୍ଭଙ୍କୁ ନ ଦେବୁ । କହ ତୁ ଏହା କି କରିବୁ ॥
ଏ ପ୍ରଭୁ ଅନ୍ତ୍ରଣିଆ ଧନ । ଏହା ଛୁଇଁ ତ କେ ଘଜନ ॥
ତୁ ନେଇ କି କରି ପାରିବୁ । ଆମ୍ଭଙ୍କୁ ସିନା ଯାଚି ଦେବୁ ॥
ତା ଶୁଣି ବାଳିଗ୍ରାମ ଦାସ । ପଛକୁ ଘୁଞ୍ଚି ଭଙ୍ଗା ଦଶ ॥
କନ୍ଧରୁ ଘାର ତଳେ ଥୋଇ । ନୀଳଚକ୍ରକୁ ଦେଲା ଚାହିଁ ॥
ବିଜୟ ବ୍ରାହ୍ମଣ ଗୋସାଇଁ । ବୋଲେ ମୁଁ ପରମୁଣ୍ଡା ଯାଇ ॥
ମୋ ଘାର ପାଇଁ ଏତେ ସତ୍ୟ । ବୋଲି ମସ୍ତକେ ଦେଲା ହସ୍ତ ॥
ଅନେକ ପ୍ରଣିପାତ କଲା । ପାଚିଲା ଆମ୍ବକୁ ଧଇଲା ॥
ବୋଇଲା ଶୁଣ ଭଗବାନ । ଏ ଯେବେ ତୁମ୍ଭ ନିଜ ଧନ ॥
ତୁମ୍ଭ ଇଚ୍ଛାରେ ସେବକର । ଗୋଳ କିପାଇଁ ଏହାଙ୍କର ॥

ଏମନ୍ତ ଯାଚୁ କରେ ଧରି । ଯେ ଆମ୍ବ ଶୂନ୍ୟେ ଗଲା ଚଳି ॥
ପଡ଼ିଲା ପ୍ରଭୁଙ୍କର ହସ୍ତେ । ଭୋଜନ କଲେ ଜଗନ୍ନାଥେ ॥
ଯୋଡ଼ିକ ଯୋଡ଼ି ଏହିପରି । ହସ୍ତ ବଢ଼ାଇ ନେଲେ ହରି ॥
ସବୁ ଭୁଞ୍ଜିଲେ ଚକ୍ରପାଣି । ଯେ ପ୍ରଭୁ ଭକ୍ତଚିନ୍ତାମଣି ॥
ହେ ମନ ଶୁଣ ମନଦେଇ । ନିଜ ସ୍ୱଭାବ ତାଙ୍କ ଏହି ॥
ଯେ ଯେତେ ନୀଚଜାତି ହୋଉ । ସେ ଏକ ଭକ୍ତିଭାବେ ଥାଉ ॥
ତାହାର ପତ୍ର ଫଳ ପୁଷ୍ପ । ପାଇଲେ ଶ୍ରୀହରି ସନ୍ତୋଷ ॥
ଯେ ନର ନୀଚଜାତି ହେଉ । ଶ୍ରୀହରି ଭକତ ନ ଥାଉ ॥
ସେ ଯେତେ ସ୍ୱାଦୁଦ୍ରବ୍ୟ ଦେଲେ । ପ୍ରଭୁ ତା ନ ଛୁଅଁନ୍ତି ଭଲେ ॥
ଏଣୁ ସେ ଭକ୍ତ ଦ୍ରବ୍ୟ ସାର । ଅନ୍ତର ହେଲେ ନରହରି ॥
ଯେତେକ ଜନ ଥିଲେ ତହିଁ । ଦେଖୁ ଯେ ଥିଲେ ଭୟହୋଇ ॥
ବୋଇଲେ ଆମ୍ବ କେଣେ ଗଲା । କେ ଏଥେ ମାୟାକରି ନେଲା ॥
ଦାସେ ବୋଇଲେ ଦେଖ ଯାଇ । ଭୁଞ୍ଜିଲେ ବ୍ରହ୍ମାଣ୍ଡ ଗୋସାଇଁ ॥
ଶୁଣି ସେବକ ଧାଇଁଗଲେ । ଦେଉଳେ ପ୍ରବେଶହୋଇଲେ ॥
ଦେଖିଲେ ରତ୍ନ ସିଂହାସନ । ପଡ଼ିଛି ଝାଡ଼ି ଗୋଟିପାମାନ ॥
ତା ଦେଖି ହେଲେ ଆଚମ୍ବିତ । ବୋଇଲେ ଧନ୍ୟ ରେ ଭକତ ॥
ପ୍ରଭୁଙ୍କୁ କଣିଲୁ ଭାବରେ । ତୋ ପରି କେ ଅଛି ସଂସାରେ ॥
ନାହିଁ ନୋହିବ ତୋହ ପରି । ଆମ୍ଭେ ତୋ କେଉଁ ଗୁଣେ ସରି ॥
ଏମନ୍ତ କହି ଚଳିଗଲେ । ପ୍ରଭୁଙ୍କ ଧଣ୍ଡାମାନ ନେଲେ ॥
ବାଲିଗାଁ ଦାସ ଗଲେ ଦେଇ । ବୋଇଲେ ଭକ୍ତଶ୍ରେଷ୍ଠ ତୁହି ॥
ତୋ ଯଶ ରହିଲା ଜଗତେ । ପରମ ପଦ ମିଳୁ ତୋତେ ॥
ଏମନ୍ତ କରି ସେ କଲ୍ୟାଣ । ଗଲେ ସକଳ ବିପ୍ରଗଣ ॥
ତା ଶୁଣି ଦାସ ଭାବଭୋଳେ । ପଡ଼ି ବିପ୍ରଙ୍କ ପାଦତଳେ ॥
ତାହାଙ୍କ ଚରଣର ଧୂଳି । ମଣ୍ଡନ କଲାକ ମଉଳି ॥
ଅନେକ ଦଣ୍ଡବତ କରି । ବୋଲଇ ମୋ ଘର ବାହୁଡ଼ି ॥

ମୋଠାରେ ଏତେକ କୃପାକଲ । ତେଣୁ ମୋହର ଭାଗ୍ୟ ଭଲ ॥
ଏମନ୍ତ ବୋଲି ହୃଦଗତେ । ହରିଙ୍କି ଚିନ୍ତିଲା ଭୂରତେ ॥
ବୋଲଇ ନମୋ ଚକ୍ରପାଣି । ନମୋ ସର୍ବଙ୍କ ଚୂଡ଼ାମଣି ॥
ଏହା ମୁଁ ବର୍ଣ୍ଣରଇ କେତେ । ମତ୍ସ୍ୟାଦି ଅବତାର ଯେତେ ॥
ମୋରେ କରାଇ ଦରଶନ । ପବିତ୍ର କର ମୋ ଜୀବନ ॥
ଏମନ୍ତ ବର୍ଣ୍ଣନ୍ତେ କେତେ । ତାହା ଜାଣିଲେ ଜଗନ୍ନାଥେ ॥
ନୀଳଚକ୍ରରେ ବସେ କରି । ଯେବଣ ବଧି ରୂପ ଧରି ॥
ମତ୍ସ୍ୟ କଳଙ୍କ ରୂପଯାଏ । ଦର୍ଶନ ଦେଲେ ଦେବରାୟେ ॥
ଦାସେ ଦେଖିଲେ ଚର୍ମଡୋଳେ । ତକ୍ଷଣେ ପଡ଼ି ମହୀତଳେ ॥
ଅନେକ ଦଣ୍ଡବତ କଲା । ଉଠି କାଖରେ କର ଦେଲା ॥
ବୋଇଲା ନାସ୍ତିକ ମୁହିଁ । ତୋ କୃପା ଆହାଲାଦ ପାଇ ॥
ଏମନ୍ତ ବୋଲି ଗଲା ଚଳି । ନିଜ ମନ୍ଦିରେ ଯାଇ ମିଳି ॥
ସେ ହରି ଭାବେ ମନ ଦେଇ । ସୁଖେ ବଞ୍ଚିଲା କାଳ ସେହି ॥
ପରମପଦକୁ ଲଭିଲା । ଭକତ ପଣେ ଗଣାହେଲା ॥
ଶୁଣ ହେ ମନ ନୃପମଣି । ଏ ଦାର୍ଢ୍ୟଭକ୍ତି ରସବାଣୀ ॥
ପଢ଼ି ଶୁଣନ୍ତି ଯେଉଁ ଜନ । ଲଭନ୍ତି ଚତୁର୍ବର୍ଗମାନ ॥
କହଇ ରାମଦାସ ଦ୍ୱିଜ । ମୋ ପ୍ରଭୁ ଶଙ୍ଖଚକ୍ର ଭୁଜ ॥
ସୁଜନେ ଏଣେ କର ଲୟ । ଆଉ ନ ଥିବ ଯମ ଭୟ ॥

ଇତି ଶ୍ରୀ ଦାର୍ଢ୍ୟତାଭକ୍ତି ରସାମୃତେ ମନ ଚୈତନ୍ୟ ସମ୍ବାଦେ
ବାଲିଗାଁ ଦାସ ବାଉରୀ ଭକ୍ତତାଭାବ ବର୍ଣ୍ଣନେ
ନାମ ଅଷ୍ଟାବିଂଶୋଽଧ୍ୟାୟଃ ।

---

# ଊନତ୍ରିଂଶ ଅଧ୍ୟାୟ
## ତୁଳସୀଦାସ ସମ୍ବାଦ
### ମନ ଉବାଚ

କହେ ସୁମନ ସହରଷେ । କହ ଚୈତନ୍ୟ ଅତି ତୋଷେ ॥
ପୁଣ ଶ୍ରୀହରି ଭକ୍ତକଥା । ଶ୍ରବଣେ ଖଣ୍ଡୁ ଭବବ୍ୟଥା ॥
ଆଦ୍ରବ ଶୁଣିବାକୁ ମନ । ଶୁଣି ବୋଲଇ ଚଇତନ ॥
ଶୁଣ ହେ ମନ ପୁଣ୍ୟମୟେ । କହିବ ବଚନ କଥାଏ ॥
ଦକ୍ଷିଣ ଦେଶ ସିନ୍ଧୁଙ୍ଗରେ । ବଳୟ ନାମ ପାଟଣାରେ ॥
ଅଛଇ ତାର ନିଜ ବାସ । ଜାତିରେ ଅଟେ ରଜପୁତ ॥
ତୁଳସୀ ଦାସ ନାମ ତାର । ଅତି ସୁନ୍ଦର ସୁକୁମାର ॥
ତା ଭାର୍ଯ୍ୟା ନାମ ସତ୍ୟବତୀ । ସୁପୁଣ ସୁଶୀଳା ଯୁବତୀ ॥
ସ୍ୱାମୀର ଆଜ୍ଞା ଅଲଙ୍ଘିତ । ଏକ ଦୁହିତା ବେନିସୁତ ॥
ଅଶ୍ୱ ଚଢ଼ାରେ ସେହୁ ଦକ୍ଷ । କ୍ଷତ୍ରିୟପଣେ ଅଟେ ମୁଖ୍ୟ ॥
ଅତି ରାଜସ ରଜୋଗୁଣୀ । ଧାର୍ମିକ ପଣେ ତାକୁ ଗଣି ॥
ଦାନୀ ପଣରେ ଜାଣ ସେହି । ମାଗିଲେ ପ୍ରାଣ ପାରେ ଦେଇ ॥
ଶାନ୍ତ ସୁଶୀଳ ସତ୍ୟବାଦୀ । ଦୟାଳୁ ସୁଗୁଣ ସୁବୁଦ୍ଧି ॥
ବପ୍ରବୈଷ୍ଣବେ ଅତି ଦୟା । ଶ୍ରୀକୃଷ୍ଣ ସେବାରେ ନିର୍ମାୟା ॥
ଶ୍ରୀରାମ କଥା ବିନା ଆନ । ରସଇ ନାହିଁ ତାର ମନ ॥
ଜାଣଇ ଏକା ନାମ ବ୍ରହ୍ମ । ରାମ ସକଳ ଧର୍ମ କର୍ମ ॥
ରାମ ଯେ ଜୀବନ ଠାକୁର । ରାମ ସେ ଜାଣଇ ଈଶ୍ୱର ॥
ରାମ ଯେ ଗତି ମୁକ୍ତି ଦାତା । ତା ବିନା ନାହିଁ ନା କରତା ॥
ଏମନ୍ତ ବୋଲି ଦିବା ନିଶି । ଶୁଣଇ ରାମ କଥା ବସି ॥
ଏମନ୍ତେ ଗଲା କେତେ ଦିନ । ଶୁଣ ହେ ସୁମନ ସଜନ ॥
ପ୍ରତ୍ୟହ ସେ ଗ୍ରାମେ ସମସ୍ତ । ପଢ଼ନ୍ତି ରାମାୟଣ ଗ୍ରନ୍ଥ ॥
ସେ ସଭାମଧ୍ୟେ ନିତି ବସି । ଶୁଣୁ ଯେ ଥାଇ ସେ ତୁଳସୀ ॥



ତୁଳସୀ ଦାସ ଶ୍ରୀରାମଚନ୍ଦ୍ର, ଲକ୍ଷ୍ମଣ ଏବଂ ସୀତାଙ୍କୁ ଦେଖି ପାରିଲେ ।

ଆଦ୍ୟରୁ ପ୍ରାନ୍ତ ପରଯନ୍ତେ । ଗାୟନ କରିବାର ନିତ୍ୟେ ॥
ଶ୍ରୀରାମ ଜନ୍ମ କର୍ମବାଣୀ । ଆନନ୍ଦ ହେଉଥାଏ ଶୁଣି ॥
କାର୍ମୁକଭଗ୍ନ ଆଦି କରି । ପରଶୁରାମ ଗର୍ବ ହରି ॥
ତାଡ଼କା ବଧ ଶିଳା ନାରୀ । ଏ କଥାମାନ ଶୁଣିକରି ॥
ଅଙ୍ଗ ପୁଲକ ଉଠୁଥାଇ । ରବେ ନ ପାରେ କଥା କହି ॥
ରାଜ୍ୟରେ ଅଭିଷେକ ହେବା । ସମୟେ ବନବାସ ଯିବା ॥
ଦୁଃଖ ସୁଖ ବା ପାଇବାର । ଶୁଣି କମ୍ପଇ ତା ଶରୀର ॥
ପୁଣି ସେ ପଞ୍ଚବଟୀ କଥା । ଶୁଣି ତା ମନେ ବଡ଼ ବ୍ୟଥା ॥
ଶ୍ରୀରାମ ମାୟାମୃଗ ମାରି । ବିଜୟ କଲେ ଧନୁ ଧରି ॥
ଲକ୍ଷ୍ମଣ କନ୍ଦୁରବେ ଗଲେ । ଏକା ହୋଇଣ ସୀତା ଥିଲେ ॥
ଏମନ୍ତ ସମୟେ ରାବଣ । ଆସି ମିଳିଲା ତତକ୍ଷଣ ॥
କପଟେ ହୋଇଣ ସନ୍ନ୍ୟାସୀ । ପର୍ଣ୍ଣ କୁଟୀରେ ଯାଇଁ ପଶି ॥
ଜାନକୀ ଦେବୀ ଭୁଜ ଧରି । ବଳେ ସେ ଆଣିଲା ଓଟାରି ॥
ରଥରେ ବସାଇଲା ନେଇ । ଶୂନ୍ୟେ ଗମିଲା ବେଗ ହୋଇ ॥
ମିଳିଲା ଲଙ୍କାପୁରେ ଯାଇ । ସୀତା ଦେବୀଙ୍କି ତହିଁ ଥୋଇ ॥
ଏହା ଶ୍ରବଣେ ସେହୁ ଶୁଣି । କୁଳିଶାଘାତ ପ୍ରାୟ ମଣି ॥
କମ୍ପିଲା ଦଶନ ଅଧର । ସ୍ୱେଦ ପୂରିତ କଳେବର ॥
ହଜିଲା ଦେହୁଁ ବୁଦ୍ଧି ଜ୍ଞାନ । ତା ମନ ହେଲା ଅତି ଛନ୍ନ ॥
ତ୍ରିଯୁଗାନ୍ତର କଥା ଶୁଣି । ବର୍ତ୍ତମାନର ପ୍ରାୟ ମଣି ॥
କ୍ରୋଧେ ବଚନ ଗଦଗଦ । ଉଠିଲା କରି ଘୋର ନାଦ ॥
ନୟନ ତମ୍ରାଚକ୍ର ପ୍ରାୟେ । ବୋଲଇ ଯିବ କେଉଁଠାଏ ॥
ଆଜ ମାରିବ ନାରୀଚୋର । ବଂଶର ସହିତେ ତାହାର ॥
ନିଜ ଜନନୀ ମୋର ଆଣି । ଭେଟାଇ ଦେବ ଚକ୍ରପାଣି ॥
ଏମନ୍ତ ବୋଲି ଧନୁ ଧରି । କ୍ରୋଧେ ଅନେକ ଶର ଭରି ॥
ତାଲ କମ୍ପାରି ଯମଦାଢ଼ । କରେ ବରଷ୍ଟ ଅତି ଗାଢ଼ ॥

ଧର ବସିଲା ଅଶ୍ବପରେ । ଧାଇଁଣ ଦକ୍ଷିଣ ବାଗରେ ॥
ତାହା ଜାଣିଲେ ସର୍ବଗ୍ରାହୀ । ଧାଇଁଲେ ଅସମ୍ଭାଳ ହୋଇ ॥
ପବନ୍ ବେଗ ହୋଇ ଚଳି । ସାଗରକୂଳେ ଯାଇ ମିଳି ॥
ଶ୍ରୀରାମ ସୁମର ମନରେ । ପଶିଲା ସମୁଦ୍ର ଭିତରେ ॥
ଆଜ୍ଞା ସେ ଦେଲେ ରଘୁମଣି । ଥୋକେ ତୁ ଘୁଞ୍ଚ ସିନ୍ଧୁ ପାଣି ॥
ଆଜ୍ଞା ପ୍ରମାଣେ ମହାବୀର । ଘୁଞ୍ଚି ସେ ଗଲା ଯୁଣ ଗୁର ॥
ତା ପଛେ ବେଗେ ରଘୁବୀର । ହୋଇ ଅପୂର୍ବ ଦ୍ୱିଜବର ॥
ଡାକଲେ ଦାସେ ଏଣ୍ଡବେଳେ । କିପା ପଶୁଛ ସିନ୍ଧୁ ଜଳେ ॥
ସେ କଥା ଫେଡ଼ି କହ ମୋତେ । ଏ ଦେହ ନ ନାଶ ବ୍ୟର୍ଥେ ॥
ତା ଶୁଣି ଦାସ କ୍ରୋଧଭର । ବୋଇଲେ ଶୁଣ ଦ୍ୱିଜବର ॥
ଯେ ସୀତା ଜଗତଜନନୀ । ତାଙ୍କୁ ରାବଣ ଗଲା ନେଇ ॥
ତା ବଂଶ ନିର୍ବଂଶ କରିବି । ଜାନକୀ ମାନ ଉଦ୍ଧାରିବି ॥
ରାବଣ ମାରି ବା ମରିବି । ଦୁଇରୁ ଏକ ମୁଁ କରିବି ॥
ତା ଶୁଣି ପ୍ରଭୁ ଦାଶରଥି । ବୋଇଲେ ମୂଢ଼ ତୁ ଏ ମତି ॥
ଏ ସିନ୍ଧୁ କେମନ୍ତେ ତରିବୁ । ବ୍ୟର୍ଥେ ଜୀବନ ହାରିବୁ ॥
ନ କର ଏମନ୍ତ ସାହସ । ବେଗେ ତୁ ବାହୁଡ଼ଣ ଆସ ॥
ତାଶୁଣି ବୋଲେ ବୀରମଣି । ଏ କେତେ ମାତ୍ର ସିନ୍ଧୁ ପାଣି ॥
ଲଙ୍ଘିବି କୂପଜଳ ପ୍ରାୟେ । ମାରିବି ଦୁଷ୍ଟ ଲଙ୍କାରାୟେ ॥
ଆଉ ନ କହ ତୁମ୍ଭେ କିଛି । ଏ ଦେହ ପାସୋରି ଦେଇଛି ॥
ଏହା ଯଦ୍ୟପି ନ କରିବି । ଅବଶ୍ୟ ଜୀବନ ହାରିବି ।
ହେ ବିପ୍ର ନ କଥାଳ ମୋତେ । ବୋଲିଣ ଧାଇଁଲା ତୁରିତେ ॥
ତାହାର ମନ ପ୍ରଭୁ ଜାଣି । ବୋଇଲେ ଧନ୍ୟ ବୀରମଣି ॥
ତୁ ଏବେ ଆସ ଲେଉଟିଣ । ଶ୍ରୀରାମ ମାଇଲେ ରାବଣ ॥
ସୀତାଙ୍କୁ ନେଇ ବିଜେକଲେ । ତୁ ଏବେ ଯୁଝିବୁ କା ତୁଲେ ॥
ତାହା ଶୁଣିଣ ବୀରମଣି । ଆହେ ବ୍ରାହ୍ମଣ ଚୂଡ଼ାମଣି ॥

ତୁମ୍ଭେ କହିଲ ଯାହା ମୋତେ । କେବେଁ ମୁଁ ନ ଯାଏ ପରତେ ॥
ଅଚଳ ଯେବେ ହେବ ଚଳ । ଶୀତଳ ହୋଇବ ଅନଳ ॥
ନିଶାରେ ରବି ଉଦେ ହେବ । ସ୍ଥାବର ବଚନ କହିବ ॥
ପାଷାଣେ ପଦ୍ମ ଯେ ବିକଶି । ଅନଳ ବରଷିବ ଶଶୀ ॥
ଏମନ୍ତ ହେଲେ ଅବା ହେବ । ତୁଳସୀ ଅଶ୍ରୁ ନ ଫେରିବ ॥
କେବଳ କଥା ଏକ ଅଛି । ହେ ବିପ୍ର ସ୍ୱରୂପ କହୁଛି ॥
ଶ୍ରୀରାମ ସଙ୍ଗେ ସୀତାଦେବୀ । ଯେବେ ମୁଁ ନୟନେ ଦେଖିବି
ଶ୍ରୀକରେ ଥିବ ଧନୁବାଣ । ସଙ୍ଗତେ ସାନୁଜ ଲକ୍ଷ୍ମଣ ॥
ଏହା ମୁଁ ନୟନେ ଦେଖିଲେ । ତେବେ ମୁଁ ଲୋଟିବି ଭଲେ
ଏମନ୍ତ ଶୁଣି ଆଦିମୂଳ । ଭକତବଶେ ହେଲେ ଭୋଳ ॥
ତକ୍ଷଣେ ଜନକକୁମାରୀ । ସଙ୍ଗତେ ଘେନି ବାମେ କରି ॥
ପାଶ୍ୱେ ସାନୁଜ ଲକ୍ଷ୍ମଣ । ଶ୍ରୀକରେ ଶୋହେ ଧନୁବାଣ ॥
କୋଟିଏ କନ୍ଦର୍ପର ପ୍ରଭା । ଜିଣି ଶ୍ରୀରାମଚନ୍ଦ୍ର ଶୋଭା ॥
ନବୀନ ଶ୍ୟାମଘନ ଜିଣି । ସୁକାନ୍ତି ଇନ୍ଦ୍ରନୀଳମଣି ॥
ଲଲଟେ କିରୀଟ ମୁକୁଟ । ରତ୍ନମାନଙ୍କେ ଝଟ ଝଟ ॥
ଶ୍ରବଣେ ମକରକୁଣ୍ଡଳ । ଜ୍ୟୋତି ବିରାଜ ଗଣ୍ଡସ୍ଥଳ ॥
ଶ୍ରୀଭୁଜେ ରାଜେ ବୀରନେତ । ଶରଣ ରକ୍ଷଣ ନିମିତ୍ତ ॥
କରେ କଙ୍କଣ ଶୋଭବନ । ଅତୁଳ ଅମୂଲ୍ୟ ରତନ ॥
କି ତୋରା ଦିଶେ କରାଙ୍ଗୁଳି । ରତ୍ନମୁଦ୍ରିକାମାନ ଝଳି ॥
ଧନ୍ୟ ସେ ଶ୍ରୀମୁଖର ଶୋଭା । କୋଟିଏ ଚନ୍ଦ୍ର ଜିଣି ପ୍ରଭା ॥
କି ଶୋଭା ନେତ୍ର ଅରବିନ୍ଦ । ଜଗତ ତାରଇ ଆନନ୍ଦ ॥
ସୁନାସା ସୁରଙ୍ଗ ଅଧର । ସୁକମ୍ବୁକଣ୍ଠେ ରତ୍ନହାର ॥
ଅତି ବିସ୍ତାର ବକ୍ଷସ୍ଥଳ । ତହିଁ ଲମ୍ବିତ ବନମାଳ ॥
ଶ୍ରୀବତ୍ସ ଦ୍ୱିଜ ପଦଚିହ୍ନ । ଇନ୍ଦିରା ଦେବୀଙ୍କ ସଦନ ॥
ସିଂହ କଟିରେ ପୀତବାସ । ନୀଳ ଘନେ କି ବିଦ୍ୟୁତବାସ ॥

ହେମ ମେଖଳା ତହିଁପରେ । ସିଦ୍ଧ ଯୋଗୀନ୍ଦ୍ର ମନ ହରେ ॥
ଶ୍ରୀରଙ୍ଗ ପାଦର ମାଧୁରୀ । କେ କହିପାରେ ଅନ୍ତ କରି ॥
ଈଶ୍ୱର ପଞ୍ଚମ ଆନନେ । କହି ତ ପାରିବେ ବଚନେ ॥
ବ୍ରହ୍ମାଦି ସୁରେନ୍ଦ୍ର କସୀଂ । ଯେବଣ ପାଦପଦ୍ମେ ଲୋଟି ॥
ଏମନ୍ତ ରୂପେ ପ୍ରଭୁ ବିଜେ । ଶର କାର୍ମୁକ ବେନିଭୁଜେ ॥
ବକ୍ରମ ସିଂହରୂପ ଠାଣି । ଦେଖିଣ ଆନନ୍ଦ ଧରଣୀ ॥
ଏ ଅନୁରୂପେ ବେନିପାଶେ । ଭ୍ରାତ ଶତ୍ରୁଘ୍ନ ଶୋଭା ଦିଶେ ॥
ସେ ପ୍ରଭୁ ଚରଣାରବିନ୍ଦେ । ପାମର ରାମଦାସ ବନ୍ଦେ ॥
ଏମନ୍ତ ବେଶେ ନାରାୟଣ । ଡାକିଲେ ଦ୍ୱି ହସ୍ତ ଠାରିଣ ॥
ତୁଳସୀ ଦାସ ବେଗେ ଆସ । ଦେଖ ତୋ ମନୋବାଞ୍ଛା ବେଶ
ତୁଳସୀ ଦାସ ଦେଖିକରି । ଅଶ୍ରୁ ଫେଡ଼ାଇ ବନ୍ଦ କରି ॥
ପ୍ରଭୁଙ୍କୁ ଅନାଇଣ ଦେଲା । ଅଶ୍ରୁ ଉପନ୍ତୁ ବହିଗଲା ॥
ଅଶେଷ ବ୍ରହ୍ମାଣ୍ଡର ଶୋଭା । ଆନ କି ପଟାନ୍ତର ଦେବା ॥
ଦେଖି ତା ନେତ୍ରାନନ୍ଦ ଭୋଳେ । ଶୋଇଲା ଯାଇ ପାଦତଳେ ॥
ଉଠି କପାଳେ କର ଦେଇ । ବୋଲେ ମୁଁ ଧନ୍ୟମୁଣ୍ଡା ଯାଇ ॥
ଆଜ କି ଭାଗ୍ୟବଳେ ମୋର । ଦେଖିଲି ବ୍ରହ୍ମାଣ୍ଡଠାକୁର ॥
କି କୃପା କଲ ପ୍ରଭୁ ମୋତେ । ପୂର୍ବେ ମୋ ତପ ଥିଲା କେତେ
କି ପୁଣ୍ୟକ୍ଷେତ୍ରେ କରି ସ୍ନାନ । ଦେଇ ମୁଁ ଥିଲି କେତେ ଦାନ ॥
ଦ୍ୱିଜବରେ କି ଦାନ ଦେଲି । କି ଗଙ୍ଗାସାଗରେ ଝାସିଲି ॥
କି ପୁଣ୍ୟକ୍ଷେତ୍ରେ ବାସ କରି । ହୋଇ କି ଥିଲି ବ୍ରତଚାରୀ ॥
କରି ମୁଁ ଥିଲି ଯଜ୍ଞ କେତେ । କି ଶିବ ପୂଜା ବିଧିମତେ ॥
ବ୍ରହ୍ମା ଇନ୍ଦ୍ରାଦି ସଦାଶିବ । ଏହାଙ୍କ ଧ୍ୟାନକୁ ଦୁର୍ଲଭ ॥
କହ ମୁଁ କେତେ ପୁଣ୍ୟବଳେ । ପ୍ରଭୁ ଦେଖିଲି ଚର୍ମଡୋଳେ ॥
ଶୁଣି ବୋଲନ୍ତି ରଘୁପତି । ଶୁଣ ତୁଳସୀ ସିଦ୍ଧମତି ॥
ତୁ ଯେତେ କହିଗଲୁ ଧର୍ମ । ଏଣେ କାମନା ମନ ଭ୍ରମ ॥

ପ୍ରାଣୀଏ କର୍ମ କଲେ ଯେତେ । ସେ ମୋତେ ପାଇବେ କେମନ୍ତେ
ଯେ ଭକ୍ତେ ନିଷ୍କାମରେ ମୋତେ । ମୁଁ ଥାଇ ତାହାର ସଙ୍ଗତେ ॥
ତୁ ଦେହ ବୁଦ୍ଧି ଛାଡ଼ ଯେବେ । ପଶିଲୁ ମହାର୍ଣ୍ଣବ ଗର୍ଭେ ॥
ଯେସନେ ବୀର ହନୁମାନ । ତା ମନ ତୋ ମନ ସମାନ ॥
ତେଣୁ ମୁଁ ହୋଇଲି ପ୍ରସନ୍ନ । ହେ ଭକ୍ତ ବର ମାଗି ନେନ ॥
ଶୁଣି ତୁଳସୀ ଗଦଗଦେ । ନମିଲ ଶ୍ରୀରାମର ପାଦେ ॥
କାକୁସ୍ଥେ କହେ ଧୀରବାଣୀ । ହେ ସୂର୍ଯ୍ୟବଂଶ ଚୂଡ଼ାମଣି ॥
ଯେବେ ତୁ ବରଦେବୁ ମୋତେ । ବାଞ୍ଛିଲେ ଦେଖୁଥିବ ତୋତେ
ଏହି ସ୍ୱରୂପେ ତନମୂର୍ତ୍ତି । ଦର୍ଶନ କରୁଥିବ ନିତ ॥
ଯହିଁ ବାଞ୍ଛିବ୍ର ତହିଁ ହେବ । ଏ ବର ଦେବ ହେ ରାଘବ ॥
ଅସ୍ତୁ ବୋଇଲେ ଭବଗ୍ରାହ୍ମୀ । ଆନନ୍ଦେ ଭକ୍ତେ ବର ଦେଇ ॥
ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ । ଶୁଣ ହେ ସୁମନ ସଜନ ॥
ଏଡ଼େ କୃପାଳୁ ରଘୁବାଳ । ଭକତ ଭାବ ତାଙ୍କ ମୂଳ ॥
ଏମନ୍ତ ପ୍ରଭୁ ସେବା ତେଜ । ଯେ ନର ଅନ୍ୟ ଦେବେ ଭଜ
ପୀୟୁଷ ତେଜ ସୁରପାନ । ସେ ନର କରଇ ସମାନ ॥
ଏଥିଉତ୍ତରୁ ଶୁଣ ମନ । ତୁଳସୀ ଦାସର ବଧାନ ॥
ସଂସାର ଲୋଭ ଦୂର କର । ପିନ୍ଧିଲ ବସ୍ତ୍ର ବେଗେ ଚର ॥
ତୋର କୌପୁନୀ ଆଶ୍ରେ କଲା । ତୀର୍ଥସାଗରେ ଚଳିଗଲା ॥
ଅନ୍ନ ଭୋଜନେ ନାହିଁ ସ୍ନେହ । ଆନନ୍ଦେ ଫୁଲୁଥାଏ ଦେହ ॥
କାହିଁ ବା ଫଳମୂଳ ନୀର । କାହିଁ ବା ସୁପକ୍ୱ ଆହାର ॥
ସନ୍ତୋଷେ କରଇ ଭୋଜନ । ତୀର୍ଥଗମନେ ଦେଇ ମନ ॥
ଅନେକ ତୀର୍ଥମାନ ଫେରି । ସକଳ ତୀର୍ଥେ ସ୍ନାନ କରି ॥
ଏମନ୍ତେ କେତେଦିନ ଗଲା । ଶ୍ରୀବୃନ୍ଦାବନରେ ମିଳିଲା ॥
ବୁଲି ଦେଖିଲା ସବୁସ୍ଥାନ । କାଳିନ୍ଦୀଗିରି ଗୋବର୍ଦ୍ଧନ ॥
ଦ୍ୱାଦଶ ବନଆଦି ଯେତେ । ସବୁ ଦେଖିଲା ବିଧିମତେ ॥

ପ୍ରବେଶ ହେଲ ଏକ ମଠ । ଯେ ମଠ ବୃନ୍ଦାବନେ ଶ୍ରେଷ୍ଠ ॥
ଗୋପାଳ ଦାସ ଅଧିକାରୀ । ସେ ମଠେ ପ୍ରଭୁପଣ କରି ॥
ତହିଁ ଦିଅନ୍ତି ସଦାବର୍ତ୍ତ । ଦିବ୍ୟଭୋଜନ ରୁଖାଭାତ ॥
ଯେ କୃଷ୍ଣ ବୋଲେ ତାକୁ ନେଇ । ଉତ୍ତମ ଭୋଜନ ଦିଅଇ ॥
ଯେ ରାମ ବୋଲେ ରୁଖାଭାତ । ଦିଅ ବୋଲନ୍ତି ସେ ମହନ୍ତ ॥
ଏମନ୍ତ ବେଳେ ସେ ତୁଳସୀ । ଭବେ ମିଳିଲେ ତହିଁ ଆସି ॥
ଅଙ୍ଗ ବିରାଜେ ଜ୍ୟୋତିର୍ମୟେ । ନିରତେ ରାମନାମ ଧ୍ୟାୟେ ॥
ତୁଳସୀଦାସ ବାହୁମୂଳେ । ସପତ ମଞ୍ଜିରୀ ବିରାଜେ ॥
କଣ୍ଠେ ତୁଳସୀ କାଷ୍ଠମାଳ । ସର୍ବାଙ୍ଗେ ବିଭୁତ ଉଜ୍ଜ୍ୱଳ ॥
ଜୟ ଶ୍ରୀରାମ ଧନୁର୍ଦ୍ଧାରୀ । ଆଗେ ଡାକିଲେ ଡାକ ଗୃହ ॥
ତାହା ଶୁଣିଣ ସେ ମହନ୍ତ । ବୋଇଲେ ଦିଅ ରୁଖାଭାତ ॥
ଶୁଣି ତୁଳସୀ ଦାସ କହି । କପାଁ ରୁଖିଲ ଖାଇବହିଁ ॥
କେବା ଖାଇବେ ଘୃତଅନ୍ନ । ଏ କଥା କହସି ବହନ ॥
ଶୁଣି କହିଲେ ଅଧିକାରୀ । ଯେ ରାଧାକୃଷ୍ଣ ନାମ ଧରି ॥
ମଠରେ ପାଏ ଦିବ୍ୟସ୍ଥାନ । ସେ ଭୁଞ୍ଜେ ଦିବ୍ୟଶାଳି ଅନ୍ନ ॥
ଯେ ସୀତାରାମ ନାମ ଧରେ । ସେ ପଡ଼େ ବଗଡ଼ା ଅନ୍ନରେ
ଶୁଣି ତୁଳସୀ ଦାସ ହସି । ବୋଲେ ମୁ ରାମ ନାମ ଘୋଷି
ଖାଇବି ଅମୃତ ଭୋଜନ । ରାମ ମହିମା ଏବେ ଘେନ ॥
ଶୁଣି ବୋଇଲେ ଅଧିକାରୀ । ଯାଅ ତୁ ଅଯୋଧ୍ୟା ନଗରୀ ॥
ସେଠାରେ ଯାଇ କର ତମ । ନୋହିଲେ ଦେଖାଅ ଶ୍ରୀରାମ ॥
ଶୁଣି ତୁଳସୀ ଦାସ ଧୀରେ । ପଶିଲେ ମଠର ଭିତରେ ॥
ଯହିଁ ବିଜୟ ନନ୍ଦବଂଶୀ । ପହଡ଼ ସମୟ ହୋଇଛି ॥
ଆଗେ କବାଟ ଛନ୍ତି କିଳି । ତହିଁ ତୁଳସୀ ଦାସ ମିଳି ॥
ବୋଇଲେ ନମୋ ରଘୁମଣି । ଅଶେଷ ବ୍ରହ୍ମାଣ୍ଡକାରିଣି ॥
ତୁ ନାଥ ଜଗତ ଈଶ୍ୱର । ସଂସାର ତୋର ଖେଳଘର ॥

ତୁ ସେ ଜଗତଜନ ଗୁରୁ । ଭକତ ବାଞ୍ଛା କଳ୍ପତରୁ ॥
କାମିଜନଙ୍କ କାମଧେନୁ । ମହା ମହିମା ରତ୍ନ ସାନୁ ॥
ଅଶେଷ ଜନ ଚିନ୍ତାମଣି । କେତେ ମହିମା ପରମାଣି ॥
ତୋର ଆଜ୍ଞାରେ ଆଖଣ୍ଡଳ । ରବି ଶଶାଙ୍କ ଦିଗପାଳ ॥
ଶେଷ ବିରଞ୍ଚି ସଦାଶିବ । ତେତିଶ କୋଟି ଦେବ ସର୍ବ ॥
ସଂସାର ଗାଳ୍ପଛନ୍ଦ ନିତ୍ୟ । ତୋର ଆଜ୍ଞାରେ ଯେଝାମତେ ॥
ଯେଣୁ ତୁ ଜଗତ ଈଶ୍ୱର । ସମସ୍ତେ ତୋର ପରିଗ୍ରହ ॥
ତେଣୁ ଶରଣ ଗଲି ତୋତେ । ତୁ ନାଥ କୃପା କର ମୋତେ ॥
ତୁ ନାଥ ଦଶରଥ ସୁତ । କୌଶଲ୍ୟା ଗର୍ଭରୁ ସମ୍ଭୂତ ॥
ସେ ଦେବକୀଦେବୀ ସୁତ । ନନ୍ଦ ରାଜନ ତୋର ତାତ ॥
ତୁ ଧନୁର୍ଦ୍ଧର ବଳବନ୍ତ । ତୁ ବଂଶୀଧର ଜଗଜ୍ଜିତ ॥
ତୁ ସେ ଜାନକୀ ଦେବୀ କାନ୍ତ । ତୋହର ନାହିଁ ଆଦିଅନ୍ତ ॥
ତୁହି ଶ୍ରୀରାଧା ପ୍ରାଣଧନ । ଭକତବନ୍ଧୁ ଭଗବାନ ॥
ତୁହି ଜଗତ ଜନ ହିତେ । ଅନେକ ରୂପ ଏ ଜଗତେ ॥
ଧରି ଭକତ ପ୍ରତିପାଳୁ । ଏଣୁ ତୁ ପରମ ଦୟାଳୁ ॥
ଏ କଥା ଯେବେ ସତ୍ୟ ତୋର । ଦେଖାଅ ରାମ ଅବତାର ॥
ଘନ ଶ୍ୟାମଳ ରାମମୂର୍ତ୍ତି । ଶ୍ରୀକରେ କୋଦଣ୍ଡ ଧାରତି ॥
ବାମେ ଜାନକୀ ଦେବୀ ଶୋଭା । ଦକ୍ଷିଣେ ଶ୍ରୀଲକ୍ଷ୍ମଣ ଢଭା ॥
ଏମନ୍ତ ରୂପ ଆଦିମୂଳ । ଧରି ରଖ ତୋ ଭୃତ୍ୟକୁଳ ॥
ନୋହିଲେ ସରିଲା ତୁଳସୀ । ତାହା ଜାଣିଲେ ବ୍ରହ୍ମରାଶି ॥
ସେକ୍ଷଣି କୃଷ୍ଣରୂପ ଯାଇ । ଶ୍ରୀରାମ ରୂପ ଜଭା ହୋଇ ॥
ଜାଣିଲେ ସେ ତୁଳସୀ ଦାସ । ହୋଇଲେ ଅତ୍ୟନ୍ତ ହରଷ ॥
ବୋଇଲେ ଆସ ସର୍ବଜନ । ଦର୍ଶନ କର ରଘୁନାନ ॥
ଏମନ୍ତ ଶୁଣି ଅଧିକାରୀ । ଉକାଇ ଆଣିଲେ ପୂଝାରି ॥
କବାଟ ଫିଟାଇ ଦେଖିଲେ । ସମସ୍ତେ ଆଚମ୍ବିତ ହେଲେ ॥

ଅମୂଲ୍ୟ ରତ୍ନ ସିଂହାସନ । ବିଜୟେ ଶ୍ରୀମଧୁସୂଦନ ॥
ଶ୍ରୀକରେ ଧନୁର୍ବାଣ ଧରି । ଭକତ ଛଳେ ବିଜେକରି ॥
ମୁକୁଟ ନାନାରତ୍ନେ ଶୋଭା । ମଉଳି ପଡ଼ି ଅଛି ଗଭା ॥
କର୍ଣ୍ଣରେ କୁଣ୍ଡଳ ବିରାଜେ । ସେ ରବି ଛବି ଗର୍ବ ଗଞ୍ଜେ ॥
କଣ୍ଠେ ମୁକୁତା ହାର ଶୋହେ । ଯେ ରୂପେ ଜଗଜ୍ଜନ ମୋହେ
ହୃଦରେ ପଦକ ବିରାଜେ । ବୀର ବାହୁଟି ବେନିଭୁଜେ ॥
କରେ କଙ୍କଣ ଶୋଭାବନ । ହରଇ ପ୍ରାଣୀଙ୍କର ମନ ॥
ଅଙ୍ଗୁଳି ମୁଦ୍ରିକା ବିରାଜେ । ହେମ କିଙ୍କିଣୀ କଟିମାଜେ ॥
ରତ୍ନ ପାଦୁକା ବେନିପାଏ । ଯହିଁ ଯୋଗୀନ୍ଦ୍ର କଲେ ଲୟେ
ନବୀନ ନୀଳମେଘ ପ୍ରାୟେ । ଛବି ବିରାଜେ ଜ୍ୟୋତିର୍ମୟେ ॥
ଏମନ୍ତ ବେଶ ଦଇତ୍ୟାରି । ପାରୁଚନ୍ତି ଧରଣୀକୁମାରୀ ॥
ସୁମିତ୍ରା ଚମ୍ପକରୁ ଗୋରି । କରେ ତାମ୍ବୁଳ ଛତ୍ର ଧରି ॥
ଦକ୍ଷ ଶେ ଲକ୍ଷ୍ମଣ ବିରାଜେ । ତା ଦକ୍ଷ ହସ୍ତେ ଛତ୍ରି ସାଜେ ॥
କୋଟି ବ୍ରହ୍ମାଣ୍ଡରେ ଉପମା । ତାହାଙ୍କ ପରି ସେ ସୁଷମା ॥
ଏମନ୍ତ ପ୍ରଭୁ ରୂପ ଦେଖି । ପିଛଡ଼ା ନ ପଡ଼ିଲା ଆଖି ॥
ସେ ପ୍ରଭୁ ପଦ୍ମପାଦ ତଳେ । ସର୍ବେ ନମିଲେ ଏକାବେଳେ
ସ୍ତବରେ ହୋଇ ଗଦଗଦ । ପୂଜି ତୁଳସୀ ଦାସ ପାଦ ॥
ଦିବ୍ୟ ଭୋଜନ ତାଙ୍କୁ ଦେଲେ । ବ୍ୟଞ୍ଜନ ଷଡ଼ରସ ତୁଲେ ॥
ଗନ୍ଧ ଚନ୍ଦନ ମାଳାଯେତେ । ଦେଇ ପୂଜିଲେ ବିଧିମତେ ॥
ବୋଇଲେ ଧନ୍ୟ ତୋ ଜୀବନ । ବଶ ତୁ କଲୁ ଭଗବାନ ॥
ଆମ୍ଭେ ଯେ କେତେ ପୁଣ୍ୟକଲୁ । ତୁମ୍ଭର ଦର୍ଶନ ଲଭିଲୁ ॥
ଆଜ ସୁଫଳ ଆମ୍ଭ ଦିନ । ପାଇଲୁ ଶ୍ରୀରାମ ଦର୍ଶନ ॥
ତୁମ୍ଭରେ ଏତେ କର୍ମ ହେଲା । ଦେଖିବା ଶୁଣିବା ନ ଥିଲା ॥
ଏବେ ଏମନ୍ତ ତୁମ୍ଭେ କର । ଭକତ ଯେମନ୍ତ ଆମ୍ଭର ॥
ଶ୍ରୀରାମ ହେବେ ଅନ୍ତର୍ଦ୍ଧାନ । ସବେ କରନ୍ତୁ ନନ୍ଦନାନ ॥

ମୁରଲୀଧରରାଧାକାନ୍ତ । ଆମ୍ଭେ ତା ଦେଖିବୁ ସମସ୍ତ ॥
ଏମନ୍ତ ବୋଲି ଗଲେ ଚଳି । ପୁଣ କବାଟ ଦେଲେ କଳି ॥
ତୁଳସୀଦାସ ଭକ୍ତଭବରେ । ମସ୍ତକେ କର ନବେଶିଲେ ॥
ଅନେକ ରୂପେ କଲେ ସ୍ତୁତ । ତାହା ଜାଣିଲେ ଶିରୀପତ ॥
ତତ୍କ୍ଷଣେ ଅଙ୍ଗ ପାଲଟାଇ । ଶ୍ରୀରାମ କୃଷ୍ଣ ରୂପ ହୋଇ ॥
ରାଧା ସ୍ୱରୂପ ବଇଦେହୀ । ଲକ୍ଷ୍ମଣ ସଖା ରୂପ ହୋଇ ॥
ଯେ ଯାହା ଅନୁରୂପେ ଭଜ । ତହୁଁ କୋଟିଏ ଗୁଣେ ଶୋଭ
ନିଜଙ୍କ ରୂପେ ବେନୁପାଣି । ତାହା ତୁଳସୀ ଦାସ ଜାଣି ॥
କବାଟ ଫିଟାଇଣ ଦେଲେ । ସମସ୍ତେ ଦେଖ ହୋ ବୋଇଲେ
ତାଙ୍କ ବଚନେ ସର୍ବେ ଗଲେ । ଶ୍ରୀରାମରୂପ ନ ଦେଖିଲେ ॥
ବିଜୟ ବ୍ରଜେନ୍ଦ୍ର କୁମର । ଦେଖି ସମସ୍ତେ ଚମତ୍କାର ॥
ବୋଇଲେ ନମୋ ଭଗବାନ । ତୋ ତହୁଁ ଭକ୍ତ ନୁହେଁ ଆନ ॥
ଯେ ହରି ଭକ୍ତ ଭିନ୍ନ କରେ । ସେ ମହାପାପୀ ଏ ସଂସାରେ ॥
ଆମ୍ଭେ ଯା ଦେଖିଲୁ ସମସ୍ତ । ତୁ ଭକ୍ତିଛଳେ ଦେହବନ୍ତ ॥
ଏମନ୍ତ ବୋଲି ଯେତେମତେ । ପୂଜିଲେ ଭକ୍ତ ପାଦଗତେ ॥
ଲଭିଲେ ଅବା କେଉଁ ଗତ । ତାହା ଜାଣନ୍ତି ବେଦପତ ॥
ତୁଳସୀ ଦାସଙ୍କ ମହିମା । ଶୁଣ ହେ ମନମହାତମା ॥
ଏ କଳିଯୁଗର ଚରିତ । କହି ଶୁଣିବା ଆଚମ୍ବିତ ॥
ଏ ଦାର୍ଢ୍ୟଭକ୍ତ ରସସାର । ଶୁଣି ଶରଧା ହୁଏ ଯାର ॥
ତାହାର ପାପ ଥାଇ ଯେତେ । ରହଇ ନାହିଁ କଦାଚିତେ ॥
କହଇ ରାମ ଦାସ ଦ୍ୱିଜ । ବିଶ୍ୱାସ ଅଟେ ମୂଳ ବୀଜ ॥
ବୀଜ ନ ଥିଲେ ବୃକ୍ଷ କାହିଁ । ଫଳ ଲୋଡ଼ିଲେ ହେବ କେହ୍ନ ।
ସୁଜନଜନ ଏଣେ ରସ । ମୁଁ ତୁମ୍ଭ ଦାସଙ୍କର ଦାସ ॥
ଶ୍ରୀରାମ କୃଷ୍ଣ ପଦ୍ମପାଦ । ହରଇ ବିପତ୍ତି ବିଷାଦ ॥
ତହିଁ ଶରଣ ରାମଦାସ । ନ ନାଶ ମୋର ମନଆଶ ॥

ଇତି ଶ୍ରୀ ଦାର୍ଢ୍ୟଭକ୍ତି ରସାମୃତେ ମନ ଚୈତନ୍ୟ
ସମ୍ବାଦେ ତୁଳସୀ ଦାସ ଦୃଢ଼ତାଭାବ ବର୍ଣ୍ଣନେ
ନାମ ଊନତ୍ରିଂଶୋଽଧ୍ୟାୟଃ ।

---

## ତ୍ରିଂଶ ଅଧ୍ୟାୟ
## ସିପୁଟି ସମ୍ବାଦ

ଚୈତନ୍ୟ ଉବାଚ

ପୁଣି ଚୈତନ୍ୟ ଅନୁରାଗେ । କହଇ ମନରାଜା ଆଗେ ॥
ହେ ମନ ସାବଧାନେ ଶୁଣ । ନିଶ୍ଚଳ କର ତୋର ମନ ॥
ଏ ବଡ଼ ଅପୂର୍ବ କଥାଏ । ଶୁଣି ଖଣ୍ଡିବ ଭବଭୟେ ॥
ଏ ଜମ୍ବୁ ଦ୍ୱୀପେ ତାର ଘର । ଯେ ଦିଲ୍ଲୀ ସହର ନଗର ॥
ଜାତିରେ ଅଟଇ ସିପୁଟି । ନାମ ତାହାର ପରମେଷ୍ଠୀ ॥
କୁଳ କଳଙ୍କ ପ୍ରଭୃଦେଶେ । ଅଶୋଭା ମାତ୍ର ଏତେ ଦିଶେ ॥
ଅନ୍ୟ କଳଙ୍କ ନାହିଁ କିଛି । ସମସ୍ତ ଗୁଣ ପୂରି ଅଛି ॥
ଭକ୍ତ ଅଂଶରେ ଜାତ ହୋଇ । ତା ଗୁଣ କହି ନ ସରଇ ॥
ପତ୍ନୀର ନାମ ତା ବିମଳା । ସୁନ୍ଦର ସୁଗୁଣ ସୁଶୀଳା ॥
ସ୍ୱାମୀର ସେବା ତାର ବ୍ରତ । ବେନି ଦୁହିତା ତିନି ସୁତ ॥
ଧନହିଁ ପୂରିଅଛି ଘରେ । ସିପୁଟି ଗୃହ ଏକା କରେ ॥
କେବଳ ଆତ୍ମଜ୍ଞାନମୟେ । ଜୀବନ ମରଣେ ବିସ୍ମୃତ ପ୍ରାୟେ ॥
ଇନ୍ଦ୍ରିୟଜିତ ସତ୍ୟବାଦୀ । ଅଲୋଭ ଅହିଂସା ଅକ୍ରୋଧୀ ॥
ଦମ୍ଭ କୁଟିଳ ମିଥ୍ୟାବାଦୀ । ବିଷୟେ ନାହିଁ ତାର ବୁଦ୍ଧି ॥
ତୁହେ ଗୃହସ୍ଥ ପଣେ ଅଛି । ମନକୁ ଆୟତ୍ତେ ରଖିଛି ॥
ସଦା ଆନନ୍ଦ ମନ ତାର । ମିଥ୍ୟା ମଣଇ ଏ ସଂସାର ॥
ଗୃହ କର୍ମରୁ ଏ ଉଦାର । ଜାଣଇ ମୁଠିଏ ଦେବାର ॥
ନାମ ଭଜନେ ଦୃଢ଼ ମତି । ସାଧୁ ବୈଷ୍ଣବ ବିପ୍ରେ ଭକ୍ତି ॥

ଦୁଃଖୀ ଦରଦ୍ରେ ଦୟା ଅତ । ସୁଜନମାନଙ୍କରେ ପ୍ରୀତ ॥
କୃଷ୍ଣ ମହିମା ଗାୟନରେ । ବସଇ ଯାଇଁ ଯେବେ ଥରେ ॥
ତା ଭକ୍ତ କହିଲେ ନ ସର । ନେନେ ଲୋତକ ଯାଏ ପୂର ॥
କଣ୍ଠୁଁ ହୋଏ ଗଦ ଗଦ । ଅଙ୍ଗ ପୁଲକ ବହେ ସ୍ୱେଦ ॥
ଝାଙ୍କୋର ହେଶେ ରୋମାବଳ । ବଚନ କହଇ ବହୁଳ ॥
ଏମନ୍ତ ଭାବ ହୃଦେ ଥାଇ । ଜାଣଇ ପାପ ପୁଣ୍ୟ ଦୁଇ ॥
ସଚରାଚରେ ଯେତେ ଜୀବ । ସବୁର ପ୍ରଭୁ ବାସୁଦେବ ॥
ପ୍ରାଣୀଏ କର୍ମରଜ୍ଜୁ ଧର । ସ୍ୱାରଥି ପୁନ ପ୍ରାପ୍ତ କର ॥
ଏମନ୍ତ ବୋଲି ପ୍ରତଦନେ । ପ୍ରଭୁଙ୍କୁ ଚନ୍ତୁଥାଏ ମନେ ॥
ଗୁଡ଼ିବା ଓଝାଇବା ଯେହୁ । କେ ପାରେ ଅନ୍ୟ ମାର୍ଗେ ଯାଇ
ଏଣୁଟି ନଜ କର୍ମପଥ । ମେଣ୍ଟଣେ କେ ଅଛୁ ସମର୍ଥ ॥
ସେ କର୍ମରଜ୍ଜୁ ଆନ କର । କେବଳ ପାରନ୍ତି ଶ୍ରୀହର ॥
ତା ନଜ କର୍ମ କରଥାଇ । ଆତ୍ମାକୁ ଆତ୍ମାରେ ଚହ୍ନାଇ ॥
ତା ସମେ ଉପକାରୀ ପଣେ । ଦଲ୍ଲୀସହରେ ନାହିଁ ଜଣେ ॥
ତା ବସ୍ତ୍ର ସିଆଁ ଜନେ ଦେଖି । ସେ ଦଲ୍ଲୀଶ୍ୱର ମହାସୁଖୀ ॥
ତାକୁ ଅନେକ ଦୟା କଲେ । ବସ୍ତ୍ର ପଠାଇ ତାହାଠାରେ ॥
ମାଣ୍ଡି ମୁରୁଜ ଅପସର । ଯେ ଅବା ପଠାନ୍ତି ତାଠାର ॥
ଟୋପି ତକିଆ ଶୀତ ତ୍ରାଣ । କାଞ୍ଚଲି ଅଙ୍ଗରଖାମାନ ॥
କର ଯୋଗାଉଥାଏ ନେଇ । ମନ ସନ୍ତୋଷେ ଧନ ଦେଇ ॥
ଏମନ୍ତ କେତେ ଦନ ଅନ୍ତେ । ସେ ଦଲ୍ଲୀଶ୍ୱର ଲଗି ଅର୍ଥେ ॥
ଅମୂଲ୍ୟ ବସ୍ତ୍ର ଖଣ୍ଡି ଆଣି । ବୋଇଲେ ନଅ ହୋ ବୟାଣି
ଏ ଦବ୍ୟ ହେମ ଜରଥାନ । ଅମୂଲ୍ୟ ସେ ବସ୍ତ୍ର ଶୋଭନ ॥
ରତ୍ନ ଖଞ୍ଜିତ ପୁଞ୍ଜି ପୁଞ୍ଜି । ଦବ୍ୟ ହୀରକ ଅଛୁ ରଞ୍ଜି ॥
ଏ ବସ୍ତ୍ର ଘେନ ଯାଅ ଚଳ । ସିଅଁ ହେ ଦୁଇଟି ମୁରୁଜ ॥
ପକାଇ ଥିବୁଁ ଫୁଲମାନ । ସିଆଁର ନ ଦଶିବ ଚହ୍ନ ॥

ଏମନ୍ତ କରି ଦେଖ ଆସ । ତୋ ମନ କରିବା ସନ୍ତୋଷ ॥
ଏମନ୍ତ ଶୁଣି ସେ ସିଫୁଟି । ସେ ବସ୍ତ୍ର ଦେଖାଗଲା ଉଠି ॥
ପ୍ରବେଶ ହେଲା ନାଗପୁର । ସ୍ନାନ ଭୋଜନ ସାରି ତାର ॥
ପିନ୍ଧିଣ ବସିଲା ମୂର୍ଚ୍ଛିଲା । କଥା ଗୋଟିଏ ମନେ ସ୍ମଳ ॥
ଏ ଯେ ଅପୂର୍ବ ବସ୍ତ୍ର ଗୋଟି । ସୁବାସ ପଡ଼ୁଛି ଚହଟି ॥
ଦେଖିଲେ ମନ ନେତ୍ର ହରେ । ଖୋଜିଲେ ନ ଥିବ ସଂସାରେ ॥
ଶ୍ରୀଜଗନ୍ନାଥଙ୍କୁ ଏ ଯୋଗ୍ୟ । ମନୁଷ୍ୟେ ହୋଇବ କି ଭୋଗ୍ୟ
ଏମନ୍ତେ ବସ୍ତ୍ରରନ୍ତେ ମନ । ଦଇବ ଯୋଗେ ସେହି ଦିନ ॥
ହୋଇଛନ୍ତି ଶ୍ରୀଗୁଣ୍ଡିଚା ଯାତ । ପହଣ୍ଡି ବିଜେ ଜଗନ୍ନାଥ ॥
ଏହି ସମୟେ ସେ ମୂର୍ଚ୍ଛିଲା । ପିନ୍ଧିଲା ବସାଇ ପିନ୍ଧିଲା ॥
ଅପୂର୍ବ କରି ନିର୍ଭାକିଲା । ଦେଖି ତା ଧଇର୍ଯ୍ୟ ହରିଲା ॥
ଆନନ୍ଦଭାବେ ହେଲା ଭୋଳ । ବୁଜିଲା ନୟନ ଯୁଗଳ ॥
ତା ଦେହୁଁ ବୁଦ୍ଧି କେଉଣେ ଗଲା । କର୍ଣ୍ଣରୁ ଶବଦ ହରିଲା ॥
ପୁଣି ଇନ୍ଦ୍ରିୟ ଚେଷ୍ଟାମାନ । ପ୍ରକୃତି ସଙ୍ଗେ ହେଲା ଲୀନ ॥
ଅଜ୍ଞାନ ଅନ୍ଧକାର ଗଲା । ସୁଜ୍ଞାନ ଚନ୍ଦ୍ର ଉଦେ ହେଲା ॥
ପହଣ୍ଡି ବିଜୟ ଉତ୍ସବ । ମନରେ ହୋଇଲା ଉଦ୍ଭବ ॥
ନିଷ୍କାମ ଭାବେ ଭକତରେ । ଜ୍ଞାନନେତ୍ରରେ ଦେଖି ଖରେ ॥
ନୀଳାଦ୍ରିନାଥ ଦେବ ହରି । ଛନ୍ତି ପହଣ୍ଡି ବିଜେ କରି ॥
ସେ ଗଜ ମୁକୁଟ ପସରି । ମନ ନୟନ କରେ ଚୋରି ॥
କୈବଲ୍ୟ ଜ୍ୟୋତି ହେଉଅଛି । ନାହିଁ ସେ ଉଚ୍ଚ ନୀଚ ଜାତି ॥
ଆନନ୍ଦ ହେଉଅଛି ସୃଷ୍ଟି । ସକଳ ଲୋକେ ଏକ ଗୋଷ୍ଠି ॥
ଚଉଦପୁରୁଁ ଲୋକେ ଆସି । ଶରଣ ମାଗୁଛନ୍ତି ବସି ॥
କରି ବିଜୟେ ଆବିମୂଳ । ଧନ୍ୟ ସେ ଶ୍ରୀଚରଣପଦ୍ମ ତୋଳ ॥
ପାଟନ୍ନୁତୁଳିର ଉପର । ବିଜୟେ ଶଙ୍ଖ ଚକ୍ରଧର ॥
ବେଦ୍ଧାଣ.ପାରିଷଦବୃନ୍ଦ । କେ କହୁ ତାହାଙ୍କ ଆନନ୍ଦ ॥

ଶ୍ରୀଭୁଜ ଧରି ଦୋହଲାଇ । ଗୁଲନ୍ତି ଢୁଲାଇ ଢୁଲାଇ ॥
ଏକ ମୁଚୁଳି କରି ଦୁର । ଆରେକ ମୁଚୁଳି ଉପର ॥
ବଢେ କରନ୍ତି ଭାବଗ୍ରାହୀ । ଅତି କଠୋର ଘାତ ପାଇ ॥
ପାଠ ମୁଚୁଳି ଗଲା ଫାଟି । ତାହା ଦେଖିଲା ସେ ସିପୁଷ୍ଟି ॥
ପାତ୍ରକେ ଥିଲା ପ୍ରାପ୍ତ ହୋଇ । ମୁଚୁଳି ଦେଲା ସେ ବଢାଇ ॥
ତହିଁ ବିଜୟ ଜଗନ୍ନାଥ । ସିପୁଷ୍ଟି ଯୋଡ଼ିଅଛି ହସ୍ତ ॥
ଦେଖ ହେ ସୁଭାଗ୍ୟ ତାହାର । ଶୁଣି ଆନନ୍ଦ ମନ ବୀର ॥
ବୋଲଇ ଶୁଣ ଚଇତନ । ଧନ୍ୟ ସେ ଭକତ ଜୀବନ ॥
ଏଥିଉତ୍ତାରେ ହେଲା କିସ । କହ ମୋ ମନ କରି ତୋଷ ॥
ଶୁଣି ଚୈତନ୍ୟ ଅତି ଧୀରେ । କହଇ ମନର ଆଗରେ ॥
ଏଥିଉତ୍ତାରେ ଯେଉଁ କଥା । ଶୁଣ ହୋ ମନ ମହାରଥା ॥
ମୁଚୁଳି ବଢ଼ାଇଣ ଦେଲା । ସିପୁଷ୍ଟି ପ୍ରଭୁ ପାଶେ ଥିଲା ॥
ସାଷ୍ଟାଙ୍ଗ ଦଣ୍ଡବତ କଲା । ଉଠି କପାଳେ କରି ଦେଲା ॥
ପଛକୁ କରନ୍ତେ ଗମନ । ତକ୍ଷଣେ ଗଲା ସେହୁ ସ୍ଥାନ ॥
ତା ନିଜ ମନ ବୁଦ୍ଧି ହୋଇ । ମନ୍ଦିରେ ବସିଣ ଅଛଇ ॥
ଏକ ମୁଚୁଳି ଅଛି ଧରି । ଆରତି ନେଲେ ଦେବହରି ॥
ତା ମନେ କରଇ ବିଚାର । ଏ ତ ଅପୂର୍ବ ଚମତ୍କାର ॥
କି କୃପା କଲେ ଦେବରାଜ । କି ଭାଗ୍ୟ ହେଲା ମୋର ଆଜ ॥
ଏମନ୍ତ ଭାବୁଅଛି ବସି । ଭକ୍ତ ଆନନ୍ଦ ମିଶାମିଶି ॥
ଦଣ୍ଡିବ ପରା ଦିଲ୍ଲୀଶ୍ୱର । ମୋ ପ୍ରଭୁ ବଳେ ବଳୀୟାର ॥
ଏମନ୍ତ ବିଚାରି ତା ମନେ । ବାଦସାର ଛଡ଼ିଦାରମାନେ ॥
ଦ୍ୱାରେ ଡାକିଲେ ରେ ସିପୁଷ୍ଟି । ବହନ ହୋଇ ଆସ ଉଠି ॥
ଦିଲ୍ଲୀଶ୍ୱରଙ୍କ ଆଜ୍ଞା ଶୁଣ । ମୁଚୁଳି ଦୁଇଗୋଟି ଆଣ ॥
ତା ଶୁଣି ଅତି ବେଗେ ଉଠି । ଧରିଣ ସେ ମୁଚୁଳି ଗୋଟି ॥
ବାଦ୍‌ସାର ଆଗେ ନେଇ ଦେଲା । ଅନେକ ସଲାମ ସେ କଲା ॥

ବାଦ୍‌ସା ଯେ ବୋଇଲେ ଅନାଇଁ । ଆଜ ମୁକ୍ତୁଳ ଗୋଟି କାହିଁ ॥
ସିଇଁ କା ନାହୁଁ ସତ କହ । ତୋତେଦେଖିମୋକମେଦେହ
ମିପୁଟି ଶୁଣି ପାଦେ ପଡ଼ି । ଉଠି ମସ୍ତକେ କର ଯୋଡ଼ି ॥
ବୋଲଇ କହୁଛି ମୁଁ ସତ  ଗୋଟିଏ ନେଲେ ଜଗନ୍ନାଥ ॥
ଗୋଟିଏ ଦେଲି ତୋ ଗୁମୁର । ତୋ ଇଚ୍ଛା ଯାହା ତାହାକର ॥
ତା ଶୁଣି ବାଦ୍‌ସା ଅଳ୍ପ ହସି । କ୍ରୋଧ ହରଷ ମିଶାମିଶି ॥
ବୋଲଇ କି କହୁ ରେ ବାଇ । କହ ତୋ ଜଗନ୍ନାଥ କାହିଁ ॥
କେବଣ ଦେଶେ ତାର ଘର । କହ ସେ କେତେ ବଳୀୟାର ॥
କି କରିପାରେ ତାର ହସ୍ତେ । ମୁକ୍ତୁଳ ନେଲା-ସେ କେମନ୍ତେ
କ୍ଷେତ୍ରକୁ ଏ ଦିଲ୍ଲୀସହର । ଦୁଇଶ ଯୋଜନ ଅନ୍ତର ॥
ଏହା କହୁଛୁ ମୋର ପାଶ । କି ତୋ ଜୀବନେ ନାହିଁ ଆଶ
ଆଜର ମଧେ ଯେ କେମନ୍ତେ । ନେଲେ ସେ ଦେଲୁ କେଉଁମତେ
ଏମନ୍ତେ ଶୁଣି ସେ ମିପୁଟି । ଭଜେ ଗୋବିନ୍ଦ ନାମ ଗୋଟି
ମୋର ମରଣେ ଡର ନାହିଁ । ବୋଇଲା ଶୁଣ ଚିତ୍ତ ଦେଇ ॥
ତୁମ୍ଭେ ଯେ ପଚାରିଲ ମୋତେ । କହଇ ଶୁଣ ଶୁଦ୍ଧଚିତ୍ତେ ॥
ସେ ଯେଉଁ ଦାରୁବ୍ରହ୍ମ ହରି । ଜଗତଯାକ ଛନ୍ତି ପୂରି ॥
ଦାଇବେ ଜଗତ ଈଶ୍ୱର । ନୀଳାଦ୍ରି ନବରେ ତା ଘର ॥
ଜଗତ ପାଳିବା ନିମନ୍ତେ । କମ୍ବୁ ରଥାଙ୍ଗ ଧରି ହସ୍ତେ ॥
ଯେ ଯାହା ବିଚାରିଲେ ଜାଣେ । ଯହିଁ ଡାକିବ ତହିଁ ଶୁଣେ ॥
ଅନେକ ଯୋଜନର ପ୍ରାଣୀ । ଯେ ଯେତେ ଦ୍ରବ୍ୟ ଦେଲେଆଣି
ଭୋଗ କରନ୍ତି ଚକ୍ରପାଣି । କେବଳ ଭକ୍ତ ମନ ଜାଣି ॥
ଅଭକ୍ତ ଲୋକଙ୍କୁ ସେ ଦୂର । ଏ କଥା ମିଥ୍ୟା ନ ବିଚାର ॥
ଶୁଣି ବାଦ୍‌ଷା କ୍ରୋଧଭର । ବୋଲଇ ଶୁଣ ରେ ପାମର ॥
ଆମ୍ଭର ସିନା ଭବ ନାହିଁ । ଭବରେ ପୂରିଅଛୁ ତୁହି ॥
ଏବେ ତୁ ମରଣ ମୁଖରୁ । ସୁମର ତୋତେ ରକ୍ଷାକରୁ ॥

ଏମନ୍ତେ ବାଦ୍‌ସା କ୍ରୋଧଚିତ୍ତେ। ବୋଲଇ ଶୁଣ ଆରେ ଦୂତେ ॥
ଏ ଦୁଷ୍ଟ କୁବୁଜାକୁ ନିଅ । ବନ୍ଦୀ ମନ୍ଦିରେ ନେଇ ଥୁଅ ॥
ଆଣ୍ଠୁ ରଜ୍ଜୁଏ କରେ ଧରି । ବାନ୍ଧିବ ପଛ ବାହା କରି ।
ଚରଣେ ଲଗାଅ ଶାଙ୍କୋଳି । ଆଣ୍ଠେ କବାଟ ଦିଅ କିଳି ॥
ଅନ୍ନ ନ ପାଇ ଯାଉ ମରି । ପାରିଲେ ରଖୁ ଆସି ହରି ॥
ତା ଶୁଣି ଦୂତ ଘେନି ଗଲେ । ବନ୍ଦୀ ମନ୍ଦିରେ ବନ୍ଦୀ କଲେ ॥
ସେ ଭକ୍ତ ସୁମରଇ ହରି । ବାନ୍ଧିଲେ ପଛୁବାହା କରି ॥
ବନ୍ଦୀ ମନ୍ଦିରେ ବନ୍ଦୀ କଲେ । କବାଟ ଆଣ୍ଠେ କିଳି ଦେଲେ ॥
ଶୁଣ ସୁମନ ଶୁଦ୍ଧଚିତ୍ତେ । ଏଥି ଉତ୍ତରୁ କଥା ଯେତେ ॥
ସେ ଭକ୍ତ ବନ୍ଦିଘରେ ଥାଇ । ଡାକଇ ରଖ ଭାବଗ୍ରାହୀ ॥
ରଖ ହେ କମଳାରମଣ । ରଖ ହେ ଜଗତ ତାରଣ ॥
ଦ୍ରୌପଦୀ ଗଜ ଗର୍ଭିଣୀ । ରକ୍ଷାକରତା ଚକ୍ରପାଣି ॥
ହେ ଚକ୍ଷୁ ଶ୍ରବଣ ନାୟକ । ନବୀନ ଜଳଦଦାୟକ ॥
ହେ ରାମ ଧନୁର୍ବାଣଧାରି । ହେ ସପ୍ତସିନ୍ଧୁ ବନ୍ଧକାରୀ ॥
ହେ କୃପାସିନ୍ଧୁ ମହାମେରୁ । ହେ ଭକ୍ତବାଞ୍ଛା କଳ୍ପତରୁ ॥
ହେ ନାଥ ଦୀନଜନବନ୍ଧୁ । ହେ ଆର୍ତ୍ତନାଶ କୃପାସିନ୍ଧୁ ॥
ହେ ଲୀଳା ଅବଲାକାରକ । ହେ ନୀଳାଚଳ ଶ୍ରୀନାୟକ ॥
ହେ ଜନରଞ୍ଜନ ନୟନ । ହେ ଘୋର ବିପଦନାଶନ ॥
ହେ ପ୍ରହ୍ଲାଦ ଉଦ୍ଧାରଣ । ହିରଣ୍ୟ ହୃଦବିଦାରଣ ॥
ହେ ଗିରି ଗୋବର୍ଦ୍ଧନଧାରୀ । ହେ ଇନ୍ଦ୍ର ଗର୍ବ ଖର୍ବକାରି ॥
ଶିବ ବିରଞ୍ଚି ଯାର ପାଦେ । ଧ୍ୟାନେ ଭାବନ୍ତି ଅପ୍ରମାଦେ ॥
ତୋର ମହିମା ଅକୂପାର । ମୋ ସ୍ତୁର କେତେକ ମାତର ॥
କାହୁଁ ଜାଣିବ ତୋର ଭାବ । ଯୋଗୀନ୍ଦ୍ର ଜନେ ଯେ ଦୁର୍ଲଭ
ଜଗତ ତୋର ଖେଳଘର । ମୁଁ କିବା ତହିଁରୁ ବାହାର ॥
ଏଣୁ ଭରସା ଅଛି ତୋତେ । ପଠାଣ ଦଣ୍ଡୁ ରଖ ମୋତେ ॥

ତୋହର ଇଚ୍ଛା ଯାହା କର । ଆସ୍ୱତ୍ର ନାହିଁଟି ମୋହର ॥
ଏମନ୍ତ ବୋଲି ଚକ୍ଷୁ ବୁଜି । ଧ୍ୟାନେ ଶ୍ରୀହରି ନାମ ଭଜି ॥
ଚନ୍ଦ୍ରେ ଶଙ୍ଖ ଚକ୍ରବାହୁ । ନିଦ୍ରା ଛୋଟିଲ ଗୃହୁଁ ଗୃହୁଁ ॥
ତାହା ଜାଣିଲେ ଦେବସ୍ୱାମୀ । ଯେ ପ୍ରଭୁ ସର୍ବ ଅନ୍ତର୍ଯାମୀ ॥
ଅଧମ ଉଦ୍ଧାରଣ ବାନା । ନ ସହେ ଭକତ ବେଦନା ॥
ତକ୍ଷଣେ ବିଜେ କରି ଗଲେ । ଦିଲ୍ଲୀ ସହରେ ଯାଇ ହେଲେ ॥
ବେଗରେ ପ୍ରଭୁ ବ୍ରହ୍ମରାଶି । ଭୃତ୍ୟର ବନ୍ଦୀଘରେ ପଶି ॥
ଅଶେଷ ବ୍ରହ୍ମାଣ୍ଡର ଶୋଭା । ଭୃତ୍ୟ ପାରୁଶେ ହେଲେ ଉଭା ॥
ଯହୁଁ ପଡ଼ିଲା କୃପାଦୃଷ୍ଟି । ପାଦୁ ଶାଙ୍କୋଳି ଗଲା ଫିଟି ॥
ବନ୍ଧନ ଗଣ୍ଠି ଫିଟିଗଲା । ତକ୍ଷଣେ ଉଶ୍ୱାସ ହୋଇଲା ॥
ଅନାଇ ଦେଲା ନେତ୍ରପଥେ । ବିଜୟ ପ୍ରଭୁ ଜଗନ୍ନାଥେ ॥
ଅଭୟ ବରଦାତା ଗୁରୁ । ଭୃତ୍ୟ କଳ୍ପନା କଳ୍ପତରୁ ॥
ହସି କହନ୍ତି ଆଦିମୂଳ । କହ ତୁ କପାଇଁ ବିକଳ ॥
ମୋ ପରି ସାହା ଥାଉଁ ଥାଉଁ । ତୋର କାହାକୁ ଭୟ ଆଉ ॥
ଏ ରଙ୍କ ଥିଲେ ମୋର କର । ମୋର ସେବକ ବଳୀୟାର ॥
ଏମନ୍ତ ବୋଲି ଆଜ୍ଞାକଲେ । ଅଭୟପାଦ ଶିରେ ଦେଲେ ॥
ତକ୍ଷଣେ କୁଜି କେଣେ ଗଲା । କନ୍ଦର୍ପ ସଦୃଶ ଦିଶିଲା ॥
ଦେଖ ହୋ ସୁଭାଗ୍ୟ ତାହାର । ଯାହା ନ ପାଏ ବେଦବର ॥
ସେ ପାଦପଦ୍ମ ଶିରେ ବହି । ପବିତ୍ର ହେଲା ତାର ଦେହି ॥
ଭାବରେ ଗଦ ଗଦ ହୋଇ । କିଛି ସେ ନ ପାରଇ କହି ॥
ପ୍ରଭୁ ବିଜୟ କରି ଗଲେ । ବାଦ୍‌ସାର ମନ୍ଦିରେ ମିଳିଲେ ॥
ସେ ଦିଲ୍ଲୀଶ୍ୱର ନିଦ୍ରାଗତେ । ପଲଙ୍କେ ଶୋଇଛନ୍ତି ଅଚେତେ ॥
ତହିଁ ବିଜୟ ଭଗବାନ । ବୋଇଲେ ଶୁଣରେ ଅଜ୍ଞାନ ॥
ଏ ଅଧିକାର ଏ ଜଗତେ । ମୁଁ ସିନା ଦେଇଅଛି ତୋତେ ॥
ଏହା ନ ଜାଣି ତୋର ମନେ । ମୋ ଭକ୍ତ ଦଣ୍ଡିଲୁ କେସନେ ॥



ବାଦସାହ ବନ୍ଦୀଶାଳାକୁ ଯାଇ ଦେଖନ୍ତି, ସିପୁଟିର ଲୁହ ନାହିଁ ଏବଂ ତା ହାତନ୍ତ ଶିକୁଳି ଫିଟିଯାଇଛି ।

ସ୍ୱର ମୂର୍ଚ୍ଛାଏ ମୋତେ । ମୋ ଭକ୍ତ ଦେଲା ଭକ୍ତିଚିତ୍ତେ ॥
ମୋର ପଦାର୍ଥ ମୋତେ ଦେଲା । ତୋ ବାପ ଗଣ୍ଡି କି ସରିଲା ॥
ଏବେ ତୁ ପ୍ରଭାତରୁ ଉଠି । ବନ୍ଦୀରୁ ଅଣାଅ ସିପୁଟି ॥
ଅନେକ ଦେବୁ ଉପହାର । ଚରଣେ ପୂଜିବୁ ତାହାର ॥
ଏମନ୍ତ ନ କଲେ ଅବଶ୍ୟ । ଗ୍ରୁଣ୍ଡ଼ ତୋ ଜୀବନର ଆଶ ॥
ତୋ ବଂଶ ଆଦି ତୋତେ ଧରି । କାଟିବି ଟିକି ଟିକି କରି ।
ପିଟିଲେ ଦିଲ୍ଲୀଶ୍ୱରେ ରାଗେ । ଲୋଳା ବସିଲା ତାର ଅଙ୍ଗେ
ଏମନ୍ତ କହି ଦାଇତ୍ୟାରି । କରେ ଗଉଦ୍ଦୀ ବେତ ଧରି ॥
ହଟ ନାଗର ନଟବର । ସେଠାରୁ ହୋଇଲେ ଅନ୍ତର ॥
ଟସ ଯେ ବିଷମ ଘାତ ପାଇ । ତେକ୍ଷଣ ଉଠିଲା ବୋବାଇ ॥
ନୟନ ଫେଡ଼ ଦେଲା ଚାହିଁ । ପାଶେ ଦେଖିଲା କେହି ନାହିଁ ॥
ବିଚିତ୍ରେ ଏ କି ବିପରୀତ । ସ୍ୱପନ କଥା ହେଲା ସତ ॥
କେ ମୋତେ ଏଥେ ଗଲା ପିଟି । ଲୋଳା ତ ଦିଶୁଅଛି ଫୁଟି ॥
ଏ କଥା କାହା ବଳେ ହେବ । ନିଶ୍ଚେ ସେ ଅଟଇ ଦାଇବ ॥
ମୋତେ ଚେତାଇ ଦେଇଗଲା । ଭକ୍ତ ନିମନ୍ତେ ଏହା କଲା ॥
ଏଥିରେ କଲେ ଆଉ ହେଳା । ନିଶ୍ଚେ ବୁଡ଼ିବ ମୋର ଭେଳା ॥
ଏମନ୍ତେ ଭାବି ପ୍ରଭାତରେ । ଆପଣେ ଚଳିଲା ସତ୍ୱରେ ॥
ବନ୍ଦୀ ମନ୍ଦିରେ ହେଲା ଯାଇ । ଦେଖିଲା କବାଟ ପିଟାଇ ॥
ପାଦେ ଶାଙ୍କୋଳି ନାହିଁ ତାର । ବନ୍ଧନୁ ହୋଇଛି ବାହାର ॥
କୁଜ କଳଙ୍କ ତାର ନାହିଁ । ତା ଶୋଭା କେ ପାରିବ କହି ॥
ଭଜି ଶ୍ରୀରାମ ନାମ ଗୋଟି । ଆନନ୍ଦେ ବସିଛି ସିପୁଟି ॥
ତା ଦେଖି ଦିଲ୍ଲୀଶ୍ୱର ଭୟେ । ଭକ୍ତକୁ କୋଳରେ ବସାଏ ॥
ଗନ୍ଧ ଚନ୍ଦନ ମାଳା ଧରି । ଅନେକ ଅଳଙ୍କାର ଭରି ॥
ପଡଣୀ ଶାଢ଼ୀ ଶିରେ ଦେଲେ । ଅନେକ ବିନତେ କହିଲେ ॥
ସମସ୍ତେ ଦେଖୁଥିଲେ ତହିଁ । ଚରଣେ ବେନିକର ଦେଇ ॥

ବୋଇଲେ ଧନ୍ୟ ତୋ ଜୀବନ । ପବିତ୍ର କଲୁ ଏ ଭୁବନ ॥
ସତ୍ୟ କହିଲୁ ଆଜଠାରୁ । ତୁ ଆମ୍ଭ କୁଳ ଇଷ୍ଟଗୁରୁ ॥
ଏମନ୍ତ କହି ପାଟହାତୀ । ମଣ୍ଡିଲେ ନାନା ରତ୍ନପନ୍ତି ॥
ଘଣ୍ଟା ଘାଗୁଡ଼ି ନାଦ କରି । ପିଠିରେ ଅମୂଲ୍ୟ ଅମାରି ॥
ତହିଁ ଭକ୍ତକୁ ବସାଇଲେ । ଦିଲ୍ଲୀ ସହରେ ବୁଲାଇଲେ ॥
ଜୟ ଘୋଷଣା ନାଦ ଦେଇ । ଗୁଡ଼ିଲେ ତାର ପୁରେନେଇ ॥
ବାଦ୍‌ସା ଯେ ଗଲେ ତାଙ୍କ ପୁର । ସର୍ବେ ଚଳିଲେ ଯେଝାଘର ॥
ଶୁଣ ହେ ମନ ମହାରଥୀ । ମୋ ଭକ୍ତବନ୍ଧୁଙ୍କର କଥା ॥
ରେଣୁକୁ କରେ ମେରୁ ସମ । ଦେଖ ସେ ପୁରୁଷ ଉତ୍ତମ ॥
ସଂସାରେ ଦେବ ଦେବୀ ଯେତେ । କେ ଏହା କରିବ ଜଗତେ ॥
ଏମନ୍ତ ପ୍ରଭୁସେବା ଗୁଡ଼ି । ଯେ ଅନ୍ୟ ମାର୍ଗେ ଯାନ୍ତି ବଢ଼ି ॥
ବ୍ୟର୍ଥ ତା ଦେହ ବହିବାର । ଶୁଣ କହିବା ଦୃଷ୍ଟାନ୍ତର ॥
ଯେସନ୍ତେ ସୁଗନ୍ଧ ଦ୍ରବ୍ୟ ଲେଚ୍ଛ । ଦୁର୍ଗନ୍ଧେ ଯାଇ ବସେ ମାଚ୍ଛି ॥
ସେ ନର ଏମନ୍ତ ଅଟଇ । ଉଭୟ ଲୋକେ ସୁଖ ନାହିଁ ॥
ଏଥିଉତ୍ତାରେ ସେ ଭକତ । ନିରତେ ଭଜେ ଜଗନ୍ନାଥ ॥
ତା ଜୀବଦ୍ଦଶା କଟାଇଲା । ପରମ ପଦହିଁ ପାଇଲା ॥
ଶୁଣ ହୋ ମନ ନୃପବର । ଭବରେ ହୋଏ ଏତେ ଦୂର ॥
ଏ ଯେ ଦୃଢ଼ତା ଭକ୍ତିରସ । ବିଷୟୀ ବିଷକୁ ପୀୟୂଷ ॥
ଶ୍ରବଣ ପଠନ ଏ ଦୁଇ । ଯେ କରେ ଶ୍ରଦ୍ଧା ଭାବ ବହି ॥
କଳୁଷ ପଙ୍କରୁ ନିସ୍ତରେ । ସେ ନର ଭବସିନ୍ଧୁ ତରେ ॥
ଶୁଣି ଆନନ୍ଦ ମନେ ଯେତେ । କେ କହିପାରେ ଏ ଜଗତେ ॥
ଚୈତନ୍ୟ ପାଦେ ପୂଜାକରି । ବୋଲଇ ଗଳ ମୂର୍ଖ ନିସ୍ତରି ॥
କହଇ ରାମଦାସ ଦ୍ୱିଜ । ମୋ ପ୍ରଭୁ ଶଙ୍ଖଚକ୍ରଭୁଜ ॥
ସେ ଶ୍ୱେତପଦ୍ମ ନେତ୍ର ପାଦେ । ମୋ ମନ ରହୁ ଅପ୍ରମାଦେ ॥
ସୁଜନେ ଏତେଣି କର ଲୟ । ଆଉ ନ ଥିବ ଯମ ଭୟ ॥

ମୁଁ ତୁମ୍ଭ ଚରଣେ କଙ୍କର । ମୋର ଅପ୍ରାଧ କ୍ଷମା କର ॥

ଇତି ଶ୍ରୀଦାର୍ଢ୍ୟଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ ପରମ ଭକ୍ତ ସିପୁଟି ଦୃଢ଼ ଭକ୍ତିଭାବ ବର୍ଣ୍ଣନେ ନାମ ତ୍ରିଂଶୋଽଧ୍ୟାୟଃ ।

---

## ଏକତ୍ରିଂଶ ଅଧ୍ୟାୟ
## ନାରାୟଣ ଦାସ ସମ୍ବାଦ

ନମସ୍ତେ ଦେବ ଗଣପତି । ଅନନ୍ତ ଜ୍ଞାନ ସିଦ୍ଧପତି ॥
ପାର୍ବତୀ ଦେବୀ ପୁତ୍ରମଣି । ସକଳ ଦେବଙ୍କ ଅଗ୍ରଣୀ ॥
ନମୋ ଶାରଦା ଯାଜ୍ଞସେନୀ । ଜଗତଜନଙ୍କ ଜନନୀ ॥
ଯେ ବନ୍ଦେ ତୋର ପାଦଦ୍ୱନ୍ଦେ । ଶରଣ ରଖୁ ଅପ୍ରମାଦେ ॥
ତୋ ଆଜ୍ଞା ବିନା କେବା ନର । କହିବ ମହିମା ତୋହର ॥
ନମସ୍ତେ ଦେବ ଜଗନ୍ନାଥ । ନମସ୍ତେ ଶଙ୍ଖଚକ୍ରହସ୍ତ ॥
କମଳା ଦେବୀ ପ୍ରାଣପତି । ଦାସବତ୍ସଳ ଦାଶରଥି ॥
ଶରଣ ପଞ୍ଜର ମୁରାରି । ଘୋର ଦୁରିତ ନାଶକାରୀ ॥
ଏଣୁ ଶରଣ ରାମଦାସ । ପୁରାଅ ମୋର ମନ ଆଶ ॥
ମନ ବୋଲଇ ଚଇତନ । ଶୁଣିଲି ଅପୂର୍ବ ବଚନ ॥
ତତ୍ତ୍ୱ ଅନ୍ତା ପରଯନ୍ତେ । ଦୃଢ଼ତା ଭକ୍ତି କଥା ଯେତେ ॥
ଏତିକି ମାତ୍ର ସୁଧାରସ । ଶ୍ରବଣେ ମନ ନୋହେ ତୋଷ ॥
ଆହୁରି ଶୁଣିବାକୁ ଇଚ୍ଛା । କରଇ ତେଣୁ ମୁହିଁ ପୁଚ୍ଛା ॥
ଅନ୍ୟ ଭକତମାନଙ୍କର । କଥା କି ଅଛଇ ଆବର ॥
କିବା ଏତେକେ ହେଲା ଶେଷ । କହିବା ଏଥିର ସନ୍ଦେଶ ॥
ଶୁଣି ଚୈତନ୍ୟ କହେ ହସି । ଶୁଣ ହେ ମନ ଘଟବାସୀ ॥
ଏ ଯେ ସଂସାର ମଧ୍ୟଗତେ । ହରି ଭକତ ଛନ୍ତି ଯେତେ ॥
ମହିମା ଅପାରୁଁ ଅପାର । କେ ତାହା କରିବ ଗୋଚର ॥
କେବଳ ଠିକ ଠିକ କରି । କହିଲି ସିନା କଥା ଗୃରି ॥

ତା ଶୁଣି ମନ ନୃପବର । ବୋଲେ ଶୁଣ ଚୈତନ୍ୟ ବୀର ॥
ମୋତେ କରୁଣାହୃଦ ହୁଅ । ଆଉ ଭକ୍ତଙ୍କ କଥା କହ ॥
ଯେସନେ ତୃଷିତ ଚକୋର । ନିରତେ ଲୋଡ଼େ ସୁଧାକର ॥
ଗୃତକ ଯେସନେ ଘନରସ । ଲୋଡ଼ଇ ରଜନୀ ଦିବସ ॥
ମୋହର ମନ ସେହିମତେ । ଆଶା ତୋ ବଚନ ଅମୃତେ ॥
ଆଉ ସାଧୁଙ୍କ କଥା ଯେତେ । ପବିତ୍ର କର କହି ମୋତେ ॥
ତାହା ଶୁଣିଣ ଚଇତନ । ବୋଲଇ ଶୁଣ ହେ ସୁମନ ॥
କହିବି ଅପୂର୍ବ ଚରିତ । କେବଳ ସ୍ଥିର କର ଚିତ୍ତ ॥
ଗଙ୍ଗାଙ୍କ ପାହିଁରେ ନିବାସ । ସେ ପୁଣ୍ୟ ଭୂମି ଅଙ୍ଗଦେଶ ॥
ଯେ କୀର୍ତ୍ତିଚନ୍ଦ୍ର ନୃପବର । ସେହି ରାଜ୍ୟରେ ତାର ଘର ॥
ଜାତିରେ ଅଟଇ କରଣ । ନାମ ତାହାର ନାରାୟଣ ॥
ପତ୍ନୀର ନାମ ତା ମାଳତୀ । ଅଚଳାଚଳ ତା ସମ୍ପତ୍ତି ॥
ଅତି ବିବେକ ଶୁଚିମନ୍ତ । ଅତି ଧାର୍ମିକ ଶୁଦ୍ଧଚିତ୍ତ ॥
ସାଧୁ ବୈଷ୍ଣବଙ୍କ ଚରଣେ । ସେବା କରଇ ଅନୁକ୍ଷଣେ ॥
କେବଳ ରଜନୀ ବାସର । ହରି ଭଜନ ମୂଳ ତାର ॥
ଦୁଃଖୀ ବା ଦରିଦ୍ର ଅତିଥି । ଦ୍ୱାରେ ତା ହେଲେ ଉପସ୍ଥିତ ॥
ତାହାଙ୍କୁ ଅନ୍ନ ବସ୍ତ୍ରଦାନେ । ତୋଷଇ ଅତି ତୋଷମନେ ॥
ନାହିଁ ତା ନିଷ୍ଠୁର ବଚନ । ନ ରଖେ ପରନାରୀ ଧନ ॥
ନିରନ୍ତେ ଚିନ୍ତେ ହରିଭାବ । ଶ୍ରୀଗୁରୁ ପାଦେ ପୂର୍ଣ୍ଣ ଲୋଭ ॥
ତହୁଁ ଅଧିକ ତା ଯୁବତୀ । କେବଳ ସ୍ୱାମୀପାଦେ ମତି ॥
ନ ଜାଣେ ତୀର୍ଥ ବ୍ରତ ସେବା । କେବଳ ସ୍ୱାମୀପାଦେ ସେବା ॥
ସ୍ୱାମୀର ଆଜ୍ଞା ନ ଲଙ୍ଘଇ । ଶୁଣ ହେ ମନ ନୃପସାଇଁ ॥
ଏମନ୍ତେ ଥାନ୍ତି ବେନି ପ୍ରାଣୀ । ମିଥ୍ୟାବଚନ ସେ ନ ଜାଣି ॥
ଅଦୃଷ୍ଟ ବଳରୁ ତାହାର । ନାହିଁ ନା ଦୁହିତା କୁମର ॥
ତେଣୁ ସେ ଚିନ୍ତାକରି ମନ । ବିଶ୍ରୁ ଥାଇ ପ୍ରତିଦିନ ॥

ଧନ ସମ୍ପଦ ଗୃହ ବାସ । ଏଥି ମୋ ପ୍ରୟୋଜନ କିସ ॥
କେବଳ ଅଯୋଧ୍ୟାକୁ ଯିବ । ଶ୍ରୀରାମ ଚରଣେ ସେବିବି ॥
ସେହି ରୂପକୁ କରି ଧ୍ୟାନ । ତହିଁ ମୁଁ ବଞ୍ଚାଇବି ଦିନ ॥
ସେ ପୁଣ୍ୟକ୍ଷେତ୍ରେ ବାସକରି । ସୁଖେ ରହିବି ଦେହ ଧରି ॥
ଯାଉ ବା ଥାଉ ଏ ଶରୀର ଅନ୍ୟ ଶରଣ ନାହିଁ ମୋର ॥
ଏମନ୍ତ ଭାବି ଗୃହେ ତାର । ଯେ ଥିଲା ଦେହ ଅଳଙ୍କାର ॥
ସମସ୍ତ ଠୁଳକଲା ବେଗେ । କହିଲା ନିଜ ପତ୍ନୀ ଆଗେ ॥
ଚାଲ ଅଯୋଧ୍ୟାପୁର ଯିବା । ଶ୍ରୀରାମ ଚରଣେ ସେବିବା ॥
ଶୁଣି ଆନନ୍ଦ ନାରୀବର । ବୋଇଲା ଯେ ଇଚ୍ଛା ତୁମ୍ଭର ॥
ତୁମ୍ଭେ ଯେଣିକି ଯିବ ଯିବ । ତୁମ୍ଭ ଚରଣେ ସେବୁଥିବି ॥
ମୁଁ ଯେ ତୁମ୍ଭର ବଶବର୍ତ୍ତୀ । ଶୁଣି ସାନନ୍ଦ ହେଲା ପତି ॥
ଆଣି ବଳଦ ଗୋଟା ଚାରି । ପଲାଣ ଦେଇ ସଜ କରି ॥
ସକଳ ଦ୍ରବ୍ୟ ସେ ଅଖାରେ । ଭରି ଲଦିଲେ ବଳଦରେ ॥
ଶ୍ରୀରାମ ରୂପ ଧ୍ୟାନକରି । ଚାଲିଣ ଗଲେ ନରନାରୀ ॥
କେତେହେଁଦିନ ଗଲେ ବାଟେ । ମିଳିଲେ ଯାଇଁ ଚିତ୍ରକୂଟେ ॥
ତହିଁ ରହିଲେ କେତେ ଦିନ । ବୁଲି ଦେଖିଲେ ସବୁସ୍ଥାନ ॥
ସନ୍ଥ ମହନ୍ତ ସାଧୁଜନ । ଦେଖି ଆନନ୍ଦ କଲେ ମନ ॥
ସେବି ତାହାଙ୍କ ପାଦଗତେ । ଧନହିଁ ଦାନ ଦେଲେ କେତେ ॥
ତହୁଁ ଚଳିଲେ ଶ୍ରଦ୍ଧାଚିତ୍ତେ । ଅଯୋଧ୍ୟା ଯିବାର ନିମନ୍ତେ ॥
କେତେହେଁ ଦିନ ଯାଉଁ ଯାଉଁ । ସଙ୍ଗତେ ସଙ୍ଗ ନାହିଁ କେହୁ ॥
ପଶିଲେ ଅଗମ୍ୟ ବନସ୍ତେ । ଦେଖିଣ ଭୟ କଲେ ଚିତ୍ତେ ॥
ବାଟେ ରହିଲେ ବସା କରି । ଶୁଣ ହେ ମନ ଦଣ୍ଡଧାରୀ ॥
ପ୍ରଭାତୁ ଉଠି ଚଳିଗଲେ । ନଗର ପଲ୍ଲୀଏ ଦେଖିଲେ ॥
ତହିଁରେ ଆତଯାତ ଜନେ । ଦେଖି ଆନନ୍ଦ ହେଲେ ମନେ ॥
ତାହାଙ୍କୁ ପଥ ପଚାରିଲେ । ବେଗରେ ତହୁଁ ଚଳିଗଲେ ॥

ଏଥି ଅନ୍ତରେ ସେ ଗ୍ରାମରେ । ଦେଖି ଦୁର୍ଜ୍ଜନ ଖଣ୍ଡ ନରେ ॥
ବିଚାର କଲେ ଜଣ ଦଶ । ବାଟ ଜଗିବା ସର୍ବେ ଆସ ॥
ଅନେକ ଧନ ଦ୍ରବ୍ୟମାନ । ବଳଦେ କରିଣ ଲଦନ ॥
ଯାଉ ଅଛନ୍ତି ଜଣ ଦୁଇ । ସଙ୍ଗେ ତାଙ୍କର କେହି ନାହିଁ ॥
ତାଙ୍କ ସଙ୍ଗତେ ସଙ୍ଗୀ ହେବା । ଅଗମ୍ୟ ବାଟେ ଘେନି ଯିବା ॥
ଏକାନ୍ତ ସ୍ଥାନେ ତାଙ୍କୁ ମାରି । ଧନ ଆଣିବା ତହୁଁ ହରି ॥
ଏମନ୍ତ ବିଚାର ଯେ କଲେ । ସେ ଦଶଜଣ ଚଳିଗଲେ ॥
ଅତ୍ୟନ୍ତ ଆନନ୍ଦିତ ହୋଇ । ମିଳିଲେ ତାଙ୍କପାଶେ ଯାଇ ॥
ବୋଇଲେ ଶୁଣ ହେ ବିଦେଶୀ । କେଣେ ଯିବାକୁ ଅଛ ଆସି ॥
ତା ଶୁଣି ନାରାୟଣ ଦାସ । ବୋଇଲେ ଶୁଣ ହେ ବିଶ୍ୱାସ ॥
ଶ୍ରୀରାମଚନ୍ଦ୍ର ରଘୁବଂଶୀ । ଯେହୁ ଅଯୋଧ୍ୟା ପୁରବାସି ॥
ସକଳ ସଂସାର କାରଣୀ । ସକଳ ଜୀବ ଚିନ୍ତାମଣି ॥
ମହାମହିମା ମହାମେରୁ । ଭକତ ବାଞ୍ଛା କଳ୍ପତରୁ ॥
ତାଙ୍କ ଦର୍ଶନେ ଇଚ୍ଛାକରି । ଯାଉଛୁ ଅଯୋଧ୍ୟା ନଗରୀ ॥
ତାହା ଶୁଣିଲେ ଖଣ୍ଡମାନେ । ବୋଇଲେ ଶୁଣ ଅବଧାନେ ॥
ଏ ଘୋର ଅଗମ୍ୟବନସ୍ତେ । ଏକାକୀ ଯିବ ହେ କେମନ୍ତେ ॥
ଆମ୍ଭେ ଯାଉଛୁ ସେହି ସ୍ଥାନ । ପ୍ରଭୁଙ୍କୁ କରିବୁ ଦର୍ଶନ ॥
ଉତ୍ତମ ସଙ୍ଗ ହେଲା ଭେଟ । ଫିଟିଲା ମନର ସଙ୍କଟ ॥
ଚାଲ ସମସ୍ତେ ମିଶିଯିବା । ପ୍ରଭୁଙ୍କୁ ଦର୍ଶନ କରିବା ॥
ଆମ୍ଭେ ତୁମ୍ଭଙ୍କୁ ରଖୁଆଳ । ଭୟ ନ କର ତୁମ୍ଭେ ଚାଲ ॥
ତାହା ଶୁଣିଣ ବେନିଜନ । ବିଚାର କଲେ ମନେ ମନ ॥
ଆମ୍ଭେ ଏହାଙ୍କୁ ଚିହ୍ନୁ ନାହିଁ । ସଙ୍ଗ ହେବାର ନ ଯୋଗାଇ ॥
ବୋଇଲେ ପ୍ରଭୁ ରଘୁନାଥ । ଅନାଥ ଲୋକଙ୍କର ନାଥ ॥
ଯେ କାଣ୍ଡ କୋଦଣ୍ଡ ଧାରଣ । ସେ ଆମ୍ଭ ସାଙ୍ଗ ବୋଲି ଜାଣ ॥
ସେ ଯେଣେନେବେ ତେଣେଯିବୁ । ଆମ୍ଭ ଆୟତ୍ତ ନାହିଁ ବାବୁ ॥

ଏମନ୍ତ ଶୁଣିଣ ଦୁର୍ଜନେ । ବୋଇଲେ ଶୁଣ ମହାଜନେ ॥
କପଟ କଲ ତୁମ୍ଭେ ଚତ୍ରେ । ସବୁର ପ୍ରଭୁ ଜଗନ୍ନାଥେ ॥
ସକଳ ଜୀବ ପ୍ରାଣମଣି । ସେ ହାନ୍ତି ଲଭର କାରେଣୀ ॥
ତୁମ୍ଭ ଆମ୍ଭଙ୍କୁ ସେହୁ ସାକ୍ଷୀ । ଗୃଲ ହୋ ସଂଶୟ ଉପେକ୍ଷି ॥
ଆମ୍ଭେ କହୁଛୁଁ ତୁମ୍ଭ ଭଲ । ସମସ୍ତେ ମିଶି ମିବା ଗୃଲ ॥
ଶୁଣି ସେ ପତ ପତ୍ନୀ ଦୁଇ । ହୋଇଣ ବହୁତ ବନସ୍ପୀ ॥
ବୋଇଲେ ପ୍ରଭୁ ଧନୁର୍ଦ୍ଧାରୀ । ସକଳ ଘଟେଛନ୍ତ ପୂର ॥
ତାହାଙ୍କୁ ଯେବେ ସାକ୍ଷୀ କଲ । ହୋଇଲା ସବୁକଥା ଭଲ ॥
ଏବେ ମିଶିଣ ଯିବା ସତ । ଆମ୍ଭର ତୁମ୍ଭେ ତାତମାତ ॥
ସଂସାର ମଧ୍ୟେ ଏତେ ଲେଖି । ସବୁ କଥାକୁ ଧର୍ମ ସାକ୍ଷୀ ॥
ଏମନ୍ତ ବୋଲି ସେ କହିଲେ । ମିଶି ସମସ୍ତେ ଚଳିଗଲେ ॥
କେବଳ ମୁକୁନ୍ଦ ମୁରାର । ହୃଦୟ ମଧ୍ୟେ ଚିନ୍ତାକର ॥
ମିତ୍ର ବାନ୍ଧବ ପ୍ରାପ୍ତ ହୋଇ । ପଶିଲେ ଘୋର ବନେ ଯାଇ ॥
କେତେହେଁ ଦିନ ଚଳିଯାନ୍ତେ । ଦୁଷ୍ଟେ ବିଚାରୁଛନ୍ତି ଚିତ୍ତେ ॥
ଆଜ କି ବିଚାର ଏଥର । ପଡ଼ିଲେ ଆମ୍ଭ ଆୟତ୍ତର ॥
ଏ ମହାଜନ ପ୍ରାଣ ନାଶି । ଘେନିଣ ଯିବା ଶୁଭ୍ରକେଶୀ ॥
ଧନ ଦ୍ରବ୍ୟାଦି ଥିବ ଯେତେ । ଖାଇ ବଞ୍ଚିବା ଦିନାକେତେ ॥
ବେଗେ ଖଡ଼୍‌ଗ ଧରିକର । ଛେଦନ କର ଏହା ଶିର ॥
କେ ବୋଲେ ଜିହ୍ୱା ଉପାଡ଼ିବା । କେ ବୋଲେ ନୟନ ତାଡ଼ିବା ॥
କେ ବୋଲେ ନୁହଇ ଏମନ୍ତ । ବନ୍ଧନ କର ପାଦ ହସ୍ତ ॥
ଏକାନ୍ତ ସ୍ଥାନେ ପକାଇବା । ଉପରେ ପଥର ଲଦିବା ॥
ପଡ଼ିଣ ଥିବ ଦିନ ଗୃର । ଆପଣା ସୁଖେ ଯିବ ମରି ॥
ଧନ ବସନ ଅଛି ଯେତେ । ଏ ନାରୀ ଘେନିବା ସଙ୍ଗତେ ॥
ବହନ ହୋଇ ଯିବା ଗୃଲ । ସର୍ବେ ବୋଇଲେ ଏହୁ ଭଲ ॥
ଏମନ୍ତ ବୋଲି ବେଗ ହୋଇ । ଧଇଲେ ସାଧୁତକୁ ଯାଇ ॥

ନିବଡ଼େ ବାନ୍ଧିପକାଇଲେ । ଅଗମ୍ୟ ବନେ ଥୋଇଗଲେ ॥
ପକାଇ ତାଙ୍କୁ ଘୀର୍ଘ କରି । ମାଡ଼ି ବସିଲେ ଜଣ ଚାରି ॥
ଆବର ଲୋକେ ଆଣି ଶିଳ । ଲଦିଲେ ତା ହୃଦକମଳ ॥
ବୋଇଲେ ଏଥି ସୁଖେ ଥାଅ । ନୋହିଲେ ଦୀର୍ଘ କରି ଯାଅ ॥
ଏମନ୍ତ ବୋଲି ଚଳିଯାନ୍ତେ । ସେ ନାରାୟଣ ହୃଦଗତେ ॥
ବୋଇଲେ ଜଗତ-ଚିନ୍ତାମଣି । ନମୋ କୋଦଣ୍ଡ କାଣ୍ଡପାଣି ॥
ନମସ୍ତେ ନୀଳଘନ ମୂର୍ତ୍ତି । ନମୋ ଜାନକୀ ଦେବୀ ପତି ॥
ନମସ୍ତେ ତ୍ରୈଲୋକ୍ୟ ଈଶ୍ୱର । ସଂସାର ତୋର ଖେଳଘର ॥
ଚର ଅଚର ଆଦିକରି । ସକଳ ଘଟେ ଅଛୁ ପୂରି ॥
ତୁମ୍ଭ ଉଦରେ ଏ ସଂସାର । ତୁ ଅଛୁ ଅନ୍ତର ବାହାର ॥
ତୋର ବାହାରେ ଅନ୍ୟଜଣେ । ଅଛି କେ ମୋ ଜୀବ ରକ୍ଷଣେ ॥
ତୁ ନାଥ ଯାହା ତାହା କର । ଅନ୍ୟ ଶରଣ ନାହିଁ ମୋର ॥
ଏମନ୍ତେ ଚିନ୍ତେ ମନେ ମନ । ବଦନୁ ନ ସ୍ଫୁରେ ବଚନ ॥
ତାହା ଜାଣି ସେ ଦୁଷ୍ଟ ଚିତ୍ତେ । ଏ ମଲା ବିଚାରି ଭରତେ ॥
ଲେଉଟି ଗଲେ ପ୍ରିୟାପାଶ । ବୋଇଲେ ଏବେ ମିଳା ଆସ ॥
ବୁଲି ମରନ୍ତୁ କେବଣ ଧାଇଁ । ଅରକ୍ଷ ଜନ ପ୍ରାୟେ ହୋଇ ॥
ଏବେ ପାଇଲୁ ଦମ୍ପତି । ତାହା ଶୁଣିଣ ସେ ଯୁବତୀ ॥
ରହିଲା ସ୍ତମ୍ଭୀଭୂତ ହୋଇ । ଯେସନେ କାଷ୍ଠର ପୁତ୍ତଳି ॥
ଭୟେ ତା ଜୀବନ ଉଡ଼ିଲା । ଶ୍ରୀରାମ ନାମ ସୁମରିଲା ॥
ବୋଇଲା ଆହେ ମହାବାହୁ । ଶରଣପଞ୍ଜର ବୋଲାଉ ॥
ପୁରାଣ ପଥେ ଅଛି ଶ୍ରୁତି । ଆତଙ୍କକାଳେ ରଘୁପତି ॥
ରଖିବେ ବୋଲି ଧନୁର୍ଦ୍ଧର । ଧରିଣ ଅଛୁ ବେଦାକର ॥
ଏମନ୍ତ ବୋଲି ବନସ୍ଥଗେ । ଗୃହୁଁ ସେ ଅଛି ଗୃହଦ୍ୱାରେ ॥
ତା ମନ ଜାଣି ଦଇତ୍ୟାରି । ତେଜିଲେ ଅଯୋଧ୍ୟା ନଗରୀ ॥
ଚଢ଼ିଣ ଶ୍ୱେତଅଶ୍ୱ ପରେ । ମିଳିଲେ ସେହି ବନସ୍ତରେ ॥



ଭଗବାନ ଷଦିଷ୍ଣୁ ରୂପରେ ଆସି ନାରାୟଣ ଦାସଙ୍କୁ ଉଦ୍ଧାର କରୁଛନ୍ତି ।

ଝଟକ ବଳୁଳର ପ୍ରାୟେ । ଆଗେ ବସିଲେ ଦେବରାୟ ॥
ସୁବର୍ଣ୍ଣ ମୁକୁଟ ମଉଳ । ଦୃଷ୍ଟ ସୂର୍ଯ୍ୟର ପ୍ରାୟେ ଝଳ ॥
ଶ୍ରବଣେ ମକର କୁଣ୍ଡଳ । ଲୁଳଇ ବେନି ଗଣ୍ଡସ୍ଥଳ ॥
କଣ୍ଠେ କୌସ୍ତୁଭମଣି ହାର । ସ୍ୱରୂପେ ଜନମ ତାହାର ॥
ହୃଦରେ ପଦକ ବିରାଜେ । ରତ୍ନକଙ୍କଣ ବେନି ଭୁଜେ ॥
ଚମ୍ପକ କଢ଼ର ଅଙ୍ଗୁଳି । କି ଶୋଭା ମୁଦ୍ରିକା ଆବଳୀ ॥
ଝୀନବସନ କଟିମାଝେ । ସୁବର୍ଣ୍ଣ ମେଖଳା ବିରାଜେ ॥
ନୀଳ ଜୀମୂତ କଳେବର । ରାଜୀବ ଲୋଚନ ସୁନ୍ଦର ॥
ରଙ୍ଗ ଅଧରେ ମନ୍ଦହାସ । ଗଳା କି ପଡ଼ୁଛି ପୀୟୂଷ ॥
ନାନ୍ଥିଆ ଶିରୋମଣି ପ୍ରାୟେ । ପିନ୍ଧା କାଛେଣୀ କନ୍ଧ ନୋହେ ॥
କଟିରେ ଯମଦାଢ଼ ବାନ୍ଧ । ଶର ବାଣକୁ କନ୍ଧେ ଛନ୍ଦ ॥
ତାଳହେଁ ପଡ଼ୁଛି ପିଠିରେ । ଚଢ଼ଣ ଶ୍ୱେତ ଅଶ୍ୱପରେ ॥
ଏମନ୍ତ କ୍ଷତ୍ରିରୂପ ହୋଇ । ଧାଇଁ ଅଛନ୍ତି ଭବଗ୍ରାହୀ ॥
ତାହାଙ୍କୁ ଦେଖି ସେ ଦୁର୍ଜନେ । ପଳାଇଗଲେ ଘୋର ବନେ ॥
କେ ଅବା ଭୟେ ଗଡ଼ ପଡ଼ । କା ଆଣ୍ଠୁ ଗଣ୍ଠି ଗଲା ଛୁଡ଼ ॥
କାହା କପାଳ ଗଲା ଫାଟି । ଭାଜିଲା କାହା ଦାନ୍ତପାଟି ॥
ବାଜଣ କଣ୍ଟା ତାଳଖାଟି । କାହାର ନେତ୍ର ଗଲା ଫୁଟି ॥
ଛିଣ୍ଡିଲା କା ନାସା ଶ୍ରବଣ । ପଳାଇ ଗଲେ ଘେନି ପ୍ରାଣ ॥
ଏମନ୍ତ ବେଳେ ରଘୁବୀର । ବିଜୟ ସେ ନାରୀପାଶର ॥
ହସି ବୋଲନ୍ତି ରଘୁବୀର । କେବଣ ଦେଶେ ତୁମ୍ଭ ଘର ॥
କାହୁଁ ଅଇଲ ଯିବ କାହିଁ । ଏକାକୀ ସଙ୍ଗେ କେହି ନାହିଁ ॥
ଏ ଯେଉଁମାନେ ପଳାଇଲେ । ସେ କିସ ତୁମ୍ଭଙ୍କୁ କହିଲେ ॥
ତା ଶୁଣି ବୋଇଲେ ତରୁଣୀ । ଶୁଣ କ୍ଷତ୍ରିୟ ଚୂଡ଼ାମଣି ॥
ଯେ କୀର୍ତ୍ତିଚନ୍ଦ୍ର ନୃପବର । ତାଙ୍କ ରାଜ୍ୟରେ ଆମ୍ଭ ଘର ॥
ଜାତରେ ବଣିଆ କରଣ । ଆମ୍ଭ ଅଦୃଷ୍ଟ କଥା ଶୁଣ ॥

ପୁତ୍ର ଦୁହିତା ନାହିଁ ମୋର । ତେଣୁ ମୁଁ ସଂସାରୁ ବାହାର ॥
ତା ଜାଣି ମୋର ନିଜ ପତି । ବୋଇଲେ ଶୁଣରେ ଯୁବତି ॥
ପୁତ୍ର ଦୁହିତା ନାହିଁ ଯାର । ସଂସାରେ କି ସୁଖ ତାହାର ॥
ଇହ ଲୋକରେ ନାହିଁ ଯଶ । ମଲେ ନରକେ ପରବେଶ ॥
ଏଥକୁ ବୁଦ୍ଧି ଏ କରିବା । ଚାଲି ଅଯୋଧ୍ୟା ପୁରି ଯିବା ॥
ସେ କ୍ଷେତ୍ରବରେ କରି ବାସ । ତହିଁ ରହିବା କେତେ ମାସ ॥
ଶ୍ରୀରାମ ପାଦେ କରି ସେବା । ଏ ଭବ ସଂସାରୁ ତରିବା ॥
ଏମନ୍ତ ବୋଇଲେ ସେ ଯେଣୁ । ଅଇଲୁ ତୀର୍ଥ କରି ତେଣୁ ॥
ଏ ବନେ ହୋଇଲୁ ପ୍ରବେଶ । ଆସି ମିଳିଲେ ଜଣ ଦଶ ॥
ତାହାଙ୍କୁ ଦେଖି ଭୟ କଲୁ । ଏ ବନେ ନ ଯିବୁଁ ବୋଇଲୁ ॥
ଆମ୍ଭଙ୍କୁ ନାନାରୂପେ କହି । ସତ୍ୟବଚନେ ମନ ମୋହି ॥
ବୋଇଲେ ଆମ୍ଭେ ତୁମ୍ଭେ ଦୁଇ । ସବୁରି ସାକ୍ଷୀ ଶିବଗ୍ରାହୀ ॥
କେବଳ ଶ୍ରୀରଘୁନନ୍ଦନ । ଅଶେଷ ଜୀବର ଜୀବନ ॥
କପଟ ଆମ୍ଭ ହୃଦେ ଥିଲେ । ଜାଣି ଦଣ୍ଡିବେ ସେହୁ ଭଲେ ॥
ଏମନ୍ତ ସତ୍ୟବାଣୀ ଶୁଣି । ଆନନ୍ଦ ହେଲୁ ବେନି ପ୍ରାଣୀ ॥
ଯହିଁକି ସାକ୍ଷୀ ଦେବରାୟ । ତହିଁ କାହାକୁ ଆଉ ଭୟ ॥
ଏମନ୍ତ ବୋଲି ସଙ୍ଗ ହେଲୁ । ଆସି ଏ ବନରେ ପଶିଲୁ ॥
ଅତି ଅଗମ୍ୟ ବନ ଦେଖି । ଏଥି ଉଗାଳି ମୋତେ ରଖି ॥
ମୋର ସ୍ୱାମୀକି ବାନ୍ଧି ନେଲେ । କେ ଜାଣେ କାହିଁ କସ କଲେ ॥
ତେଣୁ ଆସିଣ ମୋତେ ଧରି । ନଷ୍ଟ ନାରୀଙ୍କ ପ୍ରାୟେ କରି ॥
ବୋଇଲେ ଆସ ଆମ୍ଭ ପୁରୀ । ଭାରିଯା ହୋଇବୁ ସବୁରି ॥
ଏବେ ସେ ତୁମ୍ଭଙ୍କୁ ଦେଖନ୍ତେ । ପଳାଇ ଗଲେ ଯେଝାମତେ ॥
ଆମ୍ଭର ବିପତ୍ତି ଦେଖିଣ । କୃପା କଲେ କି ନାରାୟଣ ॥
ତୁମ୍ଭେ ବିଜୟ କଲ ଏଥି । ଭାଗ୍ୟ ଦିଶିଲା ମୋର ଅତି ॥
କେ ତୁମ୍ଭେ ମୁଁ ତାହା ନ ଜାଣି । ଫେଡ଼ଣ କହ ବୀରମଣି ॥

ହୋଇଲ ଧର୍ମପିତା ମୋର । ବିପଦ ସମୁଦ୍ରୁ ଉଦ୍ଧାର ॥
ବହନ ଅଗ୍ନି ଜାଳିଦିଅ । ତହିଁ ମୋ ଶରୀର ପକାଅ ॥
ସ୍ୱାମୀ ବିହୀନେ ମୋ ଜୀବନ । ଥିବାର କିସ ପ୍ରୟୋଜନ ॥
ଏହା ଶୁଣିଣ ଧନୁର୍ଦ୍ଧାରୀ । ବୋଇଲେ ଶୁଣ ରେ ସୁନ୍ଦରୀ ॥
ଚିନ୍ତା ନ କର କିଛି ତୁହି । ତୋର ସ୍ୱାମୀକି ଦେବି ମୁହିଁ ॥
ଏମନ୍ତ କହି ତାକୁ ଧରି । ବିଜୟ କଲେ ଧନୁର୍ଦ୍ଧାରୀ ॥
ମିଳିଲେ ସ୍ୱାମୀ ପାଶେ ତାର । କାଢ଼ିଲେ ଲଦିଲ ପଥର ॥
ବନ୍ଧା ଫିଟାଇ କୋଳେ ଧରି । ଆଉଁଷି ଦେଲେ କରେ ହରି ॥
ତକ୍ଷଣେ ପାଇ ନିଜ ପ୍ରାଣ । ଉଠି ଦେଖିଲ ଧନୁର୍ବାଣ ॥
ମସ୍ତକେ ବେନିକର ଯୋଡ଼ି ଣ ତଳେ ପଡ଼ି ॥
ବୋଲଇ ଶୁଣ ବୀରମଣି । କେ ତୁମ୍ଭେ ନ ପାରିଲି ଚିହ୍ନି ॥
ମୁଁ ଘୋର ପତିତ ପାମର । ମୂଢ଼ ମୂରୁଖ ଦୁରାଚାର ॥
ମୁଁ କାହିଁ ଚିହ୍ନିବି ତୁମ୍ଭଙ୍କୁ । ବିପତ୍ତି କାଳରେ ଆମ୍ଭଙ୍କୁ ॥
ଆସି ମୋ ଜୀବଦାନ ଦେଲ । ତୁମ୍ଭେ ମୋ ପ୍ରଭୁ ରଘୁମଲ୍ଲ ॥
ତୁମ୍ଭେ ମୋହର ପ୍ରାଣେଶ୍ୱର ତୁମ୍ଭେ ମୋ ଜୀବନ ଠାକୁର ॥
ତୁମ୍ଭେ ମୋ ବାଞ୍ଛା କଳ୍ପତରୁ । ତୁମ୍ଭେ ସକଳ ଜୀବ ଗୁରୁ ॥
ତୁମ୍ଭେ ମୋ ମୁକୁନ୍ଦ ମୁରାରି । ତୁମ୍ଭେ ମୋ ଆଦିକନ୍ଦ ହରି ॥
ଏମନ୍ତ ମଣେ ମୋର ଚିତ୍ତେ । ମାୟା ନ କରି କହ ମୋତେ ॥
ଏହା ଶୁଣିଣ ବ୍ରହ୍ମରାଶି । ରଙ୍ଗ ଅଧରେ ମନ୍ଦହସି ॥
ବୋଇଲେ ଶୁଣ ରେ ଭକତ । ଆମ୍ଭେ ତ ଦଶରଥସୁତ ॥
ତୋର ବିପଦ ଜାଣି ମନେ । ମିଳିଲୁଁ ତୋର ସନ୍ନିଧାନେ ॥
ଏହା କହନ୍ତେ ଭଗବାନ । ବୋଲେ ହେ ପ୍ରଭୁ ନାରାୟଣ ॥
ତୋ ନିଜ ସ୍ୱରୂପ [illegible] ମୋତେ ଉଦ୍ଧର ଭବଗ୍ରାହୀ ॥
ଏମନ୍ତ ଶୁଣି ଦେବ ହରି । ତକ୍ଷଣେ ନିଜ ରୂପ ଧରି ॥
କୋଟିଏ କନ୍ଦର୍ପର ତେଜ । କାଣ୍ଡ କୋଦଣ୍ଡ ବେନି ଭୁଜ ॥

କଣ୍ଠେ କୌସ୍ତୁଭମଣି ଶୋହେ । ଯେ ରୂପ ଜଗଜ୍ଜନ ମୋହେ ॥
ଏମନ୍ତ ରୂପ ପରକାଶି । ହୃଷ୍ଟ ହୋଇଲେ ବ୍ରହ୍ମଋଷି ॥
ଦେଖିଲେ ସେହି ବେନପ୍ରାଣୀ । ତକ୍ଷଣେ ଲୋଟିଲେ ଧରଣୀ ॥
ସାଷ୍ଟାଙ୍ଗେ ଦଣ୍ଡବତ କରି । ଉଠି କପାଳେ କର ଧରି ॥
ବୋଇଲେ ନମୋ ମହାବାହୁ । ଭକତବାନ୍ଧବ ବୋଲାଉ ॥
ମୋର ଗୁହର ପାଇଁ ବଜେ ହୋଇ । ପ୍ରଭୁପଣକୁ ଲୁଚପାଇ ॥
ଏହା ନ ଜାଣି ମୂଢ଼ ନରେ । ଭଜନ୍ତି ଅନ୍ୟ ଦେବତାରେ ॥
ତାହା ଶୁଣିଣ ସେ ଈଶ୍ୱର । ବୋଇଲେ ମାଗି ଘେନ ବର ॥
ଯେ ବାଞ୍ଛା ମନେ ଅଛି ତୋର । ମାଗ ହୋ ଭକତ ଶେଖର ॥
ଏମନ୍ତ ଶୁଣି ବେନପ୍ରାଣୀ । ବୋଲନ୍ତି ଶୁଣ ରଘୁମଣି ॥
ସମସ୍ତ ଦେଇଛ ଗୋସାଇଁ । ବରେ ମୋ ପ୍ରୟୋଜନ ନାହିଁ ॥
ସର୍ବଦା ହୃଦରେ ବିହର । ଏହା ମାଗୁଛୁ ରଘୁବର ॥
ଶୁଣି ବୋଲନ୍ତି ରଘୁପତି । ଲଭ ମୋ ପାଦପଦ୍ମେ ଭକ୍ତି ॥
ଏବେ ଅଯୋଧ୍ୟା ପୁରେ ଯାଅ । ମୋର-ସେବାରେ ଦିନ ନିଅ ॥
ଅନ୍ତେ ପାଇବ ମୋତେ ଆସି । ଏମନ୍ତେ କହି ବ୍ରହ୍ମରାଶି ॥
ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ । ଶୁଣ ହୋ ସୁମନରଞ୍ଜନ ॥
ଭୃତ୍ୟରେ ଏମନ୍ତେ ସାହାପକ୍ଷ । ଦୃଷ୍ଟିରେ ଦେଖିଲ ପ୍ରତ୍ୟକ୍ଷ ॥
ଏଥିଣ ସେ ପତି ପତ୍ନୀ ଦୁଇ । ସଙ୍ଗତେ ବଳଦ ଚଳାଇ ॥
ମନ ଆନନ୍ଦେ ଚଳିଗଲେ । କେତେହେଁ ଦିନ ପରେ ଭଲେ ॥
ମିଳିଲେ ଅଯୋଧ୍ୟା ନଗର । ତହିଁ ନିର୍ମାଣି ଏକ ପୁର ॥
ରହିଲେ କେତେକାଳ ଅବା । ସାଧୁ ବୈଷ୍ଣବ କରି ସେବା ॥
ପ୍ରାଣ ହାରିଲେ ନାମ ଧରି । ଅନ୍ତେ ପାଇଲେ ବିଷ୍ଣୁ ପୁରୀ ॥
ଶୁଣ ହେ ମନ ନୃପବର । ଏ ଦାର୍ଢ୍ୟ ଭକତ ଲକ୍ଷଣ ॥
କହଇ ବିପ୍ର ରାମଦାସ । ମୋ ପ୍ରଭୁ ଜାନକୀବିଳାସ ॥
ସୁଜନେ ଏହି ରସେ ରସ । ଏ ଭବଜାଲରେ ନ ଭାସ ॥

ଇତି ଶ୍ରୀଦାର୍ଢ୍ୟଭକ୍ତିରସାମୃତେମନଚୈତନ୍ୟ ସମ୍ବାଦେ
କରଣ ନାରାୟଣ ଦାସ ପତି ପତ୍ନୀ ଦୃଢ଼ଭକ୍ତ ବର୍ଣ୍ଣନେ
ନାମଏକତ୍ରିଂଶୋଽଧ୍ୟାୟଃ ।

## ଦ୍ୱାତ୍ରିଂଶ ଅଧ୍ୟାୟ
## ଗୌରଚନ୍ଦ୍ର ସମ୍ବାଦ

ମନ ଉବାଚ

ଏମନ୍ତେ ଶୁଣ ମନ ରାଜା । ଚୈତନ୍ୟପାଦେ କଲା ପୂଜା ॥
ବୋଲଇ ଶୁଣ ହେ ସୁଚେତା । ଧନ୍ୟ ସେ ଭକତର କଥା ॥
ଧନ୍ୟ ସେ ପତି ପତ୍ନୀ ଦୁଇ । ତାଙ୍କ ଚରିତ ଶୁଣି ମୁହିଁ ॥
ନଷ୍ଟେ ପବନ ହେଲି ଜାଣ । ଏବେ ପୁଚ୍ଛଇ ତୋ ଚରଣ ॥
ଏ କଳିଯୁଗର ଚରିତ । ଯେ ଆଉ ଅଛନ୍ତି ଭକତ ॥
ତାହାଙ୍କ କଥା କହ ମୋତେ । ଶୁଣି ଆରାଧା ମୋର ଚିତ୍ତେ ॥
ତା ଶୁଣି ଚଇତନ ଋଷି । ଶୁଣ ହେ ମନ ଘଟବାସି ॥
ଯେ ଜମ୍ବୁଦ୍ୱୀପମଧ୍ୟେ ସାର । ଯେ ସେତୁବନ୍ଧ ରାମେଶ୍ୱର ॥
ବୈକୁଣ୍ଠ ଦ୍ୱାରକୁ କବାଟ । ସ୍ୱର୍ଗକୁ ଯିଁଠି ଅଛି ବାଟ ॥
ଅତି ପତିତ ଯେଉଁ ନର । ଦୁଷ୍ଟ ଦୁର୍ଜ୍ଜୟ ଦୁରାଚାର ॥
ତହିଁ ପ୍ରବେଶ ହେବେଟି ଯାଇ । ଯମର ଭୟ ନ ଲଗଇ ॥
ଏମନ୍ତ ରାଜ୍ୟେ ଏକ ରାଜା । ନାମ ଅଟଇ ଧର୍ମରାଜା ॥
ଶତେକ ଯୋଜନ ସମରେ । ପ୍ରଭୁର ପଣ ସେହି କରେ ॥
ଧନ ସମ୍ପଦ ଅପ୍ରମିତ । କୁବେର ସମାନ ସାଧୁନ୍ତଃ ॥
ଗଜ ତୁରଙ୍ଗ ଅଗଣିତା । ବୀରପଣକୁ ଅପରାଜିତା ॥
ତାର ଭାରିଯା ରୂପବତୀ । ନାମ ତାହାର ହେମବନ୍ତୀ ॥
ଏକା ଗୋଟିଏ ପୁତ୍ର ତାର । ନାମ ଦେଇଛି ରାମେଶ୍ୱର ॥
ସେ ରାଜା ଧର୍ମବନ୍ତ ପଣେ । ନ ଥିବେ ଜମ୍ବୁଦ୍ୱୀପ ଜନେ ॥

ତିନି କୋଣରେ ସଦାବର୍ତ୍ତି । ଧର୍ମଶାଳାଙ୍କୁ ଅପ୍ରମିତ ॥
ଠାବ ଠାବକେ ମିଷ୍ଟ ଅନ୍ନ । ବୈଷ୍ଣବ କରନ୍ତି ଭୋଜନ ॥
ଯୋଗୀ ଜଙ୍ଗମ ବ୍ରହ୍ମଗୃହୀ । ଦୁଃଖୀ ଦରିଦ୍ର ଯେ ଭିକାରୀ ॥
ସେ ମହାରାଜା ପାଶେ ଭେଟି । ନିରାଶେ ନ ଯାନ୍ତି ଲେଉଟି ॥
ଏମନ୍ତ ଭାଗ୍ୟବନ୍ତ ସେହି । ତା କଥା କହି ନ ସରଇ ॥
କେବଳ ରାମେଶ୍ୱର ପାଦେ । ସେବଣ ଥାଇ ଅପ୍ରମାଦେ ॥
ରାଜ୍ୟରେ ଯେତେ ହାନିଲାଭ । ଯେ ଦୁଃଖ ସୁଖ ଶୁଭାଶୁଭ ॥
ହାରି ଗୁହାରି ଆଦି ଯେତେ । ଜଣାଇ ପ୍ରଭୁଙ୍କ ଅଗ୍ରତେ ॥
ତାଙ୍କର ଆଜ୍ଞା ଶିରେ ଧରି । ରାଜ୍ୟ ପାଳଇ ଦଣ୍ଡଧାରୀ ॥
ଏମନ୍ତ ଗଲା କେତେ ଦିନ । ଶୁଣ ହୋ ସୁମନ ରାଜନ ॥
ବୈଷ୍ଣବ ଆଦି ସନ୍ତ ଦୁଇ । ଅଇଲେ ଜମାଉତ ହୋଇ ॥
ଅନେକ ତୀର୍ଥମାନ ଦେଖି । ସଫଳ କରି ଚର୍ମ ଆଖି ॥
ଆସି ପ୍ରବେଶ ରାମେଶ୍ୱର । ସେ ମହା ନୃପତି ପାଶର ॥
ଦେଖି ନୃପତି ଅତି ତୋଷେ । ମିଳିଲେ ସାଧୁବୃନ୍ଦ ପାଶେ ॥
ସାଷ୍ଟାଙ୍ଗେ ଦଣ୍ଡବତ କରି । ଉଠି କପାଳେ କର ଧରି ॥
ଅନେକ ସମାଦର କଲେ । ଭୂରି ଭୋଜନ ତାଙ୍କୁ ଦେଲେ ॥
ଦେଖି ରାଜାର ଭାବ ହୃଦ । ଆନନ୍ଦ ହେଲେ ସାଧୁବୃନ୍ଦ ॥
ଅନେକ କଲ୍ୟାଣ ବାଞ୍ଛିଲେ । ରାଜା ମେଲାଣି ହୋଇଗଲେ ॥
ତହୁଁ ଚଳିଲେ ସାଧୁଜନେ । ଶ୍ରୀରାମେଶ୍ୱରଙ୍କ ଦର୍ଶନେ ॥
କରି ଅନେକ ରାମଧ୍ୱନି । ଶବଦେ କମ୍ପାଇ ମେଦିନୀ ॥
ଦେଉଳେ ପ୍ରବେଶ ହୋଇଲେ । ଦେଖି ସେବକେ ଗୋଳ କଲେ ॥
ଦୁଇ ଦଳର ହେଲା ଗୋଳ । ଦେଖି ସେବକେ ହେଲେ ଠୁଳ ॥
ଅନେକ ବେତମାନ ଧରି । ପିଟିଲେ ଉପ୍ରୋଧ ନ କରି ॥
ତହିଁ ଦୁର୍ବଳ ଏକ ଜଣ । ସାଧୁଙ୍କ ମଧ୍ୟେ ମୋକ୍ଷବାଣ ॥
ନିର୍ଘାତେ ବାଜି ବେତ ବାଡ଼ି । ପଡ଼ି ଜୀବନ ଗଲା ଛାଡ଼ି ॥

ତା ଦେଖି ସର୍ବେ ତୋଳାଧରି । ଦେଉଳେ ପଡ଼ଗଲ ଦ୍ୱାର ॥
ତନ୍ତୁ ବାହାର କରି ନେଲେ । ସ୍ତମ୍ଭ ଦୁଆରେ ଶୁଆଇଲେ ॥
ବୈଷ୍ଣବମାନେ ବେଢ଼ ବସି । ସମସ୍ତେ ରାମ ନାମ ଘୋଷି ॥
ବୋଲନ୍ତି ଆହେ ମହାମେରୁ । ଭକତ ବାଞ୍ଛା କଳ୍ପତରୁ ॥
ଶରଣ ରକ୍ଷଣ ତୋ ବାନା । ଅନାଥ ଜନ ବନ୍ଧୁସେନା ॥
ତେଣୁ ତୋ ଦର୍ଶନେ ଅଇଲୁ । କ୍ଷଣକ ପ୍ରାଣ ହରାଇଲୁ ॥
ତୁ ଯେବେ ଏହା ନ ବୁଝିବୁ । ଏଥେ ସମସ୍ତେ ପ୍ରାଣଦେବୁ ॥
ଏମନ୍ତ କହି ସ୍ତୁତ କଲେ । ସମସ୍ତେ ନିମର୍ଗେ ବସିଲେ ॥
ଜାଣିଲେ ତାହା ଦେବ ହରି । ସମସ୍ତ ଘଟେ ଛନ୍ତି ପୂରି ॥
ନ ସହେ ସେବକ ବେଦନା । ତେଣୁ ସେ ଜଗଜ୍ଜିତ ବାନା ॥
ତକ୍ଷଣେ ପଡ଼ିଲ କବାଟ । ମାଛି ଯିବାକୁ ନାହିଁ ବାଟ ॥
ନୋହିଲ ସେବାପୂଜା ମାନ । ସେବକେ ହାରି ନିଜ ଜ୍ଞାନ ॥
ସଭୟ ମନେ ପଳାଇଲେ । ସେ ଧର୍ମ ରାଜାଙ୍କୁ କହିଲେ ॥
ବୋଇଲେ ଶୁଣ ନୃପବର । ବୁଡ଼ିଲ କ୍ଷେତ୍ରଧର୍ମ ତୋର ॥
ବୈଷ୍ଣବେ ଅଇଲେ ବହୁତ । ଗୋଳ ଯେ କଲେ ଅପ୍ରମିତ ॥
ତାଙ୍କ ଆତୁର ଯେତେ ଗୋଳ । କିସ କହିବୁ ମହୀପାଳ ॥
ଅଦ୍ଭୁତ ଦେଉଳେ କବାଟ । ପଡ଼ିଲ ହୋଇଣ ନିରାଟ ॥
ଏହା ବୁଝିବା ହେଉ ଆସି । ଶୁଣି ନୃପତ ମନେ ହସି ॥
ବହନ ହୋଇ ଚଳିଗଲେ । ଦେଉଳେ ପ୍ରବେଶ ହୋଇଲେ ॥
ଦେଖିଲେ ସକଳ ବିଧାନ । ବିଚାର କଲେ ପଞ୍ଚମନ ॥
ସେ ଧର୍ମରାଜା ନୃପବର । ବୋଲେ ଅଭାଗ୍ୟ ହେଲ ମୋର ॥
କୁଶ ଆସନ ତହିଁ କରି । ଶୟନ କଲେ ଦଣ୍ଡଧାରୀ ॥
ବୋଇଲେ ଆହେ ବିଶ୍ୱେଶ୍ୱର । କି ଅପରାଧ ହେଲ ମୋର ॥
ଏ କଥା ଆଜ୍ଞା ହେଉ ମୋତେ । ନୋହିଲେ ମରିବି ନିଶ୍ଚିତେ ॥
ଏମନ୍ତ ବୋଲି ନିଦ୍ରା ଯାଇ । ତାହା ଜାଣିଲେ ଭବଗ୍ରାହୀ ॥

ସ୍ୱପନ ମାର୍ଗେ ଆଜ୍ଞା ଦେଲେ । ଶୁଣ ହେ ନୃପତି ବୋଇଲେ ॥
ତୋ ରାଜ୍ୟ ହାନି ଲଭ ଯାହା । ତୁହ୍ମେ ତ ନ ବୁଝିଲୁ ତାହା ॥
ଏ ଯେ ବୈଷ୍ଣବ ଜନମାନେ । ଅଇଲେ ମୋର ଦରଶନେ ॥
ମୋର ସମ୍ମୁଖରେ ତୋର ଦୂତେ । ମାଡ଼ ମାଇଲେ ଅପ୍ରମିତେ ॥
ମୋ ଭକ୍ତ ମଲ ପ୍ରାଣ ହାରି । ଏଥକୁ ଶୁଣ ଦଣ୍ଡଧାରୀ ॥
ମୋର ସମ୍ମୁଖରେ ତୀକ୍ଷ୍ଣ ଶୂଳ । ବେଗେ ପୋତାଅ ମହୀପାଳ ॥
ତୋର ପୁତ୍ରକୁ ବେଗେ ଧରି । ଅନେକ ଅଳଙ୍କାର ଭରି ॥
ବେଶ ଭୂଷଣ କରାଇବୁ । ଆଣି ଏ ଶୂଳେ ବସାଇବୁ ॥
ତେବେ ସେ ତୋହର କୁଶଳ । ନୋହିଲେ ରାଜ୍ୟ ଗୁଡ଼ ତଳ ॥
ଏହା ନ କଲେ ଯିବୁ ନାଶ । ଛାଡ଼ ତୋ ଜୀବନର ଆଶ ॥
ଏମନ୍ତ ଆଜ୍ଞା ତାଙ୍କୁ ଦେଲେ । ତକ୍ଷଣେ ଅନ୍ତର୍ଦ୍ଧାନ ହେଲେ ॥
ଏମନ୍ତ ଆଜ୍ଞା ରାଜା ଶୁଣି । ବଜ୍ର ପଡ଼ିଲା ପ୍ରାୟେ ମଣି ॥
ତହୁଁ ତୁରିତେ ଚଳିଗଲେ । ପତ୍ନୀର ଆଗରେ କହିଲେ ॥
ତା ଶୁଣି ପ୍ରିୟଦତ୍ତା ତାର । ମସ୍ତକେ କରାଡ଼ିଲା କର ॥
ହଚେ ବୋବାଳି ପଡ଼େ ରାଣୀ । ମୂର୍ଚ୍ଛିତେ ପଡ଼ିଲା ଧରଣୀ ॥
ବୋଇଲା ଏକ ପୁତ୍ର ଦେଇ । ମୋ ପ୍ରାଣ ଥିବ କାହିଁପାଇଁ ॥
ଏ ରାଜ୍ୟଭୋଗେ କାର୍ଯ୍ୟ ନାହିଁ । ପୁତ୍ରକୁ କେବେଁ ନ ଦେବଇଁ ॥
ରାଜାହିଁ ପୁତ୍ର ଲୋଭ କରି । ରହିଲା ଚିତ୍ରପଟ ପରି ॥
ଏମନ୍ତ ସମୟରେ ପୁଣି । ଅଇଲେ ରାଜାଙ୍କ ଭଉଣୀ ॥
ରାଜା ରାଣୀଙ୍କ ଚିନ୍ତା ଦେଖି । ଧୈର୍ଯ୍ୟ ନ ପାରିଲା ରଖି ॥
ବୋଇଲା ଏ କି ବିପରୀତ । କିପାଇଁ ହୋଇଛ ଚିନ୍ତିତ ॥
କିସ ଅପୂର୍ବ ଏଥି ତୋତେ । ତାହା ତୁ କହ କିନା ମୋତେ ॥
ଭଗ୍ନୀର ମୁଖୁ ଶୁଣି ଏହା । ସବୁ କହିଲ ନୃପନାହା ॥
ବୋଇଲା ଶୁଣ ନାରୀ ଏବେ । ଯାହା ତୁ ପଚାରିଲୁ ଭାବେ ॥
ମୋର ଅଦୃଷ୍ଟ ବାମ ହେଲା । ମୋତେ ଗୋ ଦଇବ ଛାଡ଼ିଲା ॥

ଅନେକ ସାଧୁଜନମାନେ । ଆଇଲେ ପ୍ରଭୁ ଦରଶନେ ॥
ଦେଉଳ ଧସାଇ ପଶିଲେ । ଦେଖି ସେବକେ ଗୋଳକଲେ ॥
ପିଟିଲେ ବେତ ବାଡ଼ ଧରି । ତହିଁ ସାଧୁଏ ଗଲା ମରି ॥
ମଣ୍ଡା ପକାଇ ଦ୍ୱାର ପାଶେ । ବେଢ଼ ବସିଲେ ଚଉପାଶେ ॥
ଦେଉଳେ କବାଟ ପଡ଼ିଲା । ପ୍ରଭୁଙ୍କ ପୂଜା ହିଁ ନୋହିଲା ॥
ତାହା ମୁଁ ଦେଖି ଭୟମନେ । ଶୟନ କଲି କୁଶାସନେ ॥
କାଷ୍ଠାରେ ଜଣାଇଲି କେତେ । ସେ ପ୍ରଭୁ ଦୟା କଲେ ମୋତେ ॥
ବୋଇଲେ ତୋ ପୁତ୍ରକୁ ଆଣି । ଶୂଳେ ବସାଅ ନୃପମଣି ॥
ନୋହିଲେ ମରିବୁ ଅବଶ୍ୟ । ଗୁଡ଼ ତୋ ଜୀବନର ଆଶ ॥
ଏଥିକୁ କି ବୁଦ୍ଧି କରିବ । ପୁତ୍ରକୁ କି ରୂପେ ମାରିବ ॥
ଏକା ପୁତ୍ରକୁ ମୋର ମାରି । କି ରୂପେ ଥିବ ଦେହ ଧରି ॥
ତା ଶୁଣି ବୋଲେ ସେ ସୁନ୍ଦରୀ । ଶୁଣ ହେ ଧର୍ମ ଦଣ୍ଡଧାରୀ ॥
ଯେବଣ ପ୍ରଭୁଙ୍କ ଆଜ୍ଞାରୁ । ଏଡ଼େ ସମ୍ପଦ ଭୋଗ କରୁ ॥
ସେ ଆଜ୍ଞା କେମନ୍ତେ ଲଙ୍ଘିବୁ । ଲଙ୍ଘି କି ଜୀବନ ପାଇବୁ ॥
ତୋହର ଥିଲେ ନୃପମଣି । ସମସ୍ତ ମିଳଇ ଯେ ପୁଣି ॥
ଏଥି କି ବିଚାର ନ କର । ଆଣ ମୋ ଏକଇ କୁମର ॥
ଏହି ସମୟେ ପୁତ୍ର ଆସି । ମାତା ଆଗରେ କହେ ହସି ॥
ତା ଶୁଣି ନିଜ ମାତା ତାର । ପୁତ୍ରକୁ ବୋଲଇ ଉତ୍ତର ॥
ସକଳ ବୁଝାଇ କହିଲା । ଶୁଣି କୁମର ତୋଷ ହେଲା ॥
ବୋଇଲା ଏଡ଼େ ଭାଗ୍ୟମୋର । ସତେ କରିବେ ରଘୁବୀର ॥
ଏ ମର୍ତ୍ତ୍ୟପୁରେ ଦେହ ଧରି । ଜନ୍ମିଣ କେ ଅଛି ନ ମରି ॥
କେ ଆଗେ ଅବା ପଛେ ହୋଇ । ନିଶ୍ଚଳ ହୋଇ କେହି ନାହିଁ ॥
ମଲେହେଁ ଯମଦୂତେ ଆସି । ଗଳେ ଲଗାଇ କାଳଫାଶୀ ॥
ଯମ ପାଶକୁ ଘେନିଯିବେ । ବିବିଧ ମାଡ଼ହିଁ ମାରିବେ ॥
ନରକେ ପକାଇବେ ନେଇ । ତହୁଁ ଉଦ୍ଧାର ହେବ ମୁହିଁ ॥

ହେ ମାତ ବେଗେମୋତେ ନିଅ । ପ୍ରଭୁ ସମ୍ମୁଖରେ ଶୂଳି ଦିଅ ॥
ଶୁଣି ଆନନ୍ଦ ହେଲେ ମାତ । ତାହା ଜାଣିଲ ନରନାଥ ॥
ବୋଇଲ ଧନ୍ୟ ତୋର ମନ । ତୋ ଗର୍ଭଧାରୀ ଧନ୍ୟ ଧନ୍ୟ ॥
ଉଦ୍ଧର ଧଇଲୁ ତୁ ମୋତେ । ମୋ ବଂଶ ରଖିବା ନିମନ୍ତେ ॥
ପର ନିମନ୍ତେ ନିଜ ପ୍ରାଣ । ଦେଇ ତୋଷିବୁ ନାରାୟଣ ॥
ତାହା ଜାଣିବେ ଦୀନବନ୍ଧୁ । ତୁ ପୁତ୍ର ମୋର କୁଳ ଇନ୍ଦୁ ॥
ଏମନ୍ତ କହି ଦଣ୍ଡଧାରୀ । ଉଠିଲ ଅତି ବେଗ କରି ॥
ଭଣଜା ଅଙ୍ଗରେ ମଣ୍ଡନ । କଲ ଅନେକ ରତ୍ନମାନ ॥
କର୍ଣ୍ଣ ଯୁଗଳେ କର୍ଣ୍ଣାଞ୍ଚଳ । କଣ୍ଠେ ଲମ୍ବାଇ ରତ୍ନମାଳ ॥
ବାହେ ବାହୁଟି ସୁକଙ୍କଣ । ତହିଁ ଝଟକେ ମଣିଗଣ ॥
ହୃଦେ ପଦକ କଟି ମାଝେ । ସୁରତ୍ନ ମେଖଳା ବିରାଜେ ॥
ହେମ ତୋଡ଼ର ବେନିପାଦେ । ଚମକ ପଡ଼ୁଅଛି ନାଦେ ॥
ନାନା କୁସୁମେ ବାନ୍ଧି ଗଭା । କେଶ ଦିଶଇ ଅତି ଶୋଭା ॥
ଭାଲେ ସିନ୍ଦୂର ଚିତା ଶୋହେ । କି ଅବା ଅରୁଣ ଉଦୟେ ॥
ତାମ୍ବୁଳ ବୋଳ ତା ଅଧରେ । ବିମ୍ବ ବିଦ୍ରୁମ ନିନ୍ଦାକରେ ॥
ଏକେ ଗଉର ଦିଶେ କାୟ । କି ଅବା ଦ୍ୱିତୀ ସୂର୍ଯ୍ୟ ପ୍ରାୟ ॥
ରଙ୍ଗ ଅଧରେ ମନ୍ଦହାସ । ବିଜୟ କଲ ବାଳଶିଷ ॥
ଚଳଇ ମତ୍ତଗଜ ଠାଣି । ସୁନ୍ଦର ଦିଶଇ ଧରଣୀ ॥
ମସ୍ତକେ ଯୋଡ଼ି ବେନିକର । ବୋଇଲ ନମୋ ରାମେଶ୍ୱର ॥
ନମସ୍ତେ ରାମକୃଷ୍ଣ ହରି । ମୁକୁନ୍ଦ ମାଧବ ମୁରାରି ॥
ଅନନ୍ତ ଅଚ୍ୟୁତ ଗୋବିନ୍ଦ । ଜଗତବ୍ୟାପି ସଦାନନ୍ଦ ॥
ତୋ ମନ ଅବା ଯାହା କର । ଅନ୍ୟ ଶରଣ ନାହିଁ ମୋର ॥
ଏମନ୍ତ କହି ଗଲ ଚଳି । ଯେସନେ ଝଟକେ ବିଜୁଳି ॥
ମିଳିଲ ପ୍ରଭୁଙ୍କ ସମ୍ମୁଖରେ । ପଛେ ଗୋଡ଼ାଇଲନ୍ତି ନଗରେ ॥
ସ୍ତ୍ରୀ ପୁରୁଷ ଆଦିକରି । ସଙ୍ଗେ ଅଛନ୍ତି ଦଣ୍ଡଧାରୀ ॥

ଚଢନାଇ ଶୂଳ କାଠ ଗୋଟି । ସମସ୍ତେ ରାମନାମ ରଟି ॥
ମିଳିଲେ ଦେଉଳ ପାଶରେ । ଶୂଳ ପୋତାଇ ଶ୍ରୀରାମରେ ॥
ରାଜା ଅନେକ କଲେ ସ୍ତୁତି । ବୋଲଇ ଶୁଣ ଦାଶରଥି ॥
ନମୋ ଜାନକୀଦେବୀ ପତି । ନମୋ ଅଗତି ଲୋକ ଗତି ॥
ତୋହର ଆଜ୍ଞା ପ୍ରମାଣରେ । ନ ଆସି ଏକଇ କୁମରେ ॥
ପୁଣି ପାଇଲେ ମୋ ଭଣଜା । ଶୂଳେ ବସାଇ ଦେବ ପୂଜା ॥
ଏମନ୍ତ ବୋଲି ଦଣ୍ଡଧାରୀ । ଆନନ୍ଦେ ଉତ୍ସବ ସେ କରି ॥
ଅନେକ ବାଦ୍ୟ ନାଦ ତୁଲେ । ଶଙ୍ଖ ମହୁରି ବଜାଇଲେ ॥
ତାଳ କଂସାଳ ଆଦି ଯେତେ । ମୃଦଙ୍ଗ ମର୍ଦ୍ଦଳ ସହିତେ ॥
ଅାଦର କରି ହରିଧ୍ୱନି । ଶବଦେ କମ୍ପାଇ ମେଦିନୀ ॥
ସମସ୍ତେ ଜୟ ଜୟ କରି । ରାଜା ଭଣଜା ହସ୍ତ ଧରି ॥
ଶୂଳ ପାଶରେ ଯାଇଁ ମିଳି । ନାରୀଏ ହୁଳହୁଳି ବୋବାଳି ॥
ତା ଦେଖି ବୋଲଇ କୁମର । ତୁମ୍ଭେ ରୋଦନ କପାଁ କର ॥
ସମସ୍ତେ ଚିନ୍ତ ନାରାୟଣ । ଏ ସବୁ ତାହାଙ୍କ ଭିଆଣ ॥
ମୋ ଜୀବ ଉଦ୍ଧାର ନିମନ୍ତେ । କରୁଣା କଲେ ପ୍ରଭୁ ମୋତେ
ଏମନ୍ତ କହି ସେ ଆନନ୍ଦ । ମୁଖ ବିକାଶେ ପୂର୍ଣ୍ଣଚନ୍ଦ୍ର ॥
ତୁଣ୍ଡେ ଶ୍ରୀରାମ ନାମ ଧରି । ଶୂଳେ ଉଠିଲା ବେଗ କରି ॥
ସତୀ କନ୍ୟାର ପ୍ରାପ୍ୟ ହୋଇ । ବସିଲା ଶୂଳ ଅଗ୍ରେ ଯାଇ ॥
ଗୁହ୍ୟ ଦେଶରେ ଗଲା ଗଳି । କଣ୍ଠତଟରେ ଯାଇ ମିଳି ॥
ତା ଦେଖି ନୃପତି ବିକଳ । ନୟନୁ ବହେ ଅଶ୍ରୁଜଳ ॥
ସମସ୍ତେ ହାହା ନାଦ କରି । ଚଳିଣ ଗଲେ ନିଜ ପୁରୀ ॥
ଶୁଣ ସୁମନ ଏକ ଚିତ୍ତେ । ଶୟନ କଲେ ଯେଝାମତେ ॥
ଏମନ୍ତ ବେଳେ ଦେବସ୍ୱାମୀ । ଯେ ପ୍ରଭୁ ସର୍ବ ଅନ୍ତର୍ଯାମୀ ॥
ପ୍ରାଣୀଙ୍କ ହୃଦେ ବାସ ଯାର । ସକଳ ବିଷୟଗୋଚର ॥
କୁଣ୍ଠ କପଟ ହୃଦେ ଯେବା । ସୁହୃଦ ଭାବରେ ଭଜିବା ॥

ସକଳ ଯାହାର ଗୋଚର । ନାହିଁ ନିକଟ ନାହିଁ ଦୂର ॥
କାରଣପଞ୍ଜର ଯା ବାନା । ଭବ ଭୟକୁ ବଜ୍ରସେନା ॥
ଭକତ ମନ ପ୍ରଭୁ ଜାଣି । ବିଜୟ କଲେ ଚକ୍ରପାଣି ॥
ଅତ୍ୟନ୍ତ ତୋର ବନ୍ଧୁ ମନେ । ମିଳିଲେ ଭୃତ୍ୟ ସନ୍ନିଧାନେ ॥
ଶ୍ରୀହସ୍ତ ବଢ଼ାଇଣ ଦେଲେ । ଭକ୍ତକୁ ଶୂଳରୁ କାଢ଼ିଲେ ॥
ତଳେ ବସାଇ ଦାମୋଦର । ମସ୍ତକେ ଦେଲେ ପଦ୍ମକର ॥
ବୋଇଲେ ଉଠରେ ନନ୍ଦନ । ତୁ ଯେ ଭକତ ମୋକ୍ଷପାନ ॥
କିଛୁ ହି ଭୟ ନାହିଁ ତୋର । ଏ ରାଜ୍ୟ ହୁଅ ନୃପବର ॥
ଏମନ୍ତ ଆଜ୍ଞା ଯହୁଁ ହେଲା । କୁମର ଉଠିଣ ବସିଲା ॥
ଦେଖିଲା ପ୍ରଭୁ ଧନୁର୍ଦ୍ଧାରୀ । ନମୋ ଶବଦେ ସ୍ତୁତି କରି ॥
ବୋଲଇ ନମୋ ନାରାୟଣ । ଅଶେଷ ପ୍ରାଣୀଙ୍କ ଶରଣ ॥
ସିଦ୍ଧ ଯୋଗୀନ୍ଦ୍ର ମୁନିଗଣେ । ଚିନ୍ତନ୍ତି ଯେ ହରି ଚରଣେ ॥
ବ୍ରହ୍ମାଦି ଦେବଙ୍କୁ ଦୁର୍ଲଭ । ମୁଁ ଛାର କେତେକ ମାନବ ॥
ବିଜୟ କଲ ମୋର ପାଇଁ । ପ୍ରଭୁ ପଣକୁ ଲୁଚଯାଇ ॥
ଏହା ଶୁଣିଲେ ବିଶ୍ୱେଶ୍ୱର । ପାଟ ବାନ୍ଧିଲେ ମୁଣ୍ଡେ ତାର ॥
ବୋଇଲେ ଆହୁଁ ଏ ରାଜ୍ୟରେ । ନୃପତି ପଣ ଦେଲୁ ତୋରେ ॥
ଯାଅ ତୁ ଭୟ କିଛି ନାହିଁ । ସୁଖେ ବିହର ରାଜ୍ୟ ତୁହି ॥
ତା ଶୁଣି ଆନନ୍ଦ ନନ୍ଦନ । ପ୍ରଭୁ ହୋଇଲେ ଅନ୍ତର୍ଦ୍ଧାନ ॥
ଗାତ୍ର ଦିଶିଲା ଅତି ଶୋଭା । କୋଟିଏ କନ୍ଦର୍ପର ପ୍ରଭା ॥
ପ୍ରଭୁ ଯେ ଜୀବଦାନ ଦେଲେ । ସାଧୁମାନଙ୍କ ପାଶେ ଗଲେ ॥
ସେକ୍ଷଣି ପ୍ରଭୁ ଭଗବାନ । ବିଜୟ କଲେ ନିଜ ସ୍ଥାନ ॥
ଦେବଙ୍କୁ ଫିଟିଲା କବାଟ । ଦେଖ ସେ ପ୍ରଭୁଙ୍କର ହଟ ॥
ମୃତ ଦେହକୁ ଦେଲେ ଦୃଷ୍ଟି । ବୈଷ୍ଣବ ଚେତାପାଇ ଉଠି ॥
ଜୀବନ ପାଇ ସେ ଅତିଥ । ଭଜନ କରେ ରାମନାଥ ॥
ତାହା ଦେଖିଣ ସାଧୁବୃନ୍ଦ । କେ କହୁ ମନର ଆନନ୍ଦ ॥



ଧର୍ମଗ୍ରନ୍ଥ ଭଗବାନଙ୍କ ଆଦେଶରେ ଗୌରଚନ୍ଦ୍ର ଦାସଙ୍କୁ ସିଂହାସନରେ ବସାଇ ରାଜା କରାଇଲେ ।

ସମସ୍ତେ ଜୟ ଜୟ କର । ନାମ ଧ୍ୱନିରେ ପୃଥ୍ୱୀ ପୁର ।
ବୋଲନ୍ତି ଆହେ ମହାବାହୁ । ଭକତ ବାନ୍ଧବ ବୋଲାଉ ॥
ମହିମା ରଖିଲ ଜଗତେ । ବୋଲ ଚଳିଲେ ଯେଝାମତେ ।
ଶୁଣ ଦୁର୍ଜୟ ମନନାଥ । ପ୍ରଭୁଙ୍କ ମହିମା ଏମନ୍ତ ॥
ଏଣେ ଯେ ଗଲେ ନୃପବର । ପ୍ରବେଶ ଆପଣା ନଗର ॥
ତାର କୁଟୁମ୍ବ ଥିଲେ ଯେତେ । ରୋଦନ କଲେ ଯେଝାମତେ ।
ବୋଇଲେ ଶୁଣ ଧର୍ମରାଜା । ସଙ୍ଗତେ ନେଇ ଯେ ଭଣଜା ॥
ଏକା ତ ହୋଇଣ ଅଇଲ । ଗଉରଚନ୍ଦ୍ରଙ୍କୁ କି କଲ ॥
ଶୁଣି ନୃପତ ଶୋକଭରରେ । ବଦନୁ ବଚନ ନସ୍ଫୁରେ ॥
ସମସ୍ତେ ସନ୍ତାପିତ ହେଲେ । ଅନ୍ନ ଭୋଜନ ସେ ନ କଲେ ॥
ଶୟନ କଲେ ଉପବାସେ । ପ୍ରଭୁ ବିଜୟ ରାଜା ପାଶେ ।
ସ୍ୱପନମାର୍ଗେ ଆଜ୍ଞା ଦେଲେ । ଶୁଣ ହେ ରାଜତ ବୋଇଲେ ।
ଗଉର ଚନ୍ଦ୍ରଙ୍କୁ ତୁ ଆଣି । ରାଜ୍ୟରେ କର ନୃପମଣି ॥
ତୋହର ବଂଶେ ରାଜା ହେଲେ । ଜୀବନେ ନ ରହିବ ଭଲେ ॥
ଆମ୍ଭେ କଲୁଣି ତାକୁ ରାଜା । ହେବ ନୃପତ ତୋ ଭଣଜା ॥
ଏମନ୍ତ କହି ଭଗବାନ । ତତକ୍ଷଣେ ହେଲେ ଅନ୍ତର୍ଦ୍ଧାନ ॥
ଉଠି ନୃପତି ଦେଲେ ଗୁହାଁ । ଦେଖିଲେ ପାଶେ କେହି ନାହାଁ ।
ବୋଇଲେ ଏକି ବିପରୀତ । ବୁଝିବା ଏଥିର ଚରିତ ॥
ଶୂଳେ ବସାଇ ଦେଲି ନେଇ । ଆଉ ଗଉରଚନ୍ଦ୍ର କାହିଁ ।
ମଲା କି ହୋଇବ ରାଜନ । ପ୍ରଭୁ କି ଦେଲେ ଜୀବଦାନ ।
ଯେବେ ମୁଁ ନୟନେ ଦେଖିବ । ମୁଁ ତାର ଭୃତ୍ୟ ହୋଇଥିବ ।
ଏମନ୍ତ କହି ରାଜା ଗଲେ । ଶୂଳପାଶରେ ଯାଇ ହେଲେ ।
ଦେଖିଲେ ଭଣଜାର ତେଜ । ଦିଶେ ଦ୍ୱିତୀୟ ଗ୍ରହରାଜ ॥
ମସ୍ତକେ ବାନ୍ଧ ପାଟଶାଢ଼ୀ । ବସିଛି ପଦ୍ମାସନ ମାଡ଼ି ।
ତୁଣ୍ଡେ ବୋଲୁଛି ନାମାବଳୀ । ଶ୍ରୀରାମ କୃଷ୍ଣ ବନମାଳୀ ॥

ମୁକୁନ୍ଦ ମାଧବ ମୁରାରି । ଶ୍ରୀରାମ କୃଷ୍ଣ ଦଇତାରି ॥
କେଶବ କଂସାରି ଅଚ୍ୟୁତ । ଦୀନବାନ୍ଧବ ଗୋପୀନାଥ ॥
ଶ୍ରୀମଧୁସୂଦନ ଶ୍ରୀପତି । ଭକ୍ତବତ୍ସଳ ଦାଶରଥି ॥
ଏମନ୍ତ ନାମାବଳୀ ଯେତେ । ଗାନ କରଇ ଦୃଢ଼ଚିତ୍ତେ ॥
ତାହା ଦେଖିଣ ନୃପବର । ବୁଡ଼ିଲା ଆନନ୍ଦସାଗର ॥
ବୋଇଲେ ଧନ୍ୟ ତୋ ଜୀବନ । ତୋତେ ଯା ଦେଖିଲି ମୁଁ ଧନ୍ୟ
ଧନ୍ୟ ତୋ ଜନ୍ମର ସାଫଲ୍ୟ । ଦେଖିଲୁ ପ୍ରଭୁ ଆଦିମୂଳ ॥
ଧନ୍ୟ ସେ ପ୍ରଭୁଙ୍କ ମହିମା । ରଖିଲେ ଭକତ ଗାରିମା ॥
ଆନର ବଳେ ଏ ଜଗତେ । ନାହିଁ ନୋହିବ କଦାଚିତେ ॥
ଏ ମୃତ ଦେହରେ ଜୀବନ । ଦେବାକୁ କେ ହେବ ଭାଜନ ॥
ଏମନ୍ତ ବୋଲି ଦଣ୍ଡଧାରୀ । ଗଦ୍‌ଗଦ୍ କର ଧରି ॥
ଭିତର ହୋଇ ତାକୁ ନେଲା । ନୃପ ଆସନେ ବସାଇଲା ॥
କନକ ଦଣ୍ଡଛତ୍ର କରେ । ଦେଇ ଅତି ଆନନ୍ଦରେ ॥
ଆସିଣ ପାତ୍ର ଅମାତ୍ୟେ । ନୃପତି କଲେ ସ୍ୱଧର୍ମତେ ॥
ଡକାଇଲେ ସର୍ବ ପ୍ରଜାକୁଳ । ସମର୍ପି ଦେଲେ ମହୀପାଳ ॥
ବୋଇଲେ ଶୁଣ ସର୍ବ ଜନ । ଆଜୁ ଏ ତୁମ୍ଭର ରାଜନ ॥
ମୁଁ ହେଲି ଏହା ଆଜ୍ଞାବର୍ତ୍ତୀ । ଜାଣ ସଂଶୟ ନାହିଁ ଏଥି ॥
ଏମନ୍ତ ବୋଲି ମହାରାଜା । ବୋଇଲେ ବଜାଅ ରେ ବାଜା
ତାଳ ମର୍ଦ୍ଦଳ ସ୍ୱର ତୁଲେ । ଗଣିକାଗଣ ନୃତ୍ୟ କଲେ ॥
ବଜାଇ ଶଙ୍ଖ ତୁରୀ ଭେରୀ । ସମସ୍ତେ ଜୟ ଜୟ କରି ॥
ପ୍ରବେଶ ହେଲେ ନିଜପୁର । ଶୁଣ ହେ ମନ ନୃପବର ॥
ଯେ ଯେଉଁ ଗତି ଥିବ ପାଇ । ତାହା ଜାଣନ୍ତି ସର୍ବସାକ୍ଷୀ ॥
କହିବା ଶକ୍ୟ ନାହିଁ ମୋର । ପାରିଲେ ସାଧୁଙ୍କୁ ପଚାର ॥
ଏ କଳିଯୁଗ କଥା ଏତେ । ଶୁଣି କେ କରିବ ପରତେ ॥
କେବଳସାଧୁଜନ ଯେହି । ବୋଲିବେ ସତ୍ୟ କଥା ଏହି ॥

ଭକତ ଭଗବତ ଦୁଇ । ଏକଇ ଆତ୍ମା ଭିନ୍ନେ ନାହିଁ ।
ଏ ଯେ ଅପୂର୍ବ କଥାରସ । କହଇ ବିପ୍ର ରାମଦାସ ॥
ସେ ରାମେଶ୍ୱରଙ୍କ ଚରଣେ । ମୋ ମନ ରହୁ ଅନୁକ୍ଷଣେ ॥
ଭଣଇ ବିପ୍ର ରାମ ଗୀତେ । ଅଶେଷ ପ୍ରାଣୀଙ୍କର ହିତେ ।

ଇତି ଶ୍ରୀଦାର୍ଢ୍ୟଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ
ଗୌରଚନ୍ଦ୍ର ଦାର୍ଢ୍ୟଭାବ ବର୍ଣ୍ଣନେ ନାମ ଦ୍ୱାବିଂଶୋଽଧ୍ୟାୟଃ ।

---

## ତ୍ରୟୋବିଂଶ ଅଧ୍ୟାୟ

### ଗୋବିନ୍ଦ ଦାସ ସମ୍ବାଦ

ନମସ୍ତେ ଜଗତକରତା । ସକଳ ଜୀବ ଗତିଦାତା ।
ପୁଣି ଚୈତନ୍ୟ ଶ୍ରଦ୍ଧାଭାବେ । କହଇ ମନ ରାଜା ଆଗେ ।
ହେ ମନ ସ୍ଥିରକର ଚିତ୍ତ । ଏ ବଡ଼ ଅପୂର୍ବ ଚରିତ ॥
ଉତ୍ତର ଖଣ୍ଡେ ତାର ଘର । ନାମ ଗୋବିନ୍ଦ ଦାସ ତାର ।
ଜାତିରେ ଅଟଇ ବ୍ରାହ୍ମଣ । ତାର କୁଟୁମ୍ବ ପାଞ୍ଚଜଣ ॥
ଏକ ଦୁହିତା ବେନି ସୁତ । ପତ୍ନୀକି ଘେନି ସେ ନିଶ୍ଚିନ୍ତ ॥
ଥିଲା ଯେ ଗୃହ ବାସ କରି । ଆପଣା ସ୍ୱକର୍ମ ଆଚରି ॥
ଏମନ୍ତେ କେତେ ଦିନ ଗଲା । ତା ଦେହେ ଦିବ୍ୟଜ୍ଞାନ ହେଲା ॥
ବୋଇଲା ଧିକ ଏ ଜୀବନ । ବୃଥାଅର୍ଥେ ବଞ୍ଚିଲି ମୁଁ ଦିନ ॥
ବନ୍ଧା ରଜ୍ଜୁରେ ବନ୍ଧା ହୋଇ । ଅଛି ମୁଁ ମୁହଁ ଫାସ ଲଗାଇ ॥
ସବୁ ଏ ଅଟେ ଖେଳ ଘର । କେହି ତ ନୁହଇଁ କାହାର ॥
ଦେହେ ସମର୍ଥ ଗୁଣମାନ । ଥାଏ କେବଳ ଯେତେ ଦିନ ॥
ଧନ ସମ୍ପଦ ଥିବାଯାଏ । ଗୃହେ ପ୍ରଭୁତ୍ୱପଣ ଥାଏ ॥
ବୃଦ୍ଧ ଅବସ୍ଥା ପରବେଶ । ହେଲେ ସରଇ
ଆଦର ସରଇ ସବୁରି । ଘେନନ୍ତି ଶତ୍ରୁ ସମ କରି ॥

କିଛି ସେ କରିଲେ ଅବଶ୍ୟ । ସବୁରି ମନେ ହୋଏ ରୋଷ ॥
ସମସ୍ତେ ହୁଅନ୍ତି ଖତାଇ । ହସନ୍ତି ନାକେ କର ଦେଇ ॥
ଆପଣା ହସ୍ତେ ଧନ ଯେତେ । ଅର୍ଜିସ୍ତେ ଥାଇ ନାନାମତେ ॥
ତହୁଁ ସରବ ଅଧିକାର । ଛୁଇଁବା ଶକ୍ତି ନାହିଁ ତାର ॥
କାହିଁ ସେ ବ୍ୟୟ କଲେ ବିତ୍ତ । ଦେଖି ତା ସାରନ୍ତି ମହତ ॥
ପତି ପତ୍ନୀକି ବାଡ଼ ଧରି । କ୍ରୋଧରେ ଦଉଡନ୍ତି ମାରି ॥
କିଛି ସେ କରି ନ ପାରଇ । ଶୁଖିଲି କାଠ ପରି ରହି ॥
ଏମନ୍ତ ଅଟେ ଗୃହବାସ । ଏଥେଁ ମୁଁ ପଡ଼ିଗଲି ନାଶ ॥
ଯେ ହରି ଜଗତକରତା । ସକଳ ଜୀବ ପଡ଼ଦାତା ॥
ଯେ ଯାହା ଇଚ୍ଛେ ତାହାଦେଇ । ସେ କାମଧେନୁ ଭବଗ୍ରାହୀ ॥
ଜନ୍ମ ମରଣ ସ୍ମୃତି ଭ୍ରମ । କରଇ କର୍ମରଜ୍ଜୁ ଛେଦନ ॥
ଏ ପାପୀ ଜୀବନ ତାରଣେ । ତା ବିନେ ନାହିଁ ଅନ୍ୟଜଣେ ॥
ଏବେ ମୁଁ ଏମନ୍ତ କରିବି । ସେ ପ୍ରଭୁ ଚରଣେ ସେବିବି ॥
ବୋଲି ଛାଡ଼ିଲା ଗୃହବାସ । ଧନାଦି କୁଟୁମ୍ବରେ ଆଶ ॥
ଛାଡ଼ିଲା ସଫଳ ବିଗ୍ରହ । ଉଚ୍ଛିଷ୍ଟ ପଦ ପ୍ରାପ୍ତ କରି ॥
ମଧ୍ୟରୁ ହୋଇଲା ବାହାର । କରିଣ ଗଲା ଦେଶାନ୍ତର ॥
ଅନେକ ତୀର୍ଥମାନ ଫେରି । କେବଳ ନାମ ଆଶ୍ରେ କରି ॥
ଭୁଲଇ ଯହିଁ ଇଚ୍ଛା ତାର । ତେଜିଣ ମାନ ଅହଙ୍କାର ॥
ସକଳ ଜୀବ ସମ କରି । ଦେଖଇ ସୁଜ୍ଞାନ ବିଗ୍ରହ
ନାହିଁ ତାହାର ବଡ଼ ସାନ । ସକଳ ଦେଖଇ ସମାନ ॥
ସଦା ଆନନ୍ଦ ମତ୍ତ ତାର । ଭୁଲଇ ଅଖିଳ ସଂସାର ॥
ଯହିଁ ବା ଯାହା ମିଳେ ଖାଇ । ମନେ ତା ଶୋଚନା ନ ଥାଇ ॥
କାହିଁ ବା ଦିବ୍ୟଶାଳୀ ଅନ୍ନ । ନାନାଦି ପ୍ରକାରେ ବ୍ୟଞ୍ଜନ ॥
କାହିଁ ବା ଦଧି ଦୁଧ ସର । କାହିଁ ବା ସୁପକ୍ୱ ଆହାର ॥
କାହିଁ ବା ଫଳ ମୂଳ ଗ୍ରାସ । କାହିଁ ବା କରଇ ଉପବାସ

ନଦୀ ପୋଖରୀ ଜଳ କାହିଁ । ପିଇଣ ସନ୍ତୋଷ ଲଭଇ ॥
ଏମନ୍ତେ ଗଲା କେତେ ଦିନ । ଶୁଣ ହୋ ସୁମନ ସଜ୍ଜନ ॥
ଖରା ବରଷା ଶୀତକାଳ । ରହଇ ବୃକ୍ଷଙ୍କର ମୂଳ ॥
ଦୁଃଖକୁ ଶୋଚନା ନ କରି । ସର୍ବଦା ବୋଲୁଥାଇ ହରି ॥
ତାହାର ମନ କର୍ତ୍ତବ୍ୟରେ । କିଛି ହିଁ କାମନା ନ କରେ ॥
ଜୀବନ ଯାଉ ଅବା ଥାଉ । ଏଥି ଶୋଚନା ନାହିଁ ଆଉ ॥
ତେଣୁ ତା କ୍ଷୀଣ ହେଲା କାୟେ । ଅତି ଦରିଦ୍ର ଜନପ୍ରାୟେ ॥
ଯହିଁ ସେ ଗଲେ ଲୋକମାନେ । ଶରଧା ନ ପାଆନ୍ତି ମନେ ॥
ବୋଲନ୍ତି ଅଇଲା ଏ ବାଇ । କିସ ଏ ନେବଟି ଚୋରାଇ ॥
ଏମନ୍ତ ବୋଲି ଘଉଡ଼ାନ୍ତି । ପାଖେ ବସାଇ ନ ଦିଅନ୍ତି ॥
ସର୍ବେ ବୋଲନ୍ତି ମାର ମାର । କ୍ଷୋଭ ନ ଥାଇ ମନେ ତାର ॥
ବୋଲେ ମୋ ପୂର୍ବକର୍ମ ଯେତେ । ସେ ସିନା କରିଅଛି ଏତେ ॥
ଭଲ ବା ମନ୍ଦ ହାନି ଲଭ । ଯେ ପୂର୍ବ ଅରଜନ ଥିବ ॥
କେ ତାହା ଅନ୍ୟଥା କରିବ । ସେ ତାହା ଅବଶ୍ୟ ଭୁଞ୍ଜିବ ॥
ଏମନ୍ତ ଭାବି ତାର ମନେ । ବସୁଛି ଥାଇ ପ୍ରତିଦିନେ ॥
ଏବେ ମୁଁ ପ୍ରଭୁଙ୍କ କୃପାରେ । ବୁଲି ଦେଖିବି ତୀର୍ଥବରେ ॥
ଦେଖିବି ଶ୍ରୀପୁରୁଷୋତ୍ତମ । ଯେ କ୍ଷେତ୍ରମାନଙ୍କେ ଉତ୍ତମ ॥
ଗଙ୍ଗା ଗୟାଦି ପୁଣ୍ୟ କାଶୀ । ଯେ ମହାକ୍ଷେତ୍ର ବାରାଣସୀ ॥
ଅଯୋଧ୍ୟାପୁର ବୃନ୍ଦାବନ । କାଳିନ୍ଦୀ ଗିରି ଗୋବର୍ଦ୍ଧନ ॥
ଗୋପ ମଥୁରା ନର ନାରୀ । ବଦ୍ରିକା ବଦ୍ରିନାଥ ଗିରି ॥
ଯେ ହରିଦ୍ୱାର ପୁଣ୍ୟସ୍ଥଳ । ଯହିଁରେ ହରିହର ମେଳ ॥
ହେଙ୍ଗୁଳା ଆଦି ତୀର୍ଥ ଯେତେ । ଦ୍ୱାରିକା ଶ୍ରୀଅଙ୍ଗ ସହିତେ ॥
ଶ୍ରୀରାମେଶ୍ୱର ସେତୁବନ୍ଧ । ଯହିଁ ବିଜୟେ ଆଦିକନ୍ଦ ॥
ଏବେ ବଳୁଛି ଅଛି ମନ । ଦେଖିବି ପ୍ରଭୁ ଲକ୍ଷ୍ମଣ ॥
ଏଥି ଉତାରେ ଯାହା ହେଉ । ଏ ଜୀବ ଯାଉ ଅବା ଥାଉ ॥

ତହିଁକି କିଛି ନାହିଁ ଦୁଃଖ । କେବେ ମୁଁ ଦେଖିବି ଶ୍ରୀମୁଖ ॥
ସେ ମହାପ୍ରଭୁଙ୍କ ପ୍ରତାପ । ଯାହା ମୁଁ ଶୁଣିଛି ସ୍ୱରୂପ ॥
ଯାଇଁ ଦେଖିବି ଚର୍ମଚକ୍ଷୋଲେ । ଖଣ୍ଡିବ ଜନ୍ମ ବଧ ହେଲେ ॥
ଏମନ୍ତ ଭାବ ଚଳଯାନ୍ତେ । କେତେକହେଁ ବନ ରହି ପଥେ
ଏକାକୀ ସଙ୍ଗେ କେହି ନାହିଁ । ମିଳିଲା ସେ ଦେଶରେ ଯାଇଁ ॥
ଆଗରେ ଦେଖିଲା ବନସ୍ତ । ଅତି ଦୁର୍ଗମ ସେହି ପଥ ॥
ଏକେ ବରଷା ଚତୁର୍ମାସ । ସେ ବନେ ହୋଇଲା ପ୍ରବେଶ
ଅତି ଦୁର୍ବଳ ବୃଦ୍ଧ ଦେହୀ । ଗୃହଲିବା ଶକ୍ୟ ତାର ନାହିଁ ॥
ଧୀରେ ଗମଇ ପଡ଼ି ଉଠି । ଦଇବେ କଲା ଘୋର ବୃଷ୍ଟି ॥
ସେ ଯେ ବରଷାଧାରା ହୋଇ । ଶୀତେ କମ୍ପଇ ତାର ଦେହୀ ॥
କମ୍ପିଲା ଦଶନ ଅଧର । ତୁଣ୍ଡରୁ ନଇଲା ଉତ୍ତର ॥
ତହିଁକି ଶୋଚନା ନ କରି । ଗମନ ଧୀରେ ଧୀରେ କରି ॥
ଏମନ୍ତ କେତେ ଦୂର ଗଲା । ଆଉ ସେ ଗୃହଲି ନ ପାରିଲା ॥
ପଡ଼ିଲା ବୃକ୍ଷମୂଳେ ଶୋଇ । ଶ୍ରୀପଦ୍ମପାଦେ ଚିତ୍ତ ଦେଇ ॥
ବୋଇଲା ଆହେ ମହାମେରୁ । ଅଶେଷ ଜୀବ ଜ୍ଞାନଗୁରୁ ॥
ଅଶେଷ ଜୀବ ତାତ ମାତ । ଅଶେଷ ପ୍ରାଣୀ ପ୍ରାଣହିତ ॥
ଅଶେଷ ବ୍ରହ୍ମାଣ୍ଡ ଠାକୁର । ତୋ ଇଚ୍ଛା ଯାହା ତାହା କର ॥
ହେ ପ୍ରଭୁ ଶ୍ରୀରାମ ଅନୁଜ । କୋଟିଏ ସୂର୍ଯ୍ୟ ଜିଣି ତେଜ ॥
କୋଟି କନ୍ଦର୍ପ ରୂପ ଯାର । ସଂସାରେ ନାହିଁ ପଟାନ୍ତର ॥
ଶର କାର୍ମୁକ ବେଣୁ ଭୁଜେ । ସବୁତାକାର ଗର୍ବଗଞ୍ଜେ ॥
ଆତଙ୍କୀ ଆତଙ୍କ ଖଣ୍ଡନ । ଯେ ଆର୍ତ୍ତ ଆର୍ତ୍ତି ବିନାଶନ ॥
ସଂସାରେ ତୁମ୍ଭ ଅବତାର ଅନନ୍ତ ମହିମା ଯାହାର ॥
ଯେଣୁ ତୁ ଅନନ୍ତ ମୂରତି । ଅନନ୍ତ ରୂପେ ତୋର ସ୍ଥିତି ॥
ସକଳ ହୃଦ କଥା ଜାଣୁ । ତୁହି ସେ ଅନ୍ତର୍ଯ୍ୟାମୀ ଯେଣୁ ॥
ଯେ ତୁମ୍ଭ ଅଭୟ ଚରଣ । ଆଜ ମୁଁ ପଶିଲି ଶରଣ ॥



ଭଗବାନ ଗୋବନ୍ଦ ଦାସଙ୍କୁ ନିଜ ରୂପ ଦେଖାଉଛନ୍ତି ।

ତୁମ୍ଭର ଶ୍ରୀମୁଖ ଦର୍ଶନ । କରିବାଯାଏ ଏ ଜୀବନ ॥
ରଖି ଦର୍ଶନ ଦିଅ ବାରେ । ଯେ ଇଚ୍ଛା ହେଉ ତଦନ୍ତରେ ॥
କେବଳ ଅନଳ ତପତ । ପାଇଲେ ହେବ ମନ ଶାନ୍ତ ॥
ଏମନ୍ତ ବଗୁରନ୍ତେ ମନ । ଜାଣିଲେ ପ୍ରଭୁ ଲଛମନ ॥
ହୃଦେ ଲଗିଲ ଭୃତ୍ୟ ଚିନ୍ତା । ବେଗେ ଧାଇଁଲେ ଜଗଜ୍ଜିତା
ଘେବେ ଶବର ରୂପଧରି । ଅଗ୍ନି ଉଜ୍ଜ୍ୱାଇ ସଜ କରି ॥
ଧରି ଚଳିଲେ ଅତି ବେଗେ । ମିଳିଲେ ଭକତର ଆଗେ ॥
ପାଶେ ଅନଳ ଥୋଇ ଧୀରେ । କହନ୍ତି ବଚନ ଗମ୍ଭୀରେ ॥
ଭୟ ନ କର କିଛି ଆଉ । ଅନଳ ତାପେ ଶୀତ ଯାଉ ॥
ତହିଁ ଗୋବନ୍ଦ ଦାସ ଧୀରେ । ବଚନ କହି ତ ନ ପାରେ ॥
ଅତି ବିନୟ ଭାବ ହୋଇ । ବୋଲେ ଉଠିବା ଶକ୍ୟ ନାହିଁ ॥
କେହ୍ନୁ ଆସିଛ ବାବୁ ଏଥେ । ଉଠାଇ ଦିଅ କିନା ମୋତେ ॥
ତୁମ୍ଭେ ମୋ ଧର୍ମର ପିଅର । ଗଲ ଜୀବନ ରକ୍ଷା କର ॥
କେବଳ ପ୍ରଭୁ ଲଛମନ । ଅଶେଷ ଜୀବର ଜୀବନ ॥
ତାହାଙ୍କ ଦରଶନ ଯାଏ । ଏ ପାପ ଜୀବ ଥାଉ ଦେହେ ॥
ଅଧିକ ପ୍ରୟୋଜନ ନାହିଁ । ଶୁଣି ଆନନ୍ଦ ଭାବଗ୍ରାହୀ ॥
ତକ୍ଷଣେ ଭୃତ୍ୟ ଭୁଜ ଧରି । ବସାଇ ଦେଲେ ଯତ୍ନ କରି ॥
ପାଶରେ ଅନଳ ଥୋଇଲେ । ଆପଣେ ଅଲଗେ ରହିଲେ ॥
ଅଙ୍ଗରେ ଲଗନ୍ତେ ଶ୍ରୀଭୁଜ । ବଢ଼ିଲା ତାର ଓଜ ତେଜ ॥
ଅନଳ ପାଶରେ ବସିଲ । ଶରୀର ତାପ ବିନାଶିଲ ॥
ବଗୁର କଲ ମନେ ତାର । ନିଶ୍ଚୟେ ପ୍ରଭୁ ଅଙ୍ଗୀକାର ॥
ନୋହିଲେ ଏ ଶବର ଏଥେ । ଆସି କି ଜାବ ଦୟନ୍ତା ମୋତେ
ଏ କଥା ଅଟଇ କେମନ୍ତ । ଧନ୍ୟ ତୋ ମହିମା ଏମନ୍ତ ॥
ଏହା ମୁଁ ନ ପାରିଲି ଜାଣି । ଧନ୍ୟ ଧାନୁକୀ ଚୂଡ଼ାମଣି ॥
ବୋଲି ଆନନ୍ଦେ ଦେଲ ହସି । ଶବର ମୁଖ ଗୃହ୍ନ ଭାଷି ॥

ଶୁଣ ହେ ଧର୍ମତାତ ମୋର । କେତେ ଯୁଗରେ ତୁମ୍ଭ ଘର ॥
ତୁମ୍ଭର ନାମ ଗୋଟି କହ । କହ ହୋ ଏଥିର ସନ୍ଦେଶ ॥
ଏଥକୁ କେହ୍ନୁ ଦେଲ ପେଷି । କାହାର ବୋଲେ ତୁମ୍ଭେ ଆସି
ମୋହର ପ୍ରାଣ ଯିବାବେଳେ । ଏ ଘୋର ବରଷାର କାଳେ ॥
ଅନଳ ଘେନିଣ ଅଇଲ । ମୋତେ ତ ଜୀବଦାନ ଦେଲ ॥
କୋଟିଏ ଜନ୍ମରେ ତୁମ୍ଭର । ଶୁଝା ନ ଯିବ ଉପକାର ॥
ଏବେ ମୋ ଠାରେ କୃପାକର । ଚଳିଣ ଯାଅ ନିଜପୁର ॥
ତା ଶୁଣି ସେ ମାୟା ଶବର । ତକ୍ଷଣେ ହୋଇଲେ ଅନ୍ତର ॥
ସେ ଯେ ଗୋବିନ୍ଦ ଦାସ ଥାଇ । ମନରେ ଭାବନା କରଇ ॥
ଏତେ ବେଳରେ ଅନ୍ନ କଞ୍ଜି । ଯେବେ ଦିଅନ୍ତ ରଘୁବଂଶି ॥
ଭୁଞ୍ଜିଲେ ଜୀବନ ରହନ୍ତା । ଆଉ ନ ଥିଲା କଷ୍ଟ ଚିନ୍ତା ॥
ପୁଣି ବତ୍ମରେ ଘୋରବନ । ନାହିଁ ତ ଘର ଗ୍ରାମମାନ ॥
ବସ୍ତ୍ର ମନ୍ଦିର ଏଥି ନାହିଁ । ଅନ୍ନ ମିଳିବ ଅବା କାହିଁ ॥
ବୋଲଇ ମନକୁ ବିଚାରି । ଭଜଇ ରାମକୃଷ୍ଣ ହରି ॥
ତାହା ଜାଣିଲେ ଦୀନବନ୍ଧୁ । ଯେ ପ୍ରଭୁ ନିଜେ କୃପାସିନ୍ଧୁ ॥
ଗଗନ ଚାତକକୁ ନିତ । ବରଷା ଜଳ ଯେହ୍ନେ ଦିଅନ୍ତ ॥
ଗର୍ଭର ବାଳକକୁ ଅନ୍ନ । ଯେ ଦେଇ ରଖନ୍ତି ଜୀବନ ॥
କାଷ୍ଠ କୀଟର ପଡ଼ିଦାତା । ତାଙ୍କୁ ଅପୂର୍ବ କେଉଁ କଥା ॥
ତକ୍ଷଣେ ବିପ୍ର ରୂପ ଧରି । ଦିବ୍ୟ ଖେଚଡ଼ି ହସ୍ତେ ଭରି ॥
ନବ ଭାଣ୍ଡରେ କରି ପୂର୍ଣ୍ଣ । ନାନାଦି ପ୍ରକାରେ ବ୍ୟଞ୍ଜନ ॥
ଦିବ୍ୟ ଆମ୍ବୁର ଦଧି ଛେନା । ବହଟି ପଞ୍ଚ ଛୁଟି ବାସନା ॥
ଅତି ଗରମ ଅଛି ହୋଇ । ଧରି ଧାଇଁଲେ ଭାବଗ୍ରାହୀ ॥
ମିଳିଲେ ଭକତର ପାଶେ । ବୋଇଲେ କି କରୁଛ ଦାସେ
ଚିନ୍ତା କିପାଇଁ କର ମନ । ଉଠି ଭୋଜନ କର ଅନ୍ନ ॥
ତା ଶୁଣି ଶ୍ରୀହରିର ଦାସ । ଉଠିଲେ ହୋଇ ହସ ହସ ॥

ଦେଖିଲେ ବ୍ରହ୍ମାଣ୍ଡ ଗୋସାଇଁ । ଅନ୍ନ ପାଶରେ ଦେଇଛି ଥୋଇ ॥
ତକ୍ଷଣେ ଅନ୍ନଗ୍ରାସ କରି । ସ୍ମରଣ ବିପ୍ରଙ୍କୁ ପଚାରି ॥
କେ ତୁମ୍ଭେ କାହିଁ ଏଠାରେ ଅଛ । ମୋ ମନ କେମନ୍ତେ ଜାଣିଲ ॥
ବିପ୍ରର ପ୍ରାୟ ମୋର ଚିତ୍ତ । ପ୍ରତୀତ ନୋହେ କଦାଚିତ ॥
ନିଶ୍ଚୟ ପ୍ରଭୁ ଲକ୍ଷ୍ମୀମନ । ଏମନ୍ତ ବିଚାରେ ମୋ ମନ ॥
ଯା ମାୟା ଦେବେ ଅଗୋଚର । ମୋ ଗ୍ଛାର କେତେକ ମାତର ॥
ବ୍ରହ୍ମାଦି ଦେବଙ୍କୁ ଦୁର୍ଲଭ । ମୁଁ କି ଜାଣିବି ତାଙ୍କ ଭାବ ॥
ମାୟା ନ କରି କହ ସତ । ନୋହିଲେ ହେବ ପ୍ରାଣେ ହତ ॥
ତାହା ଶୁଣିଣ ଦୟାନିଧି । ବୋଇଲେ ବଡାର ସାଧୁବୁଦ୍ଧି ॥
ଧନ୍ୟ ତୋହର ଅନୁଭବ । ଦୁର୍ଲଭ ଅଟେ ତୋର ଭାବ ॥
ଭକତ ମଧ୍ୟେ ଅଟୁ ସାର । ତରିବୁ ଏ ଭବ ସଂସାର ॥
ଏବେ ତୁ ସଂଶୟ ନ ଘେନ । ଆମ୍ଭେ ଟି ପ୍ରଭୁ ଲକ୍ଷ୍ମୀମନ ॥
ଶୁଣି ଗୋବିନ୍ଦ ଦାସ ଭାଳେ । ନମିଲ ପ୍ରଭୁ ପାଦତଳେ ॥
ଯୋଡି କପାଳେ କର ଦେଇ । ବୋଲଇ ନମୋ ଭାବଗ୍ରାହୀ ॥
ନମଇଁ ପ୍ରଭୁ ଭଗବାନ । ଅନାଦି ପରମ କାରଣ ॥
ଦେଖାଅ ନିଜ ରୂପ ତୋର । ମନୁ ସଂଶୟ ଯାଉ ମୋର ॥
ଏମନ୍ତ ଶୁଣି ଦଇତ୍ୟାରି । ସେ କ୍ଷଣି ନିଜରୂପ ଧରି ॥
ତନୁ କନକ ପ୍ରାୟ ବର୍ଣ୍ଣ । ଗଉର ଅଙ୍ଗ ଶୋଭାବନ ॥
ମୁଖ ସମ୍ପୂର୍ଣ୍ଣ ଇନ୍ଦୁ ଜିଣି । କି ମହାହ୍ଲାଦ ସେ ଗୃହିଣୀ ॥
ଚକ୍ଷୁ ଶ୍ରବଣ ନାସା ଶୋଭା । କିସ ଉପମା ତହିଁ ଦେବା ॥
ରଙ୍ଗ ଅଧରେ ମନ୍ଦହାସ । ସୁନ୍ଦର ଶୋହେ ପୀତବାସ ॥
କମ୍ବୁ ଆକୃତ ଗ୍ରୀବାମୂଳ । ଅତି ବିସ୍ତାର ହୃଦସ୍ଥଳ ॥
କଟୀ କ୍ଷୀଣତା କହି ନୋହେ । କି ଶୋଭା ପଦ୍ମପାଦ ଦୁହେଁ ॥
ବଳଣ ଶ୍ରୀଭୁଜେ କୋଦଣ୍ଡ । ତେତେକେ ଗଞ୍ଜଇ ମାରତଣ୍ଡ ॥
ଶିରେ ସପତ ଫଣି ସାଜେ । ଦ୍ୱିତୀ ଈଶ୍ୱର ପ୍ରାୟେ ବିରାଜେ ॥

ତା ଦେଖି ଭକତ ଶେଖର । ବେନି ନୟନୁ ବହେ ନୀର ॥
କଣ୍ଠ ଗଦ୍‌ଗଦ ସ୍ୱର ଭଙ୍ଗ । ପ୍ରେମ ପୁଲକ ସ୍ୱେଦ ଅଙ୍ଗ ॥
ବଚନ କହି ନ ପାରଇ । ବୋଇଲା ନମୋ ଭବଗ୍ରାହୀ ॥
ତୋ ପରି ପ୍ରଭୁ ଥାଉ ଆନେ । ଭଜନ୍ତି ଅନ୍ୟ ଜନମାନେ ॥
ଧିକ ତ ତାହାଙ୍କ ଜୀବନ । ତାଙ୍କ ଦେହେ କି ପ୍ରୟୋଜନ ॥
ମୋତେ ଏମନ୍ତ ସାହା ବୋଲି । ମୁଁ ମୂଢ଼ ଜାଣି ତ ନ ଥିଲି ॥
ଏମନ୍ତ ବୋଲି ଯେବେ ଭୋଳ । ଯେସନେ ଚନ୍ଦ୍ରମଣି ଶିଳ ॥
ଚନ୍ଦ୍ରକୁ ଦେଖି ଦ୍ରବଯାଇ । ତେସନ ହେଲା ତାର ଦେହୀ ॥
ସେହି ରୂପକୁ ଧ୍ୟାନ କରି । ଅନ୍ତେ ଚଳିଲା ବିଷ୍ଣୁପୁରୀ ॥
ଏ ଦାର୍ଢ୍ୟଭକ୍ତି ରସାମୃତ । କେବଳ ଶ୍ରବଣେ ଅମୃତ ॥
ପଦ ପଦକେ ସୁଖ ହୃଦେ । ଭବ ବନ୍ଧ୍ୟା ବନ୍ଧ ଛେଦେ ॥
କହଇ ବିପ୍ର ରାମଦାସ । ସେ ହରି ମହିମା ଅଶେଷ ॥
ସାଧୁଙ୍କ ମହିମାଟି ଯେତେ । ତାହା କେ କହିବ ସାକ୍ଷାତେ ॥
ଶୁଣ ସୁମନ ଏ ଚରିତ । ଅଭିନ୍ନ ଭକ୍ତ ଭଗବତ ॥
ଯେ ସାଧୁଜନଙ୍କ ବଇରୀ । ନିଶ୍ଚେ ଭଞ୍ଜନ୍ତି ତାକୁ ହରି ॥
କିସ କହିବ ମୁହିଁ ଆର । ସାଧୁଙ୍କୁ ସମସ୍ତ ଗୋଚର ॥
ଯେହୁ ଜାଣନ୍ତି ହରି ଭାବ । ତାକୁ ଏ ବଚନ ଦୁର୍ଲଭ ॥
ଛନ୍ଦ କପଟୀ ଜନ ଯେହି । ତାଙ୍କ ଶ୍ରବଣେ ଶୂଳ ଏହି ॥
ଶୁଣ ସୁମନ ହରି ରସ । ଏ ଭବ ସମୁଦ୍ରେ ନ ଭାସ ॥

ଇତି ଶ୍ରୀଦାର୍ଢ୍ୟଭକ୍ତି ରସାମୃତେ ମନ ଚୈତନ୍ୟ ସମ୍ବାଦେ ଭକ୍ତ ଗୋବିନ୍ଦ ଦାସ ଦୃଢ଼ଭକ୍ତି ବର୍ଣ୍ଣନେ ନାମ ତ୍ରୟସ୍ତ୍ରିଂଶୋଽଧ୍ୟାୟଃ

---

## ଚତୁଃତ୍ରିଂଶ ଅଧ୍ୟାୟ

## ଯଶଚନ୍ଦ୍ର ରାଜା ଓ ଦୀନବନ୍ଧୁ ଓଝା ସମ୍ବାଦ

ନମସ୍ତେ ନୀଳାଦ୍ରି କେଶରୀ । କମଳା ଯାର ପରିଚାରୀ ॥

ଶରଣ ପାଦପଦ୍ମେ ତାର । ବାଞ୍ଛା ସମ୍ପୂର୍ଣ୍ଣ କର ମୋର ॥
ପୁଣି ଚୈତନ୍ୟ ଦେବ କହେ । ଶୁଣ ହେ ମନ ପୁଣ୍ୟମୟେ ॥
କେବଳ ଶୁଣ ଶ୍ରଦ୍ଧାଭାବେ । ମୁଁ ଯାହା କହୁଅଛି ଏବେ ॥
ପଶ୍ଚିମ ଗୋଦାବରୀ ତଟେ । କଣ୍ୟୁ ଗିରିର ନିକଟେ ॥
ସକଳ ଦେଶରୁ ଯେ ଶେଷ । ଜାଙ୍ଗଲ ନାମେ ଏକ ଦେଶ ॥
ଶତେକ ଯୋଜନ ବିସ୍ତାର । ଅମୂଲ୍ୟ ଭୂମିମଧ୍ୟେ ସାର ॥
ତହିଁ ନୃପତି ଯଶଚନ୍ଦ୍ର । ଅତିଧାର୍ମିକ ସେ ନରେନ୍ଦ୍ର ॥
ଦାନୀ ପଣରେ ସେ ଅଗ୍ରଣୀ । ଶୂର ପଣରେ ତାକୁ ଗଣି ॥
ରାଜା ପଣେ ତ ସେହୁ ମୋକ୍ଷ । ପ୍ରଜା ପାଳନେ ସେ ସୁଦକ୍ଷ ॥
ଇନ୍ଦ୍ରର ସମାନେ ସମ୍ପତ୍ତି । ଅନେକ ତାର ପ୍ରିୟବନ୍ତୀ ॥
ପଦ୍ମବନର ପ୍ରାୟ ବଂଶ । ପୁତ୍ର ଦୁହିତାହିଁ ବିଶେଷ ॥
ଗଜ ତୁରଙ୍ଗ ଗଣା ନାହିଁ । ପଦାତି କେ ପାରିବ କହି ॥
ଦେବ ପୂଜନେ ଶୁଦ୍ଧ ବୁଦ୍ଧି । ନାମ ଭଜନେ ସେ ପ୍ରସିଦ୍ଧି ॥
ପୁରାଣ ଶୁଣୁଥାଇ ନୀତି । ବିପ୍ର ପୋଷଣେ ଶୁଦ୍ଧମତି ॥
ଏମନ୍ତେ କେତେଦିନ ଗଲା । ରାଜା ତା ଚିତ୍ତେ ବିଚାରିଲା ॥
ବିପ୍ର ଶାସନ ବସାଇବା । ତାହାଙ୍କ ଚରଣ ସେବିବା ॥
ଏମନ୍ତ ବୋଲି ଦଣ୍ଡଧାରୀ । ପାଠ ଜ୍ୟୋତିଷକୁ ହକାରି ॥
ଖୋଜାଇ ଅନୁକୂଳ ଦିନ । ବିଜୟ କଲେକ ରାଜନ ॥
ଦେଖି ଉତ୍ତମ ଶୁଭ ସ୍ଥାନ । ତହିଁରେ ବସାଇ ଶାସନ ।
ଗଣିଲେ ଅଷ୍ଟୋତ୍ତର ଶତେ । ପୁର ନିର୍ମାଇ ବିଧିମତେ ॥
ପୂର୍ବ ପଶ୍ଚିମ ମୁଖ କରି । ପ୍ରତି ମନ୍ଦିର ସମ ସରି ॥
ଗଣାରେ ଛନିଶତ ପୁର । କହି ନୁହଇ ଶୋଭା ତାର ॥
ଗ୍ରାମ ବାହାର ବେଢ଼ା ପାଖେ ରଖାଇ ସମସ୍ତ ପାଠକେ ॥
ଲୋହକାରକ ଯେ ସୁନାରୀ । ବଢ଼ାଇ ଗୁଡ଼ିଆ ଶଙ୍ଖାରି ॥
ରଜକ ରାଉତ ଭଣ୍ଡାରୀ । ଗ୍ରାମ ରକ୍ଷକ ଆଦି କରି ॥

ଅନେକ ଧନ ବଖ୍ୟାଂସିଲେ । ଅନରୂପରେ ବାସ୍ତୁ କଲେ ॥
ଗ୍ରାମ ବାହାରେ ଶିବ ଆଳ । ଆବର ଚଣ୍ଡିକା ଦେଉଳ ॥
ଗ୍ରାମ ମଧ୍ୟରେ ବିଷ୍ଣୁ ସ୍ଥାନ । କେ କଦ୍ଧୁ ମଣ୍ଡପ ଶୋଭନ ॥
ପ୍ରତି ମନ୍ଦରେ ଦ୍ୱାରପୂର୍ଣ୍ଣ । ତୁଳସୀ ଚଉରା ଶୋଭନ ॥
କରାଇ ସେ ମହାରାଜନ । ବରଣ କଲେକ ବ୍ରାହ୍ମଣ ॥
ଦୂତ ପେଷିଲା ଦଣ୍ଡଧାରୀ । ଗୃହ ଦିଗକୁ ବିପ୍ର ବରି ॥
ଅଇଲେ ଶତେ ଆଠ ଘର । ଏକୁ ଆରେକ ଶୋଭାକର ॥
ସର୍ବେ ଅଷ୍ଟମନ୍ତ୍ର ବେଦଗର୍ଭ । କେହୁ ବା ପଣ୍ଡିତ ସମ୍ଭବ ॥
ଏକୁଁ ଆରେକ ତେଜୋମୟେ । ଦ୍ୱିଶନ୍ତ ବ୍ରହ୍ମବେଷ୍ଟ ପ୍ରାୟେ ॥
ବୋଇଲେ ଶୁଣ ମହାଜନେ । ମୁଁ ଯାହା କହୁଛି ବଚନେ ॥
ସର୍ବେ ଏ ସ୍ଥାନେ ବାସ କର । ଆରାଧି ବିଷ୍ଣୁଙ୍କ ପୟର ॥
ଏକଚିତ୍ତ ଶୁଦ୍ଧମନେ । ହୋମ କରିବ ପ୍ରତିଦିନେ ॥
କେବଳ ବିଷ୍ଣୁ ପ୍ରୀତି ଅର୍ଥେ । ଅନ୍ୟ କଳ୍ପନା ନାହିଁ ଚିତ୍ତେ ॥
ଏତେକ ମାଗୁଛି ମୋହର । ଏହା କରିବ ବିପ୍ରବର ॥
ଯେ ତୁମ୍ଭ ଅନ୍ନ ବସ୍ତ୍ରମାନ । ତାହା ଖଞ୍ଜିବେ ଭଗବାନ ॥
ତାହା ଶୁଣିଣ ବିପ୍ର ଯେତେ । ସମ୍ମତ ଦେଲେ ଯେଝାମତେ ॥
ରହିଲେ ସେହି ପୁରେ ଯାଇ । ଅତି ଆନନ୍ଦମନ ହୋଇ ॥
ତା ଦେଖି ସେ ମହାରାଜନ । ଖଞ୍ଜିଲେ ସମ୍ପୂର୍ଣ୍ଣ ଭୋଜନ ॥
ଯେଝା କୁଟୁମ୍ବ ଅନୁରୂପେ । ଧନ ତଣ୍ଡୁଳ ଦେଲେ ଆପେ ॥
ଶିବ ଚଣ୍ଡିକା ପୂଜାମାନ । ବିଷ୍ଣୁଙ୍କ ଚରିତ୍ର ବିଧାନ ॥
ଖଞ୍ଜିଲେ ବିଧିମତ କରି । ତୁଳସୀ ଆରୋପଣ କରି ॥
ଡକାଇ ପାଠକ ମାନଙ୍କୁ । ଅନେକ ଧନ ଦେଲେ ତାଙ୍କୁ ॥
ବୋଇଲେ ବିପ୍ରଙ୍କ ଚରଣେ । ସେବା କରିବ ଅନୁକ୍ଷଣେ ॥
ଜଳର ନିମନ୍ତେ ପୋଖରୀ । ଖୋଳାଇ ଦେଲେ ଯତ୍ନକରି ॥
ସର୍ବ ପ୍ରତିଷ୍ଠା ବିଧି କଲେ । ବିପ୍ରଙ୍କ ହସ୍ତେ ଦାନ ଦେଲେ ॥

ଘୃତ ଚନ୍ଦନ ଆଦି ଯେତେ । ଖଞ୍ଜିଲେ ହୋମର ନିମନ୍ତେ ॥
ଯୋଗାଇ ବିପ୍ରଙ୍କ ସମ୍ମୁଖରେ । ଚଳିଣ ଗଲେ ନୃପବରେ ॥
ଶୁଣ ସୁମନ ଶୁଦ୍ଧ ଚିତ୍ତେ । ଏଥି ଉପରୁ କଥା ଯେତେ ॥
ବ୍ରାହ୍ମଣେ ବିଷ୍ଣୁ ପ୍ରୀତି ଅର୍ଥେ । ହୋମଯେ କଲେ ନିତ୍ୟେନିତ୍ୟେ ॥
ପ୍ରଭାତୁ ଉଠି ସ୍ନାନ ସାରି । ଦ୍ୱାଦଶ ତିଳକହିଁ କରି ॥
ପଦ୍ମ ପୁଷ୍କର ଯେ ରୁଦ୍ରାକ୍ଷ । ସ୍ଫଟିକ ମାଳା କାହା ବକ୍ଷ ॥
ତୁଳସୀ ମାଳା କାହା ଗଳେ । ବିଭୂତି ଚନ୍ଦନ କପାଳେ ॥
ହସ୍ତରେ କୁଶ ଗଣ୍ଡୁ ପାଣି । ପିନ୍ଧି ସୁଝୀନବସ୍ତ୍ର ଧୋତି ॥
ଶିବଙ୍କୁ ଦରଶନ କରି । ବିଷ୍ଣୁ ପ୍ରଥମ ପୂଜା ସାରି ॥
ବସନ୍ତି ଯେଝା ଘରେ ଯାଇଁ । ହୋମ କରନ୍ତି ବେଦଧ୍ୟାୟୀ ॥
ଆସନ ପାଦାସନ ବିଧି । ଅଙ୍ଗ ଆସନ ଭୂତ ଶୁଦ୍ଧି ॥
ଯେ ଷଡ଼ଙ୍ଗ ସ୍ଥାନମାନ । ଛୁଇଁଣ ନାସିକା ଶ୍ରବଣ ॥
ଶୁଦ୍ଧ କରନ୍ତି ନିଜ ଗାତ୍ର । ବେଗେ ଲଗାନ୍ତି ଅଗ୍ନି ହୋତ୍ର ॥
ସକଳେ ବିଷ୍ଣୁ ପ୍ରୀତି ଅର୍ଥେ । ହୋମ କରନ୍ତି ବିଧିମତେ ॥
ଏହି ପ୍ରକାରେ ପ୍ରତିଦିନେ । କରନ୍ତି ସର୍ବ ବିପ୍ରଗଣେ ॥
ଅଷ୍ଟଦିନରେ ରାଜା ଥରେ । ବିଜୟେ କରନ୍ତି ସେ ପୁରେ ॥
ବିଷ୍ଣୁଙ୍କୁ ଦଣ୍ଡବତ କରି । ତାହାଙ୍କ ଆଶୀର୍ବାଦ ଧରି ॥
ହରିଦ୍ରା ତଣ୍ଡୁଳ ତୁଳସୀ । ଧରି ଆନନ୍ଦେ ମୁଣ୍ଡେ ଖୋସି ॥
ବିଷ୍ଣୁ ଶଙ୍କର ଦରଶନ । ଦେଖି ପ୍ରସାଦ ପାଦମାନ ॥
ସମସ୍ତ ଜାଗ୍ରତ କରାଇ । ଚଳିଣ ଯାନ୍ତି ନରସାଇଁ ॥
ପୁଣି ହୁଅନ୍ତେ ଆଠ ଦିନ । ଆସି କରନ୍ତି ଦରଶନ ॥
ଏମନ୍ତେ କେତେ ଦିନ ଗଲା । ତ: ଯଶ ଜଗତେ ବ୍ୟାପିଲା ॥
ପୁଣିହି ବଢ଼ିଲା ବହୁତ । ବିପ୍ରେ ହୋଇଲେ ତେଜୋବନ୍ତ ॥
ଏମନ୍ତ କେତେ ସମ୍ବତ୍ସରେ । ଉପରୁ ଶୁଣ ନୃପବର ॥
ଯେ ଦଶରଥ ମହାରାଜା । କରାଇ ବହୁତ ତପସ୍ୟା ॥

ସଙ୍ଗେ ଅନେକ ସଙ୍ଗୀ ଧରି । ଗଜ ତୁରଙ୍ଗ ଆଦି କରି ॥
ପ୍ରବେଶ ବନ୍ଧୁଙ୍କ ଭବନେ । ଗ୍ରାମେ ପୂରିଲେ ଲୋକମାନେ ॥
ଯେ ଦାଣ୍ଡ ବାଡ଼ି ଆଦି କରି । ରହିଅଛନ୍ତି ଜନ ପୂରି ॥
ଏମନ୍ତ ବେଳେ ବିପ୍ରଗଣ । ଅକ୍ଷତ ତଣ୍ଡୁଳ ଧରିଣ ॥
ଯାଇଁ ଭେଟିଲେ ଦଣ୍ଡଧାରୀ । ଅନେକ ଆଶୀର୍ବାଦ କରି ॥
ଭେଟନ୍ତି ଯେ ଅଛନ୍ତି ବ୍ରାହ୍ମଣ । ଏମନ୍ତ ବେଳେ କଥା ଶୁଣ ॥
ବାରେ ଯେ ଦ୍ୱିଜଙ୍କର ଘର । ଏକଇ କୁଳବଧୂ ତାର ॥
ଦାଇବେ ଅତ୍ୟନ୍ତ ସୁନ୍ଦରୀ । ଯୁବାବୟସ ମନୋହାରୀ ॥
ମୂତ୍ର ପୀଡ଼ିଲା ଆସିଣ ତାକୁ । ବିସ୍ମୃତି କଲା ତା ମନକୁ ॥
ଦାଣ୍ଡବାଡ଼ରେ ଲୋକମାନେ । ପୂରିଣ ଛନ୍ତି ସର୍ବ ସ୍ଥାନେ ॥
ଯେଣିକି ଗଲେ ଲୋକ ତହିଁ । କି ବୁଦ୍ଧି କରିବ ସେ ମୁହିଁ ॥
ଏମନ୍ତ ବିଚାରି ମନରେ । ମୂତିଲା ସେ ହୋମ କୁଣ୍ଡରେ ॥
ପାଉଁଶ ଘୋଡ଼ାଇଣ ଦେଲା । ନିଶ୍ଚିନ୍ତ ହୋଇଣ ରହିଲା ॥
ଏମନ୍ତବେଳେ ନୃପବର । ସୈନ୍ୟ ସଙ୍ଗତେ ଘେନି ତାର ॥
ମେଲାଣି ହୋଇ ଚଳିଗଲେ । ବ୍ରାହ୍ମଣେ ଯେଝାଘରେ ଗଲେ ॥
ଆସିଣ ଶ୍ୱଶୁର ତାହାର । ହୋମାଗ୍ନି ପରେ ଢାଳେ କ୍ଷୀର ॥
ତହିଁ ଦେଖିଲେ ଜ୍ୟୋତିର୍ମୟେ । ବିଚିତ୍ର ସୁବର୍ଣ୍ଣ ଚକଏ ॥
ଏ କି ବିଚିତ୍ର ବୋଲି ମନେ । ପୁଚ୍ଛିଲେ ଗୃହ ସର୍ବଜନେ ॥
ସମସ୍ତେ ନ ଜାଣୁ ବୋଇଲେ । ବୋହୂ ଯେ ଗର୍ଭିଣୀରେ ଥିଲେ ॥
ହସି ବୋଇଲା ଶୁଣ ତାତ । ଆସିଣ ମାଡ଼ିଲା ମୋତେ ମୂତ ॥
କେଉଁଣେ ତ ବାଟ ନ ପାଇଲି । ହୋମାଗ୍ନି କୁଣ୍ଡରେ ମୂତିଲି ॥
ତେଣୁ ହୋଇଲା ପରା ସୁନା । ମନେ ବିଚାରି କର ଜାଣ ॥
ତାହା ଶୁଣିଣ ଦ୍ୱିଜବର । ଆନନ୍ଦ ହୋଇଲା ଅପାର ॥
ବୋଇଲା ଏ ଯେବେ ସ୍ୱରୂପ । କିସ କରିବ ଏବେ ନୃପ ॥
ଦାରିଦ୍ର୍ୟ ଛାଡ଼ିଲା ଏଥର । ତୁଟିବା କାଳ ପ୍ରଣ୍ଣତର ॥

ଏମନ୍ତେ ମନେ ମୋଦ ଭରି । ଅନ୍ନ ଭୋଜନ ସର୍ବ ସାରି ॥
ନିଶ୍ଚିନ୍ତ ହୋଇଣ ରହିଲ । ରଜନୀ ଯାଇ ଦିନ ହେଲ ॥
ପୁଣି ସେ କଲେ ଅଗ୍ନି ହୋମ । ବୋହୂକୁ ବୋଲେ କର ମୂନ୍ଦ ॥
ଶ୍ୱଶୁର ଅଲଗେ ରହିଲା । ବୋହୂ ତା ହସି ହସି ଗଲା ॥
ବସିଲା ଅଗ୍ନି ପାଖୁଣରେ । ମୂନ୍ଦ ସେ କଲା ହୋମପତ୍ରରେ ॥
ସେ ଅଗ୍ନି ଲଗାଇ ଲେଉଛି । ଦେଖିଲା ସୁନା ଚକ ଗୋଟି ॥
କେ କହୁ ବିପ୍ରର ଆନନ୍ଦ । ମୁଖ ବିକାଶେ ପୂର୍ଣ୍ଣଚନ୍ଦ୍ର ॥
ପ୍ରତିଦିନରେ ଏହିମତ । କରଣ ସୁବର୍ଣ୍ଣ ରଖନ୍ତ ॥
ଦେଖି ସୁମନ ସେ ବ୍ରାହ୍ମଣ । ଏଡ଼େ ଦୁର୍ବୁଦ୍ଧି ମୂଢ଼ ଜାଣ ॥
ବିଚାରି ନ କରି ତା ମନ । କେବଳ କଲା ମୂଳ ଧନ ॥
ଯେ ବିଷ୍ଣୁ ପ୍ରୀତି ଅର୍ଥେ ଧନ । ଦଇବେ ଅଗ୍ନି ବିଷ୍ଣୁ ସମ ॥
ମହା କାବ୍ୟରେ ଏ ପ୍ରମାଣ । ସକଳ ଜୀବେ ପରିତ୍ରାଣ ॥
ଏହା ମୁଁ କେମନ୍ତେ କରିବି । ନରକେ ସିନା ସଞ୍ଚରିବି ॥
ଏମନ୍ତ ମନେ ନ ବିଚାରି । କେବଳ ଧନ ମୂଳ କରି ॥
ପାପ ମନରେ ଏହିମତ । କଲା ସେ ଚଣ୍ଡାଳ ଦୁର୍ମତି ॥
ତାହା ଜାଣିଲେ ସେ ଗ୍ରାମରେ । ସୁବର୍ଣ୍ଣ କଲେ ପ୍ରତିଘରେ ॥
ସେ ପୁଣ୍ୟ ହୋମ ନାଶକଲେ । ସମସ୍ତେ ବିଷ୍ଣୁ ଦ୍ରୋହୀ ହେଲେ ॥
କେହି ନ ବୋଇଲେ ଏମନ୍ତ । କରିବା ନୁହଇ ଉଚିତ ॥
ସର୍ବେ ଅଜ୍ଞାନ ବୁଦ୍ଧି କଲେ । ଅମୃତ ଭାଣ୍ଡେ ସୁରା ଦେଲେ ॥
ଶୁଣ ହେ ମନ ପୁଣ୍ୟମୟେ । ଏଥି ଉତ୍ତରୁ ଯେ କଥାଏ ॥
ସେ ଗ୍ରାମେ ଏକଇ ବ୍ରାହ୍ମଣ । ଅତି ଦରିଦ୍ର ସେହୁ ପୁଣ ॥
ତାର କୁଟୁମ୍ବ ଜଣ ସାତ । ବେନି ଦୁହିତା ବେନି ସୁତ ॥
ପତ୍ନୀ ତା ଅଟଇ ମୁଖରା । ସ୍ୱାମୀର ବଚନ ନ କରି ॥
ନାମ ତା ଦୀନବନ୍ଧୁ ଓଡ଼ା । ଜାଣଇ ପାପ ପୁଣ୍ୟ କଥା ॥
ହରି ଭଜନ ମୂଳ ତାର । ନ ଛାଡ଼େ ଆଚାର ବେଭାର ॥

ସକଳ ଜୀବେ ଦୟାବନ୍ତ । ବଚନ କହଇ ଅମୃତ ॥
ନିଷ୍କାମୀ ନିର୍ଲୋଭୀ ନିର୍ଭୟେ । କେବଳ ସଦାନନ୍ଦମୟେ ॥
ନିତ ତା ଯୋଗ ସେବାମାନ । ଯେ ତାହା ଖଞ୍ଜିଛି ରାଜନ ॥
ତହୁଁ ଚଳଇ ଧର୍ମ ଦାନ । ବାକି ଯା କରଇ ଭୋଜନ ॥
ଦୁଃଖୀ ଦରିଦ୍ର ଯେବା ଆସି । ତାହାକୁ ଭୋଜନ ପ୍ରକାଶି ॥
ସେ ଅନ୍ନ ଦେଇ ତାଙ୍କ ପାଶେ । ଆପଣେ ରହେ ଉପବାସେ ॥
ତହିଁ ଶୋଚନା ନାହିଁ ତାର । ପ୍ରଭୁଙ୍କୁ କରି ନିର୍ଭର ॥
କେବଳ ଶ୍ରୀହରି ଭଜନ । ପ୍ରଭୁରେ ଦେଇଥାଏ ମନ ॥
ଏମନ୍ତେ କେତେ ଦିନଠାରେ । ବସିଛି ହୋମ କରିବାରେ ॥
ଆସନ ନିଷ୍ଠା ସେହିକରି । ଶ୍ରୁବେ ଗୋ ଘୃତ ଅଛି ଭରି ॥
ତୁଣ୍ଡରେ ବେଦମନ୍ତ୍ର ଧ୍ୟାୟି । ଅଗ୍ନି କୁଣ୍ଡରେ ସେ ଢାଳଇ ॥
ଏମନ୍ତ ବେଳେ ପତ୍ନୀ ଆସି । କହଇ ମୃଦୁ ମୃଦୁ ହସି ॥
ବୋଇଲା ଶୁଣ ପ୍ରାଣେଶ୍ୱର । ଦାରିଦ୍ର୍ୟ ଛାଡ଼ିବ ଆମ୍ଭର ॥
ଆଜ ମୁଁ ପ୍ରଭାତ ସମୟେ । ଗଲି ପଣ୍ଡାଙ୍କ ଘର ଯାଏ ॥
ଯେଣେ ଗୃହିଁଲି ଘରବାଡ଼ । ସୁବର୍ଣ୍ଣ ଦିଶେ କୁଢ଼ କୁଢ଼ ॥
ତା ଦେଖି ହେଲି ଆଚମ୍ବିତ । ପୁଚ୍ଛିଲି ପଣ୍ଡାଙ୍କ ଅଗ୍ରତ ॥
ସେ ମୋତେ ନ କହିଲେ କିଛି । ପଣ୍ଡାଙ୍କ ପତ୍ନୀକି ମୁଁ ପୁଚ୍ଛି ॥
ସେ ମୋତେ କହିଲେଟି ଯାହା । ଶୁଣ ମୁଁ କହୁଅଛି ତାହା ॥
ହୋମ ଯେ ସରି ଲଉଥିରେ । ମାଇପେ ମୂତନ୍ତି ତହିଁରେ ॥
ତହୁଁ ସୁବର୍ଣ୍ଣ ହୋଏ ଜାତ । ମିଥ୍ୟା ନୁହଇ ଏହୁ ସତ ॥
ପ୍ରତି ଘରରେ ଏହା କରି । ସୁବର୍ଣ୍ଣମାନ ଅଛି ପୂରି ॥
ଆମ୍ଭେ ଯେ ତେମନ୍ତ କରିବା । ଦାରିଦ୍ର୍ୟ ଦୁଃଖୁ ତରିଯିବା ॥
ଏମନ୍ତ ଶୁଣି ସେ ବ୍ରାହ୍ମଣ । ଛୁଇଁଲା ପୃଥିବୀ ଶ୍ରବଣ ॥
ରୋମ ଉଦ୍‌ଗମ ଅଙ୍ଗେ ତାର । କମ୍ପିଲା ଚିବୁକ ଅଧର ॥
ଖର ନିଃଶ୍ୱାସ ଊର୍ଦ୍ଧ୍ୱେ ଛାଡ଼ି । ମସ୍ତକେ ବେନିକର ଯୋଡ଼ି ॥

ଦାନବନ୍ଧୁ ଓଝା

ପୃଷ୍ଠା ୨୯୦-୨୯୧



ଦାନବନ୍ଧୁ ଓଝା ତା' ପରିବାରସହ ଗ୍ରାମସଙ୍ଘରୁ ଗୋଡ଼ କାଢ଼ିବାରୁ ସମଗ୍ର ଗ୍ରାମ ଚଳଚ୍ଚିତ୍ର ଖସି ଯାଉଛି ।

ବୋଇଲା କି କହିଲୁ ମୋତେ । ଏ ପାପୁ ତରିବ କେମନ୍ତେ ॥
ଯେବଣ ହୋମ ଆରୋପଣ । ହୋଇଛୁ ଏଣିକି ନାରାୟଣ ॥
ସାକ୍ଷାତେ ପ୍ରଭୁ ବଟେ ଏଥି । ଏହା ତୁ ବୋଇଲୁ କେମନ୍ତେ ॥
ଶୁଣି ତା ପତ୍ନୀ କ୍ରୋଧଭରେ । କହିଲା ସ୍ୱାମୀର ଆଗରେ ॥
ଜାଣିଲି ତୋର ବିପ୍ରପଣ । ତାଙ୍କଠାରୁ କି ବଡ଼ ଜାଣ ॥
ପ୍ରଥମେ ଭଟ୍ଟ ମିଶ୍ର ଘର । ତହାଉ ଷଡ଼ଙ୍ଗୀ ଆବର ॥
ଏ ପଣ୍ଡା ପାଣିଗ୍ରାହୀ ଦାସ । ଏକକୁ ଆରେକ ବିଶେଷ ॥
ଏମାନେ କଲେ ଯେଝାମତେ । ତୁ ନାହିଁ କରୁ କପାଁ ମୋତେ ॥
କରିବା ପଚ୍ଛେ ପାଞ୍ଚଦାନ । ସ୍ୱଭାଗ୍ୟେ ଯା ମିଳିବ ସୁବର୍ଣ୍ଣ ॥
ଖାଇ ବଞ୍ଚିବା ସମ୍ବତ୍ସରେ । ଶୁଣିବ୍ରାହ୍ମଣ କ୍ରୋଧଭରେ ॥
ଗେଲେ ନବୋଲ ଆଉ ମୋତେ । ଜୀବନ ହାରିବ ସାକ୍ଷାତେ ॥
ତା ଶୁଣି ବ୍ରାହ୍ମଣୀ ବୋଇଲା । କାହିଁକି ଏଡ଼େ କାଷ୍ଟାହେଲ ॥
ଏ କଥା କହ କିମା ମୋତେ । ତେବେ ମୁଁ ଯିବଇଁ ପରତେ ॥
ତା ଶୁଣି ବୋଲଇ ବ୍ରାହ୍ମଣ । ଅଜ୍ଞାନୀ ପାମରୀ ଲୋ ଶୁଣ ॥
ସେ ସବେ ବଡ଼ପଣ ଜାଣ । ମୁଁ ନୋହେ ତେମନ୍ତ ବ୍ରାହ୍ମଣ ॥
ମୋହର ଥିଲେ ଗ୍ରାମଥିବ । ମୁଁ ଗଲେ ପାତାଳେ ପଡ଼ିବ ॥
ଆଉ ନ ବୋଲ ମୋତେ କିଛୁ । ତା ଶୁଣି ବୋଲଇ ମୃଗାକ୍ଷୀ ॥
ଏ କଥା ଯେବେ ସତ୍ୟ ତୋର । ଦେଖାଅ ମୋହର ଆଗର ॥
ନୋହିଲେ କର ତୁ ସୁବର୍ଣ୍ଣ । ଖାଇ ବଞ୍ଚିବା କିଛୁ ଦିନ ॥
ଶୁଣି ବ୍ରାହ୍ମଣ କ୍ରୋଧ ହୋଇ । ବହନ ଅନଳ ଜାଳଇ ॥
ଅନ୍ନ ଭୋଜନ ସେ ନ କରି । ଶୋଇଲା କୁଶାସନ ପାରି ॥
ବ୍ରାହ୍ମଣୀପୁନ ପୌନ୍ଦ୍ରୀ ଧରି । ଶୋଇଲା ଦକ୍ଷିଣ ଗମ୍ଭିରୀ ॥
ନ ଭକ୍ଷି ଅନ୍ନ ପାଣି କେହି । ଯେଝାରେ କ୍ରୋଧମନ ହୋଇ ॥
ଏମନ୍ତେ ଗଲା ତିନି ଦିନ । ତାହା ଜାଣିବିଲେ ଭଗବାନ ॥
ସେ ବିପ୍ର ପାରୁଶରେ ଆସି । ରଙ୍ଗ ଅଧରେ ମନ୍ଦ ହସି ॥

ବୋଇଲେ ଶୁଣ ବିପ୍ରବର । ତୋ ମନେ ସଂଶୟ ନକର ॥
ତୁ ଯାହା ବୋଇଲୁ ବଚନ । ସେ କଥା କେବେ ନୋହେ଼ଆନ ॥
ତୋହର ହସ୍ତୁ ପଦ୍ମ ପୁଷ୍ପ । ତହିଁ ଆମ୍ଭର ବଡ଼ ଆଶ ॥
ଏବେ ଯେ ଉତ୍ପାଦନ ହେଲା । ଅନ୍ନ ଭୋଜନ ମୋ ନୋହିଲା ॥
ଆମ୍ଭେ ରହିଲୁ କପଟବାସେ । ତୋର ଅଦ୍ଭୁତ ଦେଖିବା ଆଶେ ॥
ତୁ ଯେତେବେଳେ ଶୁଦ୍ଧଚିତ୍ତେ । ମନ୍ତ୍ର ଉଚ୍ଚାରୁ ଜିହ୍ୱାଗ୍ରତେ ॥
ଅନଳ କୁଣ୍ଡେ ଘୃତ ଦେଉ । ଆମ୍ଭେ ତା ଅତି ସୁଖେ ପାଉ ॥
ଏ କଥା ସତ୍ୟକରି ଘେନ । ଉଠ ତୁ କର ହୋ ଭୋଜନ ॥
ଏମନ୍ତେ କହି ଭାବଗ୍ରାହୀ । ତକ୍ଷଣେ ଅନ୍ତର୍ଦ୍ଧାନ ହୋଇ ॥
ଚେତନା ପାଇ ବେଗେ ଉଠି । ଗୃହ ଦିଗକୁ ଦେଲା ଦୃଷ୍ଟି ॥
ଯାକେ ଦେଖିଲା କେହି ନାହିଁ । ମନେ ବିଚାର କଲା ସେହି ॥
ବୋଇଲା ନିଶ୍ଚେ ସେ ଶ୍ରୀହରି । ମୋରେ କରୁଣା ଗଲେ କରି ॥
ବୋଲି ଉଠିଲା ଦ୍ୱିଜବର । ମୋ ଜୀବ ହୋଇଲା ଉଦ୍ଧାର ॥
ଡାକିଲା ପତ୍ନୀନାମ ଧରି । ବୋଇଲା ଉଠ ବେଗେ କରି ॥
ବାଳକେ ହୋଇଲେ ଅନାଥ । ହତ୍ୟା କା ପାଇବୁ ଗୋ ଭୂତ ॥
ତା ଶୁଣି ବୋଲଇ ସୁନ୍ଦରୀ । ଏବେ କା ଯାଉ ସୁନା କରି ॥
ନୋହିଲେ ଏ ଗ୍ରାମ କେବଳ । ପଡ଼ିବ କେବେ ରସାତଳ ॥
ଦେଖିବ ନୟନ ମୋହର । କେବେହି ପତ୍ନୀ ମୁଁ ତୁମ୍ଭର ॥
ନୋହିଲେ ଗୁଡ଼ ମୋର ଆଶ । ତୁ ସୁଖେ କର ଗୃହବାସ ॥
ତା ଶୁଣି ବୋଲଇ ବ୍ରାହ୍ମଣ । ଏ ମୋର ପିଣ୍ଡେ ପଞ୍ଚପ୍ରାଣ ॥
ଥିଲେ ସୁବର୍ଣ୍ଣ କରିବାର । ନୁହଇ ସତ୍ୟ ସତ୍ୟ ମୋର ॥
ଶୁଣି ବ୍ରାହ୍ମଣୀ ବୋଲେ ପୋଡ଼ । ଦେଖା ଧରଣୀ ଛାଡ଼ ପଡ଼ ॥
ବ୍ରାହ୍ମଣ ବୋଇଲା ଲୋ ହେଉ । କେତେ କଥାଳ କରୁଥାଉ ॥
ଶୁଣି ଉଠିଲା ସେ ବ୍ରାହ୍ମଣୀ । ରନ୍ଧନ କଲା ତତକ୍ଷଣି ॥
ବାଳକ ବାଳିକାଙ୍କୁ ଦେଲା । ନିଜ ପତିକି ପରଷିଲା ॥

ବ୍ରାହ୍ମଣ ଶୁଚିମନ୍ତ ହୋଇ । ଆସନେ ବସିଲେକ ଯାଇ ॥
ପ୍ରଭୁଙ୍କୁ କଲା ନିବେଦନ । ଆନନ୍ଦେ କଲାକ ଭୋଜନ ॥
ତୁରିତେ ହସ୍ତ ମୁଖ ଧୋଇ । ଉଠିଲା ବେଗବେଗ ହୋଇ ॥
ହସ୍ତରେ ଶ୍ରୁବ ଗୋଟି ଧରି । ବୋଲଇ ଶୁଣ ହଟନାରୀ ॥
ଏଥେ ପାଇବୁ କେଉଁ ଯଶ । ଏତେକ ଲୋକେ ଯିବେନାଶ ॥
ନ କର ନ କର ଏମନ୍ତ । ଶୁଣି ବୋଲଇ ନାରୀ ସତ ॥
ତୁ ଯାହା ଭଣ୍ଡୁ ଅଛୁ ମୋତେ । ଏ କଥା ହୋଏ କି ଜଗତେ ॥
ଶୁଣି ବ୍ରାହ୍ମଣ ଖର ଶ୍ୱାସ । ତେଜି ପତ୍ନୀକି ବୋଲେ ଆସ ॥
ପୁନି ଦୁହିତା ସଙ୍ଗେ କରି । ଚାଲ ଗୋ ତୁ ପ୍ରାଣଈଶ୍ୱରୀ ॥
ଗୃହ ଜଞ୍ଜାଳ ଯେତେ ମୋର । ଗୁଡ଼ିଯିବା ଗୋ ଦେଶାନ୍ତର ॥
ଏମନ୍ତ ଶୁଣି ସେ କାମିନୀ । ପୁନି ଦୁହିତା ସଙ୍ଗେ ଘେନି ॥
ଚଳିଣ ଗଲେ ସେ ତୁରିତେ । ମିଳିଲେ ଗ୍ରାମ ସନ୍ଧିଗତେ ॥
ସେ ହରିଭକ୍ତ ହରି ଧ୍ୟାଇ । ଗ୍ରାମ ବାହାରେ ପାଦଦେଇ ॥
ଆରେକ ଚରଣ କାଢ଼ିଲା । ମୋଦୋଷନାହିଁଟି ବୋଇଲା ॥
ତା ଶୁଣି ବୋଇଲା ଜଞ୍ଜାଳି । ମୋ ମୁଖେ ପରି ଦେଲୁ କାଳି ॥
ମୁଁ ଏହା ନ କରିଲେ ବାରେ । ଲେଉଟିଯିବି କି ତୋ ଘରେ ॥
ଶୁଣି ତା ନିଭିଶ ବଚନ । ବିପ୍ର ଚିନ୍ତିଲା ଭଗବାନ ॥
ଆର ଚରଣ ଟେକି ଦ୍ୟନ୍ତେ । ଶବଦ ଶୁଭିଲା ନିର୍ଘାତେ ॥
ସେ ଗ୍ରାମ ଖଣ୍ଡ ସନ୍ଧି ଘେନି । ଖସିଣ ପଡ଼ିଲା ମେଦିନୀ ॥
ତା ଦେଖି ବିପ୍ର ଆହା ରଟି । ପକାଇଦେଲା ଶ୍ରୁବ ଗୋଟି ॥
ସେ ଶ୍ରୁବ ପଡ଼ନ୍ତେ ମେଦିନୀ । ରହିଲା ସେହିଠାରେ ଶୁଣି ॥
ଅର୍ଦ୍ଧ ପାତାଳ ସ୍ଥାନେ ରହି । ବେଦନ କଲେ ସର୍ବେ ତହିଁ ॥
ସ୍ତ୍ରୀରି ପୁରୁଷଙ୍କ ବୋବାଳି — । ଶୁଣି ଜଗତେ ହେଲ ହୁରି ॥
ପଡ଼ିଣ ଗଲେ ରାଜ୍ୟ ଲୋକେ । ତା ଦେଖି ଧାଇଁଲେ ଅନେକେ ॥
ତା ଶୁଣି ଯଶଚନ୍ଦ୍ର ରାୟେ । ତକ୍ଷଣେ କଲେକ ବିଜୟେ ॥

ପୁଚ୍ଛିଲେ ତାଙ୍କୁ ଉପଦେଶ । ମିଳିଲେ ତାହାଙ୍କର ପାଶ ॥
ବିପ୍ର କହିଲେ ବଧିମତ । ଶୁଣି ନୃପତ ଆଚମ୍ବିତ ॥
ରହିଲେ ସ୍ତମ୍ଭୀଭୂତ ହୋଇ । ବଦନୁ ବାକ୍ୟ ନ ସ୍ଫୁରଇ ॥
ପୁଣ ବୋଇଲେ ବିପ୍ର ଶୁଣ । ତୋତେ ମା ଦେଖିଲି ନୟନ ॥
ପୂର୍ବେ ମୋ କେତେ ପୁଣ୍ୟ ଥିଲା । ତେଣୁ ଏ ସୁଯୋଗ ଘଟିଲା ॥
ଅନେକ ଅଳଙ୍କାରଭର । ପାଟ ବାନ୍ଧିଲେ ଦଣ୍ଡଧାରୀ ॥
ଜୀବନ୍ତେ ଅନ୍ନ ବସ୍ତ୍ର ଦେଇ । ଚରଣେ ହୋଇଲେ ବିନୟୀ ॥
ବୋଇଲେ ସତ୍ୟ ଆଜଠାରୁ । ତୁମ୍ଭେ ମୋ ପିତା ମହାଗୁରୁ ॥
ମୁଁ ତୁମ୍ଭ ଚରଣରେ ଦାସ । ବୋଲି ଖଞ୍ଜିଲେ ଅନ୍ନବାସ ॥
ତହୁଁ ଚଳିଲେ ନରସ୍ୱେ । ଭୂମି ପାତାଳେ ଥିବାଯାଏ ॥
ଅନେକ ଯନ୍ତ୍ରମାନ କରି । ବିପ୍ରଙ୍କ କୁଟୁମ୍ବ ଉଦ୍ଧାରି ॥
ସବୁଙ୍କୁ ଜୀବଦାନ ଦେଇ । ବିଜୟ କଲେ ନରସାଇଁ ॥
ଆଜହୁଁ ସେ ଭୂମି ପାତାଳେ । ରହି ଅଛଇ ମହୀତଳେ ॥
ଶୁଣ ସୁମନ ନୃପନାଥ । ଦୃଢ଼ତା ମହିମା ଏମନ୍ତ ॥
ସେ ବିପ୍ର ଅନ୍ତିମକାଳରେ । ଲୀନ ହୋଇଲା ହରିଠାରେ ॥
କହଇ ବିପ୍ର ରାମଦାସ । ମୂଳଟି ଅଟଇ ବିଶ୍ୱାସ ॥
ସେ ହରି ପଦ୍ମପାଦ ତଳେ । ମୋ ଚିତ୍ତ ରହୁ ପ୍ରେମଭୋଳେ ॥
ସୁଜନେ ଏ ଆଶିଷ କର । ମୁଁ ତୁମ୍ଭ ଚରଣ କିଙ୍କର ॥

ଇତି ଶ୍ରୀ ଦାର୍ଢ୍ୟଭକ୍ତି ରସାମୃତେ ମନ ଚୈତନ୍ୟ
ସମ୍ବାଦେ ଦୀନବନ୍ଧୁ ଓତା ଦାର୍ଢ୍ୟଗ୍ରବ ବର୍ଣ୍ଣନେ
ନାମ ଚତୁଃତ୍ରିଂଶୋଽଧ୍ୟାୟଃ ।

# ପଞ୍ଚତ୍ରିଂଶ ଅଧ୍ୟାୟ
## ଗୀତାପଣ୍ଡା ସମ୍ବାଦ
### ଚୈତନ୍ୟ ଉବାଚ

ପୁଣି କହଇ ଚଇତନ । ଶୁଣ ହେ ସୁମନ ରାଜନ ॥
ଏ ବଡ଼ ଅପୂର୍ବ କଥାଏ । ପଦ ପଦକେ ସୁଧାମୟେ ॥
ଯେ କ୍ଷେତ୍ରମାନଙ୍କ ଉତ୍ତମ । ନାମ ଯା ଶ୍ରୀପୁରୁଷୋତ୍ତମ ॥
ଅଶେଷ ବ୍ରହ୍ମାଣ୍ଡର ସାର । ତହିଁ ପ୍ରବେଶ ହେଲେ ନର ॥
ସେ ନର ଲଭେ ଶୁଭାଶୁଭ । ଆଉ ନ ଦେଖେ ପୁଣି ଭବ ॥
ଏମନ୍ତ କ୍ଷେତ୍ରେ ତାର ଘର । ଜାତରେ ଅଟେ ଦ୍ୱିଜବର ॥
ତାର କୁଟୁମ୍ବ ପାଞ୍ଚଜଣ । ଅତି ଦରିଦ୍ର ସେ ବ୍ରାହ୍ମଣ ॥
ବେନି ଦୁହିତା ଏକ ସୁତ । ଆଉର ସେ ଦୁହେଁ ଯୁବତ ॥
ଏମନ୍ତ ପାଞ୍ଚଜଣ ଥାନ୍ତି । ଯାଚଞ୍ଚା କରି ସେ ବଞ୍ଚନ୍ତି ॥
କେବଳ ପ୍ରମାଣ ତାହାର । ନିତ୍ୟେ ସେ ଗୀତା ପଢ଼ିବାର ॥
ଅଠର ଅଧ୍ୟା ନିତ୍ୟେ ନିତ୍ୟେ । ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତେ ॥
ପଢ଼ିବା ପ୍ରମାଣ ତାହାର । ନ ଜାଣେ ସେ ଆନ ବେଭାର ॥
ତହିଁ ଉତ୍ତରେ ଭିକ୍ଷାଆଶେ । ଚଳଇ ସେ ଦେଶେ ବିଦେଶେ
ଭାଗ୍ୟେ ମିଳଇ ତାର ଯେତେ । ଆଣିଣ ଦିଏ ପତ୍ନୀହସ୍ତେ ॥
ନାରୀ ତା କରଇ ରନ୍ଧନ । ଗୋବିନ୍ଦେ କରି ନିବେଦନ ॥
ଭୋଜନ କରନ୍ତି ସମସ୍ତେ । ଏହି ଆନନ୍ଦେ ଥାନ୍ତି ନିତ୍ୟେ ॥
ଯେଣୁ ସେ ଗୀତାପଢ଼ା ପଣ୍ଡା । ତେଣୁ ଡାକନ୍ତି ଗୀତାପଣ୍ଡା ॥
ଏଣୁ ନାମହିଁ ମୂଳ ତାର । ସଂସାରେ ହୋଇଲା ପ୍ରଚୁର ॥
ଶ୍ରୀଭାଗବତ ଗୀତା ବିନେ । ଅନ୍ୟ ନ ଜାଣେ ତାର ମନେ ॥
ତେଣୁ ସେ ଜାଣେ ଗୀତାଅର୍ଥ । ମିଥ୍ୟା ଜାଣଇ ଏ ଜଗତ ॥
ଏ ଯେଉଁ ପୁତ୍ର ଦାରା ଧନ । ଏ ସର୍ବ ମାୟାର ବିଧାନ ॥
କେହି ଯେ ନୁହଇ କାହାର । କେବଳ ଭ୍ରମ ମାତ୍ର ସାର ॥

ଏମନ୍ତ ଭାବ ସେ କେବଳ [illegible] । [illegible] ଭଜନ କଲ ମୂଳ ॥
ଏମନ୍ତେ କେତେ ଦିନ ଗଲା । ଦୁର୍ଭିକ୍ଷ କାଳ ଆସି ହେଲା ॥
ଦ୍ୱିଜବର ଗ୍ରାମ ବୁଲିଗଲେ । ଭିକ୍ଷା ହେ ନ ମିଳିଲ ଭଲେ ॥
ତହିଁକି ଚିନ୍ତା ନାହିଁ କିଛି । ବୋଲେ ମୋ ଭାଗ୍ୟେ ଯାହା ଅଛି ॥
ଅଦୃଷ୍ଟ କଥା ମୂଳ କରି । କେବଳ ଭଜୁଥାଇ ହରି ॥
ଏମନ୍ତେ ଏକ ଦିନକର । ସ୍ନାନ କରଇ ଦ୍ୱିଜବର ॥
ମାଳା ତିଳକ ଭେକ ଧରି । ବସି ପଢ଼ଇ ଗୀତା ଧରି ॥
କେବଳ ଦୃଢ଼ କରି ମନ । ଗୀତା ସେ କରୁଅଛି ଗାନ ॥
ଗୋଟିଏ ଶ୍ଲୋକ ପଢ଼ି ସାରି । ତା ଅର୍ଥ ଭାବ ମନେ ଧରି ॥
ଅଙ୍ଗେ ପୁଲକ ଉଠୁଥାଇ । ନେତ୍ରୁ ଲୋତକ ଯାଏ ବହି ॥
କଣ୍ଠ ଗଦ୍‌ଗଦ ସ୍ୱରଭଙ୍ଗେ । ବୁଲାଇ ନୟନ ତରଙ୍ଗେ ॥
କମ୍ପଇ ଅଧର ଦଶନ । ବୋଲଇ ଆହେ ଭଗବାନ ॥
ମୁଁ ମହାପତିତ କେବଳ । ଶରଣ ତୋ ପାଦକମଳ ॥
ତୋ କୃପା ନୋହିଲେ ଅବଶ୍ୟ । ଏ ପାପୀ ଜୀବ ଗଲା ନାଶ ॥
ଏମନ୍ତ ମନେ ଧ୍ୟାନ କରି । ଚିନ୍ତଇ ନୀଳାଦ୍ରି କେଶରୀ ॥
ଏମନ୍ତ ବେଳେ କଥା ଶୁଣ । ତା ପୁତ୍ର ପୁତ୍ରୀ ବେନିଜଣ ॥
ଅନ୍ନ ନ ପାଇଣ ଆକୁଳେ । କାନ୍ଦନ୍ତି କ୍ଷୁଧାରେ ବିକଳେ ॥
ଧରିଣ ଜନନୀ ଚରଣ । ବୋଲନ୍ତି ବେଗେ ଯାଏ ପ୍ରାଣ ॥
ଯଦ୍ୟପି ନ ଦେବୁ ଆହାର । ଜୀବନ ଗଲାଟି ଆମ୍ଭର ॥
ତା ଶୁଣି ଜନନୀ ବିକଳ । ବେନି ନୟନୁ ବହେ ଜଳ ॥
ପଣ୍ଡାଙ୍କ ସମ୍ମୁଖରେ ଯାଇଣ । ବୋଲଇ ତୁମ୍ଭେ ଏବେ ଶୁଣ ॥
ତୁମ୍ଭେ ତ ଗୀତା କଲ ମୂଳ । କେ କହୁ ପିଲାଙ୍କ ବିକଳ ॥
ଏବେ ବହନ ଚଳିଯାଅ । କାହିଁ ବା କିଛି ହିଁ ଭିଆଅ ॥
ବାଳକେ ପାଇଲେ ଭୋଜନ । ତେବେଟି ରହିବ ଜୀବନ ॥
ନୋହିଲେ ମରିବେ ସମସ୍ତେ । ମୁହିଁ ମରିବି ତା ସଙ୍ଗତେ ॥



ଗୀତା ପଣ୍ଡାଙ୍କ ସ୍ତ୍ରୀ ଘର ଦେଖି ଆଚମ୍ବିତ ହୋଇଯାଉଛନ୍ତି ।

ଏ କଥା ଅଛଇ ପ୍ରମାଣ । ପଣ୍ଡାଏ ବୋଇଲେ ଲୋ ଶୁଣ ॥
ସବୁର କର୍ତ୍ତା ଭଗବାନ । ଅବଶ୍ୟ ଦେବେଟି ଭୋଜନ ॥
ଆରତ ହୋଇଣ ନ ମର । ଶୁଣି କେ ପିଲ ନାରୀବର ॥
ବୋଇଲା ଶୁଣସି ହୋ ପଣ୍ଡା । ନ ପକା ନାଆଁରେ ଯେ ଲୁଣ୍ଡା ॥
ତୁ ହଳ ମରୁଥିବୁ ବସି । ତୋ ଘରେ ଧନ ଯିବ ପଶି ॥
ତା ଶୁଣି ପଣ୍ଡାଏ ବୋଲନ୍ତି । ଆତୁର ନୁହ ଗୋ ସୁବର୍ଣ୍ଣି ॥
ମୁଁ ଯାହା କହୁଅଛି ତୋତେ । ହେତୁ କରଣ ଧେନ ଚତ୍ତେ ॥
ସବୁର ଜୀବର ଜୀବନ । ଅଛନ୍ତି ପ୍ରଭୁ ଭଗବାନ ॥
ଦେଖ ଏ ଗୀତମଧ୍ୟେ ସାର । ଶ୍ରୀମୁଖ ଆଜ୍ଞା ପ୍ରଭୁଙ୍କର ॥
ସମସ୍ତ କର୍ମ ପରିହରି । ଯେ ମୋର ପାଦେ ଆଶ୍ରେକରି
ତାହାର ନିର୍ବାହର ଭାର । କନ୍ଧରେ ବହୁଅଛି ମୋହର ॥
ନିତ୍ୟ ଲଗଇ ତାକୁ ଯେତେ । ସେ ଚିନ୍ତା କାହିଁ ଅଛି ତୋତେ ॥
ଏ କଥା ଅଛଇ ପ୍ରମାଣ । ବୋଲି ଅଛନ୍ତି ନାରାୟଣ ॥
ମିଛ ଯଦ୍ୟପି ଏହା କହ । ତେବେ ମୋଠାରେ କ୍ରୋଧବହ
ତା ଶୁଣି ବୋଲଇ ସୁମନା । ଏ କେଉଁଯୁଗ କଥା ସିନା ॥
ଏ କଳିଯୁଗରେ କେମନ୍ତେ । ଭାର ବହିଣ ଜଗନ୍ନାଥେ ॥
ତୋ ଘରେ ଆସି ଦେବେ ତୋତେ । ବସି ଭୁଞ୍ଜିବୁ ଦୁଇହାତେ ॥
ତୁମ୍ଭ ଏ ସାହସ ଲକ୍ଷଣ । ମରିବୁ ହୋଇ ଅକାରଣ ॥
ଶୁଣି ପଣ୍ଡାଏ କୋପଭରେ । କହିଲେ ପତ୍ନୀର ଆଗରେ ॥
ନଷ୍ଟେ ଜାଣିଲି ତୁହି ଦୁଷ୍ଟା । ପ୍ରଭୁଙ୍କ ଆଜ୍ଞା ମଣୁ ଭ୍ରଷ୍ଟା ॥
ଏ ଶ୍ଳୋକ ମିଛ ବୋଲିକରି । ଦେଇ ତୁ ପାରିବୁ କି ଚିରି ॥
ତା ଶୁଣି ବୋଇଲା ସୁବର୍ଣ୍ଣି । ତାଳପତର ସିନା ପୋଥି
ଏ କାହିଁ ସ୍ୱରୂପ ହୋଇବ । ବୋଲେ କରନ୍ତୁ ମନ ଭାବ ॥
ଆଜ୍ଞା କାହିଁ ଛି ଆଣ ତୋର । ଚିରିଣ ଦେବି ଶଏ ଥର ॥
ଶୁଣି ପଣ୍ଡାଏ କୋପମନ । ଦେଖାଇ ଦେଲେ ଶ୍ଳୋକସ୍ଥାନ ॥

ତାହା ଦେଖିଣ ସେହୁ ନାରୀ । ଲେଖନ ଧରି ଦେଲା ଝରି ॥
କ୍ରୋଧରେ ଦେଲା ଡମ୍ବାଗାରି । ଦେଖି କମ୍ପିଲେ ଦ୍ୱିଜବର ॥
ବୋଇଲେ କି କଲୁ କି କଲୁ । ପ୍ରଭୁରେ ଅପରାଧୀ ହେଲୁ ॥
ଏହା ଦେଖିଲା ମୋ ନୟନ । ନ ଯାଇ ରହିଛି ଜୀବନ ॥
ଏମନ୍ତ ବୋଲି ହରିଭକ୍ତ । ଆରତେ କାନ୍ଦିଲା ବହୁତ ॥
ତାହାଙ୍କ ବହନ ଉଠିଗଲା । କବାଟ କିଳିଣ ଶୋଇଲା ॥
ପ୍ରଭୁଙ୍କ ପାଦେ ଦେଲା ମନ । ଦେହୁଁ ହଜିଲା ନିଜ ଜ୍ଞାନ ॥
ତା ଦେଖି ନିଜ ପତ୍ନୀ ତାର । ବାଳକମାନଙ୍କୁ ସଙ୍ଗରେ ॥
ଯେମନ୍ତେ ଶୋଇଲା ଗମ୍ଭୀରି । ସେହ୍ନେ ରହିଲା ରୁଷି କରି ॥
କାମିନୀ ମନେ ବୁଝି ଚିନ୍ତା । ବାଳକମାନଙ୍କ ବ୍ୟବସ୍ଥା ॥
ପଣ୍ଡାଙ୍କ ମନ ଭକ୍ତି ଭାବ । ସବୁ ଜାଣିଲେ ପଦ୍ମନାଭ ॥
ଯେ ପ୍ରଭୁ ସର୍ବ ଅନ୍ତର୍ଯାମୀ । ଦୀନବାନ୍ଧବ ଦେବସ୍ୱାମୀ ॥
ନ ସହେ ସେବକ ବେଦନା । ଏହି ନିମନ୍ତେ ତହେଁ ବାନା ॥
ଜଗନ୍ନାଥ ପରିହରି ହୋଇ । ଭକ୍ତଙ୍କୁ ରଖିବାର ପାଇଁ ॥
ତେଣୁଟି ପ୍ରଭୁ ଆଦିମୂଳ । ନ ସହି ସେବକ ବିକଳ ॥
ସଜ ହୋଇଲେ ବେଗକରି । ଘେନେ ଗୋପାଳ ରୂପ ଧରି ॥
ନବୀନ ନୀଳଘନ ମୂର୍ତ୍ତି । ସୁଇନ୍ଦ୍ର ନୀଳମଣି କାନ୍ତି ॥
ବଦନ ପୂର୍ଣ୍ଣ ଶଶଧର । ପଙ୍କଜ ନୟନ ରୁଚିର ॥
ଅତି ସୁରଙ୍ଗ ବିମ୍ବାଧର । ସୁବର୍ଣ୍ଣ ନାସା ମନୋହର ॥
ମୁଖେ ପ୍ରକାଶ ମନ୍ଦହାସ । ତଥି ପୂରିତ ସୁଧାରସ ॥
କସ୍ତୁରୀ ତିଳକ ଲଲାଟେ । ସୁଗୁଞ୍ଜମାଳ କଣ୍ଠତଟେ ॥
ହେମ କଙ୍କଣ ବେନି ଭୁଜେ । ରବି କିରଣ ଦର୍ପଗଞ୍ଜେ ॥
ମୁଦ୍ରିକା ଶୋହଇ ଅଙ୍ଗୁଳି । ଝଟକେ ନାନାରତ୍ନେ ଝଳି ॥
ପୀତବସନ କଟୀମାଝେ । ଘନେ କି ସୌଦାମିନୀ ରାଜେ ॥
ତଥିରେ ସୁବର୍ଣ୍ଣ ମେଖଳା । ହେମ ଘର୍ଘରି ନାଦବଳା ॥

ଚରଣେ ନୂପୁର ବଜାଇ । ଗୁଲନ୍ତେ ରୁଣଝୁଣ ବାଜେ ॥
ଶ୍ରୀହସ୍ତେ ଲଉଡ଼ ଶୋଭନ । ଯେସନେ ପାଳକ ଗୋଧନ ॥
ମସ୍ତକ ପରେ ଶିଖିଚୂଳ । ତହିଁ ବେଷ୍ଟିତ ଜାମୁଡାଳ ॥
ଶ୍ରବଣ ଯୁଗଳେ କୁଣ୍ଡଳ । ନୃତ୍ୟ କରଇ ଗଣ୍ଡସ୍ଥଳ ॥
ନାସାପୁଟରେ ମୋତି ଶୋଭି । ଅଧରାମୃତ ପାନେ ଲୋଭି ॥
ହୋଇ ଅଛନ୍ତି ତେଙ୍ଗୋବନ୍ତ । କହି ନୁହଇ ଅଲୌକିତ ॥
ଏମନ୍ତ ବେଶେ ଦାମୋଦର । କନ୍ଧରେ ବହିଛନ୍ତି ଭାର ॥
ନାନାଦି ଦ୍ରବ୍ୟ ତହିଁ ଭରି । କେ ପାରେ ତାହା ଅନ୍ତ କରି ॥
ସରୁ ଚାଉଳ ମୁଗ ଡାଲି । ଘୃତ ନବାତ ଦୁଧ ଦହି ॥
ହଳଦୀ ସୋରିଷ ଯେ ଅଦା । କୁଠାତନୁଳ ମୁଦା ମୁଦା ॥
ହେଙ୍ଗୁ ମରିଚ ଫୁଲ ବଡ଼ି । ସଙ୍ଗତେ ଅଛୁଇ କଉଡ଼ି ॥
ଇତ୍ୟାଦି ଦ୍ରବ୍ୟ ଭାରେ ଭରି । କେ ତାହା ପାରେ ଅନ୍ତକରି ॥
କେ କହି ପାରିବ ସେ କଥା । ନାମ ଯାହାର ଜଗନ୍ନାଥ ॥
ଯାର କଳ୍ପନାମାତ୍ରେ ଜାଣ । ଅଶେଷ ବ୍ରହ୍ମାଣ୍ଡ ଭିଆଣ ॥
ତାକୁ ଅପୂର୍ବ ଅବା କିସ । ଶୁଣ ସୁମନେ ଏହୁ ରସ ॥
ଭକତହିତେ ଭାବଗ୍ରାହୀ । ଧାଇଁ ଅଛନ୍ତି ଭାର ବହି ॥
କେବଳ ଅତି ତ୍ୱରା ମନେ । ମିଳିଲେ ପଣ୍ଡାଙ୍କ ଭବନେ ॥
ତା ପୁରଦ୍ୱାରେ ହୋଇ ବଳେ । ଡାକନ୍ତି ପ୍ରଭୁ ଦେବରାଜେ ॥
ମେଘ ଗମ୍ଭୀର ଧୀରବାଣୀ । ବ୍ରାହ୍ମଣ ଆକୁଳକୁ ଜାଣି ॥
ଡାକନ୍ତି ଅତ୍ୟନ୍ତ ସୁସ୍ୱରେ । କେ ଅଛ ପଣ୍ଡାଙ୍କର ଘରେ ॥
ବହନ ଆସ ମୋର ପାଶ । ନିଅ ତୁ କୁଟୁମ୍ବର ଗ୍ରାସ ॥
ତା ଶୁଣି ପଣ୍ଡା ଭାର୍ଯ୍ୟା ବେଗେ । ନିଦ୍ରା ନମାଡ଼େ ଅତି ଶୋକେ ॥
ବସି ବ୍ୟାକୁଳ ହେଉ ଥିଲ । ତା ଡାକ ଶୁଣିଣ ଧାଇଁଲ ॥
କବାଟ ଫିଟାଇଣ ଦେଖି । ଚାହିଁ ରହିଲ ଚର୍ମ ଆଖି ॥
ବୋଲେ ଅଇଲ କାହ୍ନୁଁ ବାବୁ । କନ୍ଧେ ବହିଛ କିସ ସବୁ ॥

କ କ ପଦାର୍ଥ ଏଥେ ଭର । ଘର ଯୋଗାଡ଼ ଯତ୍ନ କର ॥
ରଖିଣ କହ କନା ମୋତେ । ଶୁଣି ବୋଲନ୍ତି ଜଗନ୍ନାଥେ ॥
ପଣ୍ଡାଙ୍କ ମିତ୍ର ମୋତେ ଗାଇ । ବୋଇଲେ ନେଇଯାଅ ତୁହି ॥
ଆଉ କା ହସ୍ତେ ଯେବେଦେବା । ଊଣା ଅଧିକ ହେବ ଅବା ॥
ତେଣୁଟି ତୁମ୍ଭେ ନେଇ ଦେବ । ନିର୍ମଳ ସିନା ମୂଳ ଭାବ ॥
ଆମ୍ଭେ ଯେ ତାହାଙ୍କ ବିଶ୍ୱାସ । ଦଣ୍ଡେ ନ ଗ୍ରାଉ ତାଙ୍କ ପାଶ ॥
ତାହାଙ୍କ ଆଜ୍ଞା ମାନିଥାଉ । ଯେତେଣେ ପେଷିଲେ ତେଣେଯାଉ
ତେଣୁଟି ଅଇଲୁ ଗୋସାଇଁ । ଏ ଦ୍ରବ୍ୟ ଦେଇ ଯିବାପାଇଁ ॥
ଯତ୍ନ କରିଣ ରଖ ଏହା । ଆମ୍ଭଙ୍କୁ କରିଥିବ ଦୟା ॥
କହିବ ପଣ୍ଡାଙ୍କ ଅଗ୍ରତେ । ମନେ ପକାଉଥିବେ ମୋତେ ॥
ଏମନ୍ତ ଶୁଣି ନାରୀବର । ତୁଣ୍ଡରୁ ନଇଲା ଉତ୍ତର ॥
ମନୁଷ୍ୟ ପ୍ରାପ୍ତ କରି ବୁଦ୍ଧି । ଚିହ୍ନିଲା ନାହିଁ ଦୟାନିଧି ॥
ମା ମାୟା ଦେବେ ଅଗୋଚର । କାହୁଁ ଜାଣିବ ସ୍ତ୍ରୀ ଗ୍ୱାର ॥
ବୋଇଲା ଆରେ ବାପ ଭାଇ । ବହନ ଭାର ଦିଅ ଥୋଇ ॥
ଦିଶୁଛ ଅତି ସୁକୁମାର । କଷ୍ଟ ବହୁଥିବ ତୋର ॥
ତା ଶୁଣି ପ୍ରଭୁ ଦାମୋଦର । କାନ୍ଧରୁ ରଖିଦେଲେ ଭାର ॥
ସମସ୍ତ ଦ୍ରବ୍ୟ ଭାରୁ କାଢ଼ି । ତଳେ ଥୋଇଲେ ଧାଡ଼ି ଧାଡ଼ି ॥
ହସି ବୋଲନ୍ତି ଚକ୍ରପାଣି । ଦେଖ ଯା ପଣ୍ଡାର ଘରଣୀ ॥
ତାହା ଶୁଣିଣ ବିପ୍ର ନାରୀ । ବହିଲା ବେଗ ବେଗ କରି ॥
ଘରେ ଥୁଅନ୍ତେ ସେହି ଧନ । ସମ୍ପୂର୍ଣ୍ଣେ ପୂରିଲା ଭବନ ॥
ବିପ୍ରର କଲା ମନେ ତାହ୍ୟ । ଏ ତ ଅତ୍ୟନ୍ତ ଚମତ୍କାର ॥
ଏହି ଭାରକ ସାମଗ୍ରିରି । ରହିଲା ଘରଯାକ ପୂରି ॥
ଆଉ ରଖିବା ନାହିଁ ସ୍ଥାନ । ଧନ୍ୟ ସେ ଭାରୁଆ ଜୀବନ ॥
ଏମନ୍ତ ବୋଲି ବେଗେ ପାଇଁ । ଭାରୁଆ ଆଗେ ଉଭା ହୋଇ ॥
ବୋଇଲା ଶୁଣ ବାବୁ ମୋର । କି ଜାତି ଗୋତ୍ର ଅଟେ ତୋର

ଏକା ଘରକେ ଦ୍ରବ୍ୟ ଏତେ । ବଳ୍କଣ ଆଣିଲୁ କେମନ୍ତେ ॥
ତା ଶୁଣି ବୋଲନ୍ତି ଶ୍ରୀହରି । ଶୁଣ ଗୋ ବିପ୍ରବର ନାରୀ ॥
ଆମ୍ଭେ ଗୋପାଳ ପୁଅ ସିନା । ବ୍ରଜରାଜାଙ୍କ ସାନ ଜେନା ॥
ଘରେ ମୁଁ ନ ରହଇ କ୍ଷଣେ । ନିତ୍ୟେ ବୁଲଇ ଏଣେ ତେଣେ
ବିଶ୍ୱାସ ଭାବ ଦେଖେ ଯାର । ଘର ମୁଁ ବହଇ ତାହାର ॥
ତାକୁ ନ ଛାଡ଼େ ମୋର ମନ । ନିରତେ ଥାଏ ସନ୍ନିଧାନ ॥
ସେ ମୋତେ ପତ୍ରପୁଷ୍ପ ଦେଲେ । ତାହା ମୁଁ ଗଣେ ମେରୁତୁଲେ ॥
ଅଧିକ କି କହିବି ତୋତେ । ନିର୍ମଳ ଭାବେ ଲୋଡ଼ା ମୋତେ
ଏବେ ଏ ଘର ଧନ ଯାହା । ଜାଗ୍ରତ କରି ରଖ ତାହା ॥
ଆମ୍ଭଙ୍କୁ ହୋଇସି ମେଲାଣି । ତା ଶୁଣି ବୋଲଇ ତରୁଣୀ ॥
ଏଡ଼େ ଗଡ଼ୁଆ ଘର ଧରି । ଯେବେ ଅଇଲ ମୋର ପୁରୀ ॥
କେମନ୍ତେ ଯିବ ଉପବାସେ । ଏ କଥା ମନକୁ ନ ଆସେ ॥
ଦଣ୍ଡେ ବିଳମ୍ବ ମାନ କରି । ରନ୍ଧନ ହେଉଛି ଆମ୍ଭରି ॥
ଅନ୍ନ ଭୋଜନ କରି ଯିବ । ତେବେ ସେ ମହତ୍ତ୍ୱ ରହିବ ॥
ନୋହିଲେ ପଣ୍ଡାଏ ଉଠନ୍ତେ । ଭଲ ସେ ନ ବୋଲିବେ ମୋତେ ॥
ତା ଶୁଣି ପ୍ରଭୁ ଚକ୍ରପାଣି । ବୋଲନ୍ତି ଶୁଣ ପଣ୍ଡିଆଣୀ ॥
ବନ୍ଧୁ କଙ୍କାଳ ମୋର ଅଛି । ରହି ଆପ୍ରତ୍ତ ନୋହେ କିଛି ॥
ମୋହର ଯେତେକ ବିଷୟେ । କହିଲେ ଜାଣିବେ ପଣ୍ଡାଏ ॥
ତାହାଙ୍କ ଅନ୍ନକୁ ମୋ ମନ । ଅବଶ୍ୟ କରନ୍ତି ଭୋଜନ ॥
ଜିହ୍ୱାରେ ଘାତ ହେଲା ମୋର । ରୁଧିର ବହେ ଜଳଧାର ॥
ଜଳୁଛି ଅତି ବନ୍ଧ ହୋଇ । ଏଣୁ ମୁଁ ଭୁଞ୍ଜି ନ ପାରଇ ॥
କହିବି ପଣ୍ଡାଙ୍କର ଆଗେ । ବୋଲି ଚଳିଲେ ଅତି ବେଗେ
ଏଣେ ଯେ ପଣ୍ଡାଙ୍କର ନାରୀ । ବହନ ରନ୍ଧାବଡ଼ା ସାରି ॥
ଅତି ଆନନ୍ଦ ମନ ହୋଇ । ସ୍ୱାମୀକି ଉଠାଇଲା ଯାଇ ॥
ବୋଇଲା ତୁମ୍ଭ କଥା ସତ । ବହନ ଉଠ ପ୍ରାଣନାଥ ॥

ତା ଶୁଣି ପଣ୍ଡାଏ ଉଠିଲେ । ନିଜ ଘରକୁ ଦୃଷ୍ଟି ଦେଲେ ॥
ଦେଖିଲେ ପୂରିଅଛୁ ଧନ । ବୋଲେ ଏ କେମନ୍ତ ବିଧାନ ॥
ପୁଣି ତା ପତ୍ନୀ ବିଧିମତେ । କହିଲା ସ୍ୱାମୀର ଅଗ୍ରତେ ॥
କେ ତୁମ୍ଭ ମିତ୍ର ଦେଲେ ପେଷି । ବୋଲେ ଗଉଡ଼ ଜଣେ ଆସି ॥
ଏ ସବ ଦେଇଗଲେ ମୋତେ । ମୁଁ ଯେ କହିଲି ନାନାମତେ ॥
ଅନ୍ନ ଭୋଜନ କରିଯିବ । ତା ଶୁଣି ବୋଇଲେ ମୋ ଜଭ
ଘାତ ହୋଇଛୁ ତନୁ ଖଣ୍ଡ । କହିବା ଶକ୍ତ ନାହିଁ ତୁଣ୍ଡ ॥
ପୁଣି ଯେ ବହୁଛି ରୁଧିର । ଭୁଞ୍ଜିବା ଶକ୍ତ ନାହିଁ ମୋର ॥
କହିବ ପଣ୍ଡାଙ୍କ ଅଗ୍ରତେ । ଦୟା ସେ କରିଥିବେ ମୋତେ
ବୋଲି ବହନ ଗଲେ ଚଳି । ଯେସନେ ଝଟକ ବିଜୁଳି ॥
ଦେଖି ମୁଁ ହେଲି ଆଚମ୍ଭିତ । ବୁଝି ଏ କେବଣ ଚରିତ ॥
ଏମନ୍ତ ଶୁଣି ପଣ୍ଡା ହୃଦେ । ବୁଡ଼ିଲେ ଆନନ୍ଦ ସମୁଦ୍ରେ ॥
ଜାଣିଲେ ନିଶ୍ଚେ ଚକ୍ରବାହା । ଆନର ବର୍ଣ୍ଣେ ନୁହେଁ ଏହା ॥
ବୋଇଲେ ଧନ୍ୟ ତୋ ଜୀବନ । ଦେଖିଲୁ ପ୍ରଭୁ ଭଗବାନ ॥
ଶୁକ ସନକ ମୁନିବର । ଏହାଙ୍କ ଧ୍ୟାନକୁ ଯେ ଦୂର ॥
ତୁ ତାହା ଦେଖିଲୁ ସାକ୍ଷାତେ । ସୁଭାଗୀ ବୋଲିବି ମୁଁ ତୋତେ
ଯାହା ଦେଖିଲି ତୋତେବାରେ । ମୋ ଭାଗ୍ୟ କହିଲେ ନ ସରେ
ଏବେ ତୁ ହେତୁ କରି ଶୁଣ । ସେହି ଅନାଦି ନାରାୟଣ ॥
ଯାହା ସେ କହିଗଲେ ତୋତେ । କହିବ ପଣ୍ଡାଙ୍କ ଅଗ୍ରତେ ॥
ଘାତ ହୋଇଛି ଜିହ୍ୱା ମୋର । ସେହି ଅର୍ଜିଲା କର୍ମ ତୋର ॥
ଏ ଭଗବତଗୀତା ଯିନା । ସାକ୍ଷାତେ ଗୋବିନ୍ଦ ରଚନା ॥
ତହିଁ କାଟିଲୁ ତିନି ଗାର । ଦୁଃଖ ପାଇଲେ ପ୍ରଭୁ ମୋର ॥
ଏବେ ସତ୍ତ୍ୱରେ ଗୃହ ଯିବା । ଶ୍ରୀମୁଖ ଦର୍ଶନ କରିବା ॥
ତୁମ୍ଭରେ ଜଣାଇବା ପାଇଁ । ଏଥର କ୍ଷମ ଭବଗ୍ରାହୀ ॥
ନୋହିଲେ ନାହିଁ ପରିତ୍ରାଣ । ବୋଲି ଧାଇଁଲେ ବେନିଜନ ॥

ଗ୍ରାମୂରେ ପ୍ରବେଶ ହୋଇଲେ । ବେଳ ନୟନେ ଅନାଇଲେ ॥
ଶ୍ରୀରଙ୍ଗ ଅଧରୁ ରୁଧିର । ବହୁ ଅଛଇ ଛନ ଧାର ॥
ତା ଦେଖି ପଣ୍ଡା ଥରହର । ନମିଲେ ପ୍ରଭୁଙ୍କ ପୟର ॥
ସାଷ୍ଟାଙ୍ଗେ ଦଣ୍ଡବତ ହୋଇ । ଉଠି କପାଳେ କର ଦେଇ ॥
ବୋଇଲେ ନର ମାନ ଗୁର । ମହିମା କ ବର୍ଣ୍ଣିବ ତୋର ॥
ଏ ଚତୁର୍ଦ୍ଦିଶେ ପ୍ରଭୁପଣେ । ତୋ ସମ ନାହିଁ ଅନ୍ୟ ଜଣେ ॥
ଏମନ୍ତ ପ୍ରଭୁସେବା ଗୁଡ଼ି । ଯେ ଅନ୍ୟମାର୍ଗେ ଯାଏ ହୁଡ଼ି ॥
ଧିକହୁଁ ଧିକ ସେହୁ ନର । ସେ କାହୁଁ ଭବୁ ହେବ ପାର ॥
ଏମନ୍ତ ବୋଲି ସ୍ତୁତି କରି । ନମୋ ବ୍ରହ୍ମାଣ୍ଡ ଅଧିକାରୀ ॥
ଏ ମହାପାପୀ ସ୍ତ୍ରି ସ୍ତ୍ରି ଗୁର । ଦ୍ରୋହ ଯେ କଲି ଶ୍ରୀପୟର ॥
କ୍ଷମା ନ କଲେ ଭଗବାନ । ନାହିଁ ଏ ତ୍ରିଭୁବନେ ସ୍ଥାନ ॥
ଭୃତ୍ୟ ଯେ ସଦା ଅପରାଧୀ । ତୁମ୍ଭେ ଯେ କରୁଣାବାରଧି ॥
କେବଳ ଏହି ଆଜ୍ଞା ହେଉ । ତୋ ନାମ ଧରି ଦିନ ଯାଉ ॥
ଏମନ୍ତ କହୁଣ ମେଲାଣି । ହେଲେ ଗ୍ରାମୁରୁ ବେନି ପ୍ରାଣୀ ॥
ବହନ ହୋଇ ଚଳିଗଲେ । ମନ୍ଦରେ ପ୍ରବେଶ ହୋଇଲେ ॥
ପୁତ୍ର ପୌତ୍ରୀଙ୍କି ସଙ୍ଗେ ଧରି । ଅନ୍ନ ଭୋଜନ ସର୍ବେ କରି ॥
ନିଶ୍ଚିନ୍ତ ହୋଇ ଦିନ ନେଲେ । ଅନେକ ବର୍ଷ ଭୋଗ କଲେ ॥
ଦେବା ଦର୍ଶ୍ୟାରେ ଦୃଢ଼ ଚିତ୍ତ । ଭଜନ କରି ଜଗନ୍ନାଥ ॥
ବଞ୍ଚିଲେ କାଳ ବେନିଜନ । ଶୁଣ ହେ ସୁମନ ସ୍ୱଜନ ॥
ଦେହ ଅନ୍ତରେ ହେଲେ କିସ । ତାହା ଜାଣନ୍ତି ଜଗଦୀଶ ॥
କହଇ ବିପ୍ର ରାମଦାସ । ମୋ ପ୍ରଭୁ ଜାନକୀବିଳାସ ॥
ଏ ଦାର୍ଢ୍ୟଭକ୍ତି ରସାମୃତ । ପ୍ରାଣୀଙ୍କ ଶ୍ରବଣେ ଅମୃତ ॥
ସୁଜନେ ଏହି ପଥେ ଗମ । ଫିଟିବ ଜନ୍ମ ମୃତ୍ୟୁଭ୍ରମ ॥
କହଇ ବିପ୍ର ରାମଦାସ । ମୂଳଟି ଅଟଇ ବିଶ୍ୱାସ ॥

ଇତି ଶ୍ରୀ ଦାର୍ଢ୍ୟଭକ୍ତି ରସାମୃତେ ମନ ଚୈତନ୍ୟ ସମ୍ବାଦେ
ଗୀତାପଣ୍ଡା ଚରିତ ବର୍ଣ୍ଣନେ ନାମ
ପଞ୍ଚତ୍ରିଂଶୋଽଧ୍ୟାୟଃ

---

## ଷଟ୍‌ତ୍ରିଂଶ ଅଧ୍ୟାୟ
## ହରିଚନ୍ଦନ ରାଜା ସମ୍ବାଦ

ମନ ଉବାଚ

ମନ କହଇ ଚଇତନ । ଏ ତୋର ଦୁର୍ଲଭ ବଚନ ॥
ଶୁଣିଲି ଗୀତାପଣ୍ଡା ଭାବ । ଦୁର୍ଲଭ ପରେ ଏ ଦୁର୍ଲଭ ॥
ଏହି ପ୍ରକାରେ କଥା ଯେତେ । କହି ପବିତ୍ର କର ମୋତେ ॥
ଶୁଣି ଚୈତନ୍ୟ ଅତି ତୋଷେ । କହଇ ମନରାଜାପାଶେ ॥
କେବଳ ଶୁଣ ଶ୍ରଦ୍ଧାଭାବେ । ମୁଁ ଯାହା କହୁଅଛି ଏବେ ॥
କ୍ଷେତ୍ରକୁ ଛଡ଼ା ଦଶକୋଶ । ଯେ ବାଣପୁର ନାମେ ଦେଶ ॥
ତହିଁ ନୃପତି ମୋକ୍ଷପାନ । ନାମ ତା ଶ୍ରୀହରିଚନ୍ଦନ ॥
ସେ ସ୍ୱରାଜ୍ୟ ରାଜପଣ କରି । ପ୍ରଜା ପାଳଇ ପୁତ୍ରପରି ॥
ଶୁଚି ପବିତ୍ର ଦୟାବନ୍ତ । ନ ହରେ ପରନାରୀ ବିତ୍ତ ॥
ଦାନୀ ପଣରେ ସେହି ଜଣେ । ବଞ୍ଚଇ ଭଜନ ସ୍ମରଣେ ॥
ପାପ ବୋଲିବା କଥା ଯାହା । ଶ୍ରବଣେ ନ ଶୁଣଇ ତାହା ॥
ଦେଖିଲେ ବୈଷ୍ଣବ ଗୋସାଇଁ । ଆନନ୍ଦ କହି ନ ସରଇ ॥
ଚରଣ ଧୋଇ ମୋଦ ଭରି । ପୂଜଇ ବସ୍ତ୍ର ସମ କରି ॥
ନିରତେ ଥାଇ ପରହିତେ । ପରପୀଡ଼ନ ନାହିଁ ଚିତ୍ତେ ॥
ଦୁଃଖୀ ଦରିଦ୍ର ପୋଷିବାରେ । କେବଳ ତାହାଠାରୁ ସରେ ॥
ଭଜନ ରାମକୃଷ୍ଣ ବିନେ । ଅନ୍ୟ ନ ଜାଣେ ତାର ମନେ ॥
ଅଛିବ ଜାତି ହୋଇଥିଲେ । ସେ ଯେବେ ରାମକୃଷ୍ଣ ବୋଲେ ॥
ତାହାକୁ ନ କରେ ନିବାରଣ । ବୋଲଇ ପାଶେ ମୋର ବସ ॥

ଗୋଟିଏ ନାମ ଯେବେ ଶୁଣେ । କୋଟିଏ ତୀର୍ଥ ଫଳ ମଣେ ॥
ତା ଦେହରଣ ମଣ୍ଡପରେ । ଗୃହପାଶରୁ ଘର ବାନ୍ଧେ ॥
କରାଇ ଅତ୍ୟନ୍ତ ବଡ଼ନ୍ଧ । କେବଳ ରାମକୃଷ୍ଣ ଛନ୍ଦ ॥
ଯେ ବୃନ୍ଦାବନ ଲୀଳାମାନ । ଗୋପୀ ଗୋବନ୍ଧ କ୍ରୀଡ଼ାସ୍ଥାନ
ତୃଣା ମୂତନା ଷଣ୍ଢା କେଶୀ । ଶକଟା ଯାମଳା ବନାଶୀ ॥
ବକା ଅଘାଦ ନାଶ ଯେତେ । ଚିତ୍ର କରାଇ ବଧିମତେ ॥
ନିତ୍ୟେ କରଇ ଦରଶନ । ଆନନ୍ଦ ହେଉଥାଇ ମନ ॥
ଯେ ଶୁଆ ଶାରୀ ରାଜବଣି । ପୋଷିଣ ଥାଇ ନୃପମଣି ॥
ତାହାଙ୍କ ମୁଖୁ ନାମାବଳୀ । ଶୁଣି ପୁଲକେ ରୋମାବଳୀ ॥
କେବଳ ସାଧୁଜନ ପାଶେ । ବଞ୍ଚଇ ରଜନୀ ଦିବସେ ॥
ହରି ଚରିତ ସୁଧାବାଣୀ । ଆନନ୍ଦ ହେଉଥାଇ ଶୁଣି ॥
ମ୍ରିତଦିନରେ ପେଷି ଦୂତ । ବୁଝଇ ରାଜ୍ୟ ହକିକତ ॥
ନାଗରୀ ଓଡ଼ପୁଷ୍ଟେ ଦେଇ । ରାଜ୍ୟରେ ଘୋଷଣା ଦିଅଇ ॥
ବୋଲନ୍ତି ଶୁଣ ପ୍ରଜାକୁଳ । ରାଜାର ଏ ଆଜ୍ଞା କେବଳ ॥
ଅତଥି ଯେଉଁ ଗ୍ରାମେ ଆସି । ଅନ୍ନ ନ ପାଇ ଯିବେ ରୁଷି ॥
ସେ ଗ୍ରାମଜନଙ୍କ ମହତ । ସାରିବ କହୁଅଛୁ ସତ୍ୟ ॥
ତାର ସର୍ବସ୍ୱ କୋଠ ହେବ । ରାଜ୍ୟୁ ବାହାର ହୋଇଯିବ ॥
ଯେ ଯେତେ ଇଚ୍ଛା ଧର୍ମ କରୁ । ଲେଖି ସେ ନେବ ସରକାରୁ ॥
ଏଥି ଅଣଯ୍ୟ ନାହିଁ କିଛି । ରାଜାର ଆଜ୍ଞା ହୋଇଅଛି ॥
ଏମନ୍ତ ତାକିଦ କରାଇ । କହନ୍ତି ରାଜା ଆଗେ ଯାଇ ॥
ଶୁଣ ସୁମନ ସାବଧାନେ । ଏମନ୍ତେ ବରଷକେ ଦିନେ ॥
ତା ନିଜ ରାଜ୍ୟ ବୁଲି ଯାଇ । ଦେଖଇ ଗ୍ରାମ ଗ୍ରାମ ହୋଇ ॥
ଦୁଃଖୀ ଦରିଦ୍ର ଦ୍ୱାରେ ଭଲେ । ତୁଳସୀ ବୃକ୍ଷ ନ ଦଶିଲେ ॥
ସେହି ଠାବରେ ରାଜା ରହି । ତୁଳସୀ ଚଉରା ତୋଳାଇ ॥
ଶ୍ରୀକୃଷ୍ଣ ଦ୍ୱାଦଶୀ ଆରୋପଣ । କରି ବୋଲନ୍ତି ତାକୁ ଶୁଣ ॥

ନିତ୍ୟ ପ୍ରତି ତୁ ଦୀପାବଳି । ଦେବୁ ଏ ବୃକ୍ଷଆଗେ ଜାଳି ॥
କିଛି ତୁ ଭୋଗ ଦେଉଥିବୁ । ଲେଖିଣ ସରକାରୁ ନେବୁ ॥
ଏମନ୍ତ କହି ଯାନ୍ତି ଚଳି । କାହିଁ ବା ପାଞ୍ଚ ସାତେ ମିଳି ॥
କରରେ କଙ୍କତକା ଧରି । କେଶ ସାମଳି କୀଟ ମାରି ॥
ତାହା ଦେଖିଲେ ଦଣ୍ଡଧାରୀ । ମାଗନ୍ତି ପଣତ ପ୍ରସାରି ॥
ବୋଲନ୍ତି ଏ କୀଟ ନ ମାର । ଆଉ ଉପାୟ ଥିଲେ କର ॥
ଝଡ଼ପଡ଼ନ୍ତୁ ତାଙ୍କ ମୁଖେ । ନୋହିଲେ ପଡ଼ିବ ନରକେ ॥
ସେ ଗ୍ରାମଜନଙ୍କୁ ଡକାଇ । କହନ୍ତି ଶାସ୍ତ୍ରକୁ ଦେଖାଇ ॥
ପନ୍ଦର ଦିନେ ହରିବାସ । କରୁ ଯେ ଥିବଟି ଅବଶ୍ୟ ॥
ନିତ୍ୟ ନିର୍ମାଲ୍ୟ ସେବା କରି । ମସ୍ତକେ ତୁଳସୀ ମଞ୍ଜରୀ ॥
ତିଳକ କରି ଭାଲପଟେ । ତୁଳସୀମାଳା କଣ୍ଠତଟେ ॥
ତୁଣ୍ଡରେ ଶ୍ରୀହରି ଭଜନ । ଶକ୍ତ୍ୟନୁକ୍ରମେ ଦେବ ଦାନ ॥
ସକଳ ଜୀବେ ଦୟାଭାବ । ଅତିଥି ଚରଣ ପୂଜିବ ॥
କହିଣ ଗଲି ତୁମ୍ଭ ଭଲି । କରି ବା ନ କରି ମୋ ବୋଲି
ପ୍ରତି ଗ୍ରାମରେ ଏହିମତି । ଡିଆରି ଚଳନ୍ତି ନୃପତି ॥
ଏମନ୍ତେ କେତେ ଦିନଠାରେ । ସେ ରାଜ୍ୟେ ଏକ ପ୍ରଜାଘରେ॥
ସୁନା କାକରା ଗୋଟି ଧରି । ଧାନଗଉଣୀ ପରେ ଭରି ॥
ପୂଜା କରନ୍ତି ଗୁରୁବାର । ତାହା ଦେଖିଣ ଏକ ନର ॥
ପରହିଂସକ ଜନ ସେହି । ତା ଦେଖି ନ ପାରିଲା ସହି ॥
ବାହନ ହୋଇ ଚଳିଗଲା । ନୃପତି ଗୃମୁରେ କହିଲା ॥
ବୋଇଲା ସୁବର୍ଣ୍ଣ କାକେରି । ତାହାର ଘରେ ଅଛି ପୂରି ॥
ମିଥ୍ୟା ଏ ନୁହଇ ଅବଶ୍ୟ । ରାଜଭଣ୍ଡାରେ ଘେନି ଆସ ॥
ତାହା ଶୁଣିଣ ରାଜା ଆସି । ତାକୁ ରଖାଇ ଦୂତ ପେଷି ॥
ବୋଇଲେ ଯାଅ ବେଗ କରି । ହେମ କାକେରିଯାକୁ ଧରି ॥
ଆମ୍ଭ ଗୃମୁକୁ ଘେନି ଆସ । ବୁଝିବା ଏଥିର ସନ୍ଦେଶ ॥

ଆଜ୍ଞା ପ୍ରମାଣେ ଦୂତେ ଗଲେ । ସେ ପ୍ରଜା ଆଗରେ କହିଲେ ॥
ଶୁଣି ସେ ମହାଭୟ ପାଇ । ବଚନ ନ ପାରଇ କହି ॥
ନୃପତି ଗ୍ରାମରେ ମିଳିଲା । ହେମ କାକେର ଥୋଇଦେଲା ॥
ନୃପତି ବୋଲଇ ରେ ଶୁଣ । ଆଉ କେତେହେଁ ଅଛୁ ଆଣ ॥
ତା ଶୁଣି ସେ ପ୍ରଜା ଆକୁଳେ । ପଡ଼ି ନୃପତି ପାଦତଳେ ॥
ବିନୟ ହୋଇ ସେ କହିଲା । ସର୍ବେ ମୋ ଏତିକି ବୋଇଲା ॥
ବହୁତ କାଳୁ ଅଛି ଏହି । ଧାନ ଗଉଣୀ ପରେ ଥୋଇ ॥
ପୂଜା କରଇ ଗୁରୁବାରେ । ଦେଖି କେ କହିଲା ଗ୍ରାମରେ ॥
ଏଥୁ ଅଧିକ ଥିଲେ ଜାଣ । ଯେ ଇଚ୍ଛା କରିବ ପ୍ରମାଣ ॥
ଶୁଣି ନୃପତି ହସି ହସି । ତାଙ୍କୁ ବୋଇଲେ ଦଣ୍ଡେ ବସ ॥
ଏମନ୍ତ କହି ଦୂତ ପେଷି । ଡକାଇ ଆଣି ଏକ ଦାସୀ ॥
ସବୁ କହିଲେ ବିଧିମତେ । ସୁନା କାକେର ତାର ହସ୍ତେ ॥
ଦେଇ ପେଷିଲେ ନୃପବର । ଏହା ତୁ ନେଇଣ ସତ୍ୱର ॥
ମହାଦେଈଙ୍କ ହସ୍ତେ ଦେବୁ । ସମସ୍ତ ବୁଝାଇ କହିବୁ ॥
ତା ଶୁଣି ଦାସୀ ବେଗେ ଚଳି । ଅନ୍ତଃପୁରରେ ଯାଇ ମିଳି ॥
କମଳାମାତାଦେଈ ପାଶ । ଯାଇ ସେ ହୋଇଲା ପ୍ରବେଶ ॥
ବୋଇଲା ଶୁଣସି ଗୋ ମାଏ । ଏ ବଡ଼ ଅପୂର୍ବ କଥାଏ ॥
ଦେଇଅଛନ୍ତି ନୃପମଣି । ଶୁଣି ଅଇଲେ ମହାରାଣୀ ॥
ସ୍ୱହସ୍ତେ ଧରି ପଚାରିଲେ । ଏ ଦ୍ରବ୍ୟ କାହୁଁ ଭିଆଇଲେ ॥
ଦାସୀ କହିଲା ଶ୍ରୀଗ୍ରାମର । ଏ ରାଜ୍ୟେ ଏକ ପ୍ରଜାଘର ॥
ଧାନ ଗଉଣୀ ପରେ ଥୋଇ । ସେ ପୁଣି ପୂଜା କରୁଥାଇ ॥
ତା ଦେଖି କେଉଁ ଦୁଷ୍ଟନର । କହିଲା ନୃପତି ଗ୍ରାମର ॥
ତାହା ଶୁଣିଣ ଦୂତ ପେଷି । ତା ଘରୁ ତଣ୍ଡି ନେଲେ ଆସି ॥
ପେଷିଣ ଦେଲେ ତୁମ୍ଭ ତହିଁ । ଶୁଣି କୋପିଲେ ମହାଦେଈ ॥
ଫିଙ୍ଗିଣ ଦେଲେ ଖଣ୍ଡଦୂରେ । ବୋଇଲେ କା କଲୁ ତୁ ମୋରେ ।

ଏ ପାପ ଗୁଚିବ କେମନ୍ତେ । ବିପ୍ରଙ୍କୁ ଡାକ ଲେ ତୁରିତେ ॥
ଦାସୀ ବିପ୍ରଙ୍କୁ ଡକାଇଲେ । ଅନେକ ପାଦ ପୂଜା କଲେ ॥
ଆପଣା ଅଙ୍ଗୁ ଅଳଙ୍କାର । କାଢ଼ଣ ରଖିଲେ ଆଗର ॥
ସେ ସୁନା କାକର ସମାନ । ତୁଳି ବିପ୍ରଙ୍କୁ କଲେ ଦାନ ॥
ବୋଇଲେ ଦାସୀକି ହକାର । ଏହା ତୁ ଯାଅ ଘେନିକର ॥
ବୋଲନ୍ତୁ ନିଅ ତୁମ୍ଭ ସୁନା । ଏଥକୁ ଯୋଗ୍ୟ ତୁମ୍ଭେ ସିନା ॥
ସେ ତ ଅବଳା ଏକେ ଭୀରୁ । କାହ୍ନି ସହିବେ ଏଡ଼େ ଗରୁ ॥
ଏମନ୍ତ ଶୁଣି ଦାସୀ ନେଲା । ଗ୍ରାମୁରେ ସୁବର୍ଣ୍ଣ ଥୋଇଲା ॥
ବୋଇଲା ନମୋ ଦଣ୍ଡଧର । ନିଅ ଏ କାକର ତୁମ୍ଭର ॥
ଏଥି ନିମନ୍ତେ ଦଣ୍ଡ ଯେତେ । ପାଇଲୁ ରାଣୀଙ୍କର ହସ୍ତେ ॥
ଅଧିକେ ଶ୍ରୀଅଙ୍ଗ ଭୂଷଣ । ପ୍ରାୟଶ୍ଚିତ୍ତେ ନେଲେ ବିପ୍ରଗଣ ॥
ଏମନ୍ତେ କହିଗଲା ଦାସୀ । ଶୁଣି ନୃପତି ମନେ ହସି ॥
ସେ ପ୍ରଜା ହସ୍ତେ ଆଣିଦେଲେ । ତୋ ଧନ ନିଅ ତୁ ବୋଇଲେ ॥
ଲୁଚାଇ ପୂଜୁଥିଲୁ ଘର । ଏବେ ତୁ ପୂଜ ହୋ ଦାଣ୍ଡର ॥
ଏମନ୍ତ ଆଜ୍ଞା ତାକୁ ଦେଇ । ସେ ଯେଉଁ ଶ ଚୁଆକୁ ରାଇ ॥
ତା ସଙ୍ଗ କୁଟୁମ୍ବର ତୁଳେ । ରାଜ୍ୟ ବାହାର କରଦେଲେ ॥
ଶୁଣ ହେ ମନ ମହାରଥୀ । ଏମନ୍ତ ଦୟାଳୁ ନୃପତି ॥
କେବଳ ପୂର୍ବ କର୍ମ ତାର । ନାହିଁ ତା ଦୁହିତା କୁମର ॥
ତହିଁକି ନାହିଁ କ୍ଷୋଭମତି । ଯେଣୁ ସେ ଜାଣେ ବିଷ୍ଣୁଭକ୍ତି ॥
ସେ ପତିପତ୍ନୀ ବେନି ଜଣ । ଗୋବିନ୍ଦ ଭାବରେ ନିପୁଣ ॥
ସକଳ ଜୀବେ ଦୟା ବହି । ମାଛିକି ମାର ନ ବୋଲଇ ॥
ସୁଖେ ଏମନ୍ତେ ରାଜ୍ୟ କରେ । ତା ଯଶ ପୂରିଲା ସଂସାରେ ॥
ଲୋକେ ବୋଲନ୍ତି ଧନ୍ୟ ଧନ୍ୟ । ଧନ୍ୟ ସେ ଶ୍ରୀହରିଚନ୍ଦନ ॥
ମୁନିମାନଙ୍କ ଆୟୁ ପାଉ । ଏ ରାଜା ଚିରଜୀବୀ ହେଉ ॥
ଏମନ୍ତ ପ୍ରଶଂସା କରନ୍ତି । କାଳ ବଞ୍ଚିଲା ସେ ନୃପତି ॥

ହରିଶ୍ଚନ୍ଦ୍ର ରାଜା ଚରିତ

ପୃଷ୍ଠା ୩୦୮-୩୦୯



ହରିଶ୍ଚନ୍ଦ୍ର ରାଜା ପର୍ବତଘାଟ ଭିତରକୁ ଡେଇଁ ପଡ଼ୁଛନ୍ତି ।

ପୁଣି କେତେକ କାଳ ଗଲା । ସେ ରାଜା ପରିଭ୍ରଷ୍ଟ ହେଲା ॥
ଦାନାଦି ଶୁଦ୍ଧକର୍ମ ସାର । ବର୍ଜ୍ଜନ କଲେ ଦଣ୍ଡଧାରୀ ॥
ରାଜ୍ୟରେ ପ୍ରୟୋଜନ କିସ । ଦୁର୍ଲ୍ଲଭ ହେବାର ସନ୍ନ୍ୟାସ ॥
ଏମନ୍ତ ବୋଲି ଦୂତ ପେଷି । ଡକାଇ ଆଣି ପାଞ୍ଚକୋଷି ॥
ଯେ ପାତ୍ର ମନ୍ତ୍ରୀ ଅମାତ୍ୟେ । ରାଜାର ଦଳ ଲୋକ ଯେତେ ॥
ପ୍ରଜା ପାଞ୍ଚଙ୍କ ଆଦିକରି । ଡକାଇ ଆଣି ଦଣ୍ଡଧାରୀ ॥
ଆପଣା ପୁତ୍ରଙ୍କୁ ଆଣି । ରାଜ୍ୟ ସମର୍ପି ଦେଲେ ପୁଣି ॥
ଖୋଜାଇ ଶୁଭ ଅନୁକୂଳ । ପାଟ ବନ୍ଧାଇ ମହୀପାଳ ॥
ବୋଇଲେ ଶୁଣ ସର୍ବ ଜନ । ଆଜୁଁ ଏ ତୁମ୍ଭର ରାଜନ ॥
ପୁତ୍ରକୁ ବୋଇଲେ ରେ ଶୁଣ । ତୁ ଆଜୁଁ ରାଜ୍ୟେ ରାଜା ଜାଣ ॥
ପ୍ରଜାକୁଳର ପୂର୍ବ ପରି । ପାଳିବୁ ଅତି ଯତ୍ନ କରି ॥
ଦେବା ଦୟାରେ ଥିବୁ ରତ । ନିରତେ ହେବୁ ବିଷ୍ଣୁଭକ୍ତ ॥
ସେବିବୁ ଗୁରୁଙ୍କ ଚରଣେ । ଅପ୍ରାଧୀ ନୋହି ବିପ୍ରଗଣେ ॥
ଦୁଃଖୀ ଦରିଦ୍ରେ ଦେବୁ ଦାନ । ନ କହି ମିଥ୍ୟା ବଚନ ॥
ଶିବ ଭବାନୀ ଆଜ୍ଞା ଯେତେ । ଖଣ୍ଡିବୁ ନାହିଁ କଦାଚିତେ ॥
ପୂର୍ବେ ଯେ ଭୋଗକଲ୍ପ ଯେତେ । ପାଳିବୁ ସେହି ବିଧିମତେ ॥
ଏରୂପେ ଶୁଭେ ପାଳ ଦେଶ । ଆମ୍ଭେ କରିବୁ ବନବାସ ॥
ଏମନ୍ତ କହି ଦଣ୍ଡଧାରୀ । ତୋର କୌପୁନୀ ଆଶ୍ରେ କରି ॥
ରାଜ୍ୟ ସମ୍ପଦ ତେଜି ଖରେ । ରହିଲେ ପର୍ବତ ଉପରେ ॥
ସକଳ ଚିନ୍ତା ଛାଡ଼ି ମନେ । କେବଳ ଶ୍ରୀକୃଷ୍ଣ ଭଜନେ ॥
ଏଣେ ପୁତ୍ରଟି ରାଜା ହୋଇ । କେତେ ବା ଦିନ ଗଲା ବହି ॥
ଦିନକୁ ଦିନ ସେ ଅଜ୍ଞାନ । ମନ୍ଦକର୍ମରେ ଦେଲା ମନ ॥
କୂଟ କେଉଟା ପଶା ରଙ୍ଗେ । ମାତିଲା ବେଶ୍ୟାଗଣ ସଙ୍ଗେ ॥
ମେଣ୍ଢ କୁକ୍କୁଡ଼ ଯୁଦ୍ଧମାନ । ମାଦକ ଦ୍ରବ୍ୟ କଲା ପାନ ॥
ଅନ୍ୟାୟ କଲା ସେ ବହୁତ । ହରିଲା ପରନାରୀ ବିତ୍ତ ॥

ପ୍ରଜାକୁଳକୁ ଦେଲା ଦୁଃଖେ । ଭକ୍ଷ୍ୟା ନ ପାଇଲେ ଭକ ॥
ସାଧୁଙ୍କ ସଙ୍ଗ କଲା ଦୂର । ବିପ୍ରଙ୍କୁ ଦେଖି ବୋଲେ ମାର ॥
ହରି ଭକତ ମାର୍ଗ କଥା । ନ ଶୁଣେ ଶ୍ରବଣେ ସର୍ବଦା ॥
ଅନ୍ୟାୟ ଉପଦ୍ରବ ଯେତେ । ଯତ୍ନେ ସେ କଲା ଅପ୍ରମିତେ ॥
ସହି ନ ପାରି ପ୍ରଜାକୁଳ । ସମସ୍ତେ ହେଲେ ଏକଠୁଳ ॥
ବୋଇଲେ କି କରିବା ଏବେ । ଚାଲ କହିବା ରାଜା ଆଗେ ॥
ଏମନ୍ତ କହି ଚଳିଗଲେ । ଷୋଳର ପର୍ବତେ ମିଳିଲେ ॥
ଭେଟିଲେ ରାଜା ଆଗେ ଯାଇ । ସମସ୍ତେ ପାଦେ ପଡ଼ି ଧାଇ ॥
ଉଠି କପାଳେ ଦେଲେ କର । ବୋଲନ୍ତି ନମୋ ଦଣ୍ଡଧର ॥
ତୋ ଯଶଚନ୍ଦ୍ର ଆହ୍ଲାଦେ । ସର୍ବେ ବଞ୍ଚିଲୁ ଅପ୍ରମାଦେ ॥
ଏ ତୁମ୍ଭ ପୁତ୍ରର ପ୍ରତାପ । ଦ୍ୱିତୀୟ ଅନଳ ସ୍ୱରୂପ ॥
ଅନ୍ୟାୟ ଉପଦ୍ରବ ଯେତେ । ତାହା କହିବୁ ଅବା କେତେ ॥
ନ ସହି ପାରି ସର୍ବଜନ । ଆଇଲୁ ତୁମ୍ଭ ସନ୍ନିଧାନ ॥
ଏ ତୁମ୍ଭ ଚରଣ୍ଟ ନ କରି । ବୋଲଇ ବୃଦ୍ଧ ଦଣ୍ଡଧାରୀ ॥
ବନସ୍ତେ ରହିଅଛୁ ଯାଇ । ତପସ୍ୱୀ ଜନ ପ୍ରାୟ ହୋଇ ॥
ତାହାକୁ ନ ଦିଅ ରେ କଷ୍ଟ । ଥାଉ ସେ ଫଳମୂଳ ଭକ୍ଷି ॥
ଜୀଇଲେ ଜୀଉ ମଲେ ମରୁ । ଆମ୍ଭ ଅରଣ୍ୟବାସୀମାନ ସନ୍ତୁ ॥
ଏମନ୍ତ ବୋଲଇ ତୁମ୍ଭଙ୍କୁ । ଶୁଣି ବଦାର ହୁଏ ବୁକୁ ॥
ଆଉ ସେ ପ୍ରଜାକୁଳ ଯେତେ । ରଖିବ ନାହିଁ କଦାଚିତେ ॥
ଏଥିଁ ଟି ଆମ୍ଭର ମରଣ । ହୋ ରାଜା ହେଲା ବୋଲି ଜାଣ ॥
ତା ଶୁଣି ଶ୍ରୀହରିଚନ୍ଦନ । ଅଙ୍ଗ ହୋଇଲା କମ୍ପମାନ ॥
ପୁଲକ ହେଲା ରୋମାବଳୀ । ନେତ୍ର ଲୋତକ ଧାର ଗଳି ॥
ହୃଦରୁ ଉଡ଼ିଲା ସାହସ । ବହିଲା ପ୍ରଖର ନିଃଶ୍ୱାସ ॥
ବଦନୁ ବଚନ ନ ସ୍ଫୁରି । ବୋଇଲା କି କଲେ ଶ୍ରୀହରି ॥
ଏମନ୍ତ ବୋଲି ପେଷେ ଦୂତ । କହିବ ପୁତ୍ରର ଅଗ୍ରତ ॥

ବୋଲିବ ପିତାଙ୍କ ସନ୍ଦେଶ । ବହନ ହୋଇ ଥରେ ଆସ ॥
ତା ଶୁଣି ଦୂତେ ଚଳିଗଲେ । ନବ ନୃପତି ପାଶେ ହେଲେ ॥
ବୋଇଲେ ପିତା ଆଜ୍ଞା ଆସ । ବହନ ଯିବା ରାଜା ପାଶ ॥
ଶୁଣି କୁମର କ୍ରୋଧଭରେ । ବୋଇଲେ ଦୂତଙ୍କ ଆଗରେ ॥
ଆନ୍ତର ଆଜ୍ଞା ବୋଲିବାର । ପୁଚ୍ଛିବା ଅଛି କି ତୁମ୍ଭର ॥
ରହିଲ ସନ୍ନ୍ୟାସୀ ହୋଇଣ । ପ୍ରଜା ଗୁହାରି କେତେ ଶୁଣ ॥
ଦଇବେ ବୃଦ୍ଧ କାଳ ହେଲ । ବୋଲ ତୁମ୍ଭର କିସ ଗଲ ॥
କାହିଁରେ କହୁହିଁ ନ କହ । ଅଦୃଷ୍ଟ ମାନ ସୁଖେ ରହ ॥
ତା ଶୁଣି ଦୂତେ ଗଲେ ଚଳି । ବୃଦ୍ଧରାଜା ପାଖରେ ମିଳି ॥
ବୁଝାଇ କହିଲେ ସମସ୍ତ । ଶୁଣି ରାଜନ ସ୍ତମ୍ଭୀଭୂତ ॥
ବୋଇଲେ ଆହେ ଧର୍ମଦେବ । ତୋତେ ଗୋଚର ସିନା ସର୍ବ
ଏଥକୁ ସାକ୍ଷୀ ତୁ କେବଳ । ସାକ୍ଷୀ ଯେ ଦଶ ଦିଗପାଳ ॥
ବାସୁକି ଆଦି ନାଗ ଯେତେ । ଏଥକୁ ସାକ୍ଷୀ ଏ ସମସ୍ତେ ॥
ଆଜନ୍ମଁ ମୋର ବଂଶେ ଆଉ । ଏ ରାଜ୍ୟେ ରାଜା କେହି ନୋହୁ
ଯେ ଅବା ନୃପତି ହୋଇବ । ତାର ମୂର୍ଦ୍ଧନା ଫାଟିଯିବ ॥
ଏମନ୍ତ କହି କ୍ରୋଧ ଭରେ । ଶ୍ରୀହସ୍ତ ପିଟିଲେ ପଥରେ ॥
ବୋଇଲେ ଯେବେ ଧର୍ମ ସତ । ଫାଟିଣ ଯାଉ ଏ ପର୍ବତ ॥
ରାଜାର ମୂର୍ଖ ଏହା ଶୁଣି । ଫାଟିଲ ପର୍ବତ ଧରଣୀ ॥
ତାହା ଦେଖିଣ ମହୀପାଳ । ଧ୍ୟାନେ ଚିନ୍ତିଲେ ଆଦିମୂଳ ॥
ବୋଇଲେ ନମୋ ଚକ୍ରପାଣି । ଶରଣ ଜନ ଚିନ୍ତାମଣି ॥
ଭୃତ୍ୟବତ୍ସଳ ଦୀନବନ୍ଧୁ । ମହାମହିମ କୃପାସିନ୍ଧୁ ॥
ବ୍ରଜବଲ୍ଲଭ ବଂଶୀହସ୍ତ । ସକଳ ଜୀବ ପ୍ରାଣନାଥ ॥
ଦେଖାଅ ତୋ ଚନ୍ଦ୍ରବଦନ । ମୁଁ ନଷ୍ଟେ ହାରିବ ଜୀବନ ॥
ଏମନ୍ତ କହି ନରସାଇଁ । ଦଶଦିଗକୁ ଦେଲ ଗୁହିଁ ॥
ଯେଣେ ଗୁହିଁଇ ତେଣେ ହରି । ଦିଶନ୍ତି ଶଙ୍ଖଚକ୍ରଧାରୀ ॥

ଅତି ଆନନ୍ଦ ମନ ହୋଇ । ବୋଲଇ ନାସ୍ତରଳ ମୂର୍ହି ॥
ଏମନ୍ତ କହି ବେଗେ ଉଠି । ପ୍ରଣାମ କଲା କୋଟି କୋଟି ॥
ସମସ୍ତେ ଦେଖୁଁ ଦେଖୁଁ ତହିଁ । ପଡ଼ିଲେ ସେ ବବରେ ତେଜିଁ
ପିଣ୍ଡ ସହିତେ ପ୍ରାଣ ଗଲା । ଗୋବିନ୍ଦ ପଦେ ଲୀନ ହେଲା ॥
ଶୁଣ ସୁମନ ଚୂଡ଼ାମଣି । ଏ ଦାର୍ଢ୍ୟଭକ୍ତି ରସବାଣୀ ॥
କହଇ ବିପ୍ର ରାମଦାସ । ସନ୍ଥ ଚରଣେ ମୋର ଆଶ ॥
ମୁଁ ବଡ଼ ନଷ୍ଟ ହୀନବୁଦ୍ଧି । କରିଛି ପ୍ରଭୁ ଅପରାଧ ॥
ଶ୍ରୀରାମ ପାଦପଦ୍ମତଳେ । ଭେଟାଇ ଦିଅ ମୋତେ ବେଳେ
ଏତେକ ମାଗୁଣି ମୋହର । ପତିତ ଜନକୁ ଉଦ୍ଧର ॥
ମୁଁ ଯେ କହୁଛି ବାର ବାର । ହେ ସାଧୁ କର ବା ନ କର ॥
ଅତି ବିନୟ ଭାବ କରି । ମାଗୁଛି ତୁମ୍ଭ ପାଦ ଧରି ॥

ଇତି ଶ୍ରୀ ଦାର୍ଢ୍ୟଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ ହରି-
ଚନ୍ଦନ ଗୁଣବର୍ଣ୍ଣନେ ନାମ ଷଟ୍‌ତ୍ରିଂଶୋଽଧ୍ୟାୟଃ ।

---

## ସପ୍ତତ୍ରିଂଶ ଅଧ୍ୟାୟ
## ମଙ୍ଗଳ ଗଉଡ଼ ସମ୍ବାଦ

ନମସ୍ତେ ପ୍ରଭୁ ରଘୁବୀର । ବାଞ୍ଛା ସମ୍ପୂର୍ଣ୍ଣ କର ମୋର ॥
ଚୈତନ୍ୟ ରାଜା ଅତି ତୋଷେ । କହେ ସୁମନ ରାଜାପାଶେ ॥
ଶୁଣ ସୁମନ ଶୁଦ୍ଧଚିତ୍ତେ । ଏବେ ଯା କହୁଅଛି ତୋତେ ।
ଅତି ଅପୂର୍ବ ଏହି ରସ । ଶୁଣି କଲ୍ମଷ ହୋଏ ଧ୍ୱଂସ ॥
ଉତ୍ତର ଖଣ୍ଡେ ଏକ ଗ୍ରାମ । କମଳାବତୀପୁରନାମ ॥
ପାଞ୍ଚ କୋଶର ସେ ନଗର । ସେହି ଗ୍ରାମରେ ତାର ଘର ॥
ଜାତିରେ ଅଟଇ ଗଉଡ଼ । ଅତି ଦାମ୍ଭିକ ମୂର୍ଖ ମୂଢ଼ ॥
ନ ଜାଣେ ପାଠଶାସ୍ତ୍ର ରୀତି । ନାହିଁ ତା ବିପ୍ରଦେବେ ଭକ୍ତି ॥
ନୋହେ ଆଗମୀ ଶୁଚିମନ୍ତ । ନ ଜାଣେ ବେଦର ବେମନ୍ତ ॥

ଦାସ୍ତା ବନସ୍ତୁଭାବ ଯେହ୍ନ । ସର୍ବଥା ନ ଜାଣଇ ସେହୁ ॥
ହରି ଭଜନ ବୋଲିବାର । ଦିନେ ନ ଆସେ ତୁଣ୍ଡେ ତାର ॥
ଧର୍ମ ପୁରାଣ ବୋଲି ଯାହା । ଶ୍ରବଣେ ନ ଶୁଣଇ ତାହା ॥
ନାମ ମଙ୍ଗଳ ମହାଖଣ୍ଡି । ଏ କଥା କେବଳ ତା ବୁଢ଼ ॥
ଯାହା ବଗୁରେ ତାର ଶତେ । ସେ କଥା କରିବା ପର୍ଯ୍ୟନ୍ତେ ॥
ମନରୁ ନ ଛାଡ଼େ କେବଳ । ସେ କଥା କରିଥାଇ ମୂଳ ॥
ଏମନ୍ତେ ସେ ଗୋପାଳ ଥାଇ । କେବଳ ଗୋଧନ ଚରାଇ ॥
ନ ଜାଣେ ଆନ କଥାମାନ । ଗୋରୁ ଚରାଇ ନିଏ ଦିନ ॥
ପଶୁଙ୍କ ସଙ୍ଗେ ଦିନ ବଞ୍ଚି । ନ ଜାଣେ ଗୃହକର୍ମ କିଛି ॥
ପୁନି ଦୁହିତା ପତ୍ନୀ ତାର । ନେଇଣ ଦିଅନ୍ତି ଆହାର ॥
ଗୋଷ୍ଠରେ ଭୁଞ୍ଜି ବଞ୍ଚେ ଦିନ । କେବେହେଁ ନ ଆସେ ଭବନ
ଏମନ୍ତେ କେତେ ଦିନ ଗଲା । ଅର୍ଦ୍ଧ ବୟସ ଆସି ହେଲା ॥
ନ ଘେନେ ଗୁରୁ ଉପଦେଶ । ଲୋକେ କରନ୍ତି ଉପହାସ ॥
ବୋଲନ୍ତି ଶୁଣ ଆରେ ଭାଇ । ଜ୍ଞାନ ଗୋଚର ତୋର ନାହିଁ ॥
କାଳ ହୋଇଲା ଆସି ଶେଷ । ନ ଘେନୁ କର୍ଣ୍ଣେ ଉପଦେଶ ॥
ଶ୍ରୀଗୁରୁ ମନ୍ତ୍ର ବିନା ଜାଣ । ତୋ ପିଣ୍ଡ ହେଲା ଅକାରଣ ॥
ନରକେ ପଡ଼ିବୁ ତୁ ଯାଇ । ତରିବା ପଥ ଆଉ ନାହିଁ ॥
ଏବେ ତୁ ଆମ୍ଭ ବୋଲ ମାନ । ଶ୍ରୀଗୁରୁ ମନ୍ତ୍ର କର୍ଣ୍ଣେ ଘେନ ॥
ନୋହିଲେ ମରିବୁ ଅବଶ୍ୟ । ମଲେ ନରକେ ହେବ ବାସ ॥
ଶୁଣି ଗଉଡ଼ ହସ ହସ । କହଇ ସେ ଲୋକଙ୍କ ପାଶ ॥
ଭଲ କହିଲ ତୁମ୍ଭେମାନେ । ମନ୍ତ୍ର ଘେନିଲେ ମୁହିଁ କର୍ଣ୍ଣେ ॥
ତୁମ୍ଭର ପରିପ୍ରେ ନିରତେ । ପଡ଼ିବ ପାଦତଳେ କେତେ ॥
ନ କଲେ ଦଣ୍ଡବତ ମାନ । ଗୁରୁ କରିବେ ଦୁଃଖମନ ॥
ତୁମ୍ଭେ ଯେ ଗାଳିଦିଅ ମୋତେ । ଏହା ମୁଁ କରିବ କେମନ୍ତେ ॥
ମନ୍ତ୍ର କର୍ଣ୍ଣରେ ଯେବେ ନେବ । କେବଳ କଥାଏ କରିବ ॥

ପଥେ ଯେ ଆତଯାତ ଜନ । କରୁଥିବ ମୁଁ ଅନୁମାନ ।
ଯେ ଅବା ଅପୂର୍ବ ବୈଷ୍ଣବ । ଯେବେ ପଥରେ ଦେଖାଯିବ ॥
ମନ୍ତ୍ର ଘେନିବ ତାଙ୍କଠାର । ଏ କଥା ଉଚିତ ମୋହର ॥
ଦଧି ବା ଦୁଗ୍ଧ ପିଇ ଖାଇ । ମୋ କର୍ଣ୍ଣେ ମନ୍ତ୍ର ଯିବେ କହି ।
ଆଜ ଦେଖିବ ନାହିଁ ଥରେ । ପଡ଼ିବ ନାହିଁ ଏ ଦଣ୍ଡରେ ॥
ଏ କଥା ନ ଯୋଗାଏ ମୋତେ । ବୋଲିଣ ଚଳିଲ ତୁରିତେ ॥
ଯାଇ ରହିଲା ଗୋଗୋଷ୍ଠରେ । ସେ ଗୋରୁ ପାଳଙ୍କ ସଙ୍ଗରେ ॥
ବସ୍ତୁରୁ ଥାଇ ତାର ଚିତ୍ତେ । ଉତ୍ତମ ଲୋକମାନେ ଯେତେ ॥
କହିଲେ ନାନାବିଧ ପ୍ରକାରେ । ଶ୍ରୀଗୁରୁ ମନ୍ତ୍ର ଘେନିବାରେ ॥
ଯେବେ ମୁଁ ଦେଖିବି ଅତିଥ । ମନ୍ତ୍ର ଘେନିବା କଥା ସତ ॥
ଏମନ୍ତ ବୋଲି ପ୍ରତିଦିନ । କରୁଥାଇ ସେ ଅନମାନ ॥
ରାଜପଥକୁ ନିତି ଆସି । ସମସ୍ତ ଜାଣି ଥାଏ ବସି ॥
ଯିବା ଆସିବା ଜନ ଯେତେ । ତାଙ୍କୁ ପଚାରୁଥାଏ ନିତ୍ୟେ ॥
ବୈଷ୍ଣବମାନେ ଆସିବାରେ । ଦେଖିଲେ କହିବ ପଥରେ ।
ଉଚ୍ଚ ପାଦପ ବୃକ୍ଷେ ଉଠି । ଚାରିଦିଗକୁ ଦିଏ ଦୃଷ୍ଟି ॥
କରୁଥାଏ ସେ ଅନୁମାନ । ଏମନ୍ତେ ଗଲା କେତେ ଦିନ ॥
ଦୈବ ଯୋଗେ ଏକ ଦିନ । କରୁଅଛି ସେ ଗୋଦୋହନ ।
ଏମନ୍ତ ବେଳରେ ଅତିଥ । ଆସି ହୋଇଲେ ଉପଗତ ॥
ଅତି ବିରାଜମାନ ହୋଇ । ଏକାକୀ ସଙ୍ଗେ କେହି ନାହିଁ ॥
ଡୋର କୌପୁନୀ କଟିମାଝେ । ଶ୍ରୀ ଅଙ୍ଗେ ବିଭୂତି ବିରାଜେ ॥
ମସ୍ତକେ ଶୋଭେ ଜଟା ଭାର । ତୁମ୍ବା ଲାଉଏ ଅଛି କର ॥
ଶ୍ରୀହରି ମନ୍ଦିର ତିଳକ । ଭାଲ ପଟରେ ଜକ ଜକ ।
ଅତି ବିଚିତ୍ର ଶୋଭାବନ । ତାହାକୁ ଦେଖିଣ ନୟନ ।
ଗୋଧନ ଦୁହାଁ ଦୂର କରି । ଉଠିଲା କ୍ଷୀରଭାଣ୍ଡ ଧରି ।
ଧାଇଁଲା ବେଗ ବେଗ ହୋଇ । ଡାକିଲା, ରହ ହେ ଗୋସାଇଁ ॥

ଶୁଣି ସେ ରହିଲେ ଅଭୟ । ଗରୁଡ଼ ହୋଇଲା ଉପଗତ ॥
କ୍ଷୀର କଳସୀ ତଳେ ଥୋଇ । ସାଷ୍ଟାଙ୍ଗେ ପାଦେ ପଡ଼ିଗୋଇ ॥
ଉଠି ମସ୍ତକେ କର ଦେଲା । ଶୁଣ ହୋ ଗୋସାଇଁ ବୋଇଲା
ଏ କ୍ଷୀରଭୋଜନ କରିବ । ମୋ କର୍ଣ୍ଣେ ମନ୍ତ୍ର ଦେଇଯିବ ॥
ମୁଁ ଯେ ହୋଇବି ତୁମ୍ଭ ଶିଷ୍ୟ । ଏ କଥା କର ତୁ ଅବଶ୍ୟ ॥
ତା ଶୁଣି ବୋଲନ୍ତି ଅଭୟେ । ଶୁଣ ଗୋପାଳ ଶୁଦ୍ଧଚିତ୍ତେ ॥
ଚାଲ ତୋ ଭୁବନକୁ ଯିବା । ଉତ୍ତମ ସ୍ଥାନେକ ଦେଖିବା ॥
ମନ୍ଦିର ଲିପା ପୋଛା କରି । ବସିବା ଗୋବିନ୍ଦ ସୁମରି ॥
ବିଷ୍ଣୁଙ୍କୁ ଭଜନ କରିବା । ତେବେ ତୋ କର୍ଣ୍ଣେ ମନ୍ତ୍ରଦେବା
ନୋହିଲେ ହୋଇବ କେମନ୍ତେ । ଜଗତେ କି ବୋଲିବେ ମୋତେ
ତା ଶୁଣି ବୋଲଇ ଗୋପାଳ । ମୁଁ ଯେ ଜାଣେ ଏ ଜଞ୍ଜାଳ ॥
କେବଳ ଏହି ସ୍ଥାନେ ଥିବ । ମନ୍ତ୍ର ଦେଇଣ ମୋତେ ଯିବ ॥
ନୋହିଲେ ଭଲ ନାହିଁ ତୋର । ମୁହିଁ ମରିବି ତୋ ଆଗର ॥
ମାରିବ ମରିବ ଧ୍ରୁବ କଥା । କେବେହେଁ ନୋହିବ ଅନ୍ୟଥା
ଶୁଣି ଅଭୟ ଭୟ କଲେ । ଆପଣା ମନେ ବିଚାରିଲେ ॥
ବୋଇଲେ ଏ ବଡ଼ ମୂରୁଖ । ନିଶ୍ଚୟ ଦେବ ମୋତେ ଦୁଃଖ ॥
ଏହାକୁ ମନ୍ତ୍ର ମୁଁ ନ ଦେଲେ । ଏ ତ ନ ଛାଡ଼େ ମୋତେ ଭଲେ
କରେ ଧେନୁନ୍ତି ଠେଙ୍ଗା ଗୋଟି । ମୋତେ ଏ ପକାଇବ ପିଟି ॥
ଏମନ୍ତ ଭାବି ଅଭୟ ଧୀରେ । କହିଲେ ଗରୁଡ଼ ଆଗରେ ॥
ବୋଇଲେ ଶୁଣ ରେ କୁମର । ଏ ନିର୍ଦ୍ଧାର ବାକ୍ୟ ମୋର ॥
ଆମ୍ଭେ ଯଦ୍ୟପି ଗୁରୁ ହେବୁ । ଆମ୍ଭର ଆଜ୍ଞା ମାନିଥିବୁ ॥
ତୋତେ ଯା ଦେବୁ ଉପଦେଶ । ତୁହି ତା କରିବୁ ଅବଶ୍ୟ ॥
ଏ କଥା କହ ସତ୍ୟ ମୋତେ । ଶୁଣି ଗରୁଡ଼ ଶ୍ରଦ୍ଧାଚିତ୍ତେ ॥
ବୋଇଲା ଯେ ଆଜ୍ଞା ତୋହର । ସେହି ସେ ପାଷାଣର ଗାର ॥
ତା ଶୁଣି ବୈଷ୍ଣବ ଆନନ୍ଦ । ଗାଇଲେ ଗୋବିନ୍ଦ ଗୋବିନ୍ଦ ॥

ଆନନ୍ଦେ ବସିଲେ ସୁମର । ସେ ଅଙ୍ଗନ୍ୟାସ ଆଦିକରି ॥
ବୋଇଲେ ବସ ରେ ଗୋପାଳ । ଚିନ୍ତିଲେ ପ୍ରଭୁ ଆଦିମୂଳ ॥
ଶୁଣି ଗୋପାଳ ଦଣ୍ଡବତ । କରଣ ବସିଲା ଅଗ୍ରତ ॥
ଅଢଥି ବସ୍ତ୍ର ବସ୍ତ୍ରୁ କରି । ତା ଅଙ୍ଗେ ଛୁଇଁଲେକ ବାରି ॥
ମସ୍ତକେ ଶ୍ରୀହରି ମନ୍ଦର । ତିଳକ ଦେଲେ ଶୋଭାବର ॥
ବାହୁଯୁଗଳ ହୃଦାଗତେ । ତିଳକ ଦେଲେ ବିଧିମତେ ॥
ମୁଖେ ନିର୍ମାଲ୍ୟ ଦେଲେ ତାର । ବସାଇ ତୃଣର ଉପର ॥
କର୍ଣ୍ଣେ କହିଲେ ମହାମନ୍ତ୍ର । ବୋଇଲେ ହେଲୁ ତୁ ପବନ ॥
ଯାହା ଭୁଞ୍ଜିବୁ ଇଚ୍ଛା ତୋର । ଦେବୁ ତୁ ଶ୍ରୀକୃଷ୍ଣ ମୁଖର ॥
ଆଗ ଗୋବିନ୍ଦେ ଭୋଗ ଦେବୁ । ପଛେ ତୁ ଶେଷହିଁ ଭୁଞ୍ଜିବୁ ॥
ଶୁଣି ଗଜେନ୍ଦ୍ର ବୋଲେ ସାଇଁ । କହ ସେ କୃଷ୍ଣ ଅଛି କାହିଁ ॥
କେମନ୍ତ ସ୍ୱରୂପ ତାହାର । କହଣ ଥାଅ ମୋ ଆଗର ॥
ଶୁଣି କହନ୍ତି ଗୁରୁ ତାକୁ । ତୁ ମନ ଦିଅ ଏ କଥାକୁ ॥
ସକଳ ଘଟେ ବାସ ତାର । ପୂରିଛି ସଂସାରଯାକର ॥
ଯହିଁ ଖୋଜିଲେ ତହିଁ ଅଛି । ଅପୂର୍ବ ରୂପ ସେ ଶ୍ରୀବତ୍ସି ॥
ନୀଳଜୀମୂତ କଳେବର । ରାଜୀବଲୋଚନ ସୁନ୍ଦର ॥
ପୂର୍ଣ୍ଣଚନ୍ଦ୍ରମା ପ୍ରାୟେ ମୁଖ । ଦେଖିଲେ ଛାଡ଼ିଯିବ ଦୁଃଖ ॥
କମ୍ବୁ ବିଦ୍ରୁମ ରଙ୍ଗାଧର । ପୀତ ବସନ ବେଣୁଧର ॥
ହେମ କଙ୍କଣୀ କଟୀମାଝେ । ଚରଣେ ନୂପୁର ବିରାଜେ ॥
ଏମନ୍ତ ରୂପ କରି ଧ୍ୟାନ । ନିବେଦ୍ୟ ତୁ ଦେଉଥିବୁ ଅନ୍ନ ॥
ଏମନ୍ତ ବୋଲିଣ କହିଲେ । ସେ କ୍ଷୀର ଧେନୁଣ ଚଳିଲେ ॥
ଗଜେନ୍ଦ୍ର ଦଣ୍ଡବତ କରି । ରହିଲା ଗୋଧନ ଆବୋରି ॥
ଶୁଣ ହେ ସୁମନ ସୁଚରିତ୍ରେ । ଏଥି ଉତ୍ତରୁ କଥା ଯେତେ ॥
ସେ କଥା କହୁଅଛି ଏବେ । କେବଳ ଶୁଣ ଶ୍ରଦ୍ଧାଭାବେ ॥
ପତ୍ନୀ ତା ସ୍ୱାମୀର ନିମନ୍ତେ । ଅନ୍ନ ବ୍ୟଞ୍ଜନ ଧରି ହସ୍ତେ ॥

ଆଣି ତା ପତ୍ର ହସ୍ତେ ଦେଲା । ନନ୍ଦପୁରକୁ ଚଳିଗଲା ॥
ଗୋପାଳ ଅନ୍ନ ଧରି କରେ । ପଶିଲେ ବନସ୍ତ ଭିତରେ ॥
ଉତ୍ତମ ସ୍ଥାନ ଗୋଟି ଜାଣି । ନିର୍ମଳ କଲା ସିଞ୍ଚି ପାଣି ॥
ଗୋମୟେ ପରିଷ୍କାର କଲା । ସେ ଅନ୍ନ ସେ ସ୍ଥାନେ ରଖିଲା
ତୁଳସୀ ଦଳ ତହିଁ ଭରି । ମନରେ କୃଷ୍ଣଙ୍କୁ ସୁମରି ॥
ବୋଇଲା ଆସ ଗୋପୀନାଥ । ବସି ଭୁଞ୍ଜିବ ପର୍ବ ଭାତ ॥
ଶ୍ରୀଗୁରୁ କହିଗଲେ ମୋତେ । ତୁମ୍ଭଙ୍କୁ ଦେବାର ନିମନ୍ତେ ॥
ତୁମ୍ଭର ଯେଉଁ ଅବଶେଷ । ତାହା ମୁଁ ଭୁଞ୍ଜିବି ଅବଶ୍ୟ ॥
ନୋହିଲେ ନ ଭକ୍ଷଇ ଜଳ । ସ୍ୱରୂପ କହିଲି କେବଳ ॥
ଏମନ୍ତ ବୋଲି ନାନାମତେ । ବୁଲି ସେ ଡାକିଲା ବନସ୍ତେ ॥
ଯନ୍ତେ ସେ କୃଷ୍ଣଙ୍କୁ ନ ଦେଖି । ଅନ୍ନ ବ୍ୟଞ୍ଜନ ଦେଲା ରଖି ॥
ଭୁଞ୍ଜିଲା ନାହିଁ କଦାଚିତେ । ସେ କ୍ଷୀର ନୀରହିଁ ସହିତେ ॥
ରହିଲା ଉପବାସୀ ହୋଇ । ଗୋବିନ୍ଦଠାରେ ଭାର ଦେଇ ॥
ପ୍ରତିଦିନହିଁ ଏହିମତେ । ଅନ୍ନ ବ୍ୟଞ୍ଜନ ଆଣିଦ୍ୟନ୍ତେ ॥
ଥୋଇ ସେ ବନସ୍ତ ଭିତର । ଡାକଇ ଅନେକ ପ୍ରକାର ॥
କାହିଁ ଅଛ ହେ ପୀତବାସ । ମଣୋହି କରିବାକୁ ଆସ ॥
ଏମନ୍ତ ଡାକନ୍ତେ କେବଳ । ପ୍ରବେଶ ହେଲା ସନ୍ଧ୍ୟାବେଳ ॥
କେଉଟି ନ ଦେଖି ନିରେଖି । ଅନ୍ନ ପକାଇ ଦେଇ ବେଗେ ॥
ଆପଣେ ଉପବାସେ ରହି । ଜଳ ସ୍ମରଣ ନ କରଇ ॥
ଏମନ୍ତେ ଅଷ୍ଟାଦଶ ଦିନ । ଗଲା ସେ ନ କଲା ଭୋଜନ ॥
ପେଟ ଲାଗିଲା ପୃଷ୍ଠଦେଶ । ରହିଲା ଅସ୍ଥି ଚର୍ମ ଶେଷ ॥
ଆଉ ଉଠିବା ଶକ୍ତି ନାହିଁ । ବଚନ ନ ପାରଇ କହି ॥
ଚକ୍ଷୁହିଁଲେ ନିର୍ମଳ ନ ଦିଶି । ଦେହେ ଜନ୍ମିଲା ଭ୍ରମ ଆସି ॥
ଏମନ୍ତ ହେଲା ସେ କେବଳ । କଲା ସେ ଏହି କଥା ମୂଳ ॥
ବୋଇଲା ପ୍ରାଣ ପଛେ ଯାଉ । ଲଙ୍ଘିବି ଗୁରୁ ଆଜ୍ଞା କାହୁଁ ॥

ଏ ଦେହ ବଞ୍ଚିଲେ ନାସ୍ତି ତ । ମରଣ କଥା ସିନା ସତ ॥
ଯଦ୍ୟପି ଗୁରୁ ଆଜ୍ଞା ସତ । ମୋ ପ୍ରାଣ ଯେବେ ହେବ ହତ
ବସିବ ବୈକୁଣ୍ଠରେ ଯାଇ । ଏଥେ ମୋ ଶୋଚନା ନ ଥାଇ
ଏମନ୍ତ ବୋଲି ସେ ଗରୁଡ଼ । ହୃଦପଦ୍ମରେ କଲି ଦୃଢ଼ ॥
ସପତ୍ନବଂଶ ଦାନ ହେଲା । ତା ପତ୍ନୀ ଅନ୍ନ ନେଇ ଦେଲା
ତା ଦେଖି ଚଳିଲା ଗୋପାଳ । ଚିନ୍ତିଣ ପ୍ରଭୁ ଆଦିମୂଳ ॥
ଥୋଇଣ ବସିଲା ଆସନେ । ଧ୍ୟାନ କରିଣ ତାର ମନେ ॥
ଶ୍ରୀଗୁରୁ ତାଙ୍କୁ ଶିକ୍ଷା ଦେଇ । ଯେଉଁ ସ୍ୱରୂପେ ଥିଲେ କହି ॥
ସେହି ସ୍ୱରୂପେ କରି ଧ୍ୟାନ । ବୁଜିଲା ତା ବେନି ନୟନ ॥
ବୋଇଲା ଶ୍ରୀଗୁରୁ ବଚନ । ସତ୍ୟ ଯଦ୍ୟପି ଦେବା ଜ୍ଞାନ ॥
ସତ୍ୟ ଯଦ୍ୟପି ଏ ଜଗତେ । ବିଷ୍ଣୁ ବିଜୟ ପଞ୍ଚଭୂତେ ॥
ସେ ଅନ୍ତର୍ଯ୍ୟାମୀ ଯେବେ ସତ୍ୟ । ଯେବେ ସେ ଜଗତର ନାଥ ॥
ଗୁରୁ ମୋ କହିଗଲେ ଯାହା । ସତ୍ୟ ବଚନ ଯେବେ ତାହା ॥
ତେବେ ବହନ ଆସ ହରି । ଏଥି ଭୋଜନ ଯାଅ କରି ॥
ନୋହିଲେ ମରିବ ଅବଶ୍ୟ । ଲାଗୁ ତୋତେ ଏ ହତ୍ୟାଦୋଷ
ଏମନ୍ତ ବିଚାରି ସେ ମନେ । ରହିଲା ଗୃହେଁ ଏକ ଧ୍ୟାନେ ॥
ବ୍ରହ୍ମାଦି ଦେବଙ୍କୁ ଦୁର୍ଲଭ । ମୁନିମାନଙ୍କୁ ଯେ ଅଲଭ୍ୟ ॥
ତାହା ପାଇଲା ସେ ଗରୁଡ଼ । ଫିଟିଲା ଭବବନ୍ଧ ଗାଢ଼ ॥
ଅଙ୍ଗେ ତ ପ୍ରକାଶିଲା ବଳ । ପଡ଼ିଲା ପାଦପଦ୍ମ ତଳ ॥
ଉଠିଲା ଶିରେ କରଦେଇ । ବୋଲଇ ନିସ୍ତରିଲି ମୁହିଁ ॥
ଏମନ୍ତ ପ୍ରଭୁ ସେବା ତେଜି । ଅନ୍ୟ ଦେବଙ୍କୁ ଯେହୁ ଭଜି ॥
ଧିକ ସେ ପ୍ରାଣୀଙ୍କ ଜୀବନ । ପଶୁ ପତଙ୍ଗର ସମାନ ॥
ମୁଁ ଯାହା ଦେଖିଲି ସାକ୍ଷାତେ । ତୋ ପରି ପ୍ରଭୁ ଏ ଜଗତେ ॥
ଲୋଡ଼ିଲେ ଆନ ଜଣେ ନାହିଁ । ଶୁଣି ହସିଲେ ଭାବଗ୍ରାହୀ ॥
ବୋଇଲେ ଶୁଣରେ ଗରୁଡ଼ । ଏବେ ତୁ ଯାଅ ନିଜପୁର ॥



ଭଗବାନ ଶବର ଶିକାରୀ ରୂପରେ ରାମଦାସ ପାଖରେ ପହଞ୍ଚିବାରୁ ହିଂସ୍ରଜନ୍ତୁମାନେ ପଳାଉଛନ୍ତି ।

ଜୀବନ୍ତେ ସୁଖେ ଧନ ନିଅ । ମଲେ ବୈକୁଣ୍ଠେ ଠାବ ପାଅ ॥
ଏମନ୍ତ କହି ଭଗବାନ । ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ ॥
ଗୋପାଳ ନିଜପୁରେ ଗଲା । ପ୍ରାଣାନ୍ତେ ବିଷ୍ଣୁଙ୍କୁ ଲଭିଲା ॥
ଯେ ପ୍ରାଣୀ ପଢ଼ନ୍ତି ଶୁଣନ୍ତି । ଯମଦଣ୍ଡକୁ ନାହିଁ ଭ୍ରାନ୍ତି ।
ଭଣଇ ବିପ୍ର ରାମଦାସ । ମୂଳଟି ଅଟଇ ବିଶ୍ୱାସ ॥
ଶ୍ରୀକୃଷ୍ଣ ପାଦପଦ୍ମ ଧୂଳି । ମଣ୍ଡନ ହେଉ ମୋ ମଉଳି ॥
ହେ ପ୍ରଭୁ ଏତେ ମାଗ କର । ଶରଣ ଜନ୍ମେ ଜନ୍ମେ ତୋର
କର ନ କର ତୁମ୍ଭ ଇଚ୍ଛା । କେବଳ ମୋର ଏହି ବାଞ୍ଛା ॥

ଇତି ଶ୍ରୀ ଦାର୍ଢ୍ୟଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ ମଙ୍ଗଳ ଗରୁଡ଼ ଦାର୍ଢ୍ୟଭାବ ବର୍ଣ୍ଣନେ ନାମ ସପ୍ତତ୍ରିଂଶୋଽଧ୍ୟାୟଃ ।

---

## ଅଷ୍ଟତ୍ରିଂଶ ଅଧ୍ୟାୟ
## ବାଳକ ରାମଦାସ ସମ୍ବାଦ

ନମୋ କୋଦଣ୍ଡ ମହାବାହୁ । ବାଞ୍ଛା ସମ୍ପୂର୍ଣ୍ଣ ମୋର ହେଉ ॥
କହେ ଚୈତନ୍ୟ ମହାଜ୍ଞାତା । ଶୁଣ ସୁମନ ଏହୁ କଥା ॥
ବଡ଼ ଦୁର୍ଲଭ ଏ ଚରିତ । କେବଳ ଶ୍ରବଣେ ଅମୃତ ॥
ଶୁଦ୍ଧ ପଶ୍ଚିମ ଯେ ଲାହୋର । ଦେଶରେ ଅଟେ ତାର ଘର ॥
ଜାତିରେ ଅଟେ ଦ୍ୱିଜବର । ନାମ ବାଳକ ଦାସ ତାର ॥
ମାତା ପିଅର ପାଞ୍ଚଭାଇ । ତହିଁର ମଧ୍ୟେ ଗୋଟି ସେହି ॥
ବିଷୟ କର୍ମ ଆଦି ଯେତେ । କରଇ ନାହିଁ କଦାଚିତେ ॥
ନ କରେ ମାତା ପିତା ବୋଲ । ଭ୍ରାତାଙ୍କ କଥା ମଣେ ସଲ ॥
ଫୁଲ ଚନ୍ଦନ ମାଳ ଯେତେ । ମଣ୍ଡନ ହେଉଥାଇ ନିତ୍ୟେ ॥
ପିନ୍ଧି ଉତ୍ତମ ପୀନବାସ । ବୁଲୁ ଥାଇ ଦେଶ ଦେଶ ॥
ଭୁଞ୍ଜିବା ମୂଳ ଅଟେ ସାର । ଭୋଜନ ବେଳେ ଆଗୁସାର ॥
ଉଦାସୀ ଜନ ପ୍ରାୟେ ହୋଇ । କାହିଁ କର୍ମ ନ କରଇ ॥

ଏମନ୍ତେ କେତେଦିନ ଠାରେ । ତା ପିତା ଅତି କ୍ରୋଧଭରେ ॥
ବୋଇଲେ ଶୁଣ ରେ ପାମର । ବୋଲ ତ ନ କଲୁ କାହାର ॥
ଗୃହ କଙ୍କାଳ ଯେ ହୋଇଛି । ତୋତେ ତ ନ ଲଗିଲ କିଛି ॥
କୃଷି ବାଣିଜ୍ୟ ଆଦି ଯେତେ । ନ କଲୁ ତାହା କଦାଚିତେ ॥
କେମନ୍ତେ ସରିବ ତୋ ଦିନ । ଦୁଃଖ ପାଇବୁ ରେ ଅଜ୍ଞାନ ॥
ମାତା ବୋଇଲା ଏହିମତେ । ଘରୁ ଘଉଡ଼ି ଦେଲେ ଭୂତେ ॥
ବୋଇଲେ ନ ଥା ଆମ୍ଭ ଘରେ । ଥିଲେ ମାରିବୁ ନିରନ୍ତରେ ॥
ସବୁରି ମୁଖରୁ ନିରାଶ । ଶୁଣି ବାଳକ ରାମଦାସ ॥
ମନେ ବିଚାରି କଲା ତ ରି । ଧିକ ଏ ଜୀବନ ମୋହରି ॥
ମାତା ପିତାଙ୍କରି ନିରାଶ । ଏ ଦେହେ ପ୍ରୟୋଜନ କିସ ॥
ଏଥେ ମୁଁ କି କରିବି ଆଉ । ଏ ଜୀବ ଥାଉ ଅବା ଯାଉ ॥
ଅରଣ୍ୟେ ପଶିବି ମୁଁ ଯାଇ । କେବଳ ରାମ ନାମ ଧ୍ୟାୟି ॥
ଦଇବେ ବାଳକ ବୟସ । ଛାଡ଼ି ସଂସାର ମୋହ ପାଶ ॥
ବନେ ଉତ୍ତମ ସ୍ଥାନ ଖୋଜି । ତହିଁ ବସିଲା ଚକ୍ଷୁ ବୁଜି ॥
ଏ ମନ ବୁଦ୍ଧି ଅହଂକାର । ମଦ ମାତ୍ସର୍ଯ୍ୟ ଯେ ବିକାର ॥
କାମ କଳ୍ପନା ଆଦି ଯେତେ । ଯେ ତାର ମମତା ସହିତେ ॥
ସବୁ ପକାଇ ଦେଲା ଦୂରେ । ଝାଡ଼ୁଆ ଧୂଳିର ପ୍ରକାରେ ॥
କେବଳ ଦୃଢ଼ମନେ ବସି । ମୁଖେ ଶ୍ରୀହରି ନାମ ଘୋଷି ॥
ବୋଇଲା ଆହେ ନାରାୟଣ । ଜଗତ ତୁମ୍ଭର ଭିଆଣ ॥
ଚର ଅଚର ଆଦି କରି । ସକଳ ଘଟେ ଅଛ ପୂରି ॥
ଶ୍ରୀହସ୍ତେ ଶଙ୍ଖ ଚକ୍ରଧରି । ଜନନୀ ଜଠରେ ବିହରି ॥
ଅଗାଧ ଜଳୁ ମୂର୍ତ୍ତିମନ୍ତ । କରି ଭିଆଅ ଏ ଜଗତ ॥
ପ୍ରାଣୀଙ୍କ କର୍ମରଜ୍ଜୁ ଧରି । ସଂସାର ଆତଯାତ କରି ॥
ପ୍ରାଣୀଙ୍କି ପଡ଼ିଲେ ବିପତ୍ତି । ତୋ ନାହିଁ ଅନ୍ୟ ଗତି ॥
ଏ ଯେବେ ସକଳ ପ୍ରମାଣ । ମୋତେ ଉଦ୍ଧରି ନାରାୟଣ ॥

କହିଲା ଦାସ ମୁଁ ତୁମ୍ଭର । ତୋ ଇଚ୍ଛା ଯାହା ତାହା କର ॥
ରଖ ନ ରଖ ମହାବାହୁ । ମୋର ଭରସା ନାହିଁ ଆଉ ॥
ଏମନ୍ତ ବୋଲି ମନେ ତାର । ଶ୍ରୀଗୁରୁ ମନ୍ତ୍ର କଲା ସାର ॥
ସେ ନାରାୟଣ ନାମ ଗୋଟି । ହୃଦ ପଦ୍ମରେ କଲା କଣ୍ଟି ॥
ଚଞ୍ଚଳ ଇନ୍ଦ୍ରିୟ ନିବାରି । ବସି ଏକାନ୍ତେ ଜପ କରି ॥
ଅନ୍ନ ଭୋଜନ ବୋଲି ଯାହା । ମନରୁ ଦୂର କଲା ତାହା ॥
ଯେ ଫଳମୂଳ ପତ୍ରମାନ । ଜଳହିଁ ନ କଲା ସେ ପାନ ॥
କେବଳ ହରିନାମାମୃତ । ଭୋଜନେ ସ୍ଥିର କଲା ଚିତ୍ତ ॥
କେବଳ ପ୍ରଭୁଙ୍କୁ ଦେଖିବ । ନୋହିଲେ ପ୍ରାଣ ଉପେକ୍ଷିବ ॥
ଏମନ୍ତ ଦୃଢ଼ କରି ମନେ । ବସି ଜପିଲା ଘୋର ବନେ ॥
ବହିଣ ଗଲା ଦିନ ସାତ । ଶୁଣ ହେ ମନ ନୃପନାଥ ॥
ଦଇବ ମାୟାରେ କେବଳ । ଆସି ମିଳିଲେ ବ୍ୟାଘ୍ରପଲ ॥
ଘୋର ଗର୍ଜ୍ଜନ ନାଦ କରି । ଭକ୍ଷିବା ପ୍ରାୟେ ତାକୁ ଧରି ॥
ପାଖେ ପ୍ରବେଶ ହେଲେ ଯାଇ । ନୟନେ ତାହାଙ୍କୁ ଦେଖଇ ॥
ଦେଖି ମନରେ ନାହିଁ ଭୀତ । ବୋଲେ ଯା କରିବେ ଶ୍ରୀପତି ॥
ସେ କଥା ହେବ ତ ଅବଶ୍ୟ । ମୋହର ବଳେ ହେବ କିସ ॥
ରଖିଲେ ରଖୁ ନେଲେ ନେଉ । ଏଥକୁ ଭୟ ନାହିଁ ଆଉ ॥
ଏମନ୍ତ ଭାବ ଚକ୍ଷୁ ବୁଜି । ରହିଲା ହରିଧ୍ୟାନେ ମଜ୍ଜି ॥
ଶୁଣ ହେ ମନ ନୃପବର । ତାହା ଜାଣିଲେ ନାରାୟଣ ॥
ତକ୍ଷଣେ ଶବର ରୂପରେ । କାଣ୍ଡ କୋଦଣ୍ଡ ଧରି କରେ ॥
ଧାଇଁଲେ ଅତି ବେଗ ହୋଇ । ମିଳିଲେ ଭୃତ୍ୟ ପାଖେ ଯାଇ ॥
ଦେଖିଣ ବ୍ୟାଘ୍ର ପଳାଇଲେ । ଭକତ ଅନାଇଣ ଦେଲେ ॥
ଶବର ବୋଲେ ହେ ବ୍ରାହ୍ମଣ । ବନେ ବସିଛ କି କାରଣ ॥
କି ତୋର ମନେ ଭୟ ନାହିଁ । ବ୍ୟାଘ୍ରଭଲ୍ଲୁକ ସ୍ଥାନ ଏହି ॥
ଭକ୍ଷଣ କଲେ ନାଶ ଯିବୁ । ବହନ ଉଠିଯାଅ ବାବୁ ॥

ତା ଶୁଣି ବୋଲଇ ବ୍ରାହ୍ମଣ । ଶବର ଧର୍ମପିତା ଶୁଣ ।
ପିତା ଜନନୀ ଭ୍ରାତା ମୋର । ମାର ମନ୍ଦରୁ କଲେ ଦୂର ॥
ନାହିଁ ମୋହର ଗୃହବାସ । ଗୁଡ଼ିଲି ସଂସାରର ଆଶ ॥
କେବଳ ପ୍ରଭୁ ନାରାୟଣ । ଅଶେଷ ଜୀବର କାରଣ ॥
ତାଙ୍କ ଦର୍ଶନେ ଇଚ୍ଛା ମୋର । ତେଣୁ ପଶିଲି ବନଘୋର ॥
ଶୁଣି ଶବର ଅଳ୍ପ ହସି । ବୋଇଲେ ଶୁଣ ବାଳଶିଷି ।
ତୁ ଯାହା ବୋଇଲୁ ବଚନ । କେମନ୍ତେ ପ୍ରତେ ଯିବ ମନ ॥
ଯାହାକୁ ସ୍ତବୁଛନ୍ତି ଭବ । ବ୍ରହ୍ମାଦି ଦେବଙ୍କୁ ଦୁର୍ଲଭ ।
ମୁନିଏ ଯୋଗମାର୍ଗେ ଚିନ୍ତି । ଯା ବର୍ଣ୍ଣି ଚକ୍ଷୁ ନ ପାଆନ୍ତି ।
ସେ କାହିଁ ଦେଖାଦେବେ ତାତେ । ଏହା ବିଗୃରୁ ଜନା ଚିତ୍ତେ ॥
ଉଚିତ ନୋହେ ଏ ତୋହର । ଯାଅ ତୁ ଆପଣା ମନ୍ଦର ॥
ତା ଶୁଣି ବୋଲଇ ବ୍ରାହ୍ମଣ । ହେ ଧର୍ମପିତା ମୋର ଶୁଣ ॥
ଯେ ମହାମୁନିଙ୍କ ବାକ୍ୟରେ । ଲେଖି ଅଛନ୍ତି ପୁରାଣରେ ॥
ସବୁର ଜୀବର ଜୀବନ ଅଟନ୍ତି ପ୍ରଭୁ ଭଗବାନ ॥
ସବୁର ତାତ ମାତ ସେହି । ତା ବିନା ଅନ୍ୟ ନାହିଁ କେହି ॥
ଜଗତଯାକ ଖେଳଘର । ସବୁ ଏ ଆୟୁତ୍ତ ତାହାର ।
ଯାହାକୁ ଯେଉଁ ମାର୍ଗେ ପେଷି । ତାହାକୁ ସେହି ପଥ ଦିଶି ॥
ଏ କଥା ଅଟଇ ପ୍ରମାଣ । ବୋଲି କହନ୍ତି ମୁନିଗଣ ॥
ତେଣୁ ଭରସା ମୋର ମନ । ଅବଶ୍ୟ ପାଇବ ଦର୍ଶନ ॥
ଦୁଇରୁ ଏକ ମୁଁ କରିବ । ନୋହିଲେ ଜୀବନ ହାରିବ ॥
ଏ ଦୃଢ଼ ବାଞ୍ଛା ଅଟି ମୋର । ବିଜୟ କର ହୋ ଶବର ॥
ତୁମ୍ଭର ମୁଁ ଧର୍ମବାଳକ । ମୋ ଠାରେ ଦୟାମାନ ରଖ ॥
ଏମନ୍ତ ବୋଲି ନାରାୟଣ । ନାମ ରଟିଲା ପୁଣ ପୁଣ ॥
ତାହା ଜାଣିଲେ ବାସୁଦେବ । ବୋଇଲେ ଧନ୍ୟ ଏହା ଜୀବ ॥
ମୁଁ ଯେବେ କରିବ ଶାରଣ । ଏ ବିପ୍ର ମରିବ ଅବଶ୍ୟ ॥

ଏମନ୍ତ ଭାବ ଦୟାମଣି । ନିଷ୍କାମ ଭାବ ତାର ଜାଣି ॥
ବୋଇଲେ ଶୁଣ ରେ କୁମର । ଆମ୍ଭେଟି ଜଗତଈଶ୍ୱର ॥
ଆସିଣ ଦୟା କଲୁ ତୋତେ । ବର ତୁ ମାଗି ନେଇ ମୋତେ ॥
ତା ଶୁଣି ବୋଇଲା କୁମର । ଦେଖାଅ ନିଜ ରୂପ ତୋର ॥
ଦେଖିଲେ ଚର୍ମନେତ୍ର ପଥେ । ତେବେ ମୁଁ ଯିବଇଁ ପରତେ ॥
ତା ଶୁଣି ପ୍ରଭୁ ଭଗବାନ । ବୋଇଲେ ବୁଜ ତୁ ନୟନ ॥
ତାହାଙ୍କ କଥାରେ ତୁରିତେ । ନୟନ ବୁଜି ଅନ୍ତର୍ଗତେ ॥
ଶ୍ରୀହରି ରୂପ ଧ୍ୟାନ କରି । ତାହା ଜାଣିଲେ ନରହରି ॥
ନିଜ ସ୍ୱରୂପେ ହେଲେ ଭଣ୍ଡ । କୋଟିଏ କନ୍ଦର୍ପର ପ୍ରଭା ॥
ନୀଳ ଜୀମୂତ ଅପଘନ । ଅମଳ କମଳ ନୟନ ॥
କୋଟିଏ ଚନ୍ଦ୍ର ଜିଣି ମୁଖ । ଦର୍ଶନେ ଖଣ୍ଡେ ଭବଦୁଃଖ ॥
ସୁନ୍ଦର ସୁରଙ୍ଗ ଅଧର । କଣ୍ଠେ କୌସ୍ତୁଭ ମଣିହାର ॥
ହୃଦେ ଶ୍ରୀବତ୍ସ ପାଦଚିହ୍ନ । ଫୁଟି ଦିଶଇ ଶୋଭାବନ ॥
ଶଙ୍ଖ କମଳ ଗଦା ସାର । ରଥାଙ୍ଗ ଆଦି ଚତୁଃକର ॥
ପୀତବସନ କଟିମାଝେ । ଚରଣେ ନୂପୁର ବାଜେ ॥
ଏମନ୍ତ ରୂପ ଭଗବାନ । ଦେଖି ଆନନ୍ଦ ଭୃତ୍ୟ ମନ ॥
ସାଷ୍ଟାଙ୍ଗେ ପାଦପଦ୍ମେ ପଡ଼ି । ଉଠି କପାଳେ କର ଯୋଡ଼ି ॥
ବୋଲଇ ନମୋ ନାରାୟଣ । ଅଶେଷ ବ୍ରହ୍ମାଣ୍ଡ କାରଣ ॥
କାମୀ କାମନା କାମଧେନୁ । ମହାମହିମା ରତ୍ନ ମାନୁ ॥
ସକଳ ଜୀବ ଜ୍ଞାନଗୁରୁ । ଭକତ ବାଞ୍ଛା କଳ୍ପତରୁ ॥
ମୁଁ ଘୋର ପତିତ ଅଜ୍ଞାନ । ପାଇଲି ତୁମ୍ଭ ଦରଶନ ॥
ଅଶେଷ ଜନ୍ମ ପାପ ମୋର । ଗଲା ସକଳ ହେଲା ଦୂର ॥
ଛାଡ଼ିଲା କାମବନ୍ଧ ପାଶ । ଶୁଣି ବୋଲନ୍ତି ପୀତବାସ ॥
ଭୃତ୍ୟବତ୍ସଳ ଯାର ବାନା । ନ ସହେ ସେବକ ବେଦନା ॥
ତୋ ମନୁ ସଂଶୟ ବିନାଶି । ଦେଖୁଛି ବଳେ ତୋତେ ଆସି ॥
ଏବେ ତୁ ମାଗି ନେଇ ବର । ଯେ ମନୋବାଞ୍ଛା ଅଛି ତୋର ॥

ତା ଶୁଣି ବୋଲଇ ନନ୍ଦନ । ନମସ୍ତେ ଜଗତଜୀବନ ॥
ଯେବେ ତୁ ବର ଦେବୁ ମୋତେ । ଜନ୍ମ ନୋହିବ କଦାଚିତେ ॥
ଛୁଇଁଲେ ପଥର ସୁବର୍ଣ୍ଣ । ହୋଇବ ଦେବ ଭଗବାନ ॥
ଆବର ତୋତେ ଧ୍ୟାନ କରି । ଇଚ୍ଛା ମରଣେ ଯିବ ମରି ॥
ଜୀବନ୍ତେ ସୁଖେ ଦିନ ଯିବ । ମଲେ ବୈକୁଣ୍ଠେ ଠାବ ହେବ
ଅସ୍ତୁ ବୋଇଲେ ଭଗବାନ । ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ ॥
ଏ ବର ପାଇ ବିପ୍ରବର । ଆନନ୍ଦ କେ କହୁ ତାହାର ॥
ଗୃହେତେ ଆଣିଲା ପଥର । ଛୁଇଁଲା ଆପଣା ହସ୍ତର ॥
ତକ୍ଷଣେ ହୋଇଲା ସୁବର୍ଣ୍ଣ । ଦେଖି ହରଷ କଲା ମନ ॥
ଲୋକଙ୍କୁ ବୋଇଲା ହକାରି । ଏ ସୁନା ନିଅ ବେଗ କରି ॥
ବିକି ଯେ ଆଣ ହୋ ତତ୍ପର । ମଠ ବାନ୍ଧିବା ଏହି ଠାର ॥
ଥୋକେ ମଣୋହି ସଞ୍ଜ ଘେନ । କରିବା ରନ୍ଧନ ଭୋଜନ ॥
ଆଜ୍ଞା ପ୍ରମାଣେ ତାହା କଲେ । ଭୁଞ୍ଜି ସମସ୍ତେ ସୁସ୍ଥ ହେଲେ ॥
ଏଥିଅନ୍ତରେ ଦିବ୍ୟସ୍ଥାନ । ଦେଖି ତୋଳାଇ ମଠମାନ ॥
ଶତେକ ବଖରି ଚଉଁରୀ । ତୋଳାଇ ଅତି ଯତ୍ନ କରି ॥
ବୈଷ୍ଣବ ରଖାଇ ବହୁତ । ଆପଣେ ହୋଇଲେ ମହନ୍ତ ॥
ଖଞ୍ଜିଲେ ସଦାବ୍ରତମାନ । ଦୁଃଖୀ ଦରିଦ୍ରେ ଦେଲେ ଧନ
ସେ ଦେଶେ ଥିଲା ଯେତେ ମଠ । ସବୁହୁଁ ହେଲା ଅତି ଶ୍ରେଷ୍ଠ ॥
ଜୟ ପତାକା ଉଡ଼ାଇଲେ । ଜଗତେ ଧନ୍ୟ ବୋଲାଇଲେ ॥
ବାଢ଼ିଲା ଧନ ଅପ୍ରମିତ । ଗୃହଦିଗରେ ଯେ ସମସ୍ତ ॥
କି ଅବା କୁବେର ସମ୍ପତ୍ତି । ଅଚଳାଚଳ ତା ବିଭୂତି ॥
ଗଜ ତୁରଙ୍ଗ ଉଷ୍ଟ୍ର ଆଦି । ଅନେକ ରଖିଲେ ସମ୍ପାଦି ॥
ଝମକ ବାଜେ ମଠଦ୍ୱାରେ । ଚମକ ପଡ଼ଇ ନଗରେ ॥
ସମସ୍ତେ ହେଲେ ବଶବର୍ତ୍ତୀ । କହୁ ନ ସରେ ତାଙ୍କ କୀର୍ତ୍ତି ॥
ଅନେକ ବିଧି ଭୋଗ ହେଲା । ଏମନ୍ତେ କେତେ ଦିନ ଗଲା ॥

ବାତୁର କଲ ତାଙ୍କ ମନ । ଏଥିରେ କାସ ପ୍ରୟୋଜନ ॥
ସକଳ ରୋଗ ହେଲ ଶେଷ । କରିବା କ୍ଷେତ୍ରବରେ ବାସ ॥
ସେ ପ୍ରଭୁ କମଳାରମଣ । ସେ ମୋର ଜୀବନ କାରଣ ॥
ବିଜୟ ନୀଳ ପର୍ବତେ । ଅଶେଷ ପ୍ରାଣୀଙ୍କର ହିତେ ॥
ତାହାଙ୍କୁ ଦର୍ଶନ କରିବି । ମୋର ଏ ଜୀବ ଉଦ୍ଧାରିବି ॥
ଏ କଥା ଅଟେ ମୋର ମୂଳ । ବୋଲି ସେ କରେ ଅନୁକୂଳ ॥
ଅନେକ ବୈଷ୍ଣବ ସଙ୍ଗତେ । ଯେମନ୍ତ ଚଳିଲେ ତୁରିତେ ॥
ବଜାଇ ମଙ୍ଗଳ ମହୁରୀ । ବାଙ୍କ କାହାଳି ଶଙ୍ଖ ଭେରୀ ॥
ବଜାଇ ଝମକ ନିଶାଣ । ଦମାଳୁ ନାଦ ଘୋର ଠାଣ ॥
ତା' ପଛେ ସାଜ ବାଜବୃନ୍ଦ । ଗମିଲେ ହୋଇଣ ଆନନ୍ଦ ॥
ଯେବଣ ପଥେ ଯାନ୍ତି ଚଳି । ପୃଥିବୀ ପଡ଼ଇ ଉଛୁଳି ॥
ଏମନ୍ତେ କେତେ ଦିନ ଗଲେ । ଦିଲ୍ଲୀ ସହର ପାଶେ ହେଲେ ॥
ବାଦ୍ୟ ଶବଦ ଘୋରତାନେ । କମ୍ପିଲା ଦିଲ୍ଲୀ ଅବନୀରେ ॥
ତାହା ଶୁଣିଣ ଦିଲ୍ଲୀଶ୍ୱର । ପୁଚ୍ଛିଲେ ଦୂତଙ୍କ ଆଗର ॥
କି ବାଦ୍ୟ ବାଜଇ କାହାର । ଚମକି ପଡ଼ଇ ସହର ॥
ଲୋକେ କହିଲେ ସନମତେ । ସେ ଦିଲ୍ଲୀଶ୍ୱରଙ୍କ ଅଗ୍ରତେ ॥
ଏକ ଫକୀର ଆସିଅଛି । ବଳ ତା କହି ନୁହେ କିଛି ॥
ତାହାର ବାଦ୍ୟ ଶବଦର । କମ୍ପି ଉଠଇ ଏ ନଗର ॥
ତା ଶୁଣି ବୋଲେ ଦିଲ୍ଲୀଶ୍ୱର । ବହନ ଯାଇ ମନା କର ॥
ଆଜ୍ଞା ପ୍ରମାଣେ ଦୂତେ ଗଲେ । ବୈଷ୍ଣବ ଆଗରେ କହିଲେ ॥
ଏଠାରେ ନ ବଜାଅ ବାଜା । ଦିଲ୍ଲୀଶ୍ୱର ମହାତେଜା ॥
ଶୁଣି ବାଳକ ରାମଦାସ । ଅଳପ ହେଲେ ହସ ହସ ॥
ବୋଇଲେ ଏ ଦିଲ୍ଲୀ ନୌବତ । ନ ବାଜୁ ଆଜ୍ଞା ଯେବେ ସତ ॥
ଏମନ୍ତ କହନ୍ତେ ବଚନ । ବାଜିଲା ନାହିଁ ବାଦ୍ୟମାନ ॥
ଦେଖ ସେ ଆଜ୍ଞା ସତ୍ୟ ହେଲା । ଦିଲ୍ଲୀ ନୌବତ ନ ବାଜିଲା ॥

ତା ଦେଖି ବାଦ୍ୟକାରମାନେ । ଜଣାଇ ବାଦସା ସନ୍ନିଧାନେ ॥
କିପାଁ ନୌବତ ନ ବାଜିଲା । ଏ ବଡ଼ ସଂଶୟ ଲାଗିଲା ॥
ଯେତେ ପିଟିଲେ ବାଦ୍ୟମାନ । କେବେହେଁ ନ ବାଜିଲା ଜାଣ ॥
ଏ କଥା ବୁଝି ଆଜ୍ଞା ହେଉ । ଆମ୍ଭର ଦୋଷ ନାହିଁ ଆଉ ॥
ତା ଶୁଣି ବାଦସା ଆଚମ୍ବିତ । ବୋଲଇ ଏ କି ବିପରୀତ ॥
ଦୂତେ କହିଲେ ବଦସା ଆଗେ । ଫକୀର ଆଜ୍ଞା ଦେଲା ରାଗେ ॥
ଦିଲ୍ଲୀରେ ନ ବାଜୁ ନୌବତ । ତା କଥା ହେଲା ଏବେ ସତ ॥
ଏମନ୍ତ ଶୁଣି ଦିଲ୍ଲୀଶ୍ୱର । ଆଜ୍ଞା ସେ ଦେଲା କ୍ରୋଧଭର ॥
ବୋଇଲା ଯାଅ ସୈନ୍ୟ ମୋର । ବଇଷ୍ଣବକୁ ବନ୍ଦୀ କର ॥
ଦେଖିବା ତାର କର୍ମମତ । ତା ଶୁଣି ଚଳିଗଲେ ଦୂତ ॥
ଅନେକ ସୈନ୍ୟ ଚଳିଗଲେ । ଆସି ବୈଷ୍ଣବେ ବନ୍ଦୀ କଲେ ॥
ଯୋଡ଼ିଏ ଉପରେ ବସାଇ । ବେଢ଼ିଲେ ଶତପୁର ଯାଇ ॥
କରଣ ଅତ୍ୟନ୍ତ ଆକଟ । ମାଛି ପିବାକୁ ନାହିଁ ବାଟ ॥
ଏମନ୍ତେ ତିନିଦିନ ଗଲା । ଅନ୍ନ ଯେ ଭୋଜନ ନୋହିଲା ॥
ପୁଣି କହନ୍ତି ସେ ଫକୀର । ହେ ଦୂତେ ଆମ୍ଭ ବୋଲ କର ॥
କହରେ ବାଦ୍‌ସା ଆଗେ ଯାଇ । କେବଣ ଦୋଷ କଲି ମୁହିଁ ॥
କିପାଁ ସେ ମୋତେ ବନ୍ଦୀ କଲା । ତାକୁ କି ଦଇବ ଭୁଲିଲା ॥
ଏ ଦିଲ୍ଲୀ ସହର ସହିତେ । ଅଛଇ ତାର ଗ୍ରାମ ଯେତେ ॥
ସମସ୍ତ ଜଳରେ ଭସାଇ । ସମୁଦ୍ରେ ପକାଇବ ନେଇ ॥
ନୋହିଲେ ବେଗେ ଛାଡ଼ିଦେଉ । ଅଧିକ କି କହିବି ଆଉ ॥
ତା ଶୁଣି ଦୂତେ ବେଗେ ଗଲେ । ସମସ୍ତ ବୃତ୍ତାନ୍ତ କହିଲେ ॥
ବାଦ୍‌ସା ବୋଇଲେ ହେଉହେଉ । ଦେଖିବା ସମୁଦ୍ରେ ପକାଉ ॥
ନୋହିଲେ ବନ୍ଦୀ ହୋଇଥିବ । ତାକୁ କେ ଏଥୁ ଉଦ୍ଧାରିବ ॥
ତା ଶୁଣି ଦୂତେ ବେଗେ ଗଲେ । ବୈଷ୍ଣବ ଆଗରେ କହିଲେ ॥
ବୋଇଲେ ଶୁଣ ଯତିବର । କୋପେ ବୋଇଲେ ଦିଲ୍ଲୀଶ୍ୱର ।

ଦେଖାଇ ଦେଲେ କରାମତ । ବନ୍ଧରୁ ହୋଇବ ମୁକତ ॥
ନୋହିଲେ ଥାଉ ବନ୍ଦୀ ଘରେ । ଶୁଣି ବୈଷ୍ଣବ କ୍ରୋଧଭରେ ॥
ଲେଙ୍ଗୁଟି ଫିଟାଇଣ ଦେଲେ । ସବୁ ସାକ୍ଷାତେ ମୂତ୍ର କଲେ ॥
ବୋଇଲେ ରାମଜୀ କୃପାରୁ । ଏ ଦିଲ୍ଲୀଶ୍ୱର ସବୁ ସରୁ ॥
କେବଳ ଜଳମୟ ହେଉ । ଏ ପୁର ଗୋଟି ଭାସିଯାଉ ॥
ଏମନ୍ତେ ବୋଲନ୍ତେ କେବଳ । ପୁରେ ପୂରିଲା ମୂତ୍ରଜଳ ॥
ବେନି ପ୍ରହର ମଧ୍ୟେ ପାଣି । ଦିଲ୍ଲୀ ହୋଇଲା ଆଣ୍ଠୁଆଣି ॥
ଦେଖି ଆକୁଳ ପୁରଜନେ । କହିଲେ ବାଦ୍‌ସା ସନ୍ନିଧାନେ
ବୋଇଲେ ଏକ ଚମତ୍କାର । ଗ୍ରୀଷମକାଳେ ଏତେ ନୀର ॥
ଆଉ ଦଣ୍ଡକେ ମାତ୍ର ହେଲା । କଲେ ବୁଡ଼ିବ ସବୁ ଭେଳା ॥
ଫକୀରେ ଶଦ୍ଧା ହେଲେ ତ । ହେଲେ ମରିବା କଥା ସତ ॥
ତା ଶୁଣି ବାଦ୍‌ସା ନରପତି । ହୃଦପଦ୍ମରେ କଲା ଭୀତ ॥
ବୋଇଲେ ଚାଲ ସର୍ବେ ଯିବା । ଅତିଥେ ଶରଣ ପଶିବା ॥
ବିନୟ କରି ତାଙ୍କ ପାଦେ । କ୍ଷମା କରନ୍ତୁ ଅପରାଧେ ॥
ଅନେକ ଧନ ତାଙ୍କୁ ଦେବା । ପ୍ରବୋଧି ତାହାଙ୍କୁ କହିବା ॥
କରି ଅନେକ ରୂପେ ସେବା । ତେବେ ବା ସଙ୍କଟୁ ତରିବା ॥
ଏମନ୍ତ ବୋଲି ଦିଲ୍ଲୀଶ୍ୱର । ଅନେକ ପ୍ରଜା ସଙ୍ଗତର ॥
ଧନ ବସନ ଆଦି କରି । ମଣୋହି ସଜ୍ଜାମାନ ଧରି ॥
ବୈଷ୍ଣବ ପାଶେ ଯାଇ ମିଳି । ସମସ୍ତ ସୈନ୍ୟ ହୋଇ ମେଳି ॥
ତାହାଙ୍କୁ ଦଣ୍ଡବତ କଲେ । ଭିଡି କପୋଳେ କର ଦେଲେ
ବୋଇଲେ ଦୋଷ କ୍ଷମାକର । ମହିମା ବୁଝିଲୁ ତୁମ୍ଭର ॥
ମୋ ଅପରାଧମାନ ଯେତେ । ମନେ ନ ଧର କଦାଚିତେ ॥
ମୁଁ ତୁମ୍ଭ ଧର୍ମର କୁମର । କଥାଏ ଘେନିବା ମୋହର ॥
ଆଜି ଦିନରୁଟି ଅବଶ୍ୟ । ଦିଲ୍ଲୀ ବାଳକ ରାମଦାସ ॥
ନାମ ବହିବ ଏ ଜଗତେ । ମୋହର ମାଗୁଣିଟି ଏତେ ॥

ଏମନ୍ତ ବୋଲି ଧନ ଯେତେ । ଥୋଇଲେ ଅତିଥି ଅଗ୍ରତେ ॥
ଅନେକ ବିନୟେ କହିଲେ । ଯେ ଯାହାପୁରେ ଚଳିଗଲେ ॥
ଦେଖିଲେ ଜନ କଟ୍ଟା କାହିଁ । ଧନ୍ୟ ରାମଦାସ ବୋଲଇ ॥
ଶୁଣ ହୋ ମନ ନୃପନାଥ । ସାଧୁଙ୍କ ମହିମା ଏମନ୍ତ ॥
ଶୁଣ ହୋ ମନ ମହାବଳୀ । ହରିଭକତ ଏତେ ଭଲି ॥
ଭକତ ଭଗବନ୍ତ ଦୁଇ । ଏକଇ ଆତ୍ମା ଭିନ୍ନ ନୋହି ॥
ଏ କଥା ଅଟଇ ପ୍ରମାଣ । ସୁଜନ ଜନେ ଏହା ଶୁଣ ॥
ଏ ଦାର୍ଢ୍ୟଭକ୍ତି ରସବାଣୀ । କେବଳ ଭକ୍ତି ତରଙ୍ଗିଣୀ ॥
ତରିବା ନୌକା ଏ କେବଳ । ପ୍ରାଣୀ ବିଶ୍ୱାସ ଏକା ମୂଳ ॥
ଭଣଇ ବିପ୍ର ରାମଦାସ । ମୋ ପ୍ରଭୁ କମଳାବିଳାସ ॥
ସାଧୁଜନଙ୍କ ପାଦାଗ୍ରତେ । ମୋ ମନ ରହୁ ଅବିରତେ ॥

ଇତି ଶ୍ରୀଦାର୍ଢ୍ୟଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ ଦାଳିକ ରାମଦାସ ମହିମା ବର୍ଣ୍ଣନେ ନାମ ଅଷ୍ଟଚତ୍ୱାରିଂଶୋଽଧ୍ୟାୟଃ

---

## ଊନଚତ୍ୱାରିଂଶ ଅଧ୍ୟାୟ
## ଦାଳିକ ରାମଦାସ

ମନ ଉବାଚ

ମନ ବୋଇଲେ ଚଇତନ । କହିଲ ଅପୂର୍ବ ବିଧାନ ॥
ସେ ଯେ ଦାଳିକ ରାମଦାସ । ଦାଳୀରେ କରି ଏତେ ଯଶ ॥
କହ ସେ ପୁଣ କାହିଁ ଗଲେ । କି ଅବା ଦାଳୀରେ ରହିଲେ ॥
ଏ କଥା ଫେଡ଼ି ମୋତେ କହ । ମନରୁ ଫିଟାଅ ସନ୍ଦେହ ॥
ଶୁଣି ଓଚୈତନ୍ୟ କହେ ହସି । ଶୁଣ ହୋ ମନଘଟବାସୀ ॥
ସେ ଯେ ଦାଳିକ ରାମଦାସ । କଥା କହିଲେ ନୁହେ ଶେଷ ॥
କେବଳ ଅଳପ ଅଳପ କହି । ଶୁଣ କହିବା କଥା ଗୂଢ଼ ॥

ଦାଣ୍ଡିରେ ପ୍ରତିଜ୍ଞା ଦେଖାଇ । ତହୁଁ ଚଳିଲେ ବେଗହୋଇ ॥
ସକଳ ସୈନ୍ୟ ସମତୁଲେ । ଅନେକ ତୀର୍ଥ ବୁଲିଗଲେ ॥
ଗୋପ ମଥୁରା ବୃନ୍ଦାବନ । କାଳିନ୍ଦୀ ଗିରି ଗୋବର୍ଦ୍ଧନ ॥
ଅଯୋଧ୍ୟା ଚିତ୍ରକୂଟ କାଶୀ । କାଞ୍ଚିକାବେରୀ ବାରାଣସୀ ॥
ଦ୍ୱାରକାଧାମ ରଙ୍ଗନାଥ । ଶ୍ରୀରାମେଶ୍ୱର ପୁଣ୍ୟତୀର୍ଥ ॥
ଶ୍ରୀଲଛମନ କ୍ଷେତ୍ରବର । ଦ୍ୱିତୀ ବୈକୁଣ୍ଠ ପୁଣ୍ୟତର ॥
ଯେ ପଞ୍ଚବଟୀ ଗୋଦାବରୀ । ପ୍ରାଣ ନୃସିଂହ ନରହରି ॥
ବଦ୍ରୀନାଥ ସୀମାଚଳ । ଶ୍ରୀଆଦିକୂର୍ମ ପୁଣ୍ୟଫଳ ॥
ବୁଲି ଦେଖିଲେ ତୀର୍ଥମାନ । କରଣ ପୁଣ୍ୟ ତୀର୍ଥେ ସ୍ନାନ ॥
ଗମନ୍ତି ହରିଧ୍ୱନି କରି । ଯିବା ପଥରେ ପଟହ ତୂରୀ ॥
କେ କହୁ ତାହାଙ୍କ ଆନନ୍ଦ । ସବୁ ମୁକୁଟବନ୍ଧାବୃନ୍ଦ ॥
ରବ କରଣ ସମସରି । ଝଲକେ ଶସ୍ତ୍ରମାନ ଧରି ॥
ଗଜ ତୁରଙ୍ଗ ଧାଡ଼ି ଧାଡ଼ି । ଗମନ୍ତି ରାଜପଥ ମାଡ଼ି ॥
କେବଳ ଧ୍ୟାନ ହୃଦଗତେ । କ୍ଷେତ୍ରକୁ ଯିବାର ନିମନ୍ତେ ॥
ଶ୍ରୀ ନୀଳାଚଳ ଭଗବାନ । କେବଳ କରିବା ଦର୍ଶନ ॥
ଏମନ୍ତ କରିଣ ବହୁର । ପ୍ରବେଶ ହେଲେ କ୍ଷେତ୍ରବର ॥
ତହିଁ ସନ୍ନ୍ୟାସୀ ଜଣେ ଥାନ୍ତି । ତା ନାମ ମଦନ ଭାରତୀ ॥
ତା ସଙ୍ଗେ ଅନେକ ସନ୍ନ୍ୟାସୀ । ସମସ୍ତେ ଶାକ୍ତ ଉପବାସୀ ॥
ମେଷ ମହିଷ ଆଦିକରି । ଚଣ୍ଡୀ ପୂଜନ୍ତି ନିତ୍ୟେ ମାରି ॥
କରନ୍ତି ମାଂସ ସୁରାପାନ । ସବୁଙ୍କୁ ଦେଇ ମହାଜ୍ଞାନ ॥
ସେଦେଶେ ଯେତେ ଲୋକ ଛନ୍ତି । ଏହିକର୍ମରେ ମାତିଥାନ୍ତି ॥
ହରି ଭକତି ବୋଲି ଯାହା । ସେ ପୁରେ ନ ଜାଣନ୍ତି ତାହା ॥
ଏମନ୍ତ ସେ ଦେଶେ ପ୍ରବେଶ । ହେଲେ ବାଳକ ରାମଦାସ ॥
ବୁଝିଲେ ସକଳ ଚରିତ । ବୋଇଲେ ଏ କି ବିପରୀତ ॥
ଶ୍ରୀରାମ ଭକ୍ତିପଥ ଛାଡ଼ି । କିପାଁ ଅମାର୍ଗେ ଅଛ ବୁଡ଼ି ॥

ଜୀବ ସାକ୍ଷାତେ ନାରାୟଣ । ଏହା ନ ଜାଣି ମୂଢ଼ ଜନ ॥
କରି ଏ ଜୀବହତ୍ୟାମାନ । ଏ ପାପ ଗୁଡ଼ିବ କେସନ ॥
କାହାର ବୋଲେ ଏହା କର । ବଅର୍ଥେ ଗଣ୍ଡି ହୋଇ ମର ॥
ଜୀବନ୍ତେ ନାହିଁ ସୁଖ ଲେଶ । ମଲେ ନରକେ ପରବେଶ ॥
ପାରିଲେ ଏତେ ବୁଦ୍ଧି କର । ଯେବେ ହୋଇବ ଭବୁ ପାର ॥
ଶ୍ରୀହରିଭକ୍ତ ଭାବେ ରହ । ସକଳ ଜୀବେ ଦୟା ବହ ॥
ସେବ ଯେ ସାଧୁଙ୍କ ଚରଣ । ଦରିଦ୍ର ଜନେ ଦିଅ ଦାନ ॥
ଲଲାଟେ ଶ୍ରୀଖଣ୍ଡ ପୁଣ୍ଡ୍ର । କଣ୍ଠେ ତୁଳସୀମାଳ ଭର ॥
ନିତ୍ୟେ ନିର୍ମାଲ୍ୟ ସେବା କର । ମୁଖେ ଶ୍ରୀରାମ ନାମ ଧର ॥
ତେବେ ତରିବ ଭବୁ ଜାଣ । ନୋହିଲେ ହେବ ଅକାରଣ ॥
ଏମନ୍ତ ଦୀକ୍ଷା ତାଙ୍କୁ ଦେଲେ । ସୁଜ୍ଞାନ ପଥ ଦେଖାଇଲେ ॥
ତାହା ଶୁଣିଣ ଲୋକେ ଯାଇ । ମଦନ ସନ୍ୟାସୀଙ୍କି କହି ॥
କାହୁଁ ବୈଷ୍ଣବ ଜଣେ ଆସି । ସମସ୍ତ ଲୋକଙ୍କୁ ଝିଙ୍ଗାସି ॥
ସନ୍ୟାସୀ ଦୀକ୍ଷା ଛଡ଼ାଇଲେ । ବୈଷ୍ଣବ ଦୀକ୍ଷାମାନ ଦେଲେ ॥
ତୁମ୍ଭର ମହତ ସରିଲା । ଶୁଣି ସନ୍ୟାସୀ କ୍ରୋଧ କଲା ॥
ବୋଇଲେ ବୁଝିବା ତଦନ୍ତ । ସେ ଅବା କେତେ ବଳବନ୍ତ ॥
ଏମନ୍ତ ବୋଲି ଚଳିଗଲେ । ଅନେକ ସନ୍ୟାସୀଙ୍କ ତୁଲେ ॥
ବଜାଇ ଶିଙ୍ଗା ବେଣୁ ଘଣ୍ଟ । ଦୁଇ କୁଳର ହେଲା ଭେଟ ॥
ବୈଷ୍ଣବ ବଳେ ବଳୀୟାର । ଶସ୍ତ୍ର ଶାସ୍ତ୍ରରେ ହେ ଚତୁର ॥
ସଂଗ୍ରାମେ ଜିଣି ନ ପାରିବା । ସମସ୍ତେ ଜୀବନ ହାରିବା ॥
ବୋଲି ମନରେ କଲେ ଭୟ । ଏଥକୁ କରିବା ଉପାୟ ॥
ବରଗି ଦେବା ଦୂତ ଯାଇ । ବୈଷ୍ଣବ ଆଗେ ଯାଇ କହି ॥
ମନୁଷ୍ୟ ଜଣେ ନେବା ଧରି । ହାଣିବା ବେନି ଖଣ୍ଡ କରି ॥
ତାକୁ ଯେ ଜୀବଦାନ ଦେବ । ତାହାର କଥା ମୂଳ ହେବ ॥
ଏହି ବଚ୍ଚର ସର୍ବେ ଭଲେ । ବୈଷ୍ଣବ ତୁମ୍ଭରେ ମିଳିଲେ ॥

## ବାଳକ ରାମଦାସ ଚରିତ (୨)

ସ୍ରଷ୍ଟା [illegible]



ରାମଦାସ ମୃତ ଶବକୁ ବଞ୍ଚାଉଛନ୍ତି । ସନ୍ୟାସୀ ଏବଂ ବୈଷ୍ଣବମାନେ ଗୁହାଁଛନ୍ତି ।

ତୁମ୍ଭେ ପ୍ରଦେଶୀ ମାନେ ଆସି । ଆମ୍ଭର ରାଜ୍ୟେ କପଟ ପଶି ॥
ସନ୍ନ୍ୟାସୀ ଧର୍ମ କର ନାଶ । ଦିଅ କେବଣ ଉପଦେଶ ॥
ଏ ତୁମ୍ଭ କେଉଁ ବଡ଼ପଣ । କହ କି ବିଦ୍ୟା ତୁମ୍ଭେ ଜାଣ ॥
ପରୀକ୍ଷା କରିବା ଏଠାରେ । ସମସ୍ତେ ଦେଖନ୍ତୁ ନୟନରେ ॥
ମୃତ ମନୁଷ୍ୟକୁ ଆଣିବ । ତାହାକୁ ଯେବେ ବଞ୍ଚାଇବ ॥
ତେବେ ତୋ ଆଜ୍ଞାକୁ ପାଳିବା । ତୋତେ କରିବୁ ସର୍ବେ ସେବା ॥
ଏମନ୍ତ ଶୁଣି ଦାସେ ହସି । ବୋଇଲେ ଶୁଣରେ ସନ୍ନ୍ୟାସୀ ॥
କହିବା ଶୁଣ ରେ ଦୁର୍ମତି । ଏ କୁମ୍ଭକାର କୀଟ ରୀତି ॥
ଝିଣ୍ଟି କା ଆଦି କୀଟ ମାରି । ଆଣି ତା ମନ୍ଦିରରେ ଭରି ॥
ଅନାଦି ମନ୍ତ୍ରେ ଜୀବ ଦେଇ । ଆପଣା ସ୍ୱରୂପ କରଇ ॥
ସେ କାହିଁ ହେଲା ବଡ଼ ଜଣ । କେହ୍ନୁ ସେବିଲା ତା ଚରଣ ॥
ଏଣୁ କପଟ ବିଦ୍ୟା କରି । ପ୍ରାଣୀମାନଙ୍କ ଚିତ୍ତ ହରି ॥
ଦିଏ ଅଜ୍ଞାନ ଦୀକ୍ଷାମାନ । ଯିବ ଅବଶ୍ୟ ନର୍କସ୍ଥାନ ॥
ଏ କଥାମାନ ଦୂର କର । ଭଜ କେବଳ ରଘୁବୀର ॥
ନୋହିଲେ ସର୍ବେ ଯିବନାଶ । ମହାନରକେ ହେବ ବାସ ॥
ଯେବେ ଆମ୍ଭର କରାମତ । ଦେଖିବା ପାଇଁ ଅଛି ଚିତ୍ତ ॥
ଖୋଜିଣ ମୃତଶବ ଆଣ । ତାକୁ ଜୀଆଇ ଦେବା ପୁଣ ॥
ତେବେ ଜାଣିବ କରାମତ । ସଂଶୟ ହେବ ଦୂରେ ଗତ ॥
ତା ଶୁଣି ଚଳିଲେ ସନ୍ନ୍ୟାସ । ବୁଲିଣ ଗଲେ ଦେଶ ଦେଶ ॥
ଦେଖିଲେ ମୃତଶବ ଗୋଟି । ଦୁର୍ଗନ୍ଧ ପଡ଼ୁଛି ଚହଟି ॥
କୀଟହିଁ ହୋଇଛି ଅପାର । ପାଟେ ପଶିବା ଅହଙ୍କାର ॥
ଏମନ୍ତ ଶବ ଘେନି ଆସି । ପକାଇ ବୋଇଲେ ସନ୍ନ୍ୟାସୀ ॥
ଏହାକୁ ଯେବେ ଦେବ ପ୍ରାଣ । ଜାଣିବା ତୁମ୍ଭ ସାଧୁପଣ ॥
ନୋହିଲେ ଛାଡ଼ିଯାଅ ଦେଶ । ଥିଲେ ଯେ ମାରିବୁ ଅବଶ୍ୟ ॥
ତା ଶୁଣି ଶ୍ରୀରାମର ଦାସ । ବୋଇଲେ ଶୁଣ ହେ ସନ୍ନ୍ୟାସ

ଧର୍ମ କହୁଛଲେ ଛଳ କରି । ବସିଛ ବିବାଦ ଆଦରି ॥
ତୁମ୍ଭର ନ ଜାଣିବା ପଣ । ସଭିଁର ପ୍ରଭୁ ନାରାୟଣ ॥
ସର୍ବ ଜୀବର ଅଧିକାରୀ । ସକଳ ଘଟେ ଛନ୍ତି ପୂରି ॥
ଜଗତ ହାନି ଲଭ ଯେତେ । ସେ ସିନା ବୁଝୁଥାନ୍ତି ନିତ୍ୟେ ॥
ମୋହର ବୋଲେ କିସ ହେବ । ସେ ସିନା ଦେଲେ ଏ ଜୀଇବ
ଏମନ୍ତ ବୋଲି ଶବ ଧରି । ବସିଲେ ପ୍ରଭୁ ଧ୍ୟାନ କରି ॥
ବୋଇଲେ ନମୋ ଭଗବାନ । ତୁମ୍ଭେ ଯେ ଆଦ୍ୟ ଅବସାନ ॥
ଅଶେଷ ବ୍ରହ୍ମାଣ୍ଡ ଠାକୁର । ସଂସାର ତୋର ଖେଳଘର ॥
ତେଣୁ ଶରଣ ରାମଦାସ । ତୋ ପାଦେ ମୋହର ବିଶ୍ୱାସ
ଏ ମୃତ ଶବର ଜୀବନ । ଦେଇଣ ରଖ ଭଗବାନ ॥
ଏମନ୍ତ ବୋଲି ଶବ ଘେନି । ଧରିଣ ତାର କର୍ଣ୍ଣେ ବେନି ॥
ଶ୍ରୀରାମ ତାରକ କହିଲେ । ଉଠ ହୋ ମୃତଜୀବ ଭଲେ ॥
ଏମନ୍ତ ବୋଲନ୍ତେ ତକ୍ଷଣେ । ପାଇଲା ଶବ ନିଜ ପ୍ରାଣ ॥
ସମସ୍ତେ ଦେଖୁଁ ଦେଖୁଁ ତହିଁ । ଉଠିଲା ସେ ଶବ ବୋବାଇ ॥
ତା ଦେଖି ଲୋକେ ଆଚମ୍ବିତ । ରହିଲେ ହୋଇ ସ୍ତମ୍ଭୀଭୂତ ॥
ବୋଇଲେ ଏକି ଚମତ୍କାର । ଧନ୍ୟ ମହିମା ଏହାଙ୍କର ॥
ଏମନ୍ତ ବୋଲି ପାଦେ ପଡ଼ି । ସର୍ବେ ରହିଲେ କରଯୋଡ଼ି ॥
ସେ ରାଜା ପ୍ରଜା ଆଦି ଯେତେ । ଚରଣେ ସେବିଲେ ସମସ୍ତେ ॥
ବୋଇଲେ ପଶିଲୁ ଶରଣ । ଆଜୁଁ ଏ ଆଜ୍ଞା ପରମାଣ ॥
ତୋ ଇଚ୍ଛା ଯାହା ତାହା କର । ସମସ୍ତେ ଶିଷ୍ୟ ହେଲୁ ତୋର
ତା ଶୁଣି ଶ୍ରୀରାମଙ୍କ ଦାସ । ମନରେ ହେଲେ ହସ ହସ ॥
ନୃପତି ଆଦି ଯେତେ ଥିଲେ । ତାଙ୍କ ଶ୍ରବଣେ ମନ୍ତ୍ର ଦେଲେ ॥
ତାହାଙ୍କୁ ଜ୍ଞାନବାଟ କହି । ବୈଷ୍ଣବ ଧର୍ମକୁ ଦେଖାଇ ॥
ଜଗତେ ହୋଇଲେ ପ୍ରକାଶ । ସନ୍ନ୍ୟାସୀ ଗୁଡ଼ିଗଲେ ଦେଶ ॥
ଶୁଣ ହେ ମନ ନୃପବର । ବାଳକ ରାମ ଦାସଙ୍କର ॥

ମହିମା ଅଛଇ ଏମନ୍ତ । କେ କରୁ ତାହାଙ୍କର ଅନ୍ତ ॥
ତହିଁ ମଠେକ ତୋଳାଇଲେ । ଥୋକେ ବୈଷ୍ଣବ ରଖାଇଲେ ॥
ଧର୍ମଶାଳାହିଁ ତହିଁ କରି । ସେ ଦେଶ ରାଜାଙ୍କୁ ହକାରି ॥
ବୋଇଲେ ଏହି ଧର୍ମେ ଥିବୁ । ସାଧୁଙ୍କ ଚରଣେ ସେବିବୁ ॥
ଦୁଃଖୀ ଦରିଦ୍ରେ ଦେବୁ ଦାନ । ରାମ ଭଜନେ ନେବୁ ଦିନ ॥
ଶ୍ରୀରାମାନନ୍ଦ ସଂପ୍ରଦାରେ । ମନ୍ତ୍ର ଘେନିବୁ କର୍ଣ୍ଣଦ୍ୱାରେ ॥
ରଖିବୁ ତୋର ବଂଶାବଳୀ । ଏ ଆମ୍ଭ ଆଜ୍ଞା ପ୍ରତି ପାଳି ॥
ଏମନ୍ତ କହି ତାଙ୍କୁ ଭଲେ । ଆନନ୍ଦେ ତହୁଁ ଚଳିଗଲେ ॥
ଅନେକ ଉତ୍ସବ ଆନନ୍ଦେ । ବିଜୟ କଲେ ସାଧୁ ବୃନ୍ଦେ ॥
ଝମକ ଆନକ କାହାଳୀ । ଶବଦେ କମ୍ପେ ମହୀସ୍ଥଳି ॥
ଗଜ ତୁରଙ୍ଗ ବଳ ସଙ୍ଗେ । ଘେନି ଚଳିଲେ ନାନାରଙ୍ଗେ ॥
ସର୍ବେ ଅଛନ୍ତି ବୀରମୟେ । ମନେ ତାହାଙ୍କ ନାହିଁ ଭୟେ ॥
କେବଳ ନାମ ଧ୍ୱନି କରି । ପଥେ ଗମନ୍ତେ ପଡ଼େ ହୁରି ॥
ଏମନ୍ତେ କେତେ ଦିନଠାରେ । ଯାଇ ମିଳିଲେ କ୍ଷେତ୍ରବରେ ॥
ତାହାଙ୍କ ପ୍ରତାପ ଶ୍ରବଣେ । ପାଳଟି ଧଇଲେ ବ୍ରାହ୍ମଣେ ॥
ଅନେକ ଧନ ବସ୍ତ୍ର ପାଇ । ଆନନ୍ଦେ ସଙ୍ଗେ ଘେନି ଯାଇ ॥
ପ୍ରବେଶ ହେଲେ ସିଂହଦ୍ୱାରେ । ପତିତପାବନ ସମ୍ମୁଖରେ ॥
ସାଷ୍ଟାଙ୍ଗେ ପାଦେ ପଡ଼ି ଶୋଇ । ଉଠି କାଖରେ କର ଦେଇ ॥
ବୋଇଲେ ନିସ୍ତରିଲି ଆଜ । ଦେଖିଲି ଶଙ୍ଖ ଚକ୍ର ଭୁଜ ॥
ଏମନ୍ତ କହି ତହୁଁ ଗଲେ । ସମସ୍ତ ବୈଷ୍ଣବଙ୍କ ତୁଲେ ॥
ଦେଖିଲେ କାଶୀ ବିଶ୍ୱନାଥ । ବାଟ ମଙ୍ଗଳା ଗୋପୀନାଥ ॥
ଗଣେଶ ଅନନ୍ତଶୟନ । ମୁକ୍ତିମଣ୍ଡପେ ମୁକ୍ତିସ୍ଥାନ ॥
ରୋହିଣୀକୁଣ୍ଡ କ୍ଷେତ୍ରପାଳ । ବିମଳା ଦେବୀଙ୍କର ଆଳ ॥
ଭଣ୍ଡ ଗଣେଶ ସରସ୍ୱତୀ । ଶ୍ରୀ ମହାଲକ୍ଷ୍ମୀଙ୍କର ସ୍ଥିତି ॥
ବରଅଁଦେବ ରାମ ହରି । ତିବାର ପ୍ରଦକ୍ଷିଣ କରି ॥

ଦର୍ଶନ ବିଧିମତ କଲେ । ଗରୁଡ଼ ପଛେ ଯାଇ ହେଲେ ॥
ଯହିଁ ପ୍ରବେଶ ହେଲେ ଜୀବ । ଆଉ ନ ଦେଖେ ପୁଣ ଭବ ॥
ଶ୍ରୀଜଗମୋହନକୁ ଦେଖି । ସଫଳ କଲେ ଚର୍ମ ଆଖି ॥
ତହୁଁ ଚଳିଲେ ଧୀରେ ଧୀରେ । ଚନ୍ଦନ ଅର୍ଗଳିର ଠାରେ ॥
ଦେଖିଲେ ରତ୍ନ ସିଂହାସନ । ଯହିଁ ବିଜୟେ ଭଗବାନ ॥
ଶ୍ରୀବଳଦେବ ଦେବୀ ତୁଳେ । ଦର୍ଶନେ ପବିତ୍ର ହୋଇଲେ ॥
ସେ ଯେ ବାଳକ ରାମଦାସ । ଧ୍ୟାନେ ଚିନ୍ତିଲେ ପୀତବାସ ॥
ବୋଇଲେ ଆହେ ମହାବାହୁ । ଶରଣପଞ୍ଜର ବୋଲାଉ ॥
ମହାମହିମା ମହାମେରୁ । ଅଶେଷ ଜୀବଙ୍କର ଗୁରୁ ॥
ନମସ୍ତେ ଶଙ୍ଖ ଚକ୍ରଭୁଜ । ନମୋ ଦେବାଧିଦେବରାଜ ॥
ନମୋ କମଳା ଦେବୀବର । ଶରଣ ପଦ୍ମପାଦେ ତୋର ॥
ଦେଖି ତୋହର ପଦ୍ମମୁଖ । ଗୁଚିଲା କୋଟି ଜନ୍ମ ଦୁଃଖ ॥
ଏ ଜୀବ ଅଭିମାନ ଯେତେ । ସବୁ ଲଗିଲା ପ୍ରଭୁ ତୋତେ ॥
ଏମନ୍ତ ବୋଲି ସ୍ତବଶେଷେ । ପ୍ରଣାମ କରି ପାଦତଳେ ॥
ସହସ୍ରବାର ଦଣ୍ଡବତ । କରିଣ ଉଠିଲେ ତ୍ୱରିତ ॥
ମନ୍ଦିରୁ ମେଲାଣି ହୋଇଲେ । ବନ୍ଧୁ ଆନନ୍ଦେ ଚଳିଗଲେ ॥
ନୀଳାଦ୍ରି ନଅର ନିକଟେ । ଯେ ଇନ୍ଦ୍ରଦ୍ୟୁମ୍ନ ସର ତଟେ ॥
ଅନେକ ଧନ ଲଗାଇଲେ । ବିଚିତ୍ର ମଠ ତୋଳାଇଲେ ॥
ବତିଶ ବଖରା ଚଉରୀ । ବେଢ଼ା ମଣ୍ଡପ ଆଦି କରି ॥
ଅମୂଲ୍ୟପୁର ନିର୍ମାଇଲେ । ନିଶ୍ଚିନ୍ତ ହୋଇଣ ରହିଲେ ॥
ଶ୍ରୀପୁରୁଷୋତ୍ତମେ ଉତ୍ତମ । ଧନରେ ଧନପତି ସମ ॥
ଦ୍ୱିଜ ଯାହା ପ୍ରକାଶନ୍ତି ଆସି । ଦେଇ ତାହାଙ୍କୁ ମନ ତୋଷି ॥
ଦୁଃଖୀ ଦରିଦ୍ର ଯେ ଭିକାରି । ଯୋଗୀ ଜଙ୍ଗମ ବ୍ରହ୍ମଚାରୀ ॥
ଯେତେ ଅତିଥି ଉପଗତ । ସବୁଙ୍କୁ ଦିଅନ୍ତି ସଦାବ୍ରତ ॥
ପ୍ରଭୁ ମଣୋହି ନିତ୍ୟ କରି । ମହାପ୍ରସାଦ ସେବା କରି ॥

ନିତ୍ୟେ ପ୍ରଭୁଙ୍କ ଦରଶନ । କରି ବଞ୍ଚନ୍ତି ରାତ୍ର ଦିନ ॥
ନ କରି କିଛିହେଁ ଜଞ୍ଜାଳ । ଏମନ୍ତେ ଗଲା କେତେ କାଳ ॥
ଲୋକେ ବୋଇଲେ ଧନ୍ୟ ଧନ୍ୟ । ବୈଷ୍ଣବ ପଣେ ମୋକ୍ଷଦାନ ॥
ଜୀବରେ ଏଡ଼େ ଦୟା ହୋଇ । କେହୁ ତ ଦେଖିବାରେ ନାହିଁ ॥
ଏମନ୍ତ ବୋଲିଣ ସମସ୍ତେ । ପ୍ରଶଂସା କରନ୍ତି ଜଗତେ ॥
କେତେହେଁ କାଳ ବହିଗଲା । ଆସିଣ ମୃତ୍ୟୁକାଳ ହେଲା ॥
ବିଚାର କଲେ ମନେ ମନ । ଆଉ ତ ନାହିଁ ପ୍ରୟୋଜନ ॥
ଦେହ ବହିବା କର୍ମ ଯେତେ । ଆସିଣ ମିଳିଲେ ସମସ୍ତେ ॥
ଏମନ୍ତ ମନେ ବିଚାରିଣ । ଚିନ୍ତିଲେ ପ୍ରଭୁ ନାରାୟଣ ॥
ଶ୍ରୀରାମ ରୂପ ଧ୍ୟାନ କରି । ଶ୍ରୀରାମ ତାରକ ସୁମରି ॥
ଆତ୍ମାରାମଙ୍କୁ ଆଗେ ଥୋଇ । ଆତ୍ମାରେ ଆତ୍ମାକୁ ମିଶାଇ ॥
ଭଜି ଶ୍ରୀରାମ ନାମ ବାଣୀ । ପ୍ରାଣ ଗୁଡ଼ିଲେ ତତକ୍ଷଣି ॥
ଜ୍ୟୋତିରେ ଜ୍ୟୋତି ମିଶିଗଲା । ସେ ପିଣ୍ଡ ଅଲଗେ ରହିଲା ॥
ତ ଦେଖି ଭୃତ୍ୟଜନେ ମିଳି । ଅନେକ ପାଡ଼ିଲେ ବୋବାଳି ॥
ଶୁଣ ବାନ୍ଧବ ଯେତ୍କାମତେ । ସନ୍ତାପ କଲେ ସେ ସମସ୍ତେ ॥
ଗୁରୁଦେବଙ୍କୁ ଘେନିଗଲେ । ସୁଗନ୍ଧ ଜଳେ ସ୍ନାନ କଲେ ॥
ଦିବ୍ୟ ସମାଧି ସ୍ଥାନ କରି । ତହିଁ ସୁବାସ ଦ୍ରବ୍ୟ ଭରି ॥
କର୍ପୂର ଶେଯ ଶୋଇଲେ । ତହିଁ ନେଇଣ ଶୁଆଇଲେ ॥
ମୃଦ ପକାଇ ଘୋଡ଼ାଇଲେ । ସମାଧି କର୍ମ ବଢ଼ାଇଲେ ॥
ତହୁଁ ଚଳିଲେ ତତକ୍ଷଣ । ଏଥି ଉତ୍ତରେ ମନ ଶୁଣ ॥
ସେ ରାଜ୍ୟ ନୃପତିର ଆଗେ । ଖଚୁ ଆମାନେ ଯାଇ ବେଗେ ॥
କହିଲେ ଶୁଣ ମହାରାଏ । ଅପୂର୍ବ ବୈଷ୍ଣବ ଗୋଟିଏ ॥
ନାମ ବାଳକ ରାମଦାସ । କ୍ଷେତ୍ରରେ କରିଥିଲା ବାସ ॥
ଅନେକ କାଳ ସେ ବଞ୍ଚିଲା । ଏବେ ସେ ନିଜ ଧାମ ଗଲା ॥
ଅନେକ ଧନ ଅଛି ତାର । ଯେମନ୍ତେ କୁବେର ଭଣ୍ଡାର ॥

ଶୁଣିବା ହେଉ ମହାରାଣି । ନିଜ ଭଣ୍ଡାରେ ତାହା ଆଣ ॥
ତା ଶୁଣି ନୃପଶିରୋମଣି । ପେଷିଲେ ଦୂତ ସେହୁକ୍ଷଣି ॥
ଅନେକ ଛଡ଼ିଦାର ଗଲେ । ମଠ ବାସନ୍ଦ କରାଇଲେ ॥
ଅନେକ ତର୍ଜନ ଗର୍ଜନ । କରଣ ଲେଖା କଲେ ଧନ ॥
ମହେଶାହି କାହାକୁ ନ ଦେଲେ । ଅନନ୍ତେ ସବୁ ବାସନ୍ଦଲେ ॥
ତା ଦେଖି ଚେଲାମାନେ ଯେତେ । ରୋଦନ କରଣ ସମସ୍ତେ ॥
ସମାଧି ପାଶେ ଚଳିଗଲେ । ବେଢ଼ି ଅନେକ ଡାକ କଲେ ॥
ବୋଇଲେ ସ୍ୱାମୀ ଗଲେ କାହିଁ । ଆମ୍ଭଙ୍କୁ ପଥରେ ବସାଇ ॥
ଏ ରାଜ୍ୟ ରାଜ ଦୂତ ପେଷି । ଆମ୍ଭଙ୍କୁ ଅନେକ ଝିଙ୍ଗାସି ॥
ତୁମ୍ଭର ଧନ ଥିଲା ଯେତେ । ନେଉଛି ନିଯୋଗ ନିମନ୍ତେ ॥
ପ୍ରଭୁ ମହେଶାହି କିସ ହେବ । ଏ ମଠ କେମନ୍ତେ ଚଳିବ ॥
କି ହେବ ସଦାବ୍ରତମାନ । ପଡ଼ିଲା ଏମନ୍ତ କଷଣ ॥
କେମନ୍ତେ ଯିବ ଆମ୍ଭ ଦିନ । ସମସ୍ତେ ହାରିବୁ ଜୀବନ ॥
ଏମନ୍ତ ବୋଲି ସେ ରୋଦନ୍ତେ । ଥାଇଁ ସମାଧି ମଧ୍ୟଗତେ ॥
ବୋଇଲେ ଫିଟାଅ ରେ ମୋତେ । ବୁଝିବା କଥାମାନ ଯେତେ ॥
ଆଜ୍ଞା ପ୍ରମାଣେ ଲୋକେ ଗଲେ । ସମାଧି ମୂଦ ଫିଟାଇଲେ ॥
ଉଠି ବାଳକ ରାମଦାସ • । ନେଲଉଠି ମଠରେ ପ୍ରବେଶ ॥
ଚନ୍ଦ୍ରିଣ ପ୍ରଭୁ ଚକ୍ରପାଣି । ବସିଲେ ମତ୍ତସିଂହ ଜାଣି ॥
ସେବକମାନଙ୍କୁ ପୁଚ୍ଛିଲେ । ସମସ୍ତ ବିଷୟ ବୁଝିଲେ ॥
ଅଳପ ହୋଇ ହସ ହସ । ବୋଲେ ବାଳକ ରାମ ଦାସ ॥
ଶୁଣ ହେ ରାଜଦୂତମାନେ । କହ ନୃପତି ସନ୍ନିଧାନେ ॥
ଏତେକ ରାଜ୍ୟ ନ ଅଣ୍ଟିଲା । ବୈଷ୍ଣବ ଧନ ଆଶ୍ରେ କଲା ॥
ଆମ୍ଭର ମଲେ ସିନା ନେବ । ନୋହିଲେ କି କରି ପାରିବ ॥
ଆମ୍ଭେ ରହିବୁ କେତେ ଦିନ । ଆଗହୁଁ ମରୁ ସେ ରାଜନ ॥
ତହିଁ ଉତ୍ତାରେ ଆମ୍ଭେ ଯିବା । ଏ କୀର୍ତ୍ତି ଜଗତେ ରଖିବା ॥

ତା ଶୁଣି ରାଜଦୂତମାନେ । ପଳାଇଗଲେ ଭୟମନେ ॥
ରାଜାଙ୍କୁ କହିଲେ ସମସ୍ତ । ଶୁଣି ନୃପତି ଆଚମ୍ବିତ ॥
ବୋଇଲେ କି କରିବା କହ । ଶୁଣି କମ୍ପଇ ଆମ୍ଭ ଦେହ ॥
ବେଗେଣ ଯାଅ ଜଣ ଦଶ । ତାହାକୁ ଧରି ନେଇଆସ ॥
ଶିର ତା ଛେଦନ କରିବା । ଅଗ୍ନି ଲଗାଇ ପୋଡ଼ିଦେବା ॥
ତା ଶୁଣି ପାତ୍ରମନ୍ତ୍ରୀମାନେ । କହିଲେ ରାଜା ସନ୍ନିଧାନେ ॥
ଏ କଥା ନୁହଇ ଉଚିତ । ସେ ବଇଷ୍ଣବ ପ୍ରଜ୍ଞାବନ୍ତ ॥
କର୍ଣ୍ଣେ ଶୁଣିଲୁ ନାହିଁ ଯାହା । ସାକ୍ଷାତେ ଦେଖିଲୁଟି ତାହା ॥
ତନ୍ଦନନର ମୃତ ଶବ । ପୁଣି ଆସିଲା ପାଇ ଜୀବ ॥
ଜୀଇଁ ମରିବା ଇଚ୍ଛା ତାର । ସେ ନୋହେ ମନୁଷ୍ୟ ଶରୀର ॥
ସେ ଯେବେ ହେଲେ ଅସନ୍ତୋଷ । ତେବେ ରାଜ ବଂଶ ଯିବ ନାଶ ॥
ଗୋଟିଏ ନ ରହିବେ ଆଉ । ଏହା ବଚନର ଆଜ୍ଞା ହେଉ ॥
ଶୁଣି ନୃପତି ତୁନି ହେଲା । ଆସିଣ କାଳ ଆକର୍ଷିଲା ॥
ଏମନ୍ତ ଗଲା ଦଶଦିନ । ପ୍ରାଣ ହାରିଲା ସେ ରାଜନ ॥
ଶୁଣି ବାଳକ ରାମଦାସ । ଛାଡ଼ିଲେ କମଳାବିଳାସ ॥
ଭଜିଲେ ଶ୍ରୀରାମ ଶ୍ରୀରାମ । ପୁଣି ଗମିଲେ ନିଜଧାମ ॥
ଶୁଣ ହେ। ମନ ଜ୍ଞାନମୟେ । ସାଧୁଙ୍କ ବଳେ ଏହା ହୋଏ ॥
ଏ କଳିଯୁଗେ ଏ ଚରିତ । କହି ଶୁଣିବା ଆଚମ୍ବିତ ॥
ଏ ଦାର୍ଢ୍ୟଭକ୍ତି ରସବାଣୀ । ବିଶ୍ୱାସ କରି ଯେବେ ଶୁଣି ॥
କିବା ନିର୍ମଳ କରି ମନ । ବଦନେ ଯେ କରଇ ଗାନ ॥
ତାଙ୍କ ବିପଦ ଥିବ ଯେତେ । ରହିବ ନାହିଁ କଦାଚିତେ ॥
ବିଶ୍ୱାସ ବିନା କର୍ମ ଯେତେ । ଫଳ ନ ଫଳେ କଦାଚିତେ ॥
ଗୃହଲୁଗିମଧେ ଯେତେକ ପାଣି । ଯେତେତେହେଁ ଭରିଥିଲେ ଆଣି ॥
କେବେହେଁ ନ ରହେଟି ଶେଷ । ଏମନ୍ତେ ସେ ହୋଏ ନିରାଶ ॥
କହଇ ରାମଦାସ ଦ୍ୱିଜ । ମୋ ପ୍ରଭୁ ଶଙ୍ଖଚକ୍ରଭୁଜ ॥

ସାଧୁମାନଙ୍କ ପାଦାଗ୍ରତେ । ମୋ ଚିତ୍ତ ରହୁ ଅନୁବ୍ରତେ ॥
କର ନ କର ଇଚ୍ଛା ତୋର । ଅନ୍ୟ ଶରଣ ନାହିଁ ମୋର ॥

ଇତି ଶ୍ରୀ ଦାର୍ଢ୍ୟଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ
ବାଞ୍ଛୀ ବାଳକ ରାମଦାସ ଦାର୍ଢ୍ୟଭାବ ବର୍ଣ୍ଣନେ ନାମ
ଊନଚତ୍ୱାରିଂଶୋଽଧ୍ୟାୟଃ ।

---

# ଚତ୍ୱାରିଂଶଅଧ୍ୟାୟ

## କୃପାସିନ୍ଧୁ ଦାସ ସମ୍ବାଦ

### ମନ ଉବାଚ

ନମସ୍ତେ ପ୍ରଭୁ ବଇଷ୍ଣବରାଜ । ସୁଫଳ କର ମୋର କାର୍ଯ୍ୟ ॥
କହେ ଚୈତନ୍ୟ ମୁନିବର । ସୁମନ ନୃପତି ଆଗର ॥
ଶୁଣିମା ହେଇ ଶୁଦ୍ଧଭାବେ । ମୁଁ ଯାହା କହୁଅଛି ଏବେ ॥
ଏ ବଡ଼ ଦୁର୍ଲଭ ଚରିତ । କେବଳ ଶ୍ରବଣେ ଅମୃତ ॥
ଶୁଦ୍ଧ ପଶ୍ଚିମ ଦେଶ ଯେହ୍ନ । ସ୍ୱର୍ଗକୁ ଯିବା ମାର୍ଗ ସେହ୍ନ ॥
ସେ ଦେଶେ ଏକଇ ସହର । ନାମ ତା ନୀଳାବତୀପୁର ॥
ସେହ୍ନ ଗ୍ରାମରେ ତାର ବାସ । ନାମ ତା କୃପାସିନ୍ଧୁ ଦାସ ॥
ଜାତିରେ ଅଟଇ ବ୍ରାହ୍ମଣ । ନିରତେ ବଷ୍ଣୁପରାୟଣ ॥
ଧନ ସମ୍ପଦ ଅପ୍ରମିତ । ବେନି ଦୁହିତା ଭିନି ସୁତ ॥
ତାର ଭାରିଯା ରୂପବତୀ । ନାମ ତାହାର ଶ୍ରଦ୍ଧାବତୀ ॥
ସ୍ୱାମୀ ସେବାରେ ଦୃଢ଼ମତି । କେବଳ ଜାଣେ କୃଷ୍ଣଭକ୍ତି ॥
ନ ଜାଣେ ଅନ୍ୟ ଦେବମାନ । ଜାଣଇ ସ୍ୱାମୀ ଭଗବାନ ॥
ସ୍ୱାମୀ ଆଜ୍ଞାରେ ଥାଇ ନିତି । ଆଜ୍ଞା ନ ଭଙ୍ଗେ ଶ୍ରଦ୍ଧାବତୀ ॥
ଏମନ୍ତେ ପତ୍ନୀ ସଙ୍ଗେ ଘେନି । ବଞ୍ଚଇ ଦିବସ ରଜନୀ ॥
ପୁରାଣ ଶୁଣୁଥାଇ ନିତି । ସାଧୁଙ୍କ ଚରଣେ ଭକତି ॥
ସକଳ ଜୀବେ ଦୟାବାନ । କହେ ସେ ମଧୁର ବଚନ ॥

ପାଷାଣ୍ଡଜନଙ୍କ ସଙ୍ଗତେ । ବସଇ ନାହିଁ କଦାଚତେ ॥
ମିଥ୍ୟା ବୋଇଲେ ମୃତ୍ୟୁ ତାର । ଜାଣଇ ସତ୍ୟ ଏକା ସାର ॥
ଦେବ ବ୍ରାହ୍ମଣେ ମହାଭୟ । ନିରତେ ସଦାନନ୍ଦମୟ ॥
ବୈଷ୍ଣବ ବ୍ରାହ୍ମଣ ଭିକାରୀ । ଯୋଗୀ ଜଙ୍ଗମ ବ୍ରହ୍ମଚାରୀ ॥
ଦୁଃଖୀ ଦରିଦ୍ର ଯେଉଁ ନରେ । ସେ ଆସି ପ୍ରବେଶିଲେ ଦ୍ୱାରେ॥
ଯାଅ ବୋଲିବା ପଦ ନାହିଁ । ଯେ ଯାହା ମାଗିଲେ ଦିଅଇ ॥
ବସ୍ତ୍ର ଭୋଜନ ଆଦି ଯେତେ । ରଜତ କାଞ୍ଚନ ସଙ୍ଗତେ ॥
ଦେଇ ତୋଷଇ ତାର ମନ । ଲୋକେ ବୋଲନ୍ତି ଧନ୍ୟଧନ୍ୟ॥
ଏମନ୍ତେ କେତେ ଦିନ ଗଲା । ତା ଯଶ ଜଗତେ ପୂରିଲା ॥
ଶୁଣ ହେ ମନ ଶୁଦ୍ଧଚିତ୍ତେ । ଏଥିଉତ୍ତାରେ କଥା ଯେତେ ॥
ଦଇବ ଘଟସୂତ୍ରମାନ । କେ ତାହା କରିପାରେ ଆନ ॥
ପୁତ୍ର ଦୁହିତା ତାର ମଲେ । ଗୋଟିଏ କେହି ନ ରହିଲେ ॥
ଏକା ରହିଲେ ତାତ ମାତ । ଧନ ସମ୍ପଦ ହେଲା ଚ୍ୟୁତ ॥
ଖାତକେ ନେଲେ ଧନ ବାଡ଼ି । ଅନଳେ ଗଲା କିଛି ପୋଡ଼ି ॥
ଷଣ୍ଢ ଚଉର୍ଯ୍ୟ ଆଦି ଯେତେ । ଏମାନେ ନେଲେ ଧନ କେତେ
ଏମନ୍ତେ ସର୍ବ କ୍ଷୟ ଗଲା । ମହା ଦରିଦ୍ର ଦୁଃଖୀ ହେଲା ॥
ଏଥିକୁ ଶୋଚନା ନକରି । ବୋଲେ ଯା କରିବେ ଶ୍ରୀହରି ॥
ସଂସାର ଯାର ଖେଳଘର । ଏ ସର୍ବ ଆୟତ୍ତ ଯାହାର ॥
କୀଟନ୍ତୁ ବ୍ରହ୍ମ ଅବଧି କରି । ଯେତେ ଅଛନ୍ତି ଦେହ ଧରି ॥
ଏମନ୍ତ ଦ୍ୱିଜରାଣ ସୁଚିତ୍ତେ । ହରି ଭଜନ କରି ନିତ୍ୟେ ॥
ବଞ୍ଚଇ ରଜନୀ ଦିବସ । ମନେ ତା କ୍ଷୋଭ ନାହିଁ ଲେଶ
କେବଳ ଚିନ୍ତା ତାର ଏତେ । ଦ୍ୱାରକୁ ଆସିବେ ଅତିଥେ ॥
ଆସିଲେ ଲେଉଟି ସେ ଯିବେ । ଏଥିକୁ କି କରିବି ଏବେ ॥
ଏହି ଚିନ୍ତାହିଁ ମନେ ତାର । ନ କହେ କାହାରି ଆଗର ॥
ଏମନ୍ତେ କେତେ ଦିନଠାରେ । ତା ପତ୍ନୀ ସ୍ୱାମୀର ଆଗରେ ॥

ଅତି ମଧୁରେ ଧୀର ବାଣୀ । ବନସ୍ତ୍ରୀ କହିଲା ସେ ପୁଣି ॥
ବୋଇଲା ଶୁଣ ମୋ ବଚନ । ଆଉ ତ ନାହିଁ କିଛି ଧନ ॥
ଘରେ ପିତ୍ତଳ ସଜ ଯେତେ । ଯେ ତମ୍ବା କଂସାହିଁ ସହିତେ ॥
ବଡ଼ ସାନହିଁ ଯେତେ ଥିଲା । ସମସ୍ତ ବିକାରେ ସେ ଗଲା ॥
ବୋଗ୍ଣି ପିଇବା ବୋଇଲେ । ଖଣ୍ଡିଏ ପାତ୍ର ନାହିଁ ଘରେ ॥
ଯେ ପୁରାତନ ବସ୍ତ୍ର ଥିଲା । ତାହା ତ ସବୁ ବିକାଗଲା ॥
ସର୍ବ ହୋଇଲା ଆସି ଶେଷ । ଏବେ ରହିଲୁ ଉପବାସ ॥
କଷ୍ଟ ପଡ଼ିବା କର୍ମ ଯେତେ । ତାହା ତ ନୋହେ ତୁମ୍ଭ ଚିତ୍ତେ ॥
ମୂଲ ତ ଲାଗି ନ ପାରିବ । ଭିକ ତ ମାଗି ନ ଜାଣିବ ।୫୦।
ଏଥକୁ କି ବୁଦ୍ଧି କରିବା । ନିଷ୍ଟୟ ଜୀବନ ହାରିବା ॥
ତା ଶୁଣି ବୋଲେ ନିଜ ପତି । ମୋ ବାଣୀ ଶୁଣରେ ଯୁବତୀ ॥
ଆମ୍ଭ ଅଦୃଷ୍ଟେ ଅଛି ଯାହା । ଅବଶ୍ୟ ଭୁଞ୍ଜିବା ତ ତାହା ॥
ଏଥକୁ କାହିଁ ନ ଭାଳ । ଯାହା କରିବେ ଆଦିମୂଳ ॥
ତା ଶୁଣି ପତ୍ନୀ ବୋଲେ ଶୁଣ । ତୁମ୍ଭେ ଯେ କହିଲ ପ୍ରମାଣ ॥
ସଂସାରେ ଦେହଧାରୀ ଯେତେ । ଅନ୍ନରେ ବଞ୍ଚନ୍ତି ସମସ୍ତେ ॥
ଅନ୍ନ ନ ପାଇ କେତେଦିନ । ରହିବ ଏ ପାପ ଜୀବନ ॥
ଆଜ କି କରିବା ବିଗୁର । ଏ କଥା ଗୋଟି ମୂଳ କର ॥
ତା ଶୁଣି ବୋଲେ ସ୍ୱାମୀ ଥାଇ । ଶୁଣ ମୋହର ପ୍ରାଣସହୀ ॥
ଏ କଥା ମାନିକ ତୁ କର । ଯାଅ ତୁ ମିତ୍ରଙ୍କର ଘର ॥
ମାଣ୍ଡିଆ ଚୂନା ଦଶମାଣ । ଉଧାର କରି ମାଗି ଆଣ ॥
କରିବା ଦଶଗୋଟି ରୁଟି । ତହିଁ ମୁଁ ଧରି ପାଞ୍ଚଗୋଟି ॥
ମିତ୍ର ମାନ୍ଧାତ୍ରପୁର ଯାଏ । ସେ ଗ୍ରାମେ ଖାତକ ଗୋଟିଏ ॥
ହୋଇ ଅଛଇ ଭାଗ୍ୟବନ୍ତ । ତା ଠାରେ ଅଛି ଆମ୍ଭ ବିତ୍ତ ॥
ସେ କିଛି ଦେଲେ ତାହା ଆଣି । ଖାଇ ବଞ୍ଚିବା ବେନି ପ୍ରାଣୀ ॥
ଯାଇ ଆସିବା ପାଞ୍ଚଦିନ । ଲାଗିବ ଯୁବତୀରତନ ॥

ଏଥକୁ ଚିନ୍ତା ନ କରିବୁ । ଆନନ୍ଦ ହୋଇ ଘରେ ଥିବୁ ॥
ଶୁଣି ଯୁବତୀ ଶିରୋମଣି । ମନେ ଚିନ୍ତିଲେ ଚକ୍ରପାଣି ॥
ସ୍ୱାମୀର ଆଜ୍ଞା ଘେନି ଶିରେ । ଚଳିଲା ମିତ୍ରଙ୍କର ଘରେ ॥
ସେ ମିତ୍ର ପତ୍ନୀଙ୍କ ଅଗ୍ରତେ । କହିଲା ଦୁଃଖ ସୁଖ ଯେତେ ॥
ବୋଇଲା ସଙ୍ଗାତ ଗୋ ଶୁଣ । ମାଣ୍ଡିଆ ଚୂନା ଦଶମାଣ ॥
ଦେଇଥାଅ ଗୋ ତୁ ଉଧାର । ଅନେକ ହେବ ଉପକାର ॥
ମିତ୍ର ତୁମ୍ଭର ତାହା ଧର । ଯିବାକୁ ଛନ୍ତି ମନେ କର ॥
ନୀଳାଦ୍ରି ପୁର ପରଯନ୍ତେ । ତହିଁ ଖାତକ ଜଣ କେତେ ॥
ଅଛନ୍ତି କୁଶଳ ହୋଇଣ । ସାଧି ଆଣିବେ କିଛି ଋଣ ॥
ଯାହା ସେ ଦେବେ ଭଗବାନ । ଖାଇ ବଞ୍ଚିବୁ କିଛି ଦିନ ॥
ତା ଶୁଣି ମିତ୍ର ପତ୍ନୀ ଯାଇ । ସ୍ୱାମୀ ଆଗରେ ତାହା କହି ॥
ମାଣ୍ଡିଆ ଚୂନା ମାଣ ଦଶ । ଆଣି ସେ ଦେଲା ତାର ପାଶ ॥
ତାହା ଧରିଣ ବେଗେ ଚଳି । ନିଜ ମନ୍ଦିରେ ଯାଇ ମିଳି ॥
ସ୍ୱାମୀର ଆଗେ ନେଇ ଦେଲା । ଏହା କି କରିବ ବୋଇଲା ॥
ସ୍ୱାମୀ ବୋଲଇ କର ରୁଟି । ଗଣନ୍ତେ ହେବ ଦଶଗୋଟି ॥
ତହୁଁ ମୁଁ ପାଞ୍ଚଗୋଟି ଘେନି । ପ୍ରଭାତୁଁ ଯିବି ରେ କାମିନୀ ॥
ତୁମ୍ଭର ପାଞ୍ଚଗୋଟି ଥିବ । ମୋର ଆସିବା ଯାଏ ହେବ ॥
ଦୁହେଁ ଜୀବନ ରକ୍ଷାକର । ପଛେ ଯା କରିବେ ଶ୍ରୀହରି ॥
ସେ କଥା ହେବ ତ ଅବଶ୍ୟ । ଏବେ ତୁ ରୁଟି କର ଦଶ ॥
ତା ଶୁଣି ବୋଲେ ପ୍ରିୟବତୀ । ତୁମ୍ଭେ ମୋହର ପ୍ରାଣପତି ॥
ଦୁଃଖ ଗୁଇର ପ୍ରାପ୍ତ ହୋଇ । କେବେ ଅନ୍ତର ହୁଅନାହିଁ ॥
ଏବେ ଗୁଣ୍ଡଣ ମୋତେ ଯିବ । ଏହା ସେ ଲେଖିଲୁ ଦଇବ ॥
ତୁମ୍ଭ ଅଇଲ ପରଯନ୍ତେ । ମୋ ଦିନ ସରିବ କେମନ୍ତେ ॥
ଏମନ୍ତ କହି ଥନ ଥନ । ଝରିଣ ତା ବେନି ନୟନ ॥
ଉଠିଲା କରିଣ କାରୁଣ୍ୟ । ସ୍ୱାମୀ ବୋଲଇ ସଖି ଶୁଣ ॥

କହିଁ ତୁ ହେଉଛୁ ବକଲ । ସବୁରି ପ୍ରଭୁ ଆଦିମୂଳ ॥
ସମସ୍ତ ଜୀବର କାରେଣି । ଅଶେଷ ଜନ ଚିନ୍ତାମଣି ॥
ସବୁରି ଦୁଃଖ ସୁଖ ଯେତେ । ସେ ସିନା ବୁଝୁଥାନ୍ତି ମତେ ॥
ସକଳ ଘଟେ ଛନ୍ତି ପୂରି । ସବୁରି କର୍ମରକ୍ଷୁ ଧରି ॥
ସଂସାର କରେ ଆତଯାତ । ସବୁ ଏ ତାହାଙ୍କ ଆୟତ୍ତ ॥
ସେ ପ୍ରଭୁ ଅଛନ୍ତି ଆମ୍ଭର । ମନରେ ସଂଶୟ ନ କର ॥
ବେଗେ କର ତୁ ଯାଇ ରୁଟି । ଶୁଣି ସୁନ୍ଦରୀ ଗଲ ଉଠି ॥
ତତକ୍ଷଣେ ଶୁଚିମନ୍ତ ହୋଇ । ଶ୍ରୀୟାଦେବୀଙ୍କି ମନେ ଧ୍ୟାଇ ॥
ଚୁଲ୍ଲିରେ ଅଗ୍ନି ଯୋଗକରି । ମାଣ୍ଡିଆ ଚୂନା ଗୋଳି କରି ॥
ତହିଁ ଲବଣ ଟିକ୍କି ଭରି । ରୁଟି ସେ ଦଶଗୋଟି କରି ॥
ଅନଳ ତପ୍ତେ ସିଝାଇଲା । ଯତନ କରିଣ ଥୋଇଲା ॥
ଏମନ୍ତବେଳେ ଦେବ ହରି । ଭବେ ବୈଷ୍ଣବ ରୂପ ଧରି ॥
ମସ୍ତକେ ଶୋଭେ ଜଟାଭାର । ବିଭୂତି ଭୂଷଣ ଶରୀର ॥
ଭାଲେ ତିଳକ ଶୋଭାକର । କଣ୍ଠେ ତୁଳସୀମାଳ ହାର ॥
ଶ୍ରବଣେ କୁଣ୍ଡଳ ବିରାଜେ । ଡୋର କୌପୁନୀ କଟିମାଝେ ॥
ବେନି ଶ୍ରୀକରେ ତମ୍ବା ଯଷ୍ଟି । କି ଅବା ବଳଯେ ଧୂର୍ଜଟି ॥
ଅତି ଦୁର୍ବଳ ବୃଦ୍ଧ ତନୁ । କ୍ଷୀଣ ଦିଶୁଛି ବପୁ ବନୁ ॥
ପେଟ ଲାଗୁଛି ପୃଷ୍ଠଦେଶେ । ପଞ୍ଜରା ଗୋଟି ଗୋଟି ଦିଶେ ॥
ବସିଲେ ନ ପାରନ୍ତି ଉଠି । ଗୁଳନ୍ତେ ପଡ଼ୁଛନ୍ତି ଲୁଣ୍ଠି ॥
କହିବା ହୋଇଲେ ବଚନ । ଗୁଡ଼ିଯାଏ କି ଦେହୁ ଜ୍ଞାନ ॥
ଅତି ଦୁର୍ବଳ ତାଙ୍କ କାୟେ । କେବଳ ଦିଶେ ଜ୍ୟୋତିର୍ମୟେ ॥
ଏମନ୍ତ ରୂପେ ବ୍ରହ୍ମବାଣୀ । ବିଜୟ କଲେ ଦ୍ୱାରେ ଆସି ॥
ଡାକିଲେ ଦାସଙ୍କର ଘରେ । କେ ଅଛ ଆସ କିନା ଥରେ ॥
ଦ୍ୱାରେ ଅତିଥି ଉପଗତ । ଏ କଥା ବୁଝ ହେ ତୁରିତ ॥
ତା ଶୁଣି କୃପାସିନ୍ଧୁ ଦାସ । ମନରେ ହୋଇଲ ହରଷ ॥

ବେଗେ ମିଳିଲେ ଦ୍ୱାରେ ଆସି । ଦର୍ଶନ କଲେ ବ୍ରହ୍ମରାଶି ॥
ମସ୍ତକେ ବେନି କର ଦେଇ । ବୋଲେ ବିନମ୍ର ଭାବ ହୋଇ ॥
କି ଆଜ୍ଞା ହେଉଅଛି ମୋତେ । କହିବା ହେଉ ଶୁଦ୍ଧଚିତ୍ତେ ॥
ତା ଶୁଣି ପ୍ରଭୁ ଚକ୍ରପାଣି । ବୋଇଲେ ଶୁଣ ମୋର ବାଣୀ
ଏ ତୋର ଯଶ କୀର୍ତ୍ତି ଯେତେ । ଆମ୍ଭେ ଶୁଣିଲୁ ନାନାମତେ ॥
ତେଣୁ ଅଇଲୁ ତୋର ପାଶେ । ତିନି ଦିନର ଉପବାସେ ॥
କହିବା ଶକ୍ତି ମୋର ନାହିଁ । ଭୋଜନ ପାରିବୁ କି ଦେଇ ॥
ବୋଲନ୍ତେ କାହିଁ ନାହିଁ ଆଉ । ନାହିଁ ବୋଇଲେ ଚାଲିଯାଉ ॥
ତା ଶୁଣି କୃପାସିନ୍ଧୁ ଦାସ । କହିଲେ ଅତିଥିଙ୍କ ପାଶ ॥
ତୁମ୍ଭଙ୍କୁ ଦେବାକୁ ଭୋଜନ । ମୁଁ ଗୃହର ନୁହଇ ଭାଜନ ॥
ଯାହା ସେ ଦେଇଥିବେ ହରି । ତାହା ଭୋଜନ ଯିବ କରି ॥
ଦଣ୍ଡେକ ମାତ୍ର ଏଥି ବସ । ବୋଲି ସେ ମନ୍ଦିରେ ପ୍ରବେଶ ॥
କହିଲା ପତ୍ନୀ ସନ୍ନିଧାନ । ଅତିଥି ମାଗନ୍ତି ଭୋଜନ ॥
ଅତି ଦୁର୍ବଳ ବୃଦ୍ଧଦେହୀ । ଚଳିବା ଶକ୍ତି ତାଙ୍କ ନାହିଁ ॥
ଏଥକୁ କହ କି ବିଚାର । କି ବୁଦ୍ଧି କରିବା ଏଥର ॥
ପତ୍ନୀ ବୋଲଇ ଏ କି କଥା । ମନେ ନ କର କିଛି ଚିନ୍ତା ॥
ତୁମ୍ଭ ବିଭାଗ ତୁମ୍ଭେ ନିଅ । ମୋ ଭାଗ ଅତିଥିଙ୍କି ଦିଅ ॥
ବଳିଲେ କରିବ ଭୋଜନ । ନୋହିଲେ ହେବ ଜଳପାନ ॥
ତୁମ୍ଭ ଅଇଲା ପରିଯନ୍ତେ । ପ୍ରାଣ ତ ଥିବ ପିଣ୍ଡଗତେ ॥
ଏଥକୁ ଅଛି କି ବିଚାର । ଆଗେ ଅତିଥି ସେବାକର ॥
ତା ଶୁଣି ସ୍ୱାମୀ ବୋଲେ ଗୃହିଁ । ଧନ୍ୟ ତୋ ଜୀବନ ଅଟଇ ॥
ମୋ ଜୀବ ଉଦ୍ଧାର ନିମନ୍ତେ । ବିହି ଗଢ଼ିଛି ତୋତେ ମୋତେ ॥
ଏମନ୍ତ ବୋଲିଣ ହରଷେ । ମିଳିଲା ଅତିଥିଙ୍କ ପାଶେ ॥
ବୋଇଲା ସ୍ୱାମୀ ବିଜେକର । ଶୁଣି ଉଠିଲେ ଚକ୍ରଧର ॥
ସଙ୍ଗତେ ଘେନି ଚାଲିଗଲେ । ମନ୍ଦିରେ ବିଜେ କରାଇଲେ ॥

ଆନନ୍ଦେ ପଦ୍ମପାଦ ଧୋଇ । ପିଇଲେ ପତି ପତ୍ନୀ ଦୁଇ ॥
ଆପଣା ମସ୍ତକେ ସିଞ୍ଚିଲେ । ଗୃହରେ ପଣନ୍ତେ ବାଞ୍ଛିଲେ ॥
ଦେଖ ହୋ ଭାଗ୍ୟ ତାହାଙ୍କର । ଯାହା ନ ପାନ୍ତି ବ୍ରହ୍ମାହର ॥
ସୁର ମୁନିଙ୍କି ଯେ ଦୁର୍ଲଭ । ଯାହା କହନ୍ତି ସଦାଶିବ ॥
ସେ ଜଳ ଭକ୍ତଭାବେ କରି । ଦେଖ ପିଇଲେ ନରନାରୀ ॥
ଅତି ଆନନ୍ଦ ମନ ହୋଇ । ବନ୍ଧୁଙ୍କୁ ଆସନେ ବସାଇ ॥
ଆଣି ସେ ଦେଲେ ବେନି ରୁଟି । ଭୁଞ୍ଜିଣ ଗୋବିନ୍ଦ ନ ଉଠି ॥
ତାହା ଦେଖିଣ ନର ନାରୀ । ଦୁହେଁ ହୋଇଲେ ଠଗ୍ରଠରି ॥
ତୁରିତେ ଗଲା ବନ୍ଧୁଓଷ୍ଟି । ପୁଣି ଆଣିଲା ବେନି ରୁଟି ॥
ଶ୍ରୀହରି ପଦେ ନେଇ ଦେଲେ । ତାହା ଯେ ଗୋବିନ୍ଦ ଭୁଞ୍ଜିଲେ ॥
ତା ଦେଖି ପତିପତ୍ନୀ ହୃଷ୍ଟ । ଜାଣିଲେ ପୂରନାହିଁ ପେଟ ॥
ପୁଣି ଦେଲେକ ବେନି ରୁଟି । ପ୍ରଭୁ ତା ଭୁଞ୍ଜି ସାରି ଉଠି ॥
ରହିଲା ଗୃରିଗୋଟି ଶେଷ । ତାହା ଜାଣନ୍ତି ପୀତବାସ ॥
ବିଚାର କଲେ ପ୍ରଭୁ ମନେ । ଆଜ ରହିବା ଏହି ସ୍ଥାନେ ॥
ବାକି ଯେତେକ ରୁଟି ଅଛି । ତାହା ମୁଁ ଯିବ ରାତେ ଭକ୍ଷି ॥
ସବୁ ଭୁଞ୍ଜିଲେ ବର୍ତ୍ତମାନେ । କି ଦେନିଯିବ ଏ ପ୍ରସ୍ଥାନେ ॥
ଏଣୁ ଏତିକି ଏବେ ହେଉ । ଏହା ବିଚାରି ମହାବାହୁ ॥
ଶ୍ରୀହସ୍ତେ ମୁଖ ପଖାଳିଣ । ହସି ବୋଇଲେ ନାରାୟଣ ॥
ଦୁର୍ଲଭ ଭୋଜନ ପାଇଲୁଁ । ଭୁଞ୍ଜି ଉଦର ସୁସ୍ଥ କଲୁ ॥
ଆଜିକ ତୋ ପୁରେ ରହିବୁ । ପ୍ରଭାତୁଁ ଉଠି ଆମ୍ଭେ ଯିବୁ ॥
ତା ଶୁଣି ପତିପତ୍ନୀ ଦୁଇ । ଆନନ୍ଦ କେ ପାରିବ କହି ॥
ସ୍ତମ୍ଭିତ କରଣ ରଖିଲେ । ଏକାନ୍ତେ ବସି ବିଚାରିଲେ ॥
ଅତିଥି ଅତ୍ୟନ୍ତ ଦୁର୍ବଳ । ଗୃହ ଯିବାକୁ ନାହିଁ ବଳ ॥
ଦୁଇ ଗୃରିଦାନ ରହନ୍ତେ । ଈଶ୍ୱର କରନାହିଁ ମୋତେ ॥
ଏବେ ତୁ ଶୁଣ ଗୋ ବନ୍ଧୋଷ୍ଟି । ବାକି ଯେ ଅଛି ଗୃରିଗୋଟି ॥



କୃପାସିନ୍ଧୁ ଦାସ ଏବଂ ତାଙ୍କ ସ୍ତ୍ରୀ ସକାଳୁ ଉଠି ଦେଖନ୍ତି ସେ ତାଙ୍କ ଘର ଖାଦ୍ୟ ଜନିଷରେ ପୂରିଯାଇଛି ।

ଏ ଓଳ ଅତିଥିଙ୍କି ଦେବା । ଆମ୍ଭେ ପଞ୍ଚକେ ଭୋକେ ଥିବା ॥
ତାହା ଶୁଣିଣ ଶ୍ରଦ୍ଧାବତୀ । ବୋଇଲା ଶୁଣ ପ୍ରାଣ ପତି ॥
ଏ ବଡ଼ ଭାଗ୍ୟ କଥା ହେଉ । ଅତିଥି ଅସନ୍ତୋଷ ନୋହୁ ॥
ମାନ୍ୟକ ପାଇଲେ ରଜନୀ । ଅତିଥି ଯିବେ ହୋଇ ତୁନି ॥
ଏମନ୍ତ କହୁ ଦିନ ଶେଷ । ରଜନୀ ହୋଇଲା ପ୍ରବେଶ ॥
ଅତିଥି ବଳେ କରାଇଲେ । ସେ ଗୃହଗୋଟି ଛାଡ଼ି ଦେଲେ ॥
ସବୁ ଭୁଞ୍ଜିଲେ ନାରାୟଣ । ବଢ଼ିବା ପାଇଁ ଏ କାରଣ ॥
ଦିଅନ୍ତି ଅବଶ୍ୟ ଶ୍ରୀହରି । ସୁଜନେ ଥାଅ ହେତୁ କରି ॥
ଭୁଞ୍ଜି ଉଠିଲେ ଭାବଗ୍ରାହୀ । ଶ୍ରୀମୁଖପଦ୍ମ ହସ୍ତ ଧୋଇ ॥
ଶୟନ କଲେ ତୃଣାସନେ । ଭାବ ଭକତ ଭାବ ମନେ ॥
ଧନ୍ୟ ସେ ଦୁହିଁଙ୍କ ଜୀବନ । ଭକତ ମଧ୍ୟେ ମୋକ୍ଷଦାନ ॥
ଆପଣେ ରହି ଉପବାସେ । ଦେଲେ ଦେବ ଅତିଥିଙ୍କ ପାଶେ ॥
ଏମନ୍ତ ଭାବ ଭଗବାନ । ଭାବସମୁଦ୍ରେ ହେଲେ ମଗ୍ନ ॥
ତେଣୁ ସେ ପତିପତ୍ନୀ ଦୁଇ । ଶୟନ କଲେ ଗୃହେ ଯାଇ ॥
ପ୍ରଭୁ ମହିମା ମନେ ଗୁଣି । ନମୋ ନମସ୍ତେ ଚକ୍ରପାଣି ॥
ତୁ ଦୀନ ବାନ୍ଧବ ବୋଲାଉ । ଆତଙ୍କୀ ଆତଙ୍କ ନ ସହୁ ॥
ମୋ ଆର୍ତ୍ତି ଖଣ୍ଡ ଦେବରାଜ । ମହିମା ଦେଖାଅ ତୋ ଆଜ ॥
ଅତିଥି ନିମନ୍ତେ ଭୋଜନ । କାହୁଁ ଯୋଗାଅ ଭଗବାନ ॥
ଆମ୍ଭେ ପଞ୍ଚକେ ଉପବାସେ । ରହିବୁ ରଜନୀ ଦିବସେ ॥
ଏମନ୍ତ ଭକ୍ତ ବେନି ପ୍ରାଣୀ । ତାହା ଜାଣିଲେ ଚକ୍ରପାଣି ॥
ତା ଦୁଃଖ ନ ପାରିଲେ ସହି । ବେଗେ ଉଠିଲେ ଭାବଗ୍ରାହୀ ॥
ଆଜ୍ଞା ଯେ ଦେଲେ ଭଗବାନ । ତୋ ଘରେ ପୂରିଥାଉ ଅନ୍ନ ॥
ବସ୍ତ୍ରାଦି ଅଳଙ୍କାର ଯେତେ । ଭୋଜନ ଦ୍ରବ୍ୟାଦି ସଙ୍ଗତେ ॥
ଜୀବନ୍ତେ ପୂରିଥାଉ ତୋର । ବଞ୍ଚିଣ ସୁଖ ଭୋଗ କର ॥
ମଲେ ବୈକୁଣ୍ଠେ ଠାବ ପାଅ । ଭକତ ମଧ୍ୟେ ଗଣ୍ୟ ହୁଅ ॥

ଏମନ୍ତ ଆଜ୍ଞା ତାକୁ ଦେଲେ । ତକ୍ଷଣେ ଅନ୍ତର୍ଦ୍ଧାନ ହେଲେ ॥
ଏମନ୍ତେ ପାହିଲା ରଜନୀ । ଉଦୟ ହେଲେ ଦିନମଣି ॥
ପତ୍ନୀ ତ ବେଗହୋଇ ଉଠି । ନିଜ ଘରକୁ ଦେଲା ଦୃଷ୍ଟି ॥
ଦେଖିଲା ଧନ ରତ୍ନମାନ । ପୂରି ଯେ ଅଛଇ ଭବନ ॥
ବସ୍ତ୍ର ଭୂଷଣ ଅଳଙ୍କାର । ଅଛଇ ଅନେକ ପ୍ରକାର ॥
ଭୋଜନ ଦ୍ରବ୍ୟ ଆଦି ଯେତେ । ମାଣ୍ଡିଆ ମସୁର ସହିତେ ॥
ଯେ ଦ୍ରବ୍ୟ ମୁଗାଦି ହରଡ଼ । ଧାନ ଗୁଡ଼ଳ କୁଡ଼ କୁଡ଼ ॥
ଇତ୍ୟାଦି ଦ୍ରବ୍ୟ ଅଛି ଯେତେ । କହି ନୁହଇ ଏତେ ତେତେ ॥
ଦେଖି ତା ହେଲା ଆଚମ୍ବିତ । ସ୍ୱାମୀକି ଉଠାଇ ତ୍ୱରିତ ॥
ବୋଇଲା ଆସ ବେଗହୋଇ । ସେ ମହାଯୋଗୀ ଗଲେ କାହିଁ ॥
ସମ୍ପଦେ ପୂରିଅଛି ଘର । ଏ ତ ବଡ଼ଇ ଚମତ୍କାର ॥
ତା ଦେଖି ଦୁହେଁ ବେଗେ ଆସି । ଦେଖିଲେ ନାହାନ୍ତି ସନ୍ୟାସୀ ॥
ମନ୍ଦିରେ ଦେଖିଣ ସମ୍ପଦ । ବିଚାର କଲେ ମନ ମଧ୍ୟ ॥
ନିଶ୍ଚେ ସେ ପ୍ରଭୁ ଚକ୍ରବାହୀ । ଆନର ବଳେ ନୁହେ ଏହି ॥
ପତ୍ନୀକି ପତି ବୋଲେ ଶୁଣ । ସେ ମାୟାଧର ନାରାୟଣ ॥
ଆମ୍ଭଙ୍କୁ ମାୟାରେ ପକାଇ । ଅନ୍ତରେ ହେଲେ ଭବଗ୍ରାହୀ ॥
ମନୁଷ୍ୟ ପ୍ରାୟେ ତାଙ୍କୁ ମଣି । ସେବା ନ କଲୁ ବେନିପ୍ରାଣୀ ॥
ତା ମାୟା ଦେବେ ଅଗୋଚର । ଆମ୍ଭେ ଯେ କେତେକ ମାତର ॥
କାହୁଁ ଜାଣିବା ତାଙ୍କ ଭାବ । ବ୍ରହ୍ମାଦି ଦେବଙ୍କୁ ଦୁର୍ଲଭ ॥
ମହାମହିମା ମହାମେରୁ । ତାହାଙ୍କ ଇଚ୍ଛା ଯାହା କରୁ ॥
ଏମନ୍ତ ବୋଲି ବେନି ପ୍ରାଣୀ । ସେ ଧନେ ହେଲେ ସେ ଭାରେଣି
ଅନେକ କାଳ ପୁଣ୍ୟ କଲେ । ଜୀର୍ଣ୍ଣ ଉତ୍ସବ କରାଇଲେ ॥
ଲୋକେ ବୋଲଇ ଧନ୍ୟ ଧନ୍ୟ । ଜୀବନ୍ତେ ସୁଖେ ନେଲେ ଦିନ ॥
ପୁତ୍ର ଦୁହିତା ଜାତକରି । ତା ଭାଗ୍ୟ କହିଲେ ନ ସରି ॥
ଏମନ୍ତ କେତେକାଳ ଯାନ୍ତେ । ବିଷ୍ଣୁଙ୍କୁ ପାଇଲେ ଦେହାନ୍ତେ ॥

ଶୁଣ ହୋ ମନ ନୃପବର୍ଣ । ଏ ଦାର୍ଢ୍ୟଭକ୍ତର ଲକ୍ଷଣ ॥
କହଇ ବପ୍ର ରାମ ଗୀତେ । ଅଶେଷ ପ୍ରାଣୀଙ୍କର ହିତେ ॥
ସୁଜନେ କର ଏତେଣ ନ୍ୟାୟ । ଆଉ ନ ଥାଉ ଯମ ଭୟ ॥
ମୁଁ ଗ୍ଳାର କହିବଇଁ କସ । ତୁମ୍ଭେ ତ ଶ୍ରୀହରିର ଦାସ ॥
ସେ ହରି ପାଦପଦ୍ମ ତଳେ । ମୋତେ ଭେଟାଇ ଦିଅ ବେଳେ ॥

ଇତି ଶ୍ରୀଦାର୍ଢ୍ୟଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ
କୃପାସିନ୍ଧୁ ଦାସ ପଦ୍ଧତୀ ଦାର୍ଢ୍ୟଭାବ ବର୍ଣ୍ଣନେ
ନାମ ଚତ୍ୱାରିଂଶୋଽଧ୍ୟାୟଃ ।

---

## ଏକଚତ୍ୱାରିଂଶ ଅଧ୍ୟାୟ

## ନନ୍ଦ ମହାନ୍ତ ସମ୍ବାଦ

ନମସ୍ତେ ନୀଳାଦ୍ରି କେଶରୀ । ତବ ମହିମାକୁ କେ ସରି ॥
ତୁମ୍ଭ ମହିମା ଅକୂପାର । କର ଏ ଭବଜନ୍ତୁ ପାର ॥
ହେ ନୀଳଘନ ଅପଘନ । ଏହି ବିନତି ପ୍ରଭୁ ଧେନ ॥
ହସି ଚୈତନ୍ୟଦେବ କହେ । ଶୁଣ ହେ ମନ ନୃପରାୟେ ॥
ମୁଁ ଯାହା କହୁଅଛି ଏବେ । କେବଳ ଶୁଣ ଶ୍ରଦ୍ଧାଭାବେ ॥
ଅଶେଷ ବ୍ରହ୍ମାଣ୍ଡର ଶ୍ରେଷ୍ଠ । ଏ ମର୍ତ୍ତ୍ୟଭୁବନେ ବୈକୁଣ୍ଠ ॥
ନାମ ଯା ଶ୍ରୀପୁରୁଷୋତ୍ତମ । ଯେ ପୁରେ ନ ପଶଇ ଯମ ॥
ପତିତ ଚଣ୍ଡାଳହିଁ ଥିଲେ । ଦଣ୍ଡି ସେ ନ ପାରଇ ଭଲେ ॥
ଏମନ୍ତ କ୍ଷେତ୍ରେ ବାସ ଜାଣ । ଜାତିରେ ଅଟଇ କରଣ ॥
ଖୋଲ ପାଞ୍ଜିଆରେ ଉତ୍ତମ । ନନ୍ଦ ପଟ୍ଟନାୟକ ନାମ ॥
ପ୍ରତାପରୁଦ୍ର ସମୟରେ । ପାଞ୍ଜିଆ ବୃତ୍ତି ସେହୁ କରେ ॥
ଜାଣଇ ଜୀବ ନାରାୟଣ । ସଂସାର ଯାହାର ଭିଆଣ ॥
କୀଟରୁ ବ୍ରହ୍ମଯାଏ ଯେତେ । ହରି ସବୁରି ହୃଦଗତେ ॥
ପିଣ୍ଡ ମାତ୍ରକେ ଭିନ୍ନ ଭିନ୍ନ । ସବୁରି ଏକଇ ସମାନ ॥

ଯେ ପ୍ରାଣୀ ଜୀବେ ଦ୍ରୋହକର । ସେ ନଷ୍ଟେଁ ଶ୍ରୀହରି ବଇରି ॥
ଏମନ୍ତ ଜାଣି ତା ମନରେ । ସକଳ ଜୀବେ ଦୟା କରେ ॥
ଦଇବ ଯୋଗେ ରାଜ୍ୟପାଟ । ଲୌକିକେ କରୁଥାଇ ମାନ ॥
ସୁତ ଦୁହିତା ବନ୍ଧୁ ଭାଇ । ଅନେକ ପୂରଣ ଅଛଇ ॥
ପତ୍ନୀ ତାହାର ଗୁଣବନ୍ତୀ । ମିଳଇ ଅନେକ ସମ୍ପତ୍ତି ॥
କାହିଁ ତ ନ ପଶଇ ମନ । ଏକା ତା ଗୋବିନ୍ଦ ଭଜନ ॥
ହୃଦେ ବିଚାରୁଥାଇ ତାର । କେମନ୍ତେ ହେବ ଭବୁଁ ପାର ॥
ଏମନ୍ତେ କେତେଦିନ ଅନ୍ତେ । ଶୁଣ ସୁମନ ଶୁଦ୍ଧଚିତ୍ତେ ॥
ଦିନେ ପ୍ରତାପ ଦଣ୍ଡଧାରୀ । ପରଜାମାନଙ୍କୁ ହକାରି ॥
ଦୋଷ ନ ଥାଇ ଦଣ୍ଡଦେଲେ । ପ୍ରଜାଏ ଡକା ପକାଇଲେ ॥
ନନ୍ଦ ମହାନ୍ତି ତାହା ଦେଖି । ବିକଳେ ଥନ ଥନ ଆଖି ॥
କରି କହଇ କ୍ରୋଧଭରେ । ପ୍ରତାପରୁଦ୍ରଙ୍କ ଆଗରେ ॥
ବୋଇଲେ ଶୁଣ ନୃପବର । ଜୀବ ଅଟଇ ନାରାୟଣ ॥
ତାହାଙ୍କୁ ଦଣ୍ଡମାନ ଦେଲେ । ଲାଗଇ ନିଜ ଅଙ୍ଗେ ଭଲେ ॥
ତୁମ୍ଭେ ସୁବୁଦ୍ଧି ନରବର । ଏ କଥା କାହିଁ ନ ବିଚାର ॥
ଏଠାରେ ସିନା ବଡ଼ ସାନ । ସେଠାରେ ସମସ୍ତେ ସମାନ ॥
ଏଠାରେ ସାମନ୍ତ ସେବକ । ସେଠାରେ ଜାଣ ସର୍ବେ ଏକ ॥
ଏଠାରେ ନୀଚ ଉଚ୍ଚ ଅଛି । ସେଠାରେ ଏହା ନାହିଁ କିଛି ॥
ପ୍ରବେଶ ହେଲେ ସେହି ସ୍ଥାନ । ଏ କଥା ସତ୍ୟ କରି ଘେନ ॥
ସମସ୍ତ ସମାନ ଅଟଇ । ଏଠାରେ ଭିନ୍ନ ଭିନ୍ନ ହୋଇ ॥
ଜୀବ ଆତ୍ମା ଏ ଆଦିକର୍ତ୍ତା । ହେ ରାଜା ନ କରୁଛ ଆସ୍ଥା ॥
ଯେ ପ୍ରାଣୀ ଜୀବ ଦ୍ରୋହକର । ସେ ନଷ୍ଟେ ବିଷ୍ଣୁଙ୍କ ବଇରି ॥
ହେ ରାଜା ତୁମ୍ଭେ କି ନ ଜାଣ । ମୋର କହିବା ଅକାରଣ ॥
ତାହା ଶୁଣିଣ ନୃପବର । ବୋଇଲେ ଶୁଣ ରେ ପାମର ॥
ତୁ ଯେଉଁ କଥାମାନ କହୁ । ନୃପତି ହୋଇ କେବା ସହୁ ॥

ଆଜ ଜାଣିବା ତୋର ମନ । ତୁ ଅବା ଜାଣୁ କେତେ ଜ୍ଞାନ ॥
ଦେଖାଇ ଦେବୁ ଆଜ ତୁହି । ସେ ଆତ୍ମାରାମ ନନ୍ଦନ୍ତ କାହିଁ ॥
ନୋହିଲେ ମରିବୁ ଅବଶ୍ୟ । ଗଲାଡ଼ ତୋ ଜୀବନର ଆଶ ॥
ଏମନ୍ତ କହି କ୍ରୋଧଭରେ । ରଖାଇ ଦେଲେ ବନ୍ଦୀଘରେ ॥
ବୋଇଲେ ଶୁଣ ଆରେ ଦୂତେ । ଏହାକୁ ରଖ ରେ ଜାଗ୍ରତେ ॥
ଅନ୍ନ ଭୋଜନହିଁ ନ ଦେବ । ଯେମନ୍ତ ଶୁଖି ଏ ମରିବ ॥
ନୋହିଲେ ଆତ୍ମାରାମ ମୋତେ । ଦେଖାଇ ଦେଉ ସେ ସାକ୍ଷାତେ
ତେବେ ଜୀବନ ଥିବ ଭଲେ । ବୋଲି ନୃପତି ଚଳିଗଲେ ॥
ଏଣେ ଯେ ଦୂତେ ବେଗକରି । ସେ ନନ୍ଦ ମହାନ୍ତିଙ୍କୁ ଧରି ॥
ବନ୍ଦୀ ମନ୍ଦିରେ ବନ୍ଦୀକଲେ । ନିବଡ଼େ ବାନ୍ଧି ସେ ରଖିଲେ ॥
ବନ୍ଦୀରେ ଥାଇ ହରିଭକ୍ତ । ଭୟ କମ୍ପିତେ ନାହିଁ ଚିତ୍ତ ॥
ଚନ୍ଦ୍ରଣ ଗ୍ରନ୍ଥି ବ୍ରହ୍ମଗ୍ରନ୍ଥି । ଯୋଗଆସନ କରି ବସି ॥
ସକଳ ଇନ୍ଦ୍ରିୟ ନିବାରି । ରହିଲେ ସ୍ତମ୍ଭୀଭୂତ କରି ॥
ନାଭିକମଳୁଁ ବାୟୁ ଟେକି । ମୃଣାଳସୂତ୍ର ମଧ୍ୟେ ଗଲି ॥
ମନକୁ ଜ୍ଞାନମାର୍ଗେ ଥୋଇ । ସୁବୁଦ୍ଧି ସଙ୍ଗତେ ନ୍ରହାଇ ॥
ସମସ୍ତ ଟେକିଲେ ଜାଣି । ତ୍ରିକୂଟ ଠଣା ଗଲେ ଜାଣି ॥
ଅଗମ୍ୟମାର୍ଗେ ପଶିଗଲେ । ଅମନ ମନ୍ଦିରେ ମିଳିଲେ ॥
ଦେଖିଲେ ଅମଳ କମଳ । ଫୁଟି ରହିଛି ଦ୍ୱାଦଶଦଳ ॥
ତହିଁ ବିଜୟ ଆତ୍ମାରାମ । ଯୋଗମାୟା ସଙ୍ଗରେ ପ୍ରେମ ॥
ତାଙ୍କ ସମ୍ମୁଖରେ ଯାଇ ଭେଟି । ସଂସାରବନ୍ଧ ଗଲା ଫିଟି ॥
ଦେଖିଲା ବାହାର ଭିତରେ । ଅଶେଷ ବ୍ରହ୍ମାଣ୍ଡ ଯାକରେ ॥
ଏକରୁ ଦୁଇ ନାହିଁ ଆନ । ସର୍ବଜୀବେ ଭଗବାନ ॥
ତାହାଙ୍କ ଦର୍ଶନେ ସେକ୍ଷଣି । ବ୍ରହ୍ମାଣ୍ଡ ତୁଚ୍ଛ ପ୍ରାୟେ ମଣି ॥
ସକଳ ଭୟ କଲା ଦୂର । କେ କହୁ ଆନନ୍ଦ ତାହାର ॥
ବୋଇଲା ତୋତେ ଦେଖି ମୁହିଁ । ଭୟ ପଳାଇ ଗଲା କାହିଁ ॥

ସମସ୍ତେ ଏକଇ ଜୀବନ । ପିଣ୍ଡମାନଙ୍କେ ଭିନ୍ନ ଭିନ୍ନ ॥
ମୋର ଅଜ୍ଞାନ ଥିଲା ମୋତେ । ଭୟ ଦେଖାଉଥିଲା ଶତେ ॥
ଏବେ ଫିଟିଲା କର୍ମପାଶ । କିସ କରିବ ସେ ନରେଶ ॥
ଏମନ୍ତେ କହି ବେଗେ ଉଠି । ଭଜଇ ରାମନାମ ଗୋଟି ॥
ଶ୍ରୀନୀଳକନ୍ଦର ସୁନ୍ଦର । ନବଘନ ତନୁ ଜଳଧର ॥
କର୍ଣ୍ଣେ କୁଣ୍ଡଳ ପ୍ରକାଶ । ତହିଁ ଶୋଭିତ ପୀତବାସ ॥
ଶଙ୍ଖ କମଳ ଗଦା ଚକ୍ର । ସର୍ବଦା ଚତୁର୍ଭୁଜେ ଧରି ॥
ମଞ୍ଜୁଳ ଅଷ୍ଟାଦଶ ଚିହ୍ନ । ସୁନ୍ଦର ଯୁଗଳ ଚରଣ ॥
ଭକତଜନ ବଜ୍ରସେହ୍ନା । ଭାବରେ ବଶ ନନ୍ଦକାହ୍ନା ॥
ନନ୍ଦ ମହାନ୍ତି ତାଙ୍କ ଚିନ୍ତି । ହୃଦରେ ଜାତ ହେଲା ଭକ୍ତି ॥
ବନ୍ଦୀରୁ ବାହାର ହୋଇଲା । ଦାଣ୍ଡକୁ ଅନାଇଣ ଦେଲା ॥
ଦେଖିଲା ଚଣ୍ଡାଳର ନାରୀ । ଅନ୍ନ ମାଗିଣ କରେ ଧରି ॥
ତ୍ୱରିତ ହୋଇ ଚାଲିଗଲା । ତା ଅନ୍ନ ଛଡ଼ାଇ ଭୋଜିଲା ॥
ଦେଖିଅଛନ୍ତି ଲୋକବୃନ୍ଦେ । ସେ ଅନ୍ନ ଭୁଞ୍ଜିଲା ଆନନ୍ଦେ ॥
ଲୋକେ ବୋଇଲେ ତହିଁ ଥାଇ । ନନ୍ଦ ମହାନ୍ତି ହେଲା ବାଇ ॥
ଦେଖାଇ ଥିଲା ବଡ଼ ପଣ । ଦଇବ ଦେଲା ଏ କପଣ ॥
ନୃପତି ଦଣ୍ଡକୁ ଡରିଲା । କୁଟୁମ୍ବ ଏତେ ଦୂର କଲା ॥
ଛାଡ଼ିଲା କ୍ରିୟା କର୍ମ ଦୂରି । ମନ୍ଦେଣ୍ଟ ହୋଇଲା ଏହୁ ବାଇ ॥
ତା ଦେଖି ଦୂତମାନେ ଗଲେ । ନୃପତି ଛାମୁରେ କହିଲେ ॥
ସେ ନନ୍ଦ ମହାନ୍ତିର କଥା । ଶୁଣିବା ହେଉ ମହାରଥା ॥
ତୁମ୍ଭ ଦଣ୍ଡକୁ ଭୟ କରି । ବାତୁଳ ହେଲା ଜ୍ଞାନ ହାରି ॥
ଛାଡ଼ିଲା ଜାତି କୁଳ ମାନ । ଚଣ୍ଡାଳହସ୍ତୁ ନେଲା ଅନ୍ନ ॥
ଛାମୁରେ ଜଣାଇଲୁ ସତ । ଶୁଣି ନୃପତି ଆଚମ୍ବିତ ॥
ବୋଇଲେ କେଉଁ କର୍ମ କଲା । ତ ପରି ଲୋକ ନାଶଗଲା ॥
ଏ କଥା ଦଇବ ଲେଖନ । କାହାର ବଳେ କରେ ଆନ ॥



ରାଜା ନନ୍ଦ ମହାନ୍ତଙ୍କୁ ଦଣ୍ଡବତ କରି କ୍ଷମା ମାଗୁଛନ୍ତି ।

ଏମନ୍ତ ବୋଲି ଭୂମି ହେଲେ । ସମସ୍ତେ ହାହାକାର କଲେ ॥
ଶୁଣ ହେ ମନ ନୃପନାହା । ଏଥିଉତ୍ତରେ କଥା ଯାହା ॥
ସେ ନନ୍ଦ ମହାନ୍ତି ଚରିତ । ଚଣ୍ଡାଳ ହସ୍ତୁ ଖାଇ ଘୃତ ॥
ତହୁଁ ଚଳିଲା ବେଗ ହୋଇ । ଆନନ୍ଦେ ପ୍ରଭୁ ଗୁଣ ଗାଇ ॥
ବନସ୍ତେ ଯାଇ କଲା ବାସ । ଜଳ ପବନ କରି ଗ୍ରାସ ॥
କାହିଁ ବା ଫଳ ମୂଳ ଖାଇ । ପଶୁଙ୍କ ସଙ୍ଗେ ସଙ୍ଗ ହୋଇ ॥
ସମସ୍ତ ଦେଖିଲା ସମାନ । ନାହିଁ ତାହାର ବଡ଼ ସାନ ॥
ଯେବଣେ ଗୃହିଁଲେ ତେବଣେ ହରି । ଦିଶନ୍ତି ଶଙ୍ଖ ଚକ୍ରଧାରୀ ॥
ଏମନ୍ତ ଜାଣି ତାର ଚିତ୍ତେ । ଭ୍ରମଣ କରଇ ଜଗତେ ॥
କେତେହେଁ ଦିନର ଅନ୍ତରେ । ପ୍ରବେଶ ହେଲା ରଥପୁରେ ॥
ସେ ଗ୍ରାମ ବାହାରେ ସ୍ଥାବର । ମହାଶ୍ୱତ୍ଥ ନାମ ତାର ॥
ସେ ରାଜ୍ୟେ ଯେତେ ଦଣ୍ଡମାନ । ଯାହାକୁ ଦିଅନ୍ତି ରାଜନ ॥
କେବଳ ସେହି ବୃକ୍ଷମୂଳେ । ରଖନ୍ତି ନେଇ ରଖୁଆଳେ ॥
ଚେଙ୍ଗି ଗୁରୁକ ଗୁଣ୍ଡପିଟି । ବାନ୍ଧଣ ନାକ କାନ କାଟି ॥
ରଖନ୍ତି ସେହି ବୃକ୍ଷଠାରେ । ପ୍ରମାଣ ଅଛଇ ତହିଁରେ ॥
ସେ ବୃକ୍ଷମୂଳେ କଲା ବାସ । ଶେଯାଇ ଗୋମୟ ପାଉଁଶ ॥
କେବଳ ନାମ ଭଜନରେ । ଶୟନ କଲା ସେହିଠାରେ ॥
ଏମନ୍ତେ ଗଲା କେତେଦିନ । ଦିନେକ ସେ ରାଜ୍ୟ ରାଜନ ॥
ଏକ ମରଜା ଦୋଷ ଜାଣି । ଦୂତ ପେଷେଣ ତାକୁ ଆଣି ॥
ବୋଲଇ ଏହାକୁ ରେ ନେବ । ପଚଶ କୋରଡ଼ା ପିଟିବ ॥
ଆଜ୍ଞା ପ୍ରମାଣେ ଦୂତେ ନେଲେ । ମହାଶ୍ୱତ୍ଥମୂଳେ କଲେ ॥
ଆଣ୍ଠେ ଧରିଣ ତାକୁ ଲୋକ । ଦଣ୍ଡହିଁ ଦେଲେ ଯେ ଅନେକ
ମାଡ଼ ସେ ଦେଲେକ ଭରତେ । ଚଳିଣ ଗଲେ ଯେଝାମତେ ॥
ନନ୍ଦ ମହାନ୍ତି ପାଶେ ଥାଇ । ଦେଖୁ ଯେ ଥିଲା ସବୁ ରହି ॥
ଯେତେକ ବାଡ଼ ତାକୁ ପିଟି । ନନ୍ଦ ମହାନ୍ତି ଦେହ ଫାଟି ॥

ରୁଧିରମାନ ବହିଗଲା । ତା ଅଙ୍ଗ ରଙ୍ଗୁଆ ଦିଶିଲା ॥
ତାହା ଦେଖିଣ ଲୋକମାନେ । ବିଚାର କଲେ ମନେ ମନେ ॥
ଏ କି ବିଚିତ୍ର କଥାଗୋଟି । ଏହାକୁ କେବା ଗଲା ପିଟି ॥
ସର୍ବାଙ୍ଗ ଖଣ୍ଡ ଖଣ୍ଡ ହୋଇ । ରୁଧିର ଯାଉଅଛି ବହି ॥
ଏମନ୍ତ ଦେଖି ଧାଇଁଗଲେ । ସେ ଦେଶ ଲୋକଙ୍କୁ କହିଲେ
ବୋଇଲେ ଶୁଣ ନୃପବଣ । ସମ୍ମୁଖରେ କରୁଛୁ ଜଣାଣ ॥
ସେ ନନ୍ଦ ମହାନ୍ତିକ ଧରି । ମାଇଲେ ଉପ୍ରୋଧ ନ କରି ॥
ଚର୍ମ ତା ଯାଇଛି ନିକଳି । ରୁଧିର ଯାଉଅଛି ଗଳି ॥
ଦେଖି ଅଇଲୁ ଆମ୍ଭେ ତହିଁ । ଏହା ବୁଝିଣ ଆଜ୍ଞା ହେଉ ॥
ଶୁଣି ନୃପତି କ୍ରୋଧଭରେ । ବୋଲନ୍ତି ଯାଅ ଗୁଡ଼ ଦ୍ୱାରେ ॥
ନନ୍ଦକୁ ଡାକି ଘେନି ଆସ । ବୁଝିବା ଏଥିର ସନ୍ଦେଶ ॥
ଯେ ତାକୁ ମାରିଥିବ ଅବା । ରାଜ୍ୟୁ ବାହାର କରିଦେବା ॥
ଶୁଣି ଚଳିଲେ ଦୂତମାନେ । ନନ୍ଦ ମହାନ୍ତ ସନ୍ନିଧାନେ ॥
ପାଖରେ ହୋଇଲେ ପ୍ରବେଶ । ବୋଇଲେ ରାଜା ଆଜ୍ଞା ଆସ ॥
ଶୁଣି ସନ୍ତୋଷ ନନ୍ଦ ଦାସ । ମନରେ ହୋଇଣ ହରଷ ॥
ଦୂତଙ୍କ ସଙ୍ଗେ ଚଳିଗଲେ । ନୃପତି ସମ୍ମୁଖରେ ମିଳିଲେ ॥
ଦେଖି ନୃପତି ଦୁଃଖ ତାର । ବ୍ୟାକୁଳ ହୋଇଲେ ଅପାର ॥
ବୋଇଲେ ଆରେ ଆରେ ନନ୍ଦ । ତୋତେ ମାଇଲା କେଉଁ ମନ୍ଦ
ବହନ ଯେହ୍ନେ ମୋତେ କହ । ଦେଖି ମୋ ସହୁ ନାଶି ଦେହ
ଶୁଣି ସେ ନନ୍ଦ ବ୍ରହ୍ମ ଏତେ । ବୋଇଲା କି ପଚାର ମୋତେ ॥
ମୋତେ ଯେ ତୁହ୍ମ ତ ମାଇଲୁ । ଏବେ ଏମନ୍ତ କିପାଁ ବୋଲୁ ॥
ଶୁଣି ହସିଲେ ନରସାଇଁ । ବୋଇଲେ ଗୁଡ଼ନାହିଁ ବାଇ ॥
ତା ଶୁଣି ଶ୍ରୀହରି ଭକତ । ବୋଇଲେ ଶୁଣ ନରନାଥ ॥
ମୋତେ ଲାଗିଛି ଯେଉଁ ବାଇ । ତହିଁକି ଅଉଷଧି ନାହିଁ ॥
କେମନ୍ତେ ହେବ ସେହୁ ଭଲ । ଏହା ତ ବିଚାର ନ କଲ ॥

ଶୁଣି ବୋଲନ୍ତି ନୃପରାୟ । କି ରେ ନନ୍ଦଆ କିସ କହୁ ॥
ଦାଉବ ଗୁଣ୍ଡିଲା କି ତୋତେ । ପୁଣି ତ ଚଳାଉଛୁ ମୋତେ ॥
କି ଆଜ୍ଞା ଥିଲା ତୋର ଚିତ୍ତେ । ଏବେ ତା କହୁ କିନା ମୋତେ ॥
ତା ଶୁଣି ବୋଲେ ନନ୍ଦ ବାଇ । ଦେଖିବା ହେଉ ନରସାଇଁ ॥
ପାଚିଲା କଦଳୀ ପଣସ । ଛେନା ନଡ଼ିଆ ଘେନିଆସ ॥
ଏଠା ଲୋକଙ୍କୁ ଖୁଆଇବା । ପ୍ରଭୁ ମହିମା ଦେଖାଇବା ॥
ତା ଶୁଣି ନୃପ ଆଜ୍ଞା ଦେଲେ । ଆଣରେ ଦେଖିବା ବୋଇଲେ ॥
ଆଜ୍ଞା ପ୍ରମାଣେ ଲୋକେ ଗଲେ । ସେହି ପ୍ରକାରେ ଆଣିଦେଲେ ॥
ସମ୍ମୁରେ କଲେ ସବୁ ନେଇ । ଦେଖି ବୋଇଲା ନନ୍ଦ ବାଇ ॥
ମହିମା ଏବେ ଆଜ୍ଞାହେଉ । କେ ଛେନା କେ କଦଳୀ ଖାଉ ॥
ତାର ଉଦର ଦ୍ରବ୍ୟ ଯେତେ । ଆସି ହେବ ମୋ ଗର୍ଭଗତେ ॥
ପ୍ରତ୍ୟକ୍ଷେ ଅଭିନ୍ନ ଆତ୍ମାର । ଦେଖିବା ହେଉ ନୃପବର ॥
ସେ ଅଙ୍ଗେ ଦୁଃଖ ସୁଖ ଯେହ୍ନେ । ଏ ଅଙ୍ଗେ ଲଗିଣ ଅଛଇ ॥
ଯାହାକୁ ତୋର ବୁତେ ନେଲେ । ସଂହାରଓସ୍ତ ମୂଳେ କଲେ ॥
ତାକୁ ପିଟିଲେ ଯେତେ ବାଡ଼ି । ଏ ଦେହୁଁ ତେତେ ଗୁଲ ଗୁଡ଼ି ॥
ଏ କଥା ଅଟଇ ପ୍ରମାଣ । ସକଳ ଦେହେ ନାରାୟଣ ॥
ସମ୍ପୂର୍ଣ୍ଣ ଘଟେ ଘଟେ ପୂରି । ଅଛନ୍ତି ଶଙ୍ଖଚକ୍ରଧାରୀ ॥
ହେ ରାଜା ସ୍ୱରୂପ କହୁଛି । ଏଥେ ସଂଶୟ ନାହିଁ କିଛି ॥
ଏମନ୍ତ ଶୁଣି ମହାରଥା । ବୋଇଲେ ବୁଝିବା ଏ କଥା ॥
ଏ ଗୃହ ଦ୍ରବ୍ୟ ଗୃହଜଣ । ଭୁଞ୍ଜିଲେ ବୁଝିବା ପ୍ରମାଣ ॥
ତାହା ଶୁଣିଣ ଲୋକେ ଧରି । ଭୁଞ୍ଜିଲେ ଭିନ୍ନ ଭିନ୍ନ କରି ॥
ତା ଦେଖି ସେ ନନ୍ଦ ମହାନ୍ତି । ସମସ୍ତେ କରିଦେଲା ବାନ୍ତି ॥
ସେକ୍ଷଣେ ଭିନ୍ନ ଭିନ୍ନ କରି । ବୋଲେ ଦେଖ ହୋ ଦଣ୍ଡଧାରୀ ॥
ତାହା ଦେଖିଣ ନୃପବର । ବୋଲନ୍ତି ଏ କି ଚମତ୍କାର ॥
ଆହୁରି ବୁଝିବା କଥାଏ । ଫିଟିବ ମନର ସଂଶୟ ॥

ବୋଲି ଶ୍ରୀହସ୍ତେ ବେତ ଗୋଟି । ଧରି ଜଣଙ୍କୁ ଦେଲେ ପିଟି ॥
ତାହାର କଣ୍ଟୁହିଁ ନୋହିଲା । ସେ ନନ୍ଦ ଚମକ ପଡ଼ିଲା ॥
ଅଙ୍ଗରୁ ଚର୍ମ ଛୁଡ଼ିଗଲା । ଫାଟିଣ ରୁଧିର ବହିଲା ॥
ତାହା ଦେଖିଣ ନରପତି । ମନରେ କଲା ଅତି ଭୀତି ॥
ମନରେ କରି ଦଣ୍ଡବତ । ବି [illegible] ॥
ଅନେକ ଅଲଙ୍କାର ଧରି । ବସ୍ତ୍ର ସହିତେ ପୂଜାକରି ॥
ବୋଲେ ମୋ ଅପରାଧ ଯେତେ । ଚିତ୍ତେ ନ ଧର କଦାଚିତେ ॥
ତାହା ଶୁଣିଣ ନନ୍ଦବାଇ । ଅଳପ ହସିଣ କହଇ ॥
ବୋଇଲେ ଶୁଣ ନୃପବର । କି ହେବ ଏ ବସ୍ତ୍ର ଭୂଷଣ ॥
ଏଥି ମୋ କିସ ପ୍ରୟୋଜନ । ତୋ କୃପାଥାଉ ହେ ରାଜନ ॥
ତୁମ୍ଭେ ଏଣିକି ଚେତା ହୁଅ । ଥିର ନୁହେଟି ନରଦେହ ॥
ଗୃଳୁଣି ମଧ୍ୟେ ଯେସନ୍ତେ ପାଣି । ରଖିଲେ ନ ରହେ ତା ଜାଣି ॥
ସେହି ପ୍ରକାରେ ଏହି ଜୀବ । କେବଳ ଗୃହୁ ଗୃହୁ ଯିବ ॥
ଏଥକୁ ଜୀବେ ଦୟାକରି । ଜାଗ୍ରତ ହୁଅ ଦଣ୍ଡଧାରୀ ॥
ଏମନ୍ତ ଜ୍ଞାନ ତାକୁ ଦେଇ । ସେ ବସ୍ତ୍ର ଭୂଷଣ ନ ନେଇ ॥
ହେ ରାଜା ଗଲିଟି ବୋଇଲେ । ତହୁଁ ତକ୍ଷଣେ ଚଳିଗଲେ ॥
ଯାଇ ପ୍ରବେଶ ଖଣ୍ଡଗିରି । ରହିଲେ ସିଦ୍ଧ ତନୁ ଧରି ॥
ତା ଭକ୍ତି ମୁକ୍ତି କଥାମାନ । ଜାଣନ୍ତି ପ୍ରଭୁ ଭଗବାନ ॥
ଶୁଣ ହେ ମନ ମହାରଥୀ । ଏ ଦାର୍ଢ୍ୟ ଭକ୍ତି ରସକଥା ॥
କହଇ ବପ୍ର ରାମ ଗୀତେ । ଅଶେଷ ପ୍ରାଣୀଙ୍କର ହିତେ ॥

ଇତି ଶ୍ରୀଦାର୍ଢ୍ୟଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ
ନନ୍ଦ ମହାନ୍ତି ଦାର୍ଢ୍ୟଭାବ ବର୍ଣ୍ଣନେ ବାମ
ଏକଚତ୍ୱାରିଂଶୋଽଧ୍ୟାୟଃ ।

# ଦ୍ୱିଚତ୍ୱାରିଂଶ ଅଧ୍ୟାୟ

## ମୋଚି ରାମଦାସ ସମ୍ବାଦ

ଶ୍ରୀରାମ ପଦ୍ମପାଦ ଚନ୍ଦ୍ର । କହେ ଚୈତନ୍ୟ ମହାପତ୍ର ॥
ଶୁଣ ସୁମନ ଶ୍ରଦ୍ଧାଭାବେ । ମୁଁ ଯାହା କହୁଅଛୁ ଏବେ ॥
ହରି ଭକତ କଥା ରସ । କେବଳ କର୍ଣ୍ଣକୁ ପୀୟୂଷ ॥
ଯେ ପୁଣ୍ୟ ଗୋଦାବରୀ ପାଶେ । ଅଲକା ପଲ୍ଲୀ ନାମ ଦେଶେ ॥
ସେ ଦେଶେ ଏକଇ ନଗର । ନାମ କନକବତୀ ପୁର ॥
ସେହୁ ନଗରେ ତାର ସ୍ଥିତି । ଜାତରେ ଅଟେ ମୋଚିଜାତି ॥
ରାମ ବେହେରା ନାମ ତାର । ଚର୍ମ ପାଦୁକା ତା ବେଭାର ॥
ଭାରିଯା ନାମ ତାର ସୁଳୀ । ପତିର ଆଜ୍ଞା ଥାଇ ପାଳି ॥
ତାହାର ଏକଇ କୁମର । ପିତା ବଚନ ମୂଳ ତାର ॥
ଏମନ୍ତେ ତିନିପ୍ରାଣୀ ଥାନ୍ତି । ଚର୍ମ ଚପଲ ସିଲାଇ ନିତି ॥
ତିନିହେଁ ତାହା ବିକି ଆଣି । ସୁଖେ ବଞ୍ଚନ୍ତି ତିନି ପ୍ରାଣୀ ॥
ନୀଚ ହୋଇଲେ କିସ ହେବ । କେବଳ ଥାଏ ହରି ଭାବ ॥
ଜୀବରେ ତାର ଦୟାମାନ । ଶକ୍ତ୍ୟନୁରୂପେ ଦିଏ ଦାନ ॥
ଶ୍ରୀଗୀତଗୋବିନ୍ଦରୁ ପଦେ । ସମ୍ପୂର୍ଣ୍ଣ ନୋହେ ତାହାଁ ଅଧେ
ଶିଖିଣ ଘୋଷୁଥାଇ ନିତି । କରୁଣ ଥାଇ ନିଜବୃତ୍ତି ॥
ଧୀରେ ସଧୀରେ ସମୀର । ବହଇ ଯମୁନାର ତୀର ॥
ଶ୍ରୀବୃନ୍ଦାବନ ବାଳକୁନ୍ଦ । ଯହିଁ ଜନ୍ମିତ ପ୍ରେମାନନ୍ଦ ॥
ବସନ୍ତ ବନେ ବନମାଳୀ । ରଚନ୍ତି ଶ୍ରୀ ରାଧାକୃଷ୍ଣ କେଳି ॥
ଏତେକ ଘୋଷୁଥାଇ ମାନ । ପ୍ରଣାମ କରି ଅହୋରାତ୍ର ॥
ଭୋଜନ ଶୟନରେ ବେଳେ । ତା ନିଜ ବଡ଼ପୁରଂ କାଳେ ॥
ଆଚଣ୍ଡ ତା ଗଣ୍ଡି କରି ହୃଦ । ଘୋଷୁଣ ଥାଇ ଏତୁ ପାଦ ॥
ଏମନ୍ତେ କେତେଦିନ ଠାରେ । ସେ ରାଜ୍ୟେ ଭାଗ୍ୟବନ୍ତ ଘରେ

ଗୃହରେ ଯେ ପଶି ତସ୍କରକର । ଅନେକ ଧନ ରତ୍ନ ହର ॥
ଦେଖିଲେ ଦେବତା ଖଟୁଲି । ବୋହି ଆଣିଲେ କସ ବୋଲି
ସବୁହିଁ ଶାଳଗ୍ରାମ ଶିଳା । ଅଜ୍ଞାନ ଘଟ ଭଣି କଲା ॥
ବ୍ରହ୍ମମୁନିଙ୍କି ଯେ ଦୁର୍ଲଭ । ଦର୍ଶନେ ଭକ୍ତ ମୁକ୍ତ ହେବ ॥
ତାହାଙ୍କୁ ବୋଲି ସେ ପଥର । ତେଣୁ ସେ ନ କର ଆଦର ॥
କସ ଏ କରିବା ବୋଲିଲେ । ବାହାରେ ପକାଇଣ ଦେଲେ ॥
ତହିଁରେ ଏକଜଣ ଥିଲା । ମୂର୍ତ୍ତି ଏ ବାହ୍ମଣ ଘେନିଲା ॥
ଅତି ପୃଥୁଳ ମନୋହର । ଲବଣ୍ୟ ଶିଳା ଦାମୋଦର ॥
ଅଞ୍ଜନ କଳାରୁ ଚିକ୍‌କଣ । ଝଲରେ ଅମୂଲ୍ୟ ଦର୍ପଣ ॥
ତମାଳ ଦଳ ନବଘନ । କାଳନ୍ଦୀ ଜଳର ସମାନ ॥
ଧିକ କରଇ ଭୃଙ୍ଗ ଶ୍ରେଣୀ । ଜ୍ୟୋତି ନିନ୍ଦଇ ନୀଳମଣି ॥
କସ୍ତୁରୀ କଳା ଧିକ୍‌କାରଇ । ସମାନ ଏ ସଂସାରେ ନାହିଁ ॥
ଶରଧା କରି ତାହା ଧରି । ବୋଲେ କରିବା ଘୋରିଘୋରି
ନୋହିଲେ କେ ମାଗିଲେ ଦେବ । ଭଲ ମୁଁ ଏହା ଧରିଥିବ ॥
ଏମନ୍ତ ବୋଲି ଘେନିଗଲା । ତା ନିଜ ମନ୍ଦରେ ରଖିଲା ॥
କେତେତେହେଁ ଦିନ ଘରେ ଥୋଇ । ମୋଚିର ଘରେ ଦେଲା ନେଇ
ବୋଇଲା ଏ ପଥର ରଖି । ତୋର ସଜକୁ ଘଷ ଦେଖି ॥
କେମନ୍ତେ ଦାଢ଼ ଏଥି ହେବ । ରୁହିଁ ଚପୂଳ ଯୋଡ଼େ ଦେବ ॥
ତା ଶୁଣି ସେ ବାମ ବେହେର । ଆନନ୍ଦ ମନେ ହୋଇ ତୋର ।
ବୋଇଲେ ଦେଖେ ସେ ପଥର । ଘଷେ ଜାଣିବ କାଠ ମୋର ॥
ଏମନ୍ତ ଶୁଣି ସେ ଚଣ୍ଡାଳ । ଦେଲା ସେ ଶାଳଗ୍ରାମ ଶିଳ ॥
ମର୍କତ ମଣିର ସଦୃଶ । ତା ଦେଖି ମୋଚି ମନତୋଷ
ହୋଇଛି ଅତ୍ୟନ୍ତ ବର୍ତ୍ତୁଳ । ଲବଣ୍ୟ ମନୋହର ଶିଳ ॥
ଦେଖି ମୁଁ ରଖିବ ବୋଇଲା । ତାକୁ ଚପୂଳ ଯୋଡ଼େ ଦେଲା
ସେହି ଦିନରୁ ନିତ ନିତ । ଯାଦେ ମାଡ଼ଣ ଘଷେ କାଠ ॥

ତେଣେ କାଟଇ ଚର୍ମ ଖଣ୍ଡେ । ଘଷଇ ଶାଳଗ୍ରାମ ମୁଣ୍ଡେ ॥
ମନରେ ହୋଇଣ ସାନନ୍ଦ । ପଢ଼ଇ ଶ୍ରୀଗୀତଗୋବିନ୍ଦ ॥
ପଦେକ ଗାଉଥାଅ ନିତ । କରି ତାହାର ନିଜ ବୃତ୍ତି ॥
ନ ଜାଣେ ଅନ୍ୟ କଥାମାନ । ସେହୁ ପଦକ ଗଣ୍ଠିଧନ ॥
କରି ଗାୟନ କରୁଥାଇ । ମନେ କଳ୍ପନା ତାର ନାହିଁ ॥
ଏମନ୍ତେ ଗଲା କେତେଦିନ । ଏଥି ଉତ୍ତରେ ଶୁଣ ମନ ॥
ଦିନେକ ଏକଇ ବ୍ରାହ୍ମଣ । ସକଳ ଗୁଣେ ବିଚକ୍ଷଣ ॥
ସକଳ ଶାସ୍ତ୍ରରେ ପଣ୍ଡିତ । ଶୁଚ ପବିତ୍ର ଦୃଢ଼ବ୍ରତ ॥
ଜାଣନ୍ତି ପାପପୁଣ୍ୟ ଯେବା । ନିରତେ କରେ ବିଷ୍ଣୁ ସେବା ॥
ଏମନ୍ତ ବିପ୍ର ସେହୁ ପଥେ । ଗମଇ ସ୍ନାନର ନିମନ୍ତେ ॥
ଦେଖିଲା ଶାଳଗ୍ରାମ ଶିଳା । କାଳନ୍ଦୀ ଜଳ ପରି କଳା ॥
ସକଳ ଲକ୍ଷଣେ ପୂରିତ । ସେ ଦେଖି ହେଲା ଆଚମ୍ବିତ ॥
ସେ ଶାଳଗ୍ରାମ ଶିଳା ଦେଖି । ପିଙ୍ଗୁଡ଼ି ନ ପାରିଲା ଆଖି ॥
ଚରଣେ ମୋଚ ମାଡ଼ି ଧରି । କାତି ଘଷଇ ଜଳ ଭରି ॥
ଦେଖି ହୃଦୟ ଗଲା ଫାଟି । ନେତ୍ରୁ ଲୋତକ ହେଲା ବୃଷ୍ଟି ॥
ବୋଲଇ ଶୁଣ ହେ ବେହେରା । କଥାଏ କହିବି ମୁଁ ପରା ॥
ଘେନ ତୁ ମୋହର ବଚନ । ଅନେକ ହେବ ତୋର ପୁଣ୍ୟ ॥
ଏ ଶିଳାଟଗୋଟି ଦେବୁ ମୋତେ । ତୋ ଯଶ ରହିବ ଜଗତେ ॥
ତା ଶୁଣି ବୋଇଲା ସେ ମୋଚ । ରୁପିଆ ଦେଇ ମୁଁ କିଣିଛୁ ॥
ଦେଖ ମୋ କାର୍ଯ୍ୟକୁ ଆସଇ । ନିତ ମୁଁ ଶସ୍ତ୍ର ଯେ ଘଷଇ ॥
ତୋତେ ଯଦ୍ୟପି ଏହା ଦେବ । ମୁଁ ପୁଣି କେମନ୍ତ କରିବ ॥
ତା ଶୁଣି ବିପ୍ର ବୋଲେ ହସି । ନିଅ ରୁପିଆ ପାଞ୍ଚଗୋଟି ॥
ଏ ଶିଳା ଗୋଟି ମୋତେ ଦେଇ । ଆନ ପଥରେ ଘଷ ତୁହି ॥
ତା ଶୁଣି ମୋଚ ତୋଷହେଲା । ଧନ ନେଇଣ ଶିଳା ଦେଲା ॥
ବ୍ରାହ୍ମଣ ପାଇଣ ତ୍ୱରିତ । ସେ ଶିଳା କରି ଶିରସ୍ଥିତ ॥

ଆନନ୍ଦେ ଘେନି ଚଳିଗଲା । ଆପଣା ମନ୍ଦିରେ ମିଳିଲା ॥
ସ୍ନାନ ଶଉଚବନ୍ତ ହୋଇ । ପ୍ରମୋଦ କେ ପାରିବ କହି ॥
କରାଇ ପଞ୍ଚାମୃତ ସ୍ନାନ । ବସେଇ କରାଇ ସିଂହାସନ ॥
ଗନ୍ଧଚନ୍ଦନ ମାଲ୍ୟ ଯେତେ । ତୁଳସୀ ଦଳହିଁ ସହିତେ ॥
ପୂଜି ଷୋଡ଼ଶ ଉପଚାରେ । ପ୍ରଣାମ କଲାକ ଭୂମିରେ ॥
ଅନେକ ପୂଜା ଦ୍ରବ୍ୟମାନ । ଘେନାଣ କଲା ନିବେଦନ ॥
ଧୂପ ଦୀପାଦି କର୍ମ ଯେତେ । ଦେଇ ପୂଜିଲା ଶ୍ରଦ୍ଧା ଚିତ୍ତେ ॥
ଏହି ପ୍ରକାରେ ପ୍ରତିଦିନ । କରି ସନ୍ତୋଷ ତାଙ୍କ ମନ ॥
ଈଶ୍ୱର କଲା ତା ହୃଦର । ଦାରିଦ୍ର୍ୟ ଗୁଡ଼ିଲା ମୋହର ॥
ଏ ମହାପ୍ରଭୁଙ୍କ ପ୍ରସାଦେ । ଧନ ଭୁଞ୍ଜିବି ଅପ୍ରମାଦେ ॥
ଏମନ୍ତେ ବିଚାରନ୍ତେ ମନ । ତାହା ଜାଣିଲେ ଶାଳଗ୍ରାମ ॥
ଶୁଣ ସୁମନ ଦେଇ ଚିତ୍ତ । ସେ ହରି ମହିମା ଏମନ୍ତ ॥
ଭବର ବନ୍ଧୁ ସେ ଗୋସାଇଁ । ଅଭାବ ଜନେ ଭେଟ ନାହିଁ ॥
କାମ କଳ୍ପନା ଯେବେ ଥିବ । ସେ କାହିଁ ତାହାଙ୍କୁ ପାଇବ ॥
ସେହିଦିନର ରାତ୍ରକାଳେ । ସେ ବିପ୍ର ଶୟନର ବେଳେ ॥
ସ୍ୱପନେ ଆଜ୍ଞା ତାଙ୍କୁ ଦେଲେ । ଶୁଣ ହୋ ବ୍ରାହ୍ମଣ ତୁ ଭଲେ ॥
ପ୍ରଭାତୁଁ ଉଠ ମୋତେ ନେବୁ । ମୋଚକ ଲେଉଟାଇଦେବୁ ॥
ସେ ମୋଟ ରାମଦାସ ଭାବ । ମୋତେ ସେ ଦୁର୍ଲ୍ଲଭ ଦୁର୍ଲ୍ଲଭ ॥
ଗୀତଗୋବିନ୍ଦ ରସ ଯେତେ । ଶୁଣାଉଥିଲା ନିତ ମୋତେ ॥
ତହିଁ ମୋ ଯେତେ ସୁଖଭର । ତାହା ଜାଣଇ ମନ ମୋର ॥
ଏ ପୂଜା ମୋର କସ ହେବ । ମୂଳ ମୋ ଭକତର ଭାବ ॥
ଏବେ ବାହନ ନେଇ ଦେବୁ । ନ ଦେଲେ ନଷ୍ଟେଁ ନାଶଯିବୁ ॥
ସ୍ୱପ୍ନେ ଏମନ୍ତ ଆଜ୍ଞା ଦେଇ । ଅନ୍ତର ହେଲେ ଭାବଗ୍ରାହୀ ॥
ତାହା ଜାଣି ସେ ଦ୍ୱିଜବର । କମ୍ପି ଉଠିଲା କଳେବର ॥
ପ୍ରଭାତୁ ଉଠି ବେଗେ ଗଲା । ସ୍ନାନ ଶଉଚ ଆସି କଲା ॥

ଉତ୍ତମ ପାଟବସ୍ତ୍ରେ ଧରି । ଚଳି ସେ ଗଲା ବେଗକରି ॥
ମୋଚି ପାରୁଶେ ହେଲା ଯାଇ । ଶ୍ରୀ ଶାଳଗ୍ରାମ ଆଗେ ଥୋଇ ॥
ବୋଇଲା ନିଅ ତୋର ଧନ । ଜାଣିଲି ଧନ୍ୟ ତୋ ଜୀବନ ॥
ଏ ସେ ଅନାଦି ନରହରି । ସକଳ ଘଟେ ଛନ୍ତି ପୂରି ॥
ଏହି ସେ ଜୀବର କରତା । ଏହି ସେ ଗତି ମୁକ୍ତିଦାତା ॥
ଏହାଙ୍କ ପାଦ ଆଶ୍ରା କଲେ । ଜୀବ ନିସ୍ତାର ହେବ ଭଲେ ॥
ଏହାଙ୍କୁ ନ ମଣ ପଥର । କେବଳ ବିଷ୍ଣୁ ଭକ୍ତି କର ॥
ତୋ ଜୀବ ହୋଇଲା ପବିତ୍ର । ସ୍ୱପନ ହେଲା ମୋତେ ସତ୍ୟ ॥
ବହନ ମୋତେ ଦେଇଥିବୁ । ମୋ ଭକ୍ତପାଶେ ନେଇଦେବୁ ॥
ସେ ଗୀତଗୋବିନ୍ଦରୁ ପଦେ । ଶୁଣାଉଥିଲା ମହାନନ୍ଦେ ॥
ଏମନ୍ତ ଆଜ୍ଞା ହେଲା ତେଣୁ । ପ୍ରଭୁଙ୍କୁ ଆଣିଦେଲି ତେଣୁ ॥
ଛାଡ଼ ପଥର ବୁଦ୍ଧି ତୋର । ଏବେ ତୁ ସୁଖେ ପୂଜାକର ॥
ଏ ଭବ ସାଗରୁ ତରିଲୁ । ଭକତ ସଙ୍ଗେ ଗଣାହେଲୁ ॥
ଏହା ଶୁଣିଲା ଯହୁଁ କର୍ଣ୍ଣେ । ତକ୍ଷଣେ ହେଲା ଦିବ୍ୟଜ୍ଞାନ ॥
ଉଠି କପାଳେ କର ଦେଲା । ବ୍ରାହ୍ମଣ ଚରଣେ ନମିଲା ॥
ସେହି ଶାଳଗ୍ରାମ ମୂର୍ତ୍ତିଧରି । ତକ୍ଷଣେ ଗଲା ନିଜପୁରୀ ॥
ଦିବ୍ୟ ଆସନେ ବସାଇଲା । ଅନେକ ଦଣ୍ଡବତ କଲା ॥
ତୁଳସୀ ଦଳ ଚନ୍ଦନରେ । ପୂଜିଲା ଅତି ଆନନ୍ଦରେ ॥
ଶ୍ରୀଗୀତଗୋବିନ୍ଦ ସେ ଗାନ । କଲା ପ୍ରଭୁଙ୍କ ସନ୍ନିଧାନ ॥
ବୋଇଲା ଆହେ ଭଗବାନ । ମୁଁ ଅତି ପତିତ ଦୁର୍ଜନ ॥
ଅଜ୍ଞାନୀ ହୀନ ଜାତି ଅଟେ । ନିଶିଦିବସ ଚର୍ମ କାଟେ ॥
ଅନେକ ହୀନ କର୍ମ କରି । ଅଛିବ ଜାତି ସମ୍ଭ ସରି ॥
ଧିକ ହେଉ ଏ ମୋ ଜୀବନ । ନାହିଁ ମୋହର ବୁଦ୍ଧି ଜ୍ଞାନ ॥
ନିରତେ ଦୁର୍ଗନ୍ଧ ଆବୋରି । ବଞ୍ଚଇ ସୁରାପାନ କରି ॥
ନୋହେ ମୁଁ କେବେ ଶୁଚିବନ୍ତ । ନ ଜାଣେ ଆଗ୍ରହ କେମନ୍ତ ॥

ଏମନ୍ତ ପ୍ରାଣୀକି କେମନ୍ତେ । କୃପା ଯେ କଲ କହ ମୋତେ ॥
ଏଣୁ ଜାଣିଲି ନିଷ୍ଠା କରି । ପରମ ଦୟାଳୁ ଶ୍ରୀହରି ॥
ଅଧମ ଉଦ୍ଧାରଣ ବାନା । ଅଚ୍ୟୁତ ଜନ ବଜସେନା ॥
ଏମନ୍ତ ବୋଲିଣ ତୁରିତେ । ଗ୍ରୁଡ଼ିଲ ନିଜ କର୍ମ ଯେତେ ॥
ଚୋର କୌପୁନୀ ଆଚ୍ଛେଦିଲା । ବୈଷ୍ଣବ ଭେକ ଆବୋରିଲା ॥
କରେ କଙ୍କଣ ଭୁଜମୂଳେ । ତୁଳସୀ କାଣ୍ଠି ମାଳା ଗଳେ ॥
ଆନନ୍ଦ ହୋଇ ଗଲେ ଭରି । ହୃଦୟସ୍ଥଳ ଯାକ ଚୂରି ॥
ଚରଣେ ବାନ୍ଧିଲା ଘାଗୁଡ଼ି । ଗୃଲନ୍ତେ କରେ ଘୋରରଡ଼ି ॥
କରେ ଧରିଣ କରତାଳ । ବଜାଏ ନୃତ୍ୟେହୋଇ ଭୋଳ
ଶ୍ରୀ ଗୀତଗୋବିନ୍ଦରୁ ପଦେ । ଗାନ କରଇ ଘୋର ନାଦେ ॥
ଶ୍ରୀକୃଷ୍ଣ ମନେ ମନେ ଧ୍ୟାୟି । ସ୍ୱବରେ ଗଦ ଗଦ ହୋଇ ॥
ଅଙ୍ଗ ପୁଲକ ରୋମାବଳି । ନେତ୍ରୁ ଲୋତକଧାର ଗଳି ॥
ଚଢ଼ଣ ଦେହ ବୁଦ୍ଧି ତାର । ବୋଲଇ ନମୋ ବେଣୁଧର ॥
ଯା ମାୟା ଦେବଙ୍କୁ ଦୁର୍ଲଭ । ଯହିଁ ମୋହିତ ସଦାଶିବ ॥
ମୁନିମାନଙ୍କୁ ଅଗୋଚର । କାହୁଁ ଜାଣିବ ମୁହିଁ ଚୋର ॥
ଯେବେ ତୁ ଦେବ ଚିନ୍ତାମଣି । ସକଳ ଜୀବର କାରେଣୀ ॥
ଦେଖିବି ନିଜ ରୂପ ତୋର । ତେବେ ମୋ ମନ ହେବ ସ୍ଥିର
ନୋହିଲେ ମରିବି ଅବଶ୍ୟ । ସତ୍ୟ କହିଲି ପୀତବାସ ॥
ରଖ ନ ରଖ ତୁମ୍ଭ ଇଚ୍ଛା । ମୁଁ ଏବେ ଘେନିଲି ଏ ଦୀକ୍ଷା ॥
ଏମନ୍ତ ବୋଲି କାଷ୍ଠା କରି । କେବଳ ଭଜୁଥାଇ ହରି ॥
ଅନ୍ନ ଭୋଜନେ ନାହିଁ ଆଶ । କେବେ ଦେଖିବ ପୀତବାସ ॥
ଏମନ୍ତେ ଦିବସ ଶର୍ବରୀ । ପ୍ରଭୁ ତୁମ୍ଭରେ ନୃତ୍ୟ କରି ॥
ବଞ୍ଚିଲା କରି ହରି ଧ୍ୟାନ । ତାହା ଜାଣିଲେ ଭଗବାନ ॥
ଯେ ପ୍ରଭୁ ଭକତବତ୍ସଳ । ଭକତ ଭାବ ତାର ମୂଳ ॥
ନ ଘେନେ କ୍ରିୟା ଅଭିମାନ । ନ ଇଚ୍ଛେ ଯଜ୍ଞ ତପ ଦାନ ॥

ମୋଚଗମ ଦାସ ଚରିତ ( ୧ )





ମୋଚଗମ ଦାସ ଆଖି ବୁଜିବାରୁ ଭଗବାନ ତାଙ୍କୁ ନିଜରୂପ ଦେଖାଇଲେ ।

ତୀର୍ଥ ବ୍ରତରେ ନୋହେ ବଶ । କେବଳ ମୂଳଟି ବିଶ୍ୱାସ ॥
ନିଷ୍କାମ ଶୁଦ୍ଧବୁଦ୍ଧି ଯାର । ସେ ଅଟେ ବାନ୍ଧବ ତାଙ୍କର ॥
ନିଷ୍ଠା ଅନିଷ୍ଠା ତାଙ୍କ ନାହିଁ । ଜାତ ଅଜାତ ଭିନ୍ନ କାହିଁ ॥
କେବଳ ଶୁଦ୍ଧ ପ୍ରେମଭାବ । ଜାଣି ତାହାର ଦେବନାଥ ॥
ଏବେ ବ୍ରାହ୍ମଣରୂପ ହୋଇ । ବିଜୟ କଲେ ଭାବଗ୍ରାହୀ ॥
ସେ ମୋଟ ରାମଦାସ ପାଶ । ଯାଇଣ ହୋଇଲେ ପ୍ରବେଶ ॥
ଦେଖିଲେ କରୁଅଛି ନୃତ୍ୟ । ମୁଣ୍ଡ ହଲାଇ ଯୋଡ଼ି ହସ୍ତ ॥
ତ୍ରିଭଙ୍ଗି କରି ଦେଇ ପାଦ । ଶ୍ରୀ ଗୀତଗୋବିନ୍ଦର ପଦ ॥
ଭାବରେ ଗାନ କରୁଛଇ । ନାଚଇ ଗେଲ୍ହାଇ ଗେଲ୍ହାଇ ॥
ଦାଣ୍ଡି ଦଣ୍ଡକେ ଭାବ ଭୋଳେ । ଶ୍ରୀଶାଳଗ୍ରାମ ପାଦେ ମିଳେ ॥
ଯେସନେ ମହାମନ୍ତ୍ର ବାଇ । ଜୟ ବୋଇଲେ ଜୟ ହୋଇ ॥
ତାହା ଦେଖିଣ ବ୍ରହ୍ମଚାରୀ । ଅଳପ ମନ୍ଦ ମନ୍ଦ ହସି ॥
ବୋଇଲେ ଶୁଣ ଆରେ ଦାସ । ସ୍ୱରୂପ କହ ଆମ୍ଭ ପାଶ ॥
କପାଇଁ ଏତେ ନୃତ୍ୟ କରୁ । ରାତ୍ର ଦିବସ ଗାଇ ମରୁ ॥
ଜୟ ହୋଇବ ଏହା କଲେ । ତା ମୋତେ କହ କିନା ଭଲେ ॥
ତା ଶୁଣି ମୋଟ ରାମଦାସ । ପ୍ରଣାମ କରି ବିପ୍ରପାଶ ॥
ବୋଇଲା ଶୁଣ ହେ ଗୋସାଇଁ । ସ୍ୱରୂପ କହୁଅଛି ମୁହିଁ ॥
ଦିନେକ ଏକଇ ବ୍ରାହ୍ମଣ । ଏ ନୀଳମଣିକି ଦେଖିଣ ॥
ମୋ ଠାରୁଁ ମାଗି ଘେନିଗଲା । କେ ଜାଣେ କିସ ସେବା କଲା ॥
ସେ ପୁଣି ବୃନ୍ଦାବନ ଅନ୍ତେ । ଫେରାଇ ଆଣି ଦେଲା ମୋତେ ॥
ବୋଇଲା ଏ ଟି ନାରାୟଣ । ସେବ ତୁ ଏହାଙ୍କ ଚରଣ ॥
ସାକ୍ଷାତେ ନୟନେ ଦେଖିବୁ । ସୁଖେ ମୁକତି ଗତି ହେବୁ ॥
ତେଣୁ ଭାବୁଛି ମୁହିଁ ନିତ୍ୟେ । ସ୍ୱରୂପ ଦେଖିବି କେମନ୍ତେ ॥
ତୁମ୍ଭେ କି ଆଜ୍ଞା ଦେବ ଅଛ । ତା ଶୁଣି ବୋଲନ୍ତି ଶ୍ରୀବତ୍ସ ॥
ଶୁଣ ରେ ମୋଟ ରାମଦାସ । ସେ ହରି ମହିମା ଅଶେଷ ॥

ଯୋଗୀନ୍ଦ୍ର ଯୋଗମାର୍ଗ ଧ୍ୟାନେ । ସେ ଦେଖି ନ ପାରନ୍ତି ଦିନେ ॥
ତା ପୁଣି ଦେଖିବୁ କେମନ୍ତେ । ଏହା ବିଗୁରୁଅଛୁ ଚିତ୍ତେ ॥
ଏକଥା ନୁହଇ ଉଚିତ । ତା ଶୁଣି ବୋଲେ ହରିଭକ୍ତ ॥
ପୁଣ ହେ ବ୍ରାହ୍ମଣ ଗୋସାଇଁ । କଥାଏ କହିବଇଁ ମୁହିଁ ॥
ସ୍ୱାମୀର ସ୍ନେହ ଯେବେ ହେବ । ତା ପତ୍ନୀ ଅସୁନ୍ଦରୀ ଥିବ ॥
କାଣୀ କୁବୁଜୀ ଖ୍ଲେଷ୍ଟି କେମୀ । ହୋଇଣ ଥିବ ସେ ଯଦ୍ୟପି ॥
କିଛିହିଁ ଗୁଣ ତା ନ ଥିବ । ସ୍ୱାମୀର ଦୟା ଏକା ହେବ ॥
ବଳେ ସେ କୋଳେ ନେଇ ଧରି । ସୌଭାଗୀ ବୋଲାଏ ସେନାରୀ ॥
ଯେତେ ସେ ହେଉ ରୂପବତୀ । ଶ୍ରଦ୍ଧା ନ କରେ ଯେବେ ପତି ॥
କି ହେବ ଯେତେ ପୁଣ ଥିଲେ । ଏହା ବିଗୁର କର ଭଲେ ॥
ସେ ଗୁଣଗ୍ରାହୀ ଭଗବାନ । ଅବଶ୍ୟ ଦେବେ ଦରଶନ ॥
ନୋହିଲେ ମୋର ପ୍ରାଣ ଯିବ । ହତ୍ୟା ତାହାର ପରେ ହେବ ॥
ଏମନ୍ତ ଶୁଣି ଚକ୍ରପାଣି । ଭକତ ପ୍ରେମ ମନେ ଗୁଣି ॥
ବୋଇଲେ ଧନ୍ୟ ତୋ ଜୀବନ । ବେଗେ ତୁ ବୁଜରେ ନୟନ ॥
ଆମ୍ଭେ ଟି ବରଦାତା ତୋର । ଦେଖିବୁ ସ୍ୱରୂପ ଆମ୍ଭର ॥
ତା ଶୁଣି ମୋଟ ରାମଦାସ । ଆନନ୍ଦ ସାଗରେ ପ୍ରବେଶ ॥
ଯେସନ୍ତି ବୁଜିଲା ନୟନ ; ଦେଖିଲା ମଦନ ମୋହନ ॥
ଅନ୍ତରେ ଦରଶନ କଲା । ନୟନ ଫେଡ଼ି ଗୁହିଁ ଦେଲା ॥
ସାକ୍ଷାତେ କଲା ଦରଶନ । ପ୍ରଭୁ ହୋଇଲେ ଅନ୍ତର୍ଦ୍ଧାନ ॥
କହୁ କେ ତାହାର ଆନନ୍ଦ । ଭଜଇ ଗୋପାଳ ଗୋବିନ୍ଦ ॥
ଜୀବନେ ସୁଖେ ଦିନ ନେଲା । ଅନ୍ତେ ସେ ବଇକୁଣ୍ଠେ ଗଲା ॥
ଶୁଣ ହେ ମନ ନୃପନାଥ । ଏ ଦାର୍ଢ୍ୟଭକ୍ତି ରସାମୃତ ॥
ଏଥେ ନିର୍ମଳ ଚିତ୍ତ ଯାର । ସେ ନିଶ୍ଚେ ହେବ ଭବୁ ପାର ॥
କହଇ ବିପ୍ର ରାମଦାସ । ସେ ହରି ମହିମା ଅଶେଷ ॥
ସକଳ ଜୀବର ଠାକୁର । ଭକତ ଭାବ ମୂଳ ତାର ॥

ଏଣୁ ଭକତ ରାମଦାସ । କଲି ସାଧୁଙ୍କ ପାଦେ ଆଶ ॥
କୃପା କରିବେ ସେହୁ ମୋରେ । ଭେଟାଇ ଦେବେ ଶ୍ରୀପଦ୍ମରେ ॥

ଇତି ଶ୍ରୀ ଦାର୍ଢ୍ୟଭକ୍ତି ରସାମୃତେ ମନ ଚୈତନ୍ୟ ସମ୍ବାଦେ
ମୋଟ ରାମ ଦାସ ଦାର୍ଢ୍ୟଭାବ ବର୍ଣ୍ଣନେ ନାମ
ଦ୍ୱାଚତ୍ୱାରିଂଶୋଽଧ୍ୟାୟଃ ।

---

## ତ୍ରୟଶ୍ଚତ୍ୱାରିଂଶ ଅଧ୍ୟାୟ
## ବଞ୍ଚାନନ୍ଦ ଦାସ ସମ୍ବାଦ

ନମସ୍ତେ ମଦନ ମୋହନ । ନମସ୍ତେ ଶ୍ରୀ ପଦ୍ମଲୋଚନ ॥
ବୌଦ୍ଧ କଳଙ୍କ ଦାଣବଧ । ବାଞ୍ଛା କରିବେ ମୋର ସିଦ୍ଧି ॥
ଏ ଯେ ପ୍ରବନ୍ଧ ସମ୍ପୂର୍ଣ୍ଣରେ । କଣାଏ ଆଜ୍ଞା ହେଉ ମୋରେ ॥
ତୋ ବିନା ଆଜ୍ଞାରେ କେ ମୋର । କହିବା ଶକ୍ୟ ହେବ କାର ॥
ଏଣୁ ଶରଣ ରାମଦାସ । ପୁରାଅ ମୋର ମନ ଆଶ ॥
ମନ ବୋଲଇ ଚଇତନ । ଦୁର୍ଲଭ ଏ ତୋର ବଚନ ॥
ଦୁର୍ଲଭ ସାଧୁଙ୍କ ଚରିତ । ଦୁର୍ଲଭ ହରି କଥାମୃତ ॥
ଶୁଣି ଶରଧା ହେବ ଯାର । ଯମ କି କରିବ ତାହାର ॥
ଏଣୁ ସାଧଙ୍କ କଥା ଯେତେ । କେବଳ କହୁଥାଅ ମୋତେ ॥
ପୁଣି କହଇ ଚଇତନ । ଶୁଣ ଅରୂପାନନ୍ଦ ମନ ॥
ସାଧୁଙ୍କ ମହିମା ଅଶେଷ । ତାହା ମୁଁ କହିବଇଁ କିସ ॥
କେବଳ ତୁମ୍ଭ ଶ୍ରଦ୍ଧାଭାବେ । ଯାହା କହୁଛି ଶୁଣ ଏବେ ॥
ଯେ ଗୋପପୁର ବୃନ୍ଦାବନ । ଜଗତ ମଧ୍ୟେ ମୋକ୍ଷପାନ ॥
ସକଳ ଦେବଙ୍କର ସାର । କେବଳ ଗତି ମୁକ୍ତି ଦ୍ୱାର ॥
ଯହିଁ ପ୍ରବେଶ ହେଲେ ଜୀବ । ଆଉ ନ ଦେଖେ ପୁଣି ଭବ ॥
ସେ ଗ୍ରାମେ ଏକଇ ବ୍ରାହ୍ମଣୀ । ବିଧବ ଅଟେ ସେ ତରୁଣୀ ॥
କେତୁକା ନାମ ଅଟେ ତାର । ନାହି ତା ଦୁହିତା କୁମର ॥

କେବଳ ଏକାକାକୀ ଥାଇ । କଷ୍ଟ ପାଇଣ ସେ ଜୀଅଇ ॥
ବୈଷ୍ଣବ ମଠମାନଙ୍କରେ । କୁଟେ ତଣ୍ଡୁଳ ନିରନ୍ତରେ ॥
ଗହମ ମାଣ୍ଡିଆ ମସୁର । ଚୂନା ସେ ପେଷଇ ଅପାର ॥
ପଚବା ବନାଇଣ ଦେଇ । ତହୁଁ ଯା ବର୍ତ୍ତନ ମିଳଇ ॥
ଖାଇ ସେ ବଞ୍ଚୁଥାଇ ଦିନ । ଏ ରୂପେ ପୋଷଇ ଜୀବନ ॥
କଠୋର କାଳ ଆସି ହେଲା । ଉଦର ପୋଷି ନ ପାରିଲା ॥
ସାଧୁଙ୍କ ଅବଶେଷ ମାନ । ଲୁଚ୍ଛଇ କଲକ ଭୋଜନ ॥
ଉତ୍ତମ ରୁଚି ଅନ୍ନ ଖାଇ । ତନୁ ବଢ଼ିଲା ମୋଟ ହୋଇ ॥
ଏକେ ବୟସ ନବଯୁବା । ଦେହ ତାହାର ଦିବ୍ୟ ଶୋଭା ॥
ଏମନ୍ତ ଦେଖିଣ ବୈଷ୍ଣବ ତା ଠାରେ କଲେ କାମ ଲୋଭ॥
ନାନା ପ୍ରକାରେ ସ୍ତୁତି କଲେ । ଅନେକ ଭକ୍ଷଦ୍ରବ୍ୟ ଦେଇ ॥
ସେ ଯେତେ ରୂପେ ନାହିଁ କରେ । ତା ମନ ମୋହିଲେ ଧନରେ॥
ଦଳବେ ସ୍ତ୍ରୀ ଜନ୍ମ ସିନା । ନ ସହି କାମର ବେଦନା ॥
କାହିଁତେ କଲା ସନମତ । ବୈଷ୍ଣବସଙ୍ଗେ ହେଲା ରତ ॥
ଏମନ୍ତେ କେତେଦିନ ଗଲା । ଦଇବେ ଗର୍ଭ ଉପୁଜିଲା ॥
ମନେ ଅନେକ ଚିନ୍ତା କରି । ନିଶି ଦିବସେ ଝୁରି ଝୁରି ॥
ବୋଇଲା କି ବୁଦ୍ଧି କରିବି । କାହାର ବଦନ ଚାହିଁବି ॥
ଲୋକେ ହୋଇବେ ହୀନମାନ । ବୋଲି ବଗୁରୁ ଥାଏ ମନ ॥
ଏମନ୍ତ ଦଶମାସ ହେଲା । ପୁତ୍ର ଗୋଟିଏ ପ୍ରସବିଲା ॥
ତାହା ଦେଖିଣ ସେ ଯୁବତୀ । ମନେ ଚିନ୍ତଇ ଦାଶରଥି ॥
ବୋଇଲେ ଆହେ ପଦ୍ମମୁଖ । ବାଳକୁମର ପ୍ରାଣ ରଖ ॥
ହାକମି ସରିଲା ମୋହର । ତୁ ପ୍ରଭୁ ଯାହା ତାହା କର ॥
ଏମନ୍ତ ବୋଲି ସଞ୍ଜକାଳେ । ବାଳ ତନୟ ଧରି କୋଳେ ॥
ଗୃହରୁ ଚଳିଲା ବହନ । ଯାଇ ମିଳିଲା ବୃନ୍ଦାବନ ॥
ବୈଷ୍ଣବବୃନ୍ଦ ମଧ୍ୟେ ଶ୍ରେଷ୍ଠ । ଯେ ପ୍ରେମାନନ୍ଦଙ୍କର ମଠ ॥

ତାହାଙ୍କ ପ୍ରାଙ୍ଗଣ ମଧ୍ୟରେ । ଯେ ପେଜ ନଳାର ପାଶରେ ॥
ବାଳକ ଗୋଟିକୁ ଶୁଆଇ । ବୋଇଲ ନମୋ ଭବଗ୍ରାହୀ ॥
ଅଶେଷ ବ୍ରହ୍ମାଣ୍ଡ କରତା । ସକଳ ଜୀବ ପଞ୍ଜ ଦାତା ॥
ଏ ଯେଉଁ ବାଳକର ଚିନ୍ତା । ହେ ପ୍ରଭୁ ତୋତେ ଲାଗଇ ତା ॥
ଯେ ଜନ ବନ୍ଧୁ ରୂପ କଲ । ଏ ପିଣ୍ଡେ ଜୀବଦାନ ଦେଲ ॥
ରଖ ନ ରଖ ସେ ଜାଣଇ । ଏ ହତ୍ୟା ଦୋଷ ମୋତେ ନାହିଁ ॥
ଏମନ୍ତ ମନ୍ଦ ବୁଦ୍ଧି ମୋତେ । ଯେ ଦେଲ ମୋର ହୃଦଗତେ ॥
ସେହି ଜାଣଇ ପାପ ପୁଣ୍ୟ । ଏବେ ମୁଁ ହାରିବ ଜୀବନ ॥
ଜଗତେ ଅକୀର୍ତ୍ତି ଯେ ହେବ । ତାହା ଜାଣନ୍ତୁ ପଦ୍ମନାଭ ॥
ଏମନ୍ତ ବୋଲି ଚଳିଗଲ । ଯମୁନାଜଳେ ବୁଡ଼ିମଲ ॥
ଏବେ ତୁ ଶୁଣ ହୋ ସୁମନ । ସେ ଯେଉଁ ଅନାଥ ନନ୍ଦନ ॥
ମାତା ଗର୍ଭରେ ରହିଥାଇ । ସାଧୁ ପ୍ରସାଦ ଥିଲ ଖାଇ ॥
ତେଣୁ ନିରୋଗୀ ତାର ଦେହି । ତାକୁ ବିପଦ ଆଉ ନାହିଁ ॥
ଏକାକୀ ପଡ଼ିଛି ନନ୍ଦନ । ଜାଣିଲେ ପ୍ରଭୁ ଭଗବାନ ॥
ଯେ ପ୍ରଭୁ ଜୀବର କାରେଣୀ । ଅଶେଷ ଜନ ଚିନ୍ତାମଣି ॥
ଅଶେଷ ବ୍ରହ୍ମାଣ୍ଡ ବିଧାତା । ଲଗିଲ ସେ ବାଳକ ଚିନ୍ତା ॥
ତକ୍ଷଣେ ନିଜେ ପୀତବାସ । ଅନାଥ ବାଳକର ପାଶ ॥
ପଦ୍ମ ଗୋଟିଏ ଦନା କରି । ପେଜ ନଳାରୁ ପେଜ ଭରି ॥
ଆପଣେ ଧରିଣ ଶ୍ରୀହସ୍ତେ । ଦେଲେ ବାଳକ ମୁଖାଗ୍ରତେ ॥
ଅତ୍ୟନ୍ତ ଆହ୍ଲାଦ କରି । ତା ମୁଖେ ଅଳ୍ପ ଅଳ୍ପ ଭରି ॥
ପୁତ୍ରକୁ ଧରି ଦେବରାୟେ । କୋଳରେ ପିତା ମାତା ପ୍ରାୟେ ॥
ତା ଅଙ୍ଗ ଶ୍ରୀହସ୍ତେ ଆଶ୍ୱାସି । ବୋଇଲେ ଶୁଣ ବାଳଶିଷି ॥
ଅକ୍ଷୟ ହେଉ ତୋ ଶରୀର । ସର୍ବଙ୍କ ହୁଅରେ କୁମର ॥
ଏ ମୋ ବଚନ ସିଦ୍ଧ ହେଉ । ଅକାଳ ମୃତ୍ୟୁ ତୋତେ ନୋହୁ ॥
ଏମନ୍ତେ ଆଜ୍ଞା ତାକୁ ଦେଲେ । ତକ୍ଷଣେ ଅନ୍ତର୍ଦ୍ଧାନ ହେଲେ ॥

ଶୁଣ ହେ ମନୁ ନୃପନାହା । ଆତଙ୍କ କାଟିଲେ ଏଡ଼େ ସାହା ॥
ହୃଅନ୍ତି ପ୍ରଭୁ ଦଇତ୍ୟାରି । ଏ କଥା ରଖ ଗଣ୍ଠିକରି ॥
ବ୍ରହ୍ମାଣ୍ଡ ମଧ୍ୟେ ପ୍ରଭୁପଣେ । ନ ଥିବ ଏମନ୍ତ ଯେ ଜଣେ ॥
ଏବେ ତୁ ଶୁଣ ମନନାଥ । କହିବା ବାଳକ ଚରିତ ॥
ପ୍ରଭୁଙ୍କ ଆହ୍ଲାଦ ପାଇ । ଅତ୍ୟନ୍ତ ତେଜୋବନ୍ତ ହୋଇ ॥
ଅଟନ୍ତି ସେ କଲାକ ରୋଦନ । ତା କଣ୍ଠ କୋକିଳ ସମାନ ॥
ତହିଁ ମିଶିଛି ନାମାବଳି । ରାମ ଗୋବିନ୍ଦ ବନମାଳୀ ॥
ସେ ଧ୍ୱନି ଶୁଣି ମଠଜନେ । ସର୍ବେ ବିଚାର କଲେ ମନେ ॥
ଏ ତ ଅତ୍ୟନ୍ତ ଆଚମ୍ବିତ । ପଡ଼ି କାନ୍ଦଇ କା ବାଳୁତ ॥
ଏମନ୍ତ ବୋଲି ଧାଇଁଗଲେ । ମହନ୍ତ ପ୍ରେମାନନ୍ଦ ଥିଲେ ॥
ବାଳ ତନୟ ପାଦେ ମିଳି । ଦେଖିଲେ ଗୁଡ଼ିଏ ବୋବାଳି ॥
ଏକେ ସୁନ୍ଦର ବାଳଶିଷ୍ଟି । ଝଟକ ବିଦ୍ୟୁତ ପ୍ରାୟ ଦିଶି ॥
ଚନ୍ଦ୍ରମା ପଦ୍ମ ଯେ ବଦନ । ରୂପ କି ମଦନମୋହନ ॥
ନାସା ଶ୍ରବଣ ନେତ୍ରଧାର । କହି ନୁହଇ ତା ସୁନ୍ଦର ॥
କଣ୍ଠ କପୋଳ କର ପାଦ । ଦେଖି କେ ନୋହିବ ପ୍ରମୋଦ ॥
କର ଚରଣକୁ ହଲାଇ । କାନ୍ଦୁଛି ଗେହ୍ଲାଇ ଗେହ୍ଲାଇ ॥
ରୋଦନ ସଙ୍ଗେ ନାମ ତାର । ଶୁଣି ହୋଇଲେ ଚମତ୍କାର ॥
ବୋଇଲେ ଧନ୍ୟ ଏହା ଜୀବନ । ଜନ୍ମରୁ ଚିହ୍ନେ ଭଗବାନ ॥
ଅନ୍ୟାୟ ସୁତ ପଡ଼ିଛି ହେଉ । କିବା ଅଜାତ ହୋଇଥାଉ ॥
ଏଥେ ବିଚାର ନାହିଁ ବାବା । ଧର ମଠକୁ ନେଇଯିବା ॥
ଏମନ୍ତ ବୋଲି ସେ ନନ୍ଦନ । ନେଇଣ ଚଳିଲେ ବହନ ॥
ମଠରେ ପ୍ରବେଶ ହୋଇଲେ । ଏକ ସ୍ତ୍ରୀଙ୍କି ଡକାଇଲେ ॥
ଖଣ୍ଡିଲେ ଖଣ୍ଡା ବରତନ । ବୋଇଲେ ପାଳ ଏ ନନ୍ଦନ ॥
ଶୁଣି ସେ ନାରୀ ଶୁଦ୍ଧଚିତ୍ତେ । ପୁନି ପାଳିଲା ବିଧିମତେ ॥
ଟଇଲ କୁଙ୍କୁମ ଲଗାଇ । ଅନଳ ତପତ ଦେଖାଇ ॥

ଅନେକ ଗାବ କ୍ଷୀରପାନେ । ପୁତ୍ର ବଢ଼ଇ ଦିନେ ଦିନେ ॥
ଚନ୍ଦ୍ରର କଳା ବୃଦ୍ଧି ପ୍ରାପ୍ୟେ । ବଢ଼ିଲା ସେ ବାଳ ତନୟେ ॥
ଦେଖିଣ ପୁତ୍ରର ଆନନ୍ଦ । ନାମ ତା ଦେଲେ ବଙ୍କାନନ୍ଦ ॥
ଏମନ୍ତ କେତେଦିନ ଗଲା । ପନ୍ଦ୍ର ବରଷ ପାଞ୍ଚ ହେଲା ॥
କହିଲା ଅମୂଲ୍ୟ ବଚନ । କେବଳ ଭକ୍ତି ତତ୍ତ୍ୱଜ୍ଞାନ ॥
ଦଶବରଷେ ବିଦ୍ୟା ଯେତେ । ସବୁ ରଖିଲା କଣ୍ଠାଗ୍ରତେ ॥
କେବଳ ହରିକଥା ବନେ । ଅନ୍ୟ ନ ପଶେ ତାର ମନେ ॥
ଜଗତ ଦେଖେ ବିଷ୍ଣୁମୟ । ତେଣୁ ନ ଥାଇ କାହିଁ ଭୟ ॥
ଏମନ୍ତେ ଗଲା କେତେ ଦିନ । ଶୁଣ ହେ ସୁମନ ରାଜନ ॥
ଦିନେକ ସେ ମଠ ମହନ୍ତ । ପ୍ରେମାନନ୍ଦ ଯେ ତପୋବନ୍ତ ॥
ଅଦ୍ଭୁତେ ଶୂଳବେଗ ମାରି । ପଡ଼ିଲେ ନିଜ ପ୍ରାଣ ହାରି ॥
ତାହା ଦେଖି ସେ ମଠଲୋକେ । ଧାଇଁ ପଡ଼ିଲେ ଯେ ଦୁଃଖେ ॥
ସମସ୍ତେ ବୋବାଳି ଶୁଭିଲେ । ଶୁଣି ସକଳେ ରୁଣ୍ଡ ହେଲେ ॥
ମହନ୍ତ ପଡ଼ିବା ଦେଖିଲେ । ହା ହା ଶବଦେ ଡାକଦେଲେ ॥
ବେଢ଼ିଲେ ଶତପୁର କରି । ଜାଣିଲେ ନିଶ୍ଚେ ଗଲା ମରି ॥
ଏମନ୍ତବେଳେ ବଙ୍କାନନ୍ଦ । ବୋଇଲେ ସର୍ବେ କିମ୍ପା କାନ୍ଦ ॥
ଅତଥେ ବୋଇଲେ ରେ ଶୁଣ । ମହନ୍ତ ହାରିଲେ ପରାଣ ॥
ନିଜ ଧାମକୁ ଗଲେ ସେହି । ଆମ୍ଭଙ୍କୁ ପଥରେ ବସାଇ ॥
ତା ଶୁଣି ବଙ୍କାନନ୍ଦ ଗଲେ । ମୃତ ଶବର ପାଶେ ହେଲେ ॥
ଚିତ୍ତେ ଚିନ୍ତିଲେ ଆଦିକନ୍ଦ । ଗୋବିନ୍ଦ ଗୋପାଳ ମୁକୁନ୍ଦ ॥
ବୋଇଲେ ସମସ୍ତେ ଅଜ୍ଞାନ । ଏ କିମ୍ପା ହାରିବେ ଜୀବନ ॥
ନିଦ୍ରାରେ ଅଚେତନ ହୋଇ । ସ୍ୱାମୀ ଆମ୍ଭର ଛନ୍ତି ଶୋଇ ॥
ଏମନ୍ତ କହି ଭୁଜ ଧରି । ତୋଳିଲେ ଗୋବିନ୍ଦ ସୁମରି ॥
ବୋଇଲେ ସ୍ୱାମୀ ଉଠ ଯେବେ । କେତେ ଶୋଇଛ ନିଦ୍ରାଭାବେ
ବିଳମ୍ବ ହେଲା ଆଜ ବେଳ । ମଣୋହି ହେବ କେତେବେଳ

ଏମନ୍ତ ବୋଲନ୍ତେ ନନ୍ଦନ । ତକ୍ଷଣେ ପାଇଲେ ଜୀବନ ॥
ନିଦ୍ରୁଁ ଉଠିଲା ପ୍ରାୟେ ହୋଇ । ଚକ୍ଷୁ ମେଲିଣ ଦେଲେ ଗୃହିଁ ॥
ଉଠିଣ ବସିଲେ ଭୂତଳେ । ତା ଦେଖୁଥିଲେ ଯେ ସମସ୍ତେ ॥
ବୋଇଲେ ଏ କି ଆଚମ୍ବିତ । ଶୁଣିଲା ନାହିଁ କର୍ଣ୍ଣ ପଥ ॥
ମରିବା ପ୍ରାଣୀ ପ୍ରାଣପାଇ । ଚକ୍ଷୁ ମେଲିଣ ଦେଲେ ଗୃହିଁ ॥
ଏବେ ତ ଦେଖିଲୁ ସାକ୍ଷାତ । ଧନ୍ୟ ଏ କାହାର ବାକ୍ୟତ ॥
ଏହା ବଚନେ ଏହା ହେଲା । ମୃତ ଯେ ଲେଉଟି ଅଇଲା ॥
ଏମନ୍ତ କହି ଯେଝାମତେ । ଲେଉଟି ଗଲେ ସେ ସମସ୍ତେ ॥
ଶୁଣ ହେ ମନ ନୃପବ୍ରଣ । ମହନ୍ତ ପାଇ ନିଜ ପ୍ରାଣ ॥
ଉଠି ବସିଲେ ଯେତେବେଳେ । ଜନ ସମୂହ ଡୋଳେ ଦେଖି ॥
ବୋଇଲେ ଏକି ବିପରୀତ । ତା ଶୁଣି ବୋଇଲେ ସମସ୍ତ ॥
ଏ ଅଲୌକିକ ନୋହେ କହି । ବୋଇଲେ ଶୁଣିବା ଗୋସାଇ ॥
ତୁମ୍ଭେ ଯେ ନିଜ ପ୍ରାଣ ହାରି । ବିଜୟେ କଲ ନିଜ ପୁରୀ ॥
ପିଣ୍ଡ ଯେ ପଡ଼ିଥିଲା ତଳେ । ତା ଦେଖି ଛାଡ଼ିଲୁ ବୋବାଳି ॥
ଆତୁର ଦେଖିଣ ବେଦନ । ଧାଇଁ ଅଇଲେ ଏ ନନ୍ଦନ ॥
ବୋଇଲେ କାନ୍ଦ କାହିଁପାଇଁ । ଶୋଇଅଛନ୍ତି ଯେ ଗୋସାଇଁ ॥
ଏମନ୍ତ କହି ଭୁଜ ଧରି । ଉଠାଇ ଦେଲେ ବେଗ କରି ॥
ତକ୍ଷଣେ ପାଇ ନିଜ ପ୍ରାଣ । ଉଠି ବସିଲ ଯେ ଆପଣ ॥
ଏମନ୍ତ ଶୁଣି ପ୍ରେମାନନ୍ଦ । କେ କହୁ ମନର ଆନନ୍ଦ ॥
ବୋଇଲେ ଶୁଣରେ ନନ୍ଦନ । ତୁ ମୋତେ ଦେଲୁ ଜୀବଦାନ ॥
ତୋ ଗୁଣ ଶୁଝି ମୁଁ ନ ପାରି । ଆଜୁଁ ତୁ ମଠେ ଅଧିକାରୀ ॥
ତୋ ଇଚ୍ଛା ଯାହା ତାହା କର । ଏ ସର୍ବେ ତୋର ପରଗୃର ॥
ମୁହିଁ ହୋଇଲି ତୋ ଅଧୀନ । ଏ କଥା ସତ୍ୟକରି ଘେନ ॥
ଏମନ୍ତ ବୋଲି କୋଳେ ଧରି । ହୃଦେ ଲଗାଇ ମୋଦ ଭରି ॥
ପାଟେ ବସାଇ ଶୁଭମନ୍ତେ । ତିଳକ ଦେଲେ ବିଧିମତେ ॥

ପୃଷ୍ଠା ୩୭୮-୩୭୯



ବଙ୍କାନନ୍ଦ ଦାସ ସମୁଦ୍ର କୂଳରେ ଠିଆହୋଇ ଦେଖୁଛନ୍ତି । ବୈଷ୍ଣବମାନେ ଲୋଭ୍‌କରି
ସମସ୍ତ ଧନରତ୍ନ ନେଉଯାଉଛନ୍ତି ।

ପିଣ୍ଡ ପ୍ରତିଷ୍ଠା ବିଧି କଲେ । ଶ୍ରବଣେ ମହାମନ୍ତ୍ର ଦେଲେ ॥
ସେବକ ହୋଇ ବଳ୍ଲାନନ୍ଦ । ମନରେ ହୋଇଲେ ଆନନ୍ଦ ॥
ସାଷ୍ଟାଙ୍ଗେ କରି ଦଣ୍ଡବତ । ଉଠି ଯୋଡ଼ଣ ବେନି ହସ୍ତ ॥
ବୋଇଲେ ପ୍ରଭୁ ନମୋନମଃ । ନମସ୍ତେ ଗୁରୁ ପରଂବ୍ରହ୍ମ ॥
ପବିତ୍ର କଲ ମୋ ଶରୀର । ତୁମ୍ଭେ ମୋ ଜୀବନ ଠାକୁର ॥
ଦଇବେ ଅଟେ ମୁଁ ଅନାଥ । ନ ଜାଣେ କେବା ତାତ ମାତ ॥
ଅନାଥ ବାଳକକୁ ଆଣି । ପୋଷିଲ ଦେଇ ଅନ୍ନ ପାଣି ॥
ଏଣୁ ମୋ ଧର୍ମର ପିଅର । ସାକ୍ଷାତେ ଶ୍ରୀଗୁରୁ ଈଶ୍ୱର ॥
ଏଣୁ ମାଗୁଣି ଏତେ ମୋର । ଏ ମାୟା ଛଡ଼ାଇଲେ ନ ଭର ॥
ଧନ ରତନ ଆଦି ଯେତେ । ମୃତ୍ତିକା ପ୍ରାୟେ ଦିଶେ ମୋତେ ॥
ମୋ ମୁଣ୍ଡେ ନ ଲଦ ପର୍ବତ । ସମ୍ପଦେ ନ ରସେ ମୋ ଚିତ୍ତ ॥
ତାହା ଶୁଣିଣ ଗୁରୁଦେବ । ବୋଇଲେ ଧନ୍ୟ ତୋର ଜୀବ ॥
ତୁମ୍ଭ ଯେ ଏ ମଠେ କାରେଣି । ପ୍ରଭୁ ଭେଟାଇଛନ୍ତି ପୁଣି ॥
ତୋ ଇଚ୍ଛା ଯାହା ତାହା କର । ଏ ସର୍ବ ସମ୍ପଦ ତୋହର ॥
ଏମନ୍ତ ବୋଲି ଶ୍ରଦ୍ଧାଚିତ୍ତେ । ପାଟ ବାନ୍ଧିଲେ ତାର ମାଥେ ॥
ମଠେ ମହନ୍ତ ତାକୁ କଲେ । ସମସ୍ତେ ବଶବର୍ତ୍ତୀ ହେଲେ ॥
ଏଥି ଉତ୍ତରେ ଯେତେ କଥା । ଶୁଣ ହେ ମନ ମହାରଥା ॥
ସେ ମଠେ ପାଇ ଅଧିକାର । ଚିତ୍ତ ସନ୍ତୋଷ ନୁହେ ତାର ॥
କେବଳ ଶ୍ରୀଗୁରୁ ଆଜ୍ଞାରେ । ମହନ୍ତ ହେଲେ ସେ ମଠରେ ॥
କାହିଁ ନ ମିଶେ ତାର କାୟେ । କାଷ୍ଠେ ଅନଳ ଥିଲ ପ୍ରାୟେ ॥
ବୃଥା ମଣଇ ସର୍ବକଥା । କେବଳ ସତ୍ୟ ହରିକଥା ॥
କରଇ ହରିରୂପ ଧ୍ୟାନ । ହରି ଭକତେ ଦେଇ ମନ ॥
ହରି ପ୍ରସଙ୍ଗେ କର୍ଣ୍ଣ ଡେରି । ନିରତେ ଚିନ୍ତୁଥାଇ ହରି ॥
ହରି ସେ ସବୁରି କରତା । ଏଣୁ ନ ଜାଣେ ଅନ୍ୟକଥା ॥
କରନ୍ତି ଯାକୁ ହରି ଦୟା । ତାକୁ ଲଗିବ କିପାଁ ମାୟା ॥

ବଚନ ବୋଲଇଁ ସେ ଯାହା । କେବେ ଅନ୍ୟଥା ନୁହେ ତାହା
ଏମନ୍ତେ କେତେଦିନ ଗଲ । ଶୁଣ ସୁମନ ଯାହା ହେଲ ॥
ମଠରେ ଥିଲ ଯେତେ ଧନ । ହୀରା ନୀଳାଦି ମୋତିମାନ ॥
ସୁବର୍ଣ୍ଣ ରଜତ ସହିତେ । ସମସ୍ତ ଠୁଳ କଲ ଯେତେ ॥
ସିନ୍ଦୂକ ଗୋଟିକରେ ଭରି । ମୁଦ ପକାଇଁ ଯତ୍ନ କରି ॥
ବହନ କରି ଘେନିଗଲା । ଯମୁନା ଜଳେ ଫିଙ୍ଗି ଦେଲା ॥
ବୋଇଲା ଏହି ସିନା ମାୟା । ମଠେ କିପାଇଁ ଥିବ ଏହା ॥
ଏମନ୍ତ ବୋଲି ଫେରିଆସି । ମଠେ ଆନନ୍ଦ ହୋଇ ବସି ॥
ତାହା ଦେଖିଣ ସର୍ବେ ବିଶେଷେ । କହିଲେ ପ୍ରେମାନନ୍ଦ ପାଶେ ॥
ବୋଇଲେ ଏ କି ବିପରୀତ । ମଠରେ ଥିଲା ଯେତେ ବିତ୍ତ ॥
ଏ ନୂଆ ମହନ୍ତ ତୁମ୍ଭର । ସମସ୍ତ କଲା ନାରଖାର ॥
ସିନ୍ଦୁକେ ଭରି ଘେନିଗଲା । ଯମୁନା ଜଳେ ପକାଇଲା ॥
ଆଉଁ ସରିଲା ଧନ ଯେତେ । ଏ ମଠ ଚଳିବ କେମନ୍ତେ ॥
ତା ଶୁଣି ପ୍ରେମାନନ୍ଦ ଦାସ । ମନରେ ହୋଇଣ ବିରସ ॥
ବଙ୍କାନନ୍ଦକୁ ଡକାଇଲେ । କି କର୍ମ କଲୁରେ ବୋଇଲେ ॥
ସଂସାରେ ଧନୀ ଯେଉଁ ପ୍ରାଣୀ । ସେ ଯେ ସବୁରି ଶିଖାମଣି ॥
ନୀଚ କୁଳଜରେ ଥିଲେଧନ । ନୃପେ ହୁଅନ୍ତି ତା ଅଧୀନ ॥
ଏଣୁ ସଂସାରେ ଧନ ସାର । ତାହାକୁ କରି ନାରଖାର ॥
ଏହା ତ କଲୁ ଆରେ ମନ୍ଦ । ତା ଶୁଣି ବୋଲେ ବଙ୍କାନନ୍ଦ ॥
ଶୁଣିମା ହେଉ ଗୁରୁଦେବ । ମୁଁ ଯାହା କହୁଛି ପ୍ରସ୍ତାବ ॥
ଧନଟି ସବୁରି ବଇରୀ । ପ୍ରାଣୀ ଆୟୁଷ ନିତ୍ୟେ ହରି ॥
ତୃଷ୍ଣା ଲୋଭ ମୋହ କାମକ୍ରୋଧ । ବିରୋଧ କନ୍ଦଳ ବିଷାଦ ॥
ସବୁ କରିବା କର୍ତ୍ତା ସେହି । ଭକତ ପଥକୁ ଛଡ଼ାଇ ॥
ଦେଖ ଏ ନର୍କ ମାର୍ଗ ବାଟ । ଏଣୁ ଏ ଧନ ବଡ଼ କଷ୍ଟ ॥
ତାକୁ ନ କର ସ୍ୱାମି ଚିନ୍ତା । କେବଳ ଚିନ୍ତ ହରିକଥା ॥

ତା ଶୁଣି ଗୁରୁ କୋପଭର । ବୋଇଲେ ଶୁଣ ରେ ପାମର ॥
ତୁହି ଯେ ଜାଣୁ ସର୍ବଜ୍ଞାନ । ଆମ୍ଭେ ତ ସମସ୍ତେ ଅଜ୍ଞାନ ॥
ଏବେ ମୋ ଧନ ଣି ଦେବୁ । ନୋହିଲେ ମୋ ମଠେ ନଥିବୁ ॥
ତାହା ଶୁଣିଣ ବଳ୍ପାନନ୍ଦ । କେ କହୁ ମନର ଆନନ୍ଦ ॥
ଧନରେ ହୋଇଅଛ ମୋହି । ନ ଜାଣ ଭକ୍ତ କଥା କେହି ॥
ମଠୁଁ ବାହାର ହୋଇଗଲେ । ବୋଇଲେ ଆସ ମୋହ ଭୁଲେ ॥
ଧନ ମୁଁ ନାଶକଲି ଯାହା । ନିଶ୍ଚେ ଗୋବିନ୍ଦ ଦେବେ ତାହା ॥
ଏମନ୍ତ ବୋଲି ଗଲେ ଚଳି । ଯମୁନାକୂଳେ ଯାଇ ମିଳି ॥
ସଙ୍ଗେ ବୈଷ୍ଣବ ଛନ୍ତି ଲଗି । ବୋଲନ୍ତି ଧନ ଦିଅ ବେଗି ॥
ଦେଖଣାହାରି ଲୋକ ଯେତେ । ଗୋଡ଼ାଇଛନ୍ତି ଅପ୍ରମିତେ ॥
ଏମନ୍ତ ବେଳେ ବଳ୍ପାନନ୍ଦ । ବୋଇଲେ ନମୋ ଆଦିକନ୍ଦ ॥
ନମସ୍ତେ ପ୍ରଭୁ ଚକ୍ରପାଣି । ଚିନ୍ତାର୍ଥିଜନ ଚିନ୍ତାମଣି ॥
ନମୋ ମୂରଲୀ ଦୀକ୍ଷାଗୁରୁ । ଭକତ ବାଞ୍ଛା କଳ୍ପତରୁ ॥
ରାଧାନାଗରୀ ପ୍ରାଣେଶ୍ୱର । ଦେଖାଅ ମହିମା ତୁମ୍ଭର ॥
ମୁଁ ବଡ଼ ପତିତ ନିରେଖ । ତୁମ୍ଭ ମହିମା ତୁମ୍ଭେ ରଖ ॥
ତାହାଙ୍କ ଧନ ଆଜ୍ଞାହେଉ । ମହିମା ଜଗତରେ ଥାଉ ॥
ଏମନ୍ତ ବୋଲି ପ୍ରଣମିତ । ତାହା ଜାଣିଲେ ପଦ୍ମନେତ୍ର ॥
ଯା ମାୟା ଦେବଙ୍କୁ ଦୁର୍ଲଭ । ସୁକୃତଜନଙ୍କୁ ସୁଲଭ ॥
କି ମାୟା କଲେ ବ୍ରଜବାସୀ । ରତ୍ନ ସିନ୍ଦୁକମାନ ଆସି ॥
ସହସ୍ର ସହସ୍ର ସଂଖ୍ୟା ହୋଇ । ଲଗିଲି ନଦୀକୂଳେ ଯାଇଁ ॥
ବୋଇଲେ ବଳ୍ପାନନ୍ଦ ସ୍ୱାମୀ । ନିଅ ତୁମ୍ଭର ଧନ ଚିହ୍ନି ॥
ତା ଦେଖି ବୈଷ୍ଣବ ଯେ ଗଲେ । ଯେ ନିଜ ସିନ୍ଦୁକ ଧଇଲେ ॥
ଆଉ ଅଧିକ ଲୋଭ କରି । ସିନ୍ଦୁକମାନ ଯାନ୍ତେ ଧରି ॥
ସମସ୍ତ ହୋଇଲି ଅଦୃଶ୍ୟ । ଶୁଣ ହୋ ମନ ବିଶ୍ୱବାସ ॥
ବୈଷ୍ଣବ ନେଲେ ନିଜ ବିତ୍ତ । ତା ଦେଖି ଲୋକେ ଆଚମ୍ବିତ ॥

ବୋଇଲେ ଧନ୍ୟ ବଙ୍କାନନ୍ଦ । ଏହାଙ୍କ ଆୟୁରେ ଗୋବିନ୍ଦ ॥
ତୁମ୍ଭେ ଯେ ଭକତଶେଖର । ବୋଲି ନମିଲେ ତା ପୟର ॥
ଅନେକ ପ୍ରଣମିତ କରି । ଚଳିଣ ଗଲେ ଯେଝାପୁରୀ ॥
ସେ ବଙ୍କାନନ୍ଦ ତହୁଁ ଗଲେ । ଅଗମ୍ୟ ବନସ୍ତେ ପଶିଲେ ॥
ଶ୍ରୀବୃନ୍ଦାବନଚନ୍ଦ୍ର ଧ୍ୟାୟି । ରହିଲେ ଅଜ୍ରାମର ହୋଇ ॥
କୀଟରୁ ବ୍ରହ୍ମଲୋକଯାଏ । ସର୍ବେ ଦେଖିଲେ ହରିମୟେ ॥
କରିଣ ଶ୍ରୀହରିଭଜନ । ସେହି ଧ୍ୟାନରେ ସାରି ଦିନ ॥
କେତେଦିନରେ ସେ ଦେହାନ୍ତେ । ପଶିଲେ ହରି ପାଦଗତେ ॥
ଶୁଣ ଅଜ୍ୟ ମନଗଣ । ସେ ହରିଭକତ ଲକ୍ଷଣ ॥
ଏଥେ ନିର୍ମଳ ଚିତ୍ତ ଯାର । ସେ ନିଶ୍ଚେଁ ଭବୁଁ ହେବ ପାର ॥
କହଇ ବିପ୍ର ରାମଦାସ । ମୋ ପ୍ରଭୁ କମଳାବିଳାସ ॥
ସାଧୁଜନଙ୍କ ଶ୍ରୀଚରଣେ । ମୋ ଚିତ୍ତ ରହୁ ଅନୁକ୍ଷଣେ ॥

ଇତି ଶ୍ରୀଦାର୍ଢ୍ୟଭକ୍ତି ରସାମୃତେ ମନ ଚୈତନ୍ୟ
ସମ୍ବାଦେ ବଙ୍କାନନ୍ଦ ଦାସ ଦାର୍ଢ୍ୟଭାବ ବର୍ଣ୍ଣନେ
ନାମ ତ୍ରୟସ୍ତ୍ରିଂଶୋଽଧ୍ୟାୟଃ ।

---

## ଚତୁସ୍ତ୍ରିଂଶ ଅଧ୍ୟାୟ
## ରଘୁଦାସ ସମ୍ବାଦ

ନମୋ ଗୋବିନ୍ଦ କୃଷ୍ଣହରି । ନମୋ ଗୋବିନ୍ଦ ଦଇତାରି ॥
ନମୋ କୋଦଣ୍ଡକାଣ୍ଡ ପାଣି । ଅଶେଷ ଜନ ଚିନ୍ତାମଣି ॥
ଯେ ତୁମ୍ଭ ଭକତଙ୍କ ଯଶ । ତୁମ୍ଭେ ତା କରିବ ପ୍ରକାଶ ॥
ସ୍ଫୂର୍ତ୍ତି ଚୈତନ୍ୟ ଅନୁରାଗେ । କହଇ ମନରାଜା ଆଗେ ॥
ଶ୍ରବଣ କର ଶ୍ରଦ୍ଧାଭାବେ । ମୁଁ ଯାହା କହୁଅଛି ଏବେ ॥
ଏ ବଡ଼ ଦୁର୍ଲ୍ଲଭ ଚରିତ । ଭକତ ମଧ୍ୟେ ସାରସ୍ୱତ ॥
ପଶ୍ଚିମ ଦେଶେ ତାର ଘର । ଜାତିରେ ଅଟଇ ଦ୍ୱିଜବର ॥

ନାମ ତାହାର ରଘୁଦାସ । ସମ୍ପୂର୍ଣ୍ଣ ବୟସ ପରୀଣ ॥
ପ୍ରଭୁ କୃପାରୁ ଦିବ୍ୟଜ୍ଞାନ । ଉଦୟ ହେଲ ତାର ମନ ॥
ବିଚାର କଲା ତାର ଚିତ୍ତେ । ବନ୍ଧୁ କୁଟୁମ୍ବ ଆଦି ଯେତେ ॥
କେହି ତ ନୁହଇ କାହାର । ଏ ସବୁ ମାୟାର ସଂସାର ॥
ଧନ ସମ୍ପଦ ଆଦି ଯେତେ । ମିଥ୍ୟା କେବଳ ଏ ସମସ୍ତେ ॥
ନ ଜାଣି ପ୍ରାଣୀ ଏଥେ ପଡ଼ି । ନିଜ ନିସ୍ତାର ପଥ ଛାଡ଼ି ॥
ନ ଭଜି ପ୍ରଭୁ ଜଗନ୍ନାଥ । କେବଳ ହୋନ୍ତି ମୋହେ ରତ ॥
ଏବେ ମୁଁ ଏମନ୍ତ କରିବ । ଅବଶ୍ୟ କ୍ଷେତ୍ରବରେ ଯିବ ॥
ଭଜିଣ ପ୍ରଭୁ ଭଗବାନ । ସେ କ୍ଷେତ୍ରେ ହାରିବ ଜୀବନ ॥
ସେ ପ୍ରଭୁ ପଛେ ଯାହା କରୁ । ସେ ମୋର ବାଞ୍ଛା କଳ୍ପତରୁ ॥
ଏମନ୍ତ ଭାବି ସବୁ କର୍ମ । ଛାଡ଼ିଲ ତାର ମନଭ୍ରମ ॥
ଯେ ତାର ଜନନୀ ପିଅର । ଭାଇ ବାନ୍ଧବ ସହୋଦର ॥
ଏ ସବୁ ଦେଲା ତ୍ୟାଗ କରି । ଉଚ୍ଛିଷ୍ଟ ପରି ପ୍ରାୟୁ କରି ॥
ଚିନ୍ତି ଦେବାଧିଦେବରାଜ । ବେଗେ କ୍ଷେତ୍ରକୁ ହେଲା ସଜ ॥
ଶ୍ରୀରାମାନନ୍ଦ ସମ୍ପ୍ରଦାରେ । ମୁଣ୍ଡ ମୁଣ୍ଡାଇଲା ସତ୍ୱରେ ॥
ଡୋର କୌପୀନ ଆଶ୍ରେ କରି । ବୈଷ୍ଣବ ଧର୍ମକୁ ଆଚରି ॥
ସମସ୍ତ କର୍ମ କରି ଦୂର । ତକ୍ଷଣେ ହୋଇଲା ବାହାର ॥
କେବଳ ନିଷ୍କାମିକ ହୋଇ । ଶରୀର ମାତ୍ରକ ଅଛଇ ॥
ଚଳିଲା ଅତି ଭାବ ହୃଦେ । ଚିତ୍ତ ନିବେଶି ପଦ୍ମପାଦେ ॥
ଶ୍ରୀଜଗନ୍ନାଥ ଧ୍ୟାନ ବଚନେ । ଅନ୍ୟ ନ ପଶେ ତାର ମନେ ॥
ଏମନ୍ତେ ଗଲା ପଥବାହି । ଯହିଁ ବା ଯେମନ୍ତ ମିଳଇ ॥
କାହିଁ ଉତ୍ତମ ଦ୍ରବ୍ୟ ଖାଇ । କାହିଁ ଫଳମୂଳ ଭକ୍ଷଇ ॥
କାହିଁ ବଞ୍ଚଇ ଜଳଗ୍ରାସେ । କାହିଁ ବା ରହେ ଉପବାସେ ॥
ତହିଁକି ଶୋଚନା ନ କରି । କେବେ ଦେଖିବ ଦାରୁହରି ॥
କରିବ ତାହାଙ୍କୁ ଦର୍ଶନ । ଏମନ୍ତ ବିଚାରି ତା ମନ ॥

ଚଳଇ ଅତି ସ୍ନେହଭରେ । ଯାଇ ମିଳିଲା କ୍ଷେତ୍ରବରେ ॥
ଧୂଳିଆ ପହଣ୍ତେ ଦର୍ଶନ । କଲା ସେ ପ୍ରଭୁ ଭଗବାନ ॥
ଦେଖିଣ ସେ କଳା ଶ୍ରୀମୁଖ । ଗୁଞ୍ଜିଲା ମନୁ ସର୍ବଦୁଃଖ ॥
ସାଷ୍ଟାଙ୍ଗେ କରି ଦଣ୍ଡବତ । ଉଠି କପାଳେ ଦେଇ ହାତ ॥
ବୋଇଲା ନମୋ ନାରାୟଣ । ଅଶେଷ ଜୀବର କାରଣ ॥
ଅଶେଷ ବ୍ରହ୍ମାଣ୍ଡର ନାଥ । ନମୋ କମଳା ଶଙ୍ଖହସ୍ତ ॥
ନମସ୍ତେ କମଳାରମଣ । ଆଜ୍ଞୁ ମୁଁ ପଶିଲି ଶରଣ ॥
ତୁ ନାଥ ଯାହା ତାହା କର । ଅନ୍ୟ ଶରଣ ନାହିଁ ମୋର ॥
ଏମନ୍ତ ବୋଲି ସ୍ତୁତି କଲା । ତହୁଁ ମେଲଣି ହୋଇଗଲା ॥
ସେ କ୍ଷେତ୍ରମଧ୍ୟେ ଅତି ଶ୍ରେଷ୍ଠ । ଯେ ବଡ଼ ସନ୍ତଙ୍କର ମଠ ॥
ତହିଁ ପ୍ରବେଶ ଯାଇ ହେଲା । ମହନ୍ତ ଗ୍ରାମୁରେ ଭେଟିଲା ॥
ତାହାଙ୍କୁ ଦୁଃଖ ସୁଖ କହି । ତହିଁ ରହିଲା ମାସ ଦୁଇ ॥
ପ୍ରଭାତୁ ଉଠି ସ୍ନାନ ସାରି । ତିଳକ ନାମକୁ ସୁମରି ॥
ନିତ୍ୟେ ଚଳଇ ଦରଶନେ । ପଶଇ ଶ୍ରୀଜଗମୋହନେ ॥
ଅନେକ ଦଣ୍ଡବତ କରି । ଗ୍ରାମୁରେ ରହଇ ଉଭାରି ॥
ବୋଇଲା ଆହେ ମହାବାହୁ । ଶରଣପଞ୍ଜର ବୋଲାଉ ॥
ଏ ଜୀବ ହାନି ଲଭ ଯେତେ । ସବୁ ଲାଗଇ ପ୍ରଭୁ ତୋତେ ॥
ତୋ ଅବଶେଷ କବଳରେ । କାଳ ବଞ୍ଚିବ କ୍ଷେତ୍ରବରେ ॥
ତୋ ରୂପ କରିବ ଦର୍ଶନ । ତୋ ନାମ କରିବ ଗାୟନ ॥
ତୋ ଭକ୍ତସଙ୍ଗେ ସଙ୍ଗ ହୋଇ । ସଦା ତୋହର ରୂପ ଧ୍ୟାଇ ॥
ତୋ ନାମ ଭଜି ଦିନ ଯିବ । ହେ ନାଥ ଏହି ଆଜ୍ଞା ହେବ ॥
ଆନେ ମୋ ପ୍ରୟୋଜନ ନାହିଁ । ତୁ ଅନ୍ତର୍ଯ୍ୟାମୀ ଭାବଗ୍ରାହୀ ॥
ଏମନ୍ତ ବୋଲି ନିତି ନିତି । ପ୍ରଭୁଙ୍କୁ କରୁଥାଇ ସ୍ତୁତି ॥
ତହୁଁ ଚଳଇ ଯେତେବେଳେ । ଦିନ ବଞ୍ଚଇ ସାଧୁମେଳେ ॥
କେବଳ ହରିକଥା ରସେ । ଭୁଞ୍ଜିବାବେଳେ ମଠେ ଆସେ ॥



ରଜା ଭଗବାନଙ୍କ ଆଦେଶ ପାଇ ରଘୁଦାସଙ୍କୁ ଆଦର କରି ତାଙ୍କୁ ଆଣୁଛନ୍ତି ।

ତାଙ୍କୁ ଦେଖିଣ ମଠଜନେ । ବୋଲନ୍ତି ଲଙ୍ଘିତ ବଚନେ ॥
ଏ ତୁମ୍ଭ କେମନ୍ତ ବଗୁର । ପଙ୍ଗତବେଳେ ଆଗୁ ସାର ॥
ବଷଯ୍ୟାବେଳକୁ ନ ଥିବ । ଏହୁଟି ପାଡ଼ୁ ଆଙ୍କ ଭାବ ॥
ସମସ୍ତ ଜାଣିଲୁ ତୁମ୍ଭର । ବେଗେ ମଠରୁ ବଜେକର ॥
ଏମନ୍ତ ଶୁଣି ରଘୁଦାସ । ମନେ ଚନ୍ତଇ ପୀତବାସ ॥
ତୁରିତେ ତହୁଁ ଗଲ ଚଳି । ଯେ ଶ୍ୱେତଗଙ୍ଗା ପାଶେ ମିଳି ॥
ଶ୍ରୀଜଗନ୍ନାଥଙ୍କୁ ସୁମରି । ବସିଲ ଦୃଢ଼ ମନ କରି ॥
ଇନ୍ଦ୍ରିୟଗୁଣ ହୃଦେ ଧରି । ମନଚୈତନ୍ୟ ସ୍ଥିର କରି ॥
ଏକାଙ୍ଗ କରିଣ ସୁମନ । ଗମିଲା ବିକୁଣ୍ଠ ଭୁବନ ॥
ସମସ୍ତ କାମନା ପକାଇ । ରହିଲା ନିଷ୍କାମନା ହୋଇ ॥
କେବଳ ପ୍ରଭୁ ଦୀନବନ୍ଧୁ । ମହାମହିମା କୃପାସିନ୍ଧୁ ॥
ଗୋବିନ୍ଦ ରୂପ ହୃଦଗତେ । ବଜେ କରାଇ ଶୁଦ୍ଧଚିତ୍ତେ ॥
ଗ୍ଭଡ଼ିଣ ଦେହବୁଦ୍ଧି ଜ୍ଞାନ । ନୟନ ବୁଜି କରେ ଧ୍ୟାନ ॥
କେବଳ ରାମନାମ ଗୋଟି । ଭଜନ କରେ ନିଜ କଣ୍ଠି ॥
ଗ୍ଭଡ଼ିଲେ କ୍ଷୁଧା ତୃଷା ଆଶ । ପିଇଣ ନାମାମୃତ ରସ ॥
ଯାଉ ବା ଥାଉ ଏ ଶରୀର । ପ୍ରାଣ ଯିବାକୁ ନାହିଁ ଡର ॥
ଏମନ୍ତ ବୋଲି ଦୃଢ଼କରି । ବସିଲେ ଗୋବିନ୍ଦ ସୁମରି ॥
ଏକେ ତ ନିଦାଘର କାଳ । ରବିକିରଣେ ବହେ ଜ୍ୱାଳ ॥
ଅନଳ ପ୍ରାୟେ ରେଣୁରାଜି । ତପତେ ହେଉଥାଇ ଘଞ୍ଚି ॥
ତହିଁ ବସିଣ ଦୃଢ଼ାସନେ । କରୁଛନ୍ତି ଭୟ ନାହିଁ ମନେ ॥
ଏମନ୍ତେ ଗଲା କେତେଦିନ । ପଥେ ଯେ ଆତଯାତ ଜନ ॥
ଦେଖି ସେ ପାଇଲେ ବକଲ । ବୋଲନ୍ତି ଧନ୍ୟ ତପଶୀଳ ॥
ଏମନ୍ତ କହି ତାଙ୍କ ପାଶେ । ଛତା ପୋତିଲେ ଗ୍ଭଇ ଆଶେ ॥
ତାହା ଜାଣିଲେ ସନ୍ଥଦାସ । ବଜୟ କଲେ ତାଙ୍କ ପାଶ ॥
ଦେଖିଲେ ଦେହେ ନାହିଁ ଜ୍ଞାନ । ଲାଗିଛି ହରିଧ୍ୟାନେ ମନ ॥

କେତେହେଁ ରୂପେ ଡାକଦେଲେ । ସେ ରଘୁଦାସ ନ ଶୁଣିଲେ ॥
ଜାଣିଲେ ନଷ୍ଟେଁ ଏ ଅଭଥ । ତପେ ହରିବ ହରିଚିତ୍ତ ॥
ଏମନ୍ତ ବୋଲି ଚଳିଗଲେ । ନିଜ ମନ୍ଦିରେ ଯାଇ ହେଲେ ॥
ମହାପ୍ରସାଦ ଦିବ୍ୟ ଅନ୍ନ । ନାନାଦି ପ୍ରକାରେ ବ୍ୟଞ୍ଜନ ॥
ପେଷିଲେ ସୁଆରଙ୍କ ହସ୍ତେ । ସେ ଘେନି ଚଳିଲେ ତୁରିତେ ॥
ରଘୁଦାସଙ୍କ ପାଶେ ହେଲେ । ଯେ ଯାହା ମଠେ ଚଳିଗଲେ ॥
କେତେହେଁ ବେଳ ଗଲା ତହିଁ । ଚେତନା ପାଇ ଦେଲେ ଗୁହିଁ ॥
ଦେଖିଲେ ଶ୍ରୀମହାପ୍ରସାଦ । ଅନେକ ହୋଇଲେ ପ୍ରମୋଦ ॥
କେବଳ ମାନ୍ୟ ସେବାକଲେ । ପୁଣି ସେ ଧ୍ୟାନରେ ଲାଗିଲେ ॥
କେବଳ ପ୍ରଭୁ ଜଗନ୍ନାଥ । ସ୍ୱରୂପ ରଖି ଦୃଷ୍ଟି ପଥ ।୯୦।
ସେହି ରୂପକୁ କରି ଧ୍ୟାନ । ନ ଜାଣେ ଅନ୍ୟ କଥାମାନ ॥
ନିଦ୍ରା ଅଳସ କ୍ଷୁଧା ତୃଷା । ଛାଡ଼ିଲେ ସର୍ବ କର୍ମ ଆଶା ॥
ଏମନ୍ତେ ଚଉଦ ଦିବସ । ତପେ ସିଝିଲା ଦେହମାଂସ ॥
କେବଳ ଭକ୍ତି ଆଶ୍ରେ କରି । ରହିଲେ ରାମ ନାମ ଧରି ॥
ତାହା ଜାଣିଲେ ଆଦିମୂଳ । ଯେ ପ୍ରଭୁ ପରମ ମଙ୍ଗଳ ॥
ନ ସହେ ସେବକ ବେଦନା । ଏହି ନିମନ୍ତେ ଚକ୍ରେ ବାନା ॥
ଜଗତ୍ରେ ଅଛଇ ଫଇହର । ନାହିଁ ଯେ ଭକତକୁ ଡର ॥
ଏମନ୍ତ ପ୍ରଭୁ ଦେବରାଜ । ଦୋଳଣ ଶଙ୍ଖଚକ୍ର ଭୁଜ ॥
ଶରଣ ପଶୁଛନ୍ତି ବଳେ । ଯେବା ପଶିବ ଏକବେଳେ ॥
ମହାପତିତ ପଛେ ହେଉ । ତାହାର ଭୟ ନାହିଁ ଆଉ ॥
ଏ କଥା ଅଟଇ ପ୍ରମାଣ । ଶୁଣ ହେ ମନ ନୃପବର୍ଣ ॥
ରଘୁଦାସଙ୍କ ଭାବ ଜାଣି । ସହି ନ ପାରି ଚକ୍ରପାଣି ॥
ବିଜୟ କଲେ ଭଗବାନ । ସେ ରାଜ୍ୟ ରାଜା ସନ୍ନିଧାନ ॥
ମହାନିଦ୍ରାରେ ଅଛି ଶୋଇ । ସ୍ୱପନ ମାର୍ଗେ ଆଜ୍ଞା ଦେଇ ॥
ବୋଇଲେ ଶୁଣ ରେ ରାଜନ । ପଶ୍ଚିମ ଦେଶୁଁ ମୋ ଭକତ ॥

ଆସିଣ ଶ୍ୱେତଗଙ୍ଗାଠାରେ । ମୋର ଦକ୍ଷିଣ ପାରୁଶରେ ॥
ଘୋର ତପସ୍ୟା କରେ ବସି । ମୋ ନାମ ଜପି ଅହର୍ନିଶି ॥
ଅନ୍ନ ଭୋଜନ ନାହିଁ ତାର । ମୋ ପାଦେ ଦେଇ ଭରଭର ॥
ହେଲାଣି ଚଉଦ ଦିବସ । ତେଣୁ ଅଇଲି ତୋର ପାଶ ॥
ସେ ମୋର କୁଟୁମ୍ବରୁ ଜଣେ । ଏହା ତୁ ବୁଝ ହେ ଆପଣେ ॥
ଦେଖି ତା ତପସ୍ୟା କଠୋର । ଅନ୍ନ ଭୋଜନ ନାହିଁ ମୋର ॥
ସେ ମୋ ବାଳୁତ ପୁତ୍ରପ୍ରାୟେ । ତାର ବ୍ୟାକୁଳ ସହି ନୋହେ ॥
ଏଣୁ ମୁଁ କହିଗଲି ତୋତେ । ହେ ରାଜା ଭଲେ ରଖ ଚିତ୍ତେ
ରଜନୀ ପ୍ରଭାତରୁ ଯିବୁ । ମୋ ଭକ୍ତ ପାଶରେ ମିଳିବୁ ॥
ଅନେକ ଗଉରବ କରି । ଘେନାଇ ଯିବୁ ଦଣ୍ଡଧାରୀ ॥
ଏ ମୋର ଦକ୍ଷିଣ ପାରୁଶ । ବସ୍ତାର କରଣ ନିବାସ ॥
ତୋଳାଇ ଦେବୁ ହେ ରାଜନ । ଖଞ୍ଜିବୁ ଖଞ୍ଜା ବରତନ ॥
ଯାବତ ଚନ୍ଦ୍ର ସୂର୍ଯ୍ୟ ଥିବ । ସେ ମୋର କୋଠରେ ରହିବ
ଅନେକ ବୈଷ୍ଣବ ରହିବେ । ମୋ ଭକ୍ତ ସେବା କରୁଥିବେ ॥
ନିଷ୍ଠି କ୍ଷେତ୍ରେ ଅନ୍ନ ବସ୍ତ୍ର ପାଇ । ମୋର ସେବାରେ ଥିବେ ରହି ॥
ଏ କଥା ନ କଲେ ଅବଶ୍ୟ । ଛାଡ଼ ତୋ ଜୀବନରଆଶ ॥
ଏମନ୍ତ ଆଜ୍ଞା ତାକୁ ଦେଇ । ଅନ୍ତର ହୋଇଲେ ଗୋସାଇଁ ॥
ରାଜା ଚେତନା ପାଇ ଉଠି । ଚୌଦିଗକୁ ଦେଲେ ଦୃଷ୍ଟି ॥
ଦେଖିଲେ ପାଖେ କେହି ନାହିଁ । ଜାଣିଲେ ନିଶ୍ଚେ ଭାବଗ୍ରାହୀ ॥
ଆଜ୍ଞା ଯେ ଦେଇଗଲେ ମୋତେ । ଯେ ମୋର ଭକତଙ୍କ ହିତେ
ଏ କଥା ନ କଲେ ଅବଶ୍ୟ । ମୋ ରାଜପଦେ ନାହିଁ ଆଶ ॥
ଏମନ୍ତ ବୋଲି ନରରାୟେ । ତକ୍ଷଣେ କଲେକ ବିଜୟେ ॥
କ୍ଷେତ୍ରରେ ହୋଇଲେ ପ୍ରବେଶ । ମିଳିଲେ ରଘୁଦାସଁ ପାଶ ॥
କୋମଳବାକ୍ୟେ ଗୃହେ କହି । ବୋଇଲେ ଉଠ ହେ ଗୋସାଇଁ
ତୁମ୍ଭ ତପସ୍ୟା ହେଲା ସିଦ୍ଧ । କରୁଣା କଲେ ଚକ୍ରାୟୁଧ ॥

ଧନ୍ୟ ଅଦ୍ଭୁତ ତୋ ଜୀବନ । ବଶ ତୁ କଲୁ ଭଗବାନ ॥
ଆମ୍ଭର ଭାଗ୍ୟେ ଥିଲା କେତେ । ନୟନେ ଦେଖିଲୁଁ ଯା ତୋତେ
ଏମନ୍ତ ବୋଲି ଭୁଜ ଧରି । ଉଠାଇ ଦେଲେ ଦଣ୍ଡଧାରୀ ॥
ପ୍ରଭୁ ଶ୍ରୀମୁଖକୁ ଘେନିଗଲେ । ମସ୍ତକେ ପଟକା ବାନ୍ଧିଲେ ॥
ସହସ୍ରେ ବୈଷ୍ଣବଙ୍କୁ ନିତ୍ୟେ । ଲାଗିବ ଅନ୍ନ ବସ୍ତ୍ର ଯେତେ ॥
ଆପଣେ ଶ୍ରୀହସ୍ତେ ରାଜନ । ଲେଖିଣ ଦେଲେ ଗ୍ରାମଦାନ ॥
ଯାବତ ଉଦେ ରବି ଶଶୀ । ତାବତ କର ଭୋଗ ବସି ॥
ଏମନ୍ତ ତାକୁ ଆଜ୍ଞା ଦେଲେ । ଦକ୍ଷିଣ ପାରୁଶକୁ ଗଲେ ॥
ବଡଶ ବଖରା ଚଉଁରୀ । ମଠ ତୋଳାଇ ଯତ୍ନ କରି ॥
କିସ ଉପମା ତାକୁ ଦେବା । ଦ୍ୱିତୀୟ ସ୍ୱର୍ଗ ପ୍ରାୟ ଶୋଭା ॥
ତହିଁ ରଖାଇ ରଘୁଦାସ । ବୋଇଲେ ଭଜ ପୀତବାସ ॥
ଅର୍ଦ୍ଧ କ୍ରୋଶଙ୍କ ଆୟତନ । ଅଛି ଯେ ତୁମ୍ଭ ଭୂମିଦାନ ॥
ତୋ ମନ ଯାହା ତାହା କରି । ଏଥେ ମୋ ନାହିଁ ଅଧିକାରୀ ॥
ଏମନ୍ତ ଆଜ୍ଞା ତାକୁ ଦେଲେ । ରାଜା ବିଜୟ କରିଗଲେ ॥
ଶୁଣ ସୁମନ ଶୁଦ୍ଧଚିତ୍ତେ । ଏଥିଉତ୍ତରେ କଥା ଯେତେ ॥
ସେ ଦାରୁବ୍ରହ୍ମ ଅଙ୍ଗୀକାରେ । ଯଶ ତା ପୂରିଲା ସଂସାରେ ॥
କାହିଁ ଅଇଲା କେତେ ଧନ । କେ ତାହା କରିବ ଲେଖନ ॥
ଅନେକ ବୈଷ୍ଣବ ପ୍ରବେଶି । କାହିଁ ମିଳିଲେ ମଠେ ଆସି ॥
ସେ ରଘୁଦାସଙ୍କ ସଙ୍ଗତ । ହୋଇ ରହିଲେ ଆଜ୍ଞାବର୍ତ୍ତୀ ॥
ରଘୁଦାସଙ୍କ କାଷ୍ଠାବ୍ରତ । କରିଅଛନ୍ତି ଦୃଢ଼ଚିତ୍ତ ॥
ଶ୍ରୀମହାପ୍ରସାଦ କେବଳ । ଖାଇ ବଞ୍ଚିବା ଆମ୍ଭେ କାଳ ॥
ପ୍ରଭୁ ମଣୋହି ବନା ଯେତେ । ଛୁଇଁବା ନାହିଁ କଦାଚିତ୍ତେ ॥
ଏ କଥା ଯେହୁ ସେ ପାଳିବ । ସେହି ଏ ମଠରେ ରହିବ ॥
ଶୁଣି ସମସ୍ତେ ସତ୍ୟ କଲେ । ନିଶ୍ଚିନ୍ତ ହୋଇଣ ରହିଲେ ॥
ସେହି ଦିନରୁ ମଠେ ବେଷ । କେବେହେଁ ନୋହିଲା ଅବଶ୍ୟ

ଚନ୍ଦନ ଫୁଲମାଳ ଯେତେ । ବସ୍ତ୍ର ଭୂଷଣାଦି ସହିତେ ॥
ମୁଖ ପ୍ରକ୍ଷାଳ ଜଳ ଯେତି । ଦନ୍ତ ଧାବନେ ଦାନ୍ତକାଠି ॥
ମଣୋହି ନ କଲେ କେବଳ । ଛୁଇଁବା ନାହିଁ କେହି ଜଳ ॥
ଆମ୍ବ ପଣସ ନଡ଼ିଆଳ । ଚମ୍ପା କମଳା କନ୍ଦମୂଳ ॥
ଦଧି ଘୃତାଦି କ୍ଷୀର ଯେତେ । ଖଣ୍ଡ ଶାକବୃନ୍ଦ ସହିତେ ॥
ମଣୋହି ବିନା କିଛି ଦ୍ରବ୍ୟ । ଛୁଇଁଲେ ନାହିଁ ସାଧୁ ସର୍ବ ॥
ପ୍ରଭୁଙ୍କ ମଣୋହି ନିମନ୍ତେ । ଯେ ପାରୁ ଭୋଗକରୁ ଯେତେ
ତେତେ ଦେବାରେ ପରମାଣ । ଏ କଥା ସତ୍ୟ ବୋଲି ଜାଣ ॥
ଯେବେ ଅତିଥି ଅଭ୍ୟାଗତ । ଆସିଣ ହୋନ୍ତି ଉପଗତ ॥
ଦିଅନ୍ତି ସଦାବର୍ତ୍ତମାନ । ଶ୍ରୀମହାପ୍ରସାଦ ଭୋଜନ ॥
ମଣୋହି ନୋହିଥିବା ଦ୍ରବ୍ୟ । ମୁଠିଏ ତଣ୍ଡୁଳ କେ ଦେବ ॥
ଦୁଃଖୀ ଦରିଦ୍ର ଯେ ଭିକାରି । ନ ପାଇ ପଛେ ଯାନ୍ତୁ ଫେରି ॥
ମଣୋହି ବିନା ଦ୍ରବ୍ୟଯେତେ । ଦିଅନ୍ତି ନାହିଁ କଦାଚିତେ ॥
ଆତୁର କଲେ ଏ ବିଧାନ । ମଠେ ଅସୁସ୍ଥ ଯେଉଁ ଜନ ॥
ହୁଅଇ ତାକୁ ବୈଦ୍ୟଗଣ । କହନ୍ତି ଯେଉଁ ଦ୍ରବ୍ୟମାନ ॥
ସେ ଦ୍ରବ୍ୟ ଅଣାଇ ତୁରିତେ । ଦିଅନ୍ତି ସୁଆରଙ୍କ ହସ୍ତେ ॥
ସେ ଭୋଗଶାଳାରେ ସିଝାଇ । ପ୍ରଭୁଙ୍କ ଛାମୁରେ ଦେଖାଇ ॥
ତାହା ଘେନାଇ ଆଣି ଗୃହେ । ତେବେ ଦିଅନ୍ତି ମନ୍ତ୍ର ତୁଣ୍ଡେ ॥
ନୋହିଲେ ଯିବ ପଛେ ମରି । କେ ଦେବ ଲଗିବନା ବାରି ॥
ଏମନ୍ତ କାଷ୍ଠାରେ ଅବଶ୍ୟ । ମଠ ଚଳାନ୍ତି ରଘୁଦାସ ॥
ଏହି ବିଗୃର ତାଙ୍କ ଚିତ୍ତେ । ମଠରେ ଅଛି ଧନ ଯେତେ ॥
ଏ ଧନ ଜଗନ୍ନାଥଙ୍କର । ମୁହିଁ ଜଗୁଆଳି ମାତର ॥
ଏଥେ ମୋ ନାହିଁ ଅଧିକାର । ସବୁ ଆପୃତ୍ତ ଗୋବିନ୍ଦର ॥
ଏମନ୍ତ ବୋଲି ନିତି ନିତି । ପ୍ରଭୁ ଚରଣେ ଦେଇ ମତି ॥
କେବଳ କରଥାନ୍ତି ଧ୍ୟାନ । ନ ଜାଣି ଅନ୍ୟ କଥାମାନ ॥

ଶୁଣ ହେ ମନ ମହାରଥୀ । ସେ ରଘୁଦାସଙ୍କର କଥା ॥
ନିଷ୍କାମ ଭକ୍ତ ତାହାଙ୍କର । ଦିନକୁ ଦିନ ବଳୀୟାର ॥
ବଢ଼ିଲ ଚନ୍ଦ୍ର କଳା ପ୍ରାୟେ । ତାହା ଜାଣିଲେ ଦେବରାୟେ ॥
ଏମନ୍ତ ଜାଣି ଦେବସ୍ୱାମୀ । ଯେ ପ୍ରଭୁ ସର୍ବ ଅନ୍ତର୍ଯାମୀ ॥
ଭକତଭାବେ ଭୋଳ ହୋଇ । ସ୍ୱପନମାର୍ଗେ ଆଜ୍ଞା ଦେଇ ॥
ବୋଇଲେ ଶୁଣ ରଘୁଦାସ । ତୋ ଦେବାଅନ୍ନେ ମୋର ଆଶ ॥
ମୋର ଯଶୋଦା ମାତା ମୋତେ । ଯେସନ୍ତେ ଭୁଞ୍ଜାଉଥାଇନିତେ ॥
ସେ ଅନ୍ନେ ଯେନତ ଶ୍ରଦ୍ଧାମୋର । ତାହା ଜାଣଇ ମନ ମୋର ॥
ତହୁଁ ଅଧିକ ତୋର ଅନ୍ନ । ଆନନ୍ଦେ କରେ ମୁଁ ଭୋଜନ ॥
ଏଣୁଟି କହୁଗଲି ତୋତେ । ଗୁପ୍ତ ତୁ ନ ଭୁଞ୍ଜିବୁ ମୋତେ ॥
ଏ ଆଜ୍ଞା ଦେଇ ଯିବାବେଳେ । ସେ ରଘୁଦାସ ଗୃହିଁଦେଲେ ॥
ଦେଖିଲେ ପ୍ରଭୁ ଭଗବାନ । ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ ॥
ହେ ମନ ହେତୁମତ କର । କି ଆଜ୍ଞା ବୋଲିବା ତାହାର ॥
ଯାହାକୁ ଭାବୁଛନ୍ତି ଶିବ । ବ୍ରହ୍ମାଦି ଦେବଙ୍କୁ ଦୁର୍ଲଭ ॥
ଚର୍ମ ନୟନେ ତାଙ୍କୁ ଦେଖି । ଏ ଭାଗ୍ୟ କେ ପାରିବ ଲେଖି ॥
ଦିନକୁ ଦିନ କୀର୍ତ୍ତି ତାର । ବଢ଼ିଲ ଅପାରୁ ଅପାର ॥
ଗୃହ ମହଲ ତୋଳାଇଲେ । ଗୃହଭାଇଙ୍କ ନାମ ଦେଲେ ॥
ରାମ ଲକ୍ଷ୍ମଣ ଯେ ଶତ୍ରୁଘ୍ନ । ଭୂତ ମହଲ ଭିନ୍ନ ଭିନ୍ନ ॥
ସହସ୍ରେ ବୈଷ୍ଣବ ରଖିଲେ । ଦ୍ୱିତୀ ନୃପତ ଭୋଗ କଲେ ॥
କେବଳ ପ୍ରଭୁ ନିଷ୍ଠାରବୈ । ଦତ୍ତ ଭକତେ ଅପ୍ରମିତେ ॥
କରିଣ ବଞ୍ଚାଇଲେ ଦିନ । ଭଜଣ ଶ୍ରୀରଘୁନନ୍ଦନ ॥
ଦେହାନ୍ତେ ଶ୍ରୀହରି ନିବାସେ । ବସିଲେ ଯାଇ ରଘୁଦାସେ ॥
ଶୁଣ ହେ ମନ ମହାରଥୀ । ଏ ଦାର୍ଢ୍ୟଭକ୍ତି ରସକଥା ॥
ସେ ହରି ପରମଦୟାଳ । ଭକତଭାବ ତାଙ୍କ ମୂଳ ॥
ଯେ ଭକ୍ତେ ଦୃଢ଼ କରି ମନ । ସେ ନର ଲଭେ ଭଗବାନ ॥

କହଇ ବିପ୍ର ରାମଦାସ । ମୋ ପ୍ରଭୁ କମଳାବିଳାସ ॥
ସେ ଭକ୍ତ ଭଗବନ୍ତ ପାଦେ । ମୋ ମନ ରହୁ ଅପ୍ରମାଦେ ॥
ସାଧୁଙ୍କ ଚରଣକୁ ମୋର । କୋଟିଏ ବାର ନମସ୍କାର ॥
ସଂସାର ମଧ୍ୟରେ ଲବଣୀ । ଅତି କୋମଳ ବୋଲି ଜାଣି ॥
ହେଲେ ଅନଳ ତାପ ପାଇ । ତେବେ ସେ ସିନା ତରଳଇ ॥
ସାଧୁଏ ପର ତାପ ଦେଖି । ଧଇର୍ଯ୍ୟ ନ ପାରନ୍ତି ରଖି ॥
ତତକ୍ଷଣେ ହୋଇ ଦ୍ରବୀଭୂତ । ଏଣୁଟି ଧନ୍ୟ ତାଙ୍କ ଚିତ୍ତ ॥
କ ଢେମ ତାଙ୍କ ପାଦେ ଆଶ । କଲା ଏ ବିପ୍ର ରାମଦାସ ॥
ଏ ଘୋର ଦୁର୍ଗତିରୁ ମୋତେ । ଉଦ୍ଧାରି ନେବ ସେ ସାକ୍ଷାତେ ॥
ଶ୍ରୀଜଗନ୍ନାଥ ପାଦତଳେ । ଭେଟାଇ ଦେବେ ଏକାବେଳେ ॥
ଏମନ୍ତେ ବୋଲୁ ଅଛି ମତି । ତାହା ଜାଣନ୍ତି ରମାପତି ॥

ଇତି ଶ୍ରୀଦାର୍ଢ୍ୟଭକ୍ତି ରସାମୃତେ ମନ ଚୈତନ୍ୟ
ସମ୍ବାଦେ ରଘୁ ଦାସ ଦାର୍ଢ୍ୟଭକ୍ତି ବର୍ଣ୍ଣନେ
ନାମ ଚତୁଶ୍ଚତ୍ୱାରିଂଶୋଽଧ୍ୟାୟଃ ।

---

## ପଞ୍ଚଚତ୍ୱାରିଂଶ ଅଧ୍ୟାୟ

## ପିପା ଦାସ ସମ୍ବାଦ

ନମସ୍ତେ ପ୍ରଭୁ ନାରାୟଣ । ଅଶେଷ ଜୀବର କାରଣ ॥
ସକଳ ଜୀବଗଣ ଗୁରୁ । ଭକତ ବାଞ୍ଛା କଳ୍ପତରୁ ॥
ତେଣୁ ଶରଣ ରାମଦାସ । ପୁରାଅ ମୋର ମନ ଆଶ ॥
କହେ ଚୈତନ୍ୟ ଧୀର ବାଣୀ । ଶୁଣ ଇନ୍ଦ୍ରଦ୍ୟୁମ୍ନ ଚୂଡ଼ାମଣି ॥
ଏ ବଡ଼ ଦୁର୍ଲଭ ଚରିତ । ଭକତ ମଧ୍ୟେ ସାରସ୍ୱତ ॥
ଦ୍ରାବିଡ଼ ଦେଶେ ତାର ଘର । ଜାତିରେ ଅଟେ ଦ୍ୱିଜବର ॥
ଶ୍ରୀରଙ୍ଗପୁରେ ତାର ବାସ । ନାମ ତାହାର ପିପା ଦାସ ॥

ପତ୍ନୀର ନାମ ତାର ସୀତା । ଅତି ସୁନ୍ଦରୀ ପତିବ୍ରତା ॥
ଜାଣଇ ପାପପୁଣ୍ୟ ଯେତେ । ଜୀବରେ ଦୟା ହୃଦଗତେ ॥
ସ୍ୱାମୀ ସେବାରେ ଥାଇ ନିତ । ସଦା ଆନନ୍ଦ ତାର ମତ ॥
ପୁତ୍ର ଦୁହିତା ତାର ନାହିଁ । କେବଳ ପତି ପତ୍ନୀ ଦୁଇ ॥
ଏକଇ ପ୍ରାଣ ବେନି ଜନ । ପିଣ୍ଡ ମାତ୍ରକ ଭିନ୍ନ ଭିନ୍ନ ॥
ଏମନ୍ତେ ବେନି ପ୍ରାଣୀ ଥାନ୍ତି । ହରି ଭଜନ କରି ନିତି ॥
ସାଧୁଙ୍କ ସେବା ତାଙ୍କ ମୂଳ । ଦେବା ଦୟାରେ ସେ କୁଶଳ ॥
ବିପ୍ର ବୈଷ୍ଣବ ସାଧୁଜନ । ସେବାରେ ଥାନ୍ତି ପ୍ରତିଦିନ ॥
ଅନ୍ନ ଭୋଜନ ତାଙ୍କୁ ଦେଇ । ବଚନ କହନ୍ତି ବିନୟୀ ॥
ଯେବେ ଦେଖନ୍ତି ଦୁଃଖୀଜନ । ଅତି ବ୍ୟାକୁଳ ତାଙ୍କ ମନ ॥
ବାନ୍ଧବ ପ୍ରାୟେ ତାଙ୍କୁ ଆଣି । ପୋଷନ୍ତି ଦେଇ ଅନ୍ନ ପାଣି ॥
ସକଳ ଜୀବେ ଦୟାକରି । ନ ହରେ ପରଦ୍ରବ୍ୟ ନାରୀ ॥
ସାଧୁ ନିନ୍ଦନେ ଅତି ଭୟ । ଯେଣୁ ସେ ସୁଜ୍ଞାନ ହୃଦୟ ॥
ନ ଜାଣେ ଅନ୍ୟ କଥାମାନ । ମଣଇ ନାମ ଗଣ୍ଠିଧନ ॥
ଏମନ୍ତେ ବଞ୍ଚଇ ଆନନ୍ଦେ । ଭକ୍ତି ଗୋବିନ୍ଦ ପଦ୍ମପାଦେ ॥
ଭବରେ ଫୁଲୁଥାଇ ଦେହ । ଧରଣୀ ପ୍ରାୟେ ସର୍ବ ସହ ॥
କୁସଙ୍ଗ ନ କରେ ସର୍ବଥା । ନ ଚିନ୍ତେ ପର ନାଶ କଥା ॥
କେବଳ ଦେବା କଥା ମୂଳ । ଏମନ୍ତେ ଗଲା କେତେ କାଳ ॥
ଘରେ ତା ଯେତେ ଧନ ଥିଲା । ଦାନେ ସକଳ ନଷ୍ଟ ଗଲା ॥
ତଥିଲେ ଶୋଚନା ନାହିଁ ମନ । ସଦା ଆନନ୍ଦେ ପରିପୂର୍ଣ୍ଣ ॥
ସଦା ସାଧୁଙ୍କ ସଙ୍ଗ କରେ । ନାମ ଗାୟନ ମାନକରେ ॥
ନିନ୍ଦଇ ବିଭବ ଶର୍ବରୀ । ଦଣ୍ଡ ନିମିଷ ପ୍ରାୟ କରି ॥
ଏମନ୍ତ ଗଲା କେତେ ଦିନ । ଦିନେ ବଗୁର କଲା ମନ ॥
ଧନ ତ ହେଲା ସର୍ବ ଶେଷ । ଛାଡ଼ିଣ ଗୃହ ବାସ ଆସ ॥
ଆଉ କପାଇଁ ଏଥେ ଥିବା । ନୋହିଲା ସାଧୁଙ୍କର ସେବା ॥

କେମନ୍ତେ ପୋଷିବା ଜୀବନ । ହୋଇବା ପିନା ହୀନମାନ ॥
ସ୍ୱଦେଶେ ଭିକ୍ଷା ମାଗିଗଲେ । ଲଜ୍ଜା ଉପୁଜିଥିବ ଭଲେ ॥
ଏଣୁ ବିଦେଶ କରିବାର । ଦୁର୍ଲଭ ଅଟଇ ତୁମ୍ଭର ॥
ବୁଲି ଅନେକ ତୀର୍ଥମାନ । କରିବା ପୁଣ୍ୟଜଳେ ସ୍ନାନ ॥
ଅନେକ ତୀର୍ଥମାନ ଦେଖି । ସୁଫଳ ହେବ ଚର୍ମ ଆଖି ॥
ଦର୍ଶନେ କୃଷ୍ଣରୂପ ମାନ । ପବିତ୍ର କରିବା ଲୋଚନ ॥
କରିଣ ସାଧୁଙ୍କର ସେବା । କାହିଁ ବା କ ରୂପେ ବଞ୍ଚିବା ॥
ଏ କଥା ଉଚିତ ଆମ୍ଭର । ଶୁଣି ହସିଲ ନାରୀବର ॥
ହେଉ ବୋଲିଣ ଶୁଦ୍ଧ ମନେ । ସମ୍ମତ କରି ବେନିଜନେ ॥
ଦରିଦ୍ର ବିପ୍ରଙ୍କୁ ଡାକିଲେ । ନିଜ ମନ୍ଦିର ଦାନ କଲେ ॥
ମନ୍ଦିରୁ ହୋଇଲେ ବାହାର । ଚଳିଣ ଗଲେ ଦେଶାନ୍ତର ॥
ଲଜ୍ଜା ବେଭାର ଦୁଇ ଛାଡ଼ି । ଭିକ୍ଷୁକ ପଥ ଗଲେ ମାଡ଼ି ॥
କାହିଁ ବା ସୁପକ୍ୱ ଆହାର । କାହିଁବା କଲେ ନିରାହାର ॥
କାହିଁ ବା ଫଳ ମୂଳ ଖାଇ । କାହିଁ ବା ଉପବାସେ ରହି ॥
ଏଥିକୁ ଶୋଚନା ନ କରି । ଚଳିଣ ଗଲେ ତୀର୍ଥ ଫେରି ॥
ଅନେକ ସାଧୁବୃନ୍ଦ ଭେଟିଲେ । ଅନେକ ତୀର୍ଥବ୍ରତ କଲେ ॥
ଏଥି ଉତ୍ତାରେ କଥା ଯେତେ । ଶୁଣ ସୁମନ ଶ୍ରଦ୍ଧାଚିତ୍ତେ ॥
ଦଇବେ ଏକ ଗ୍ରାମଗତେ । ବୁଲିଣ ଗଲେ ଭିକ୍ଷା ଅର୍ଥେ ॥
ସେ ଗ୍ରାମେ ଏକଇ ବ୍ରାହ୍ମଣ । ଅତ୍ୟନ୍ତ ଦରିଦ୍ର ହୋଇଣ ॥
ଅଛନ୍ତି ପତି ପତ୍ନୀ ଦୁଇ । ପୁତ୍ର ଦୁହିତା ତାଙ୍କ ନାହିଁ ॥
ସେ ଭିକ୍ଷା ମାଗିଣ ଜୀଅନ୍ତି । ଅତିଥି ଦେଖିଲେ ପୂଜନ୍ତି ॥
ଦୁଃଖୀ ଦରିଦ୍ର ଯେତେ ଦେଖି । ଭୋଜନେ ତାଙ୍କୁ କରି ସୁଖୀ ॥
ଥାଏ ଯା ଦେଇ ତାଙ୍କ ପାଶେ । ଆପେ ରହନ୍ତି ଉପବାସେ ॥
ଏମନ୍ତ ତାଙ୍କ କଥା ଶୁଣି । ତହିଁ ମିଳିଲେ ବେନିପ୍ରାଣୀ ॥
ଦଇବ ଯୋଗେ ସେହି ଦିନ । ଘର ହୋଇଛି ତାଙ୍କ ଶୂନ୍ୟ ॥

ଆପେ ଅଛନ୍ତି ଉପବାସେ । ଏମନ୍ତ ବେଳେ ପିପାଦାସେ ॥
ପତ୍ନୀକି ସଙ୍ଗତେ ଚଳାଇ । ଭୋଜନ ପ୍ରକାଶିଲେ ଯାଇ ॥
ତା ଶୁଣି ବ୍ରାହ୍ମଣ ବ୍ରାହ୍ମଣୀ । ବୋଇଲେ ବସ ବେନି ପ୍ରାଣୀ ॥
କି ଭାଗ୍ୟ ଥିଲା ଆଜ ଦିନ । ପାଇଲୁ ତୁମ୍ଭ ଦରଶନ ॥
ଯାହା ଗୋବିନ୍ଦ ଦେବେ ଅବା । ଭୋଜନ କରିବୁଁ ତୁମ୍ଭ ସେବା ॥
ଏମନ୍ତ କହି ଗଲେ ଚଳି । ପତ୍ନୀକି ବସାଇଣ ଭଲି ॥
ବୋଇଲେ କି ବୁଦ୍ଧି କରିବା । କି ରୂପେ ଅତିଥି ସେବିବା ॥
ଘରେ ତ ନାହିଁ କିଛି ଅନ୍ନ । ଶୁଣ ଗୋ ଯୁବତିରତନ ॥
ତାହା ଶୁଣିଣ ନାରୀବର । ବୋଲଇ ଚିନ୍ତା କିପାଁ କର ॥
ଏ ମୋ ପିନ୍ଧିବା ବସ୍ତ୍ର ଧର । ଚିର ହେ ବେନିଖଣ୍ଡ କରି ॥
ବହନ କରି ବିକି ଆଣ । ଯାହା ସେ ଦେବେ ନାରାୟଣ ॥
ତହିଁ କରିବା ସାଧୁସେବା । ଆମ୍ଭେ ପଛକେ ଭୋକେ ଥିବା ॥
ତାହା ଶୁଣିଣ ନିଜ ପତି । ବୋଇଲେ ଶୁଣ ଗୋ ଯୁବତୀ ॥
ମଳିନ ବସ୍ତ୍ର ଦେଖି ଚିରା । କେହି କିଣିବେ ନାହିଁ ପରା ॥
ଏମନ୍ତ କହି ସେ ତରୁଣୀ । ଲେଙ୍କଡ଼ା କନା ଖଣ୍ଡେ ଆଣି ॥
ପାଲଟି ବସ୍ତ୍ର ଖଣ୍ଡି ଦେଲା । ତୋର କୌତୁକୀ ଆଣ୍ଡେ କଲା ॥
ବୋଇଲା ନିଅ ପ୍ରାଣନାଥ । ଯାହା ସେ ଦେବେ ଜଗନ୍ନାଥ ॥
ଅଳପ ବହୁତ ହୋଇଲେ । ବିଗୁର ନ କରିବ ତଳେ ॥
ବାହନ ବିକିକରି ଆଣ । ସେବିବା ଅତିଥି ଚରଣ ॥
ବଳେମ୍ଭ କାର୍ଯ୍ୟ ନାହିଁ ଆଉ । ବହନ ହୋଇ ଆଜ୍ଞା ହେଉ ॥
ତାହା ଶୁଣିଣ ନିଜ ପତି । ବୋଇଲେ ଧନ୍ୟରେ ଯୁବତି ॥
ତୋ ଗୁଣ ଶୁଝିବି କେମନ୍ତେ । ଜୀବନ ଥିବା ପରିମନ୍ତେ ॥
ଏମନ୍ତ ବୋଲି ବସ୍ତ୍ର ଧରି । ଚଳି ସେ ଗଲା ବେଗକରି ॥
ସେ ଗ୍ରାମଯାକ ବୁଲାଇଲା । କେହି ତା ମୂଲଇ ନ ନେଲା ॥
ଦେଖିଣ ପୁରଜନ ବାସ । ସମସ୍ତ ଜନ କଲେ ହାସ୍ୟ ॥

ନିର୍ଗୁଣ ହୋଇ ତହୁଁ ଫେର । ଆସନ୍ତେ ବସ୍ତ୍ର ଗୋଟି ଧର ॥
ଏମନ୍ତ ବେଳେ ଏକଜଣ । ମୂଲ୍ୟ ସେ କଲା ଆଠପଣ ॥
ସମ୍ମତ କରି ତାକୁ ଦେଲେ । କଉଡ଼ି ଘେନି ଚାଲିଗଲେ ॥
ସରୁ ଗୁଡ଼ ଚାଉଳ ମୁଗ ଡାଲି । ଘୃତ ନବାତ ଦଧି ଦୁଗ୍ଧ ॥
ଘେନିଣ ନିଜପୁର ଗଲେ । ନିଜ ପତ୍ନୀର ହସ୍ତେ ଦେଲେ ॥
ଦେଖି ଆନନ୍ଦ ନିଜ ନାରୀ । ରନ୍ଧନ କଲେ ବେଗ କରି ॥
ଅତିଥି ଶୁଭମନ୍ତେ ଆସି । ବିପ୍ରମନ୍ଦିରେ ଛନ୍ତି ବସି ॥
ତାହାଙ୍କୁ ସମାଦର କଲେ । ନେଇ ଆସନେ ବସାଇଲେ ॥
ରମ୍ଭା ପତ୍ରରେ ଦିବ୍ୟ ଅନ୍ନ । ଦଧି ଘୃତାଦି ଯେ ବ୍ୟଞ୍ଜନ ॥
ବିପ୍ର ଆନନ୍ଦମନ ହୋଇ । ଦୁହିଙ୍କ ପଦେ ଦେଲେ ନେଇ ॥
ବୋଇଲେ ଭୁଞ୍ଜ ବେଗ କରି । ଯାହା ସେ ଦେଇଛନ୍ତି ହରି ॥
ତା ଶୁଣି ବୋଇଲେ ଅତିଥି । ଏ କଥା ନୁହଇ ଉଚିତ ॥
ଗୃହରେ ଅଛ ଯେତେ ଜନ । ସମସ୍ତେ କରିବା ଭୋଜନ ॥
ଏ ସିନା ଧର୍ମର ବିଧାନ । ନୋହିଲେ ରଖ ତୁମ୍ଭ ଅନ୍ନ ॥
ତା ଶୁଣି ବିପ୍ର ଗଲେ ବେଗେ । କହିଲେ ନିଜ ପତ୍ନୀ ଆଗେ ॥
ବୋଇଲେ ଶୁଣରେ ସଙ୍ଗାତ । ଯେ ଆଜ୍ଞା ଦେଲେ ସେ ଅତିଥି ॥
ଗୃହରେ ଅଛୁଁ ଯେତେ ଜନ । ସମସ୍ତେ କରିବା ଭୋଜନ ॥
ନୋହିଲେ ତୁମ୍ଭ ଅନ୍ନ ରହୁ । ମେଲାଣି ଦିଅ ଆମ୍ଭେ ଯାଉ ॥
ଏଥିକୁ କହ ତୁ ବିଚାରି । ତା ଶୁଣି ବୋଲେ ନାରୀବର ॥
ସେ ଯାହା ଆଜ୍ଞା ଦେଲେ ସତ୍ୟ । ମୋର ଅବସ୍ଥା ଦେଖୁଛ ତ ॥
ଆନନ୍ଦ ହୋଇ ତୁମ୍ଭେ ବସ । କର ଅତିଥି ସଙ୍ଗେ ଗ୍ରାସ ॥
ମୁଁ ପାପୀ ଏକାକିନୀ ଥିବି । ସଙ୍ଗ ନୋହିଲେ ନ ଭୁଞ୍ଜିବି ॥
ଏ ନୁହେ ଧର୍ମଶାସ୍ତ୍ର ମତ । ପୁରୁଷ ସଙ୍ଗେ ବସି ଭାତ ॥
ତୁମ୍ଭେ ଯାଇଣ ଭୁଞ୍ଜି ବସ । ଅତିଥି ନୁହନ୍ତୁ ନିରାଶ ॥
ତା ଶୁଣି ନିଜ ପତି ଗଲେ । ଆଉ ପଦେକ ପକାଇଲେ ॥

ଅନ୍ନବ୍ୟଞ୍ଜନ ତହୁଁ ବାଢ଼ି । ବିପ୍ର କହଇ କରଯୋଡ଼ି ॥
ଏବେ ହୋ କରିବା ଭୋଜନ । ଏ ମୋର ଅପ୍ରାଧ ନ ଘେନ ॥
ତା ଶୁଣି କହନ୍ତି ଅତିଥି । ଏ ନୁହେ ବିଧାନ ଉଚିତ ॥
ଡାକ ତୋ ପତ୍ନୀ ଛନ୍ତି କାହିଁ । ଭୋଜନ କରୁ ସଙ୍ଗ ହୋଇ ॥
ନୋହିଲେ ଉଠିଗଲୁ ଆମ୍ଭେ । ଅନ୍ନ ଭୋଜନ କର ତୁମ୍ଭେ ॥
ତା ଶୁଣି ବୋଲନ୍ତି ବ୍ରାହ୍ମଣ । ହେ ପ୍ରଭୁ ମୋ କହିବା ଶୁଣ ॥
ଶେଷ ସେ ନର୍ଗ କରିଦେଲେ । କି ଅବା ବିଷୟାରେ ଗଲେ ॥
ଆଇଲେ କରିବେ ଭୋଜନ । ଏଥିକୁ କର କପଁା ମାନ ॥
ବିପ୍ର ବଚନ ଏହା ଶୁଣି । ବୋଲେ ସେ ଥିଲେ ଏହିକ୍ଷଣି
କେଉଁଣେ ନ ଯାଇ ଛନ୍ତି ଘର । କପଁା କପଟ ଏତେ କର ॥
ବିପ୍ର କହିଲେ ଯେତେମତେ । କେବେହେଁ ନ ଗଲେ ପରତେ
ବେଗେ ଆପଣେ ଉଠିଗଲେ । ଗେହ୍ଲେ ଶାଳକୁ ଗୃହୁଁ ଦେଲେ ॥
ତା ଦେଖି ବ୍ରାହ୍ମଣରମଣୀ । ଲଜ୍ଜାରେ ମୃତଶବ ପରି ॥
ରହିଲ କୁକୁଟକୁଣ୍ଡଳୀ । ମସ୍ତକେ ଦେଇ କରାଞ୍ଜଳି ॥
ଅଳପ ମନ୍ଦ ମନ୍ଦ ହସି । ତଳକୁ କରି ମୁଖଶଶୀ ॥
ତା ଦେଖି ପିପାଦାସ ପ୍ରିୟା । ସତୀ ସାଧବୀ ଦ୍ୱିଜ ଜାୟା ॥
ଧାଇଁ ଧଇଲେ ଭୁଜ ଦୁଇ । କୋଳେ ବସାଇ ଚୁମ୍ବଦେଇ ॥
ବୋଇଲେ କହ ମୋତେ ସତ୍ୟ । କପଟ ନ ରଖି ତୋ ଚିତ୍ତ ॥
ଆମ୍ଭେ ଆଇଲ ବେଳେ ଥିଲ । କହ ତୋ ବସ୍ତ୍ର କେଉଁଣେ ଗଲ
ଏମନ୍ତ ଶୁଣି ସେ ବ୍ରାହ୍ମଣୀ । କହେ ମଧୁର ଧୀର ବାଣୀ ॥
ଶ୍ରୀହରି କୃପାରୁ ଗୋ ମାତ । ଗୃହେ ମୋ ଅତିଥି ଆଗତ ॥
ଘରେ ନ ଥିଲ କିଛି ଧନ । ସ୍ୱାମୀ ମୋ ହୋଇଲେ ଅଜ୍ଞାନ
ତେଣୁ ମୋ ବସ୍ତ୍ର ତେଣେଗଲା । ଅଶେଷ ଭାଗ୍ୟରେ ଲଗିଲ ॥
ଏମନ୍ତ କହି ପିପା ନାରୀ । ବେନି ନୟନୁ ବହେ ବାରି ॥
କଣ୍ଠରୁ ଗଦ ଗଦ ହୋଇ । ବଦନୁ ବାକ୍ୟ ନ ସ୍ଫୁରଇ ॥

ବୋଲଇ ଧନ୍ୟ ତୋ ଜୀବନ । ତୋତେ ଦେଖିଲି ମୁହିଁ ଧନ୍ୟ
ଧନ୍ୟ ତୁ ପତି ଅଛୁ ପାଇ । ତୋ ଭାଗ୍ୟ କହି ନ ସରଇ ॥
ଏମନ୍ତ କହି ବେଗ କରି । ପିନ୍ଧିବା ବସ୍ତ୍ର ଖଣ୍ଡେ ଚିରି ॥
ବିପ୍ରନାରୀକି ପିନ୍ଧାଇଲେ । ହସ୍ତ ଧରଣ ଘେନିଗଲେ ॥
ଆବର ପଟେକ ପକାଇ । ଅନ୍ନ ବାଢ଼ିଲେ ବେଗେ ନେଇ
ବେନି ବସିଲେ ଗୃହଜଣ । ଚାହିଁଲେ ପ୍ରଭୁ ନାରାୟଣ ॥
ଆନନ୍ଦେ କଲେକ ଭୋଜନ । ସ୍ୱର୍ଗେ ଯେସନେ ସୁଧାପାନ ॥
କରନ୍ତି ଦେବ ଅପସରି । ଏଥିକୁ ସେ ନୁହନ୍ତି ସରି ॥
ଭୋଜନ ସାରି ମୁଖ ଧୋଇ । ବସିଲେ କଷାଫଳ ଖାଇ ॥
ଏଥି ଉତ୍ତାରୁ ବିପ୍ର ବାଳୀ । ଗୃହ କର୍ମକୁ ଗଲେ ଚଳି ॥
ବିପ୍ରହିଁ ଅତିଥି ରଖାଇ । କହିଲେ ପତ୍ନୀ ଆଗେ ଯାଇ ॥
ମୁଁ ଯାଉଅଛି ଭିକ୍ଷାଅର୍ଥେ । ଯାହା ସେ ଦେବେ ଜଗନ୍ନାଥେ
ଆଣିଲେ ଅତିଥି ସେବିବା । ଆମ୍ଭେ ପଛକେ ଭୋକେ ଥିବା
ଶୁଣି ଆନନ୍ଦ ହେଲା ବାଳୀ । ସେକ୍ଷଣି ବିପ୍ର ଗଲା ଚଳି ॥
ଏଣେ ସେ ପିପା ଦାସ ନାରୀ । ନିଜ ପତିଙ୍କ ପାଦ ଧରି ॥
ବୋଇଲେ ଶୁଣିବା ଗୋସାଇଁ । ଏହାଙ୍କ ଭାବ ନୋହେ କହି ॥
ଆମ୍ଭଙ୍କୁ ଦେଖିବାରୁ ଡ଼ୋଳେ । ବୁଡ଼ିଲେ ଘୋର ଚିନ୍ତାଜଳେ ॥
ଘରେ ନ ଥିଲା କିଛି ଧନ । ବିକଲେ ପିନ୍ଧିବା ବସନ ॥
ତହିଁ ଯେ ମିଳିଲା ଅବଶ୍ୟ । ଆଣି ଆମ୍ଭଙ୍କୁ ଦେଲେ ଗ୍ରାସ ॥
ପତ୍ନୀ ରନ୍ଧନଶାଳେ ଥିଲେ । ଉଲଗ୍ନ ହୋଇ ବସିଥିଲେ ॥
ମୁଁ ତାହା ଦେଖିଲି ନୟନେ । ଧଇର୍ଯ୍ୟ ନ ରହିଲା ମନେ ॥
ମୋ ପିନ୍ଧା ବାସୁ ଅର୍ଦ୍ଧେ ଚିରି । ପିନ୍ଧାଇ ଦେଲି ବଳେ ଧରି ॥
ଆସି ଏ କଲେକ ଭୋଜନ । କେ ହେବ ଏହାଙ୍କ ସମାନ ॥
ତାହା ଶୁଣିଣ ପିପାଦାସ । ହୃଦରୁ ଉଡ଼ିଲା ସାହସ ॥
ବୋଇଲେ ଧନ୍ୟ ଏହୁ ବେନି । ଧନ୍ୟ ସ୍ତ୍ରୀ ଜନକ ଜନନୀ ॥

ଏଥିକୁ ଯେବେ ଜଗନ୍ନାଥେ । କୃପା କରନ୍ତେ କିଛି ମୋତେ ॥
କିଛି ମିଳନ୍ତା ଯେବେ ଧନ । ଦେଇ ତୋଷନ୍ତି ତାଙ୍କ ମନ ॥
ଏମନ୍ତ କହି ଭାବଗ୍ରାହୀ । ନେତ୍ରୁ ଲୋତକ ଧାରା ବହି ॥
ବୋଇଲେ ଶୁଣସି ଗୋ ନାରୀ । କଥାଏ ପାରିବୁ କି କରି ॥
ଗଣିକା ସ୍ୱରୂପ ତୁ ଧର । ମୁଁ ଖୋଜି ଆଣିବି ନାଗର ॥
ତା ସଙ୍ଗେ କର କ୍ରୀଡ଼ାରସ । ଯେ ଅବା ମିଳିବ ଅବଶ୍ୟ ॥
ସେ ଧନ କରିବା ପ୍ରଦାନ । ତା ଶୁଣି ଯୁବତୀରତନ ॥
ବୋଇଲେ ମୋତେ କିସ କହ । ତୁମ୍ଭର ସିନା ଏହି ଦେହ ॥
ପତ୍ନୀର ହାନି ଲଭ ଯାହା । ସ୍ୱାମୀର ସିନା ସବୁ ତାହା ॥
ଯହିଁ ବଳିଲେ ତହିଁ ଅଛି । ମୋର ଆପ୍ତତ୍ୱ ନୋହେ କିଛି ॥
ତାହା ଶୁଣିଣ ପିପାଦାସ । ମନେ ଚିନ୍ତିଲେ ପୀତବାସ ॥
ବୋଇଲେ ନମୋ ଚକ୍ରପାଣି । କମଳା ଯାର ପାଟରାଣୀ ॥
ଯାହାର ପାଦପଦ୍ମ ବାରି । ଶିବ ମସ୍ତକେ ଛନ୍ତି ଧରି ॥
ବ୍ରହ୍ମା ଯାହାର ଆଜ୍ଞା ଶିରେ । ଧରି ଜଗତ ଜାତ କରେ ॥
ଇନ୍ଦ୍ର ଯୋଗୀନ୍ଦ୍ର ମୁନିଗଣ । ନିତ୍ୟେ ଚିନ୍ତନ୍ତି ଯା ଚରଣ ॥
ଶାରଦା ଯାର ଆଜ୍ଞାକାରୀ । ଧ୍ୟାନ କରନ୍ତି ବ୍ରହ୍ମଚାରୀ ॥
ଅଶେଷ ବ୍ରହ୍ମାଣ୍ଡ ଠାକୁର । ସମସ୍ତ ଯାର ଖେଳଘର ॥
ପ୍ରାଣୀ ସାରଣୀ ସୂତା ପରି । ଖେଳାଇ କର୍ମରଜ୍ଜୁ ଧରି ॥
ତେଣୁ ତୋହର ପଦ୍ମପାଦେ । ଶରଣ ଗଲି ଅପ୍ରମାଦେ ॥
ଏ ମୋର ବାଞ୍ଛା ପୂର୍ଣ୍ଣ କର । ଭେଟାଅ ଉତ୍ତମ ନାଗର ॥
ସୁନ୍ଦର ରୂପ ଯେ ହୋଇବ । ବାଞ୍ଛା ସମ୍ପୂର୍ଣ୍ଣ ଧନ ଦେବ ॥
କାମିନୀବର ହେବ ରୁଚ । ହେ ପ୍ରଭୁ ଏ ବର ମାଗୁଛି ॥
ଏ ଲଜ୍ଜା ମହତ ତୋହର । ହେ ପ୍ରଭୁ ଯାହା ତାହା କର ॥
ଆପ୍ତତ୍ୱ ନାହିଁ ଆଜ କିଛି । ପତ୍ନୀ ବନ୍ଧକ୍ୟ କରୁଅଛି ॥
ଏମନ୍ତ ବୋଲି ଚଳି ଯାଇ । ଲଜ୍ଜା ମହତ ଦୂରେ ଥୋଇ



ପିପାଦାସ ଏବଂ ତାଙ୍କ ସ୍ତ୍ରୀ ଭଗବାନଙ୍କୁ ଚଣ୍ଡିପାର ନମସ୍କାର କରୁଛନ୍ତି ।

ବୈଷ୍ଣବ ରୂପ ଦୂର କର । କୋହେଳପୁଂସକୋହେ ସ୍ତ୍ରୀ ସେ ।
ଏମନ୍ତ ରୂପେ ଗ୍ରାମ ଫେର । କନ୍ଧ ବକନ୍ଧ ଆଦିକର ।
ଏକେ ହୋଇଛନ୍ତି ରାଜକାଳ । ମନରେ ଅତ୍ୟନ୍ତ ଚଞ୍ଚଳ ।
ଯୁବା ପୁରୁଷ ଦେଖେ ଯହିଁ । ତହିଁ ପ୍ରବେଶ ହୋଏ ଯାଇ ।
ଦେଖି ତା ନ ବଳଇ ମନ । ତହୁଁ ଚଳଇ ଅନ୍ୟସ୍ଥାନ ।
ଅତି ଚଞ୍ଚଳ ହୋଇ ମତି । ମନେ ଚିନ୍ତଇ ଜଗଜ୍ଜ୍ୟୋତି ।
ନ ଦେଖି ଉତ୍ତମ ପୁରୁଷ । ବୋଲଇ ମରିବ ଅବଶ୍ୟ ।
ତାହା ଜାଣିଲେ ଆଦିମୂଳ । ଯେ ପ୍ରଭୁ ଭକତ ବତ୍ସଳ ।
ତକ୍ଷଣେ ଦିବ୍ୟ ରୂପ ହୋଇ । ବିଜୟ କଲେ ଭାବଗ୍ରାହୀ ।
ମନମୋହନ ଯୁବାବେଶ । କୋଟିଏ କନ୍ଦର୍ପ ସଦୃଶ ।
ସୁଝୀନ ପାଗ ଶୋହେ ଶିରେ । ସୁଜର ଫେର ତଥିପରେ ।
ସୁବର୍ଣ୍ଣ ଦୁବ ତହିଁ ଖୋସି । ଗୃହିଁଲେ ଝଲମଲ ଦିଶି ।
ସୁ-ରତ୍ନ ମଣି କର୍ଣ୍ଣାଞ୍ଚଳ । ଜ୍ୟୋତି ବିରାଜେ ଗଣ୍ଡସ୍ଥଳ ।
କଣ୍ଠେ ଶୋଭିତ ରତ୍ନମାଳ । ରତ୍ନ ପଦକ ହୃଦସ୍ଥଳ ।
ମଣି କଙ୍କଣ ବେନିଭୁଜେ । ହେମ ମେଖଳା କଟିମାଝେ ।
ଗୃହୁ ଚରଣେ ଯେ ନୂପୁର । କଣ୍ଠେ ଶୋଭିତ ରତ୍ନହାର ।
ସେ ପାଦ ମହିମା ଅପାର । ଦରିଦ୍ର ଜନ ଦୁଃଖହର ।
ତହିଁ ବିଶ୍ୱାସ ଥିବ ଯାର । ସଂସାରେ ଭୟ ନାହିଁ ତାର ।
ଜଗମୋହନ ରୂପହୋଇ । ବିଜୟେ କଲେ ଭାବଗ୍ରାହୀ ।
ଭେଟ ପଡ଼ିଲେ ପିପା ଦାସ । ଗୁଡ଼ିଲେ ଜନ୍ମ ବନ୍ଧ ପାଶ ।
ଦାସେ ପୁଚ୍ଛିଲେ ଧୀରବାଣୀ । କାହୁଁ ଅଇଲ ବୀରମଣି ।
ଏକାକୀ ସଙ୍ଗେ କେହି ନାହିଁ । ନିଶାରେ ବୁଲୁଛ କିପାଇଁ ।
ଦିଶୁଛ ରାଜପୁତ୍ର ପ୍ରାୟେ । ବଡ଼େ କରିବ କେଉଁ ଥାଏ ।
ତା ଶୁଣି ବୋଇଲେ ଅଚ୍ୟୁତ । ଭଲ ଚିହ୍ନିଲୁ ମୋତେ ତୁ ତ ।
ମୁଁ ବ୍ରଜରାଜଙ୍କ କୁମର । ଅନେକ ସଙ୍ଗ ଅଛି ମୋର ।

ନିରନ୍ତେ ବନମଧ୍ୟେ ଥାଇ । ଗୋପରେ ଗୋପାଳବୋଲାଇ ॥
ଚଞ୍ଚଳ ହୃଦ ଦେଖେ ଯାର । ମୋ ମନ ନ ରସେ ସେଠାର ॥
ଯେ ପ୍ରାଣୀ ପର ଉପକାରେ । ଅବଦ୍ୟା ସୁବଦ୍ୟା ବା କରେ ॥
ନିରତେ ହରିନାମ ଘୋଷେ । ମୋ ମନ ତାହାଠାରେ ରସେ ॥
ନିଷ୍କାମୀ ମୋହଠାରୁ ସରେ । ମୁଁ ବଡ଼ କାମୀ ଏ ସଂସାରେ ॥
ଏଣୁ କନ୍ଦର୍ପ ପୀଡ଼ା ମୋତେ । ରଖି ନ ଦେଲା ବନଗତେ ॥
ତେଣୁ ସମସ୍ତ କାମ ଲେଖୁ । କାମିନୀ ଅଙ୍ଗ ସଙ୍ଗ ଇଚ୍ଛି ॥
ଅଇଲି ଅତି ଲୁବ୍ଧ ହୋଇ । ସତ୍ୟ କହିଲି ତୋତେ ମୁହିଁ ॥
ଯେବେ ମିଳିବ ଏକ ନାରୀ । କେବଳ ପର ଉପକାରୀ ॥
ସ୍ୱାମୀର ଭକ୍ତ ହୋଇଥିବ । ତାହାର ସଙ୍ଗ ମୋ ଦୁର୍ଲଭ ॥
ଯାହା ମାଗିବ ତାହା ଦେବ । ରସିକ ରହି ଚଳିଯିବ ॥
ତାହା ଶୁଣିଣ ପିପା ଦାସ । କେବଳ ମନରେ ହରଷ ॥
ବୋଇଲେ ଆସ ମୋର ସଙ୍ଗ । ତା ସଙ୍ଗେ ବିଜୟ ଶ୍ରୀରଙ୍ଗ ॥
ହରିଙ୍କି ଘେନି ସଙ୍ଗେ ଚଳି । ପତ୍ନୀ ପାରୁଶେ ଯାଇ ମିଳି ॥
ବୋଇଲେ ଆଣିଲି ନାଗର । ମନ ସନ୍ତୋଷେ ଭୋଗକର ॥
ସମ୍ପୂର୍ଣ୍ଣ କରି ଧନ ରଖ । ଯେମନ୍ତେ ଛୁଟଇ ଭବଦୁଃଖ ॥
ଏହା ଶୁଣିଣ ନାରୀବର । ମନୁଷ୍ୟ ପ୍ରାୟେ ପ୍ରତେ ତାର ॥
ଅତି ଆଦର କରି ନେଲା । ମନ୍ଦିରେ ବିପ୍ର ବସାଇଲା ॥
ଅନ୍ତର ହେଲେ ପିପା ଦାସ । ଶୁଣ ସୁମନ ଏବେ ରସ ॥
ବିପ୍ର ଯେ ଭିକ୍ଷା ମାଗି ଗଲା । କେତେକ ଗ୍ରାମ ସେ ବୁଲିଲା ॥
କିଛି ନ ପାଇ ଫେରି ଆସି । ପତ୍ନୀ ସଙ୍ଗତେ ଅଛି ବସି ॥
ଦୁହେଁ ଏମନ୍ତ ଚିନ୍ତାଭରେ । ଶୁଣ ସୁମନ ଏ ଉତ୍ତରେ ॥
ସେ ପିପା ଦାସ ପ୍ରିୟାଚିତ୍ତେ । ଆନନ୍ଦ କେ କହୁ ତା ଯେତେ ॥
କନା କନ୍ଥଡ଼ା ଯେତେ ଥିଲା । ଯତନେ ଶେଯ ଶୋଯାଇଲା ॥
ଶୀତଳ ଜଳେ ପାଦ ଧୋଇ । ମସ୍ତକେ ସିଞ୍ଚି ମୁଖେ ପିଇ ॥

ବୋଇଲା ଏଥେ ବକେକର । ମୁଁ ହୀନ ଯୁବତୀ ସୁନ୍ଦର ॥
ମୁଁ ଗୁରୁ ତୁମ୍ଭ ସେବା ଭଳ । ନୁହଇ ଦୀନ ଦୁଃଖୀ ବାଳୀ ॥
ମାହକ ଭୋଗକର ବେଳେ । ଗୋବିନ୍ଦ ମୋତେ ଭେଟାଇଲେ ॥
ମନ ସନ୍ତୋଷେ ଧନ ଦେବ । ଏ ବସ୍ତ୍ର ଦୁଃଖ ଛଡ଼ାଇବ ॥
ଅଧିକ ଲୋଡ଼ାନାହିଁ ମୋର । ମୋ ସେବା ତୁମ୍ଭ ଶ୍ରୀପଯୁର ॥
ଏମନ୍ତ ବୋଲି ପିପାନାଶ୍ୱ । ହରିଙ୍କି ନେଲା କୋଳକରି ॥
ଲୋଙ୍କଡ଼ା ଶେଯେ ପହୁଡ଼ାଇ । ଲକ୍ଷ୍ମୀଙ୍କୁ ଦେଲା ଘଉଡ଼ାଇ ॥
ଚରଣ ଗୃପୁଅଛୁ ବସି । ମନେ ବିଚାରେ ଶୁଭ୍ରକେଶୀ ॥
ଏ ଯେଉଁ ପୁରୁଷରତନ । ମୁଁ ଯେବେ ଏହାଙ୍କ ଭଜନ ॥
ଗୁଞ୍ଜ ମାଣିକ୍ୟ ଏକ କଲେ । ଯେସନେ ଶୋଭନୋହେ ଭଲେ ॥
ଏମନ୍ତ ବିଚାରନ୍ତେ ମନ । ତାହା ଜାଣିଲେ ଭଗବାନ ॥
ସେ ଅନ୍ତର୍ଯାମୀ ଆଦିମୂଳ । ଭକତ ଭାବେ ହେଲେ ଭୋଳ ॥
ଅଳପ ମନ୍ଦ ମନ୍ଦ ହସି । ନାରୀଙ୍କ କୋଳେ ଡେନି ବସି ॥
ଚିବୁକ ଧଇଲେ ଶ୍ରୀହରି । ତା ଭାଗ୍ୟ କହିଲେ ନ ସରି ॥
ପିପା ଦାସ ଏ ସମୟରେ । ଲୁଚ ଅନାଇ ଦେଲା ଥରେ ॥
ଦେଖିଲା ପ୍ରଭୁ ଭଗବାନ । ବିରାଜେ ଶଙ୍ଖ ଚକ୍ର ଚିହ୍ନ ॥
କୋଟି କନ୍ଦର୍ପ ମୁଖ କାନ୍ତି । ପରମ ଶୁଚ ଦିବ୍ୟ ଜ୍ୟୋତି ॥
ପତ୍ନୀକି ବୋଇଲା ଲେ ଉଠ । ଶ୍ରୀପଦ୍ମପାଦତଳେ ଲୋଟ ॥
ଏ ଯେ ଅନାଦି ନାରାୟଣ । ମନୁଷ୍ୟ ପ୍ରାୟ ତୁ ନ ମଣ ॥
ଏମନ୍ତ ଶୁଣି ସତୀ ଧୀରେ । ଗୁହିଁଲା ପଦ୍ମ ନୟନରେ ॥
ଦେଖିଲା ପ୍ରଭୁ ଜଗଜ୍ଜ୍ୟୋତି । ଚରଣେ ପଡ଼ିଲା ଯୁବତୀ ॥
ପିପାହିଁ ହା ହା କୃଷ୍ଣ ବୋଲି । ପାଦେ ପଡ଼ିଲା ତଉଧାଳି ॥
ଦୁହେଁ ଉଠିଣ ଗୃହିଁଦେଲେ । ସେ ହରି ଅନ୍ତର୍ଦ୍ଧାନ ହେଲେ ॥
ପୁରେ ପୂରିଛୁ ନାନା ଧନ । ଶୁଣ ହେ ସୁମନ ସଜ୍ଜନ ॥
ଏମନ୍ତେ ପାହିଲା ରଜନୀ । ଡାକଇ ବ୍ରାହ୍ମଣ ବ୍ରାହ୍ମଣୀ ॥

ବୋଇଲେ ରଖ ଧନ ତୋର । ନିଶ୍ଚିନ୍ତେ ବସି ଭୋଗକର ॥
ତା ଦେଖି ବିପ୍ର ନାରୀବର । ବୋଇଲେ ଏକ ଚମତ୍କାର ॥
କାହୁଁ ଆଣିଲ ଏତେ ଧନ । ତୁମ୍ଭେ କି ଦ୍ୱିଜ ଭଗବାନ ॥
ଏମନ୍ତେ କହି ପାଦତଳେ । ଦୁହେଁ ଶୋଇଲେ ଭାବ ଭୋଳେ ॥
ଦାସେ ଉଠାଇ କୋଳ କଲେ । ସମସ୍ତ ଚିହ୍ନାଇ କହିଲେ ॥
ତହୁଁ ଚଳିଲେ ବେନି ପ୍ରାଣୀ । ଶ୍ରୀହରି ଭାବ ମନେ ଗୁଣି ॥
କାହିଁ ବା କେତେ କର୍ମ କଲେ । ଅନ୍ତେ ସେ ବିଷ୍ଣୁ ଲୋକେ ଗଲେ ॥
ସେ ଦ୍ୱିଜ ପତିପତ୍ନୀ ଦୁଇ । ଭାଗ୍ୟ କହିଲେ ନ ସରଇ ॥
ଜୀବନ୍ତେ ସୁଖେ ଦିନ ନେଲେ । ଅନ୍ତେ ବୈକୁଣ୍ଠପୁରେ ଗଲେ ॥
ଶୁଣ ସୁମନ ଏକଚିତ୍ତେ । ଏ ଦୃଢ଼ ଭକତି କେମନ୍ତେ ॥
ସେ ହରି ହରିଭକ୍ତ ଦୁଇ । ଏକଇ ପ୍ରାଣ ପିଣ୍ଡ ଦୁଇ ॥
କେବେହେଁ ନୋହେ ଭିନ୍ନାଭିନ୍ନ । ଏ କଥା ସତ୍ୟକରି ଘେନ ॥
କହଇ ବିପ୍ର ରାମଦାସ । ମୂଳଟି ଅଟଇ ବିଶ୍ୱାସ ॥
ସେ ହରି ଭକ୍ତଙ୍କର ପାଦେ । ମୋ ଚିତ୍ତ ରହୁ ଅପ୍ରମାଦେ ॥

ଇତି ଶ୍ରୀଦାର୍ଢ୍ୟଭକ୍ତିରସାମୃତେ ମନଚୈତନ୍ୟ ସମ୍ବାଦେ
ପିପାଦାସ ଦାର୍ଢ୍ୟଭାବ ବର୍ଣ୍ଣନେ ନାମ
ପଞ୍ଚଚତ୍ୱାରିଂଶୋଽଧ୍ୟାୟଃ ।

---

## ଷଟ୍‌ଚତ୍ୱାରିଂଶ ଅଧ୍ୟାୟ
## ବିଷ୍ଣୁପ୍ରିୟା ସମ୍ବାଦ

ନମସ୍ତେ ପ୍ରଭୁ ହଳ ହସ୍ତ । ନମସ୍ତେ ପ୍ରଭୁ ଜଗନ୍ନାଥ ॥
ସୁଦରଶନ ଆଦି କରି । ଚତୁର୍ଦ୍ଧାରୂପୀ ଅଛ ଧରି ॥
ବିଜୟ ଶ୍ରୀନୀଳକନ୍ଦରେ । ବିରାଜ ବିଜେ ଶ୍ରୀରତ୍ନରେ ॥
ଜଗତ ପାଳିବାର ଅର୍ଥେ । କମ୍ବୁ ରଥାଙ୍ଗ ଶୋହେ ହସ୍ତେ ॥

ପତିତ ଉଦ୍ଧାର ନିମିତ୍ତ । ଶ୍ରୀନୀଳ ଚକ୍ରେ ଉଡ଼େ ନେତ ॥
ତେଣୁ ଶରଣ ରାମଦାସ । ନ ନାଶ ମୋର ପ୍ରତିଆଶ ॥
ପୁଣି ଚୈତନ୍ୟ କହେ ଧୀରେ । ସୁମନ ନୃପତି ଆଗରେ ॥
ଏ ବଡ଼ ଅପୂର୍ବ ଚରିତ । ଶୁଣ ନିର୍ମଳ କରି ଚିତ୍ତ ॥
ଶ୍ରୀବୃନ୍ଦାବନ ପଶ୍ଚିମରେ । ଦିଲ୍ଲୀ ସହର ପାରୁଶରେ ॥
ଜୟପୁ ନଗରେ ତାଙ୍କ ଘର । ସେ ରାଜବଂଶେ ଅବତାର ॥
ଶୁଭଇ ଜୟସିଂହ ନାମ । କେ କହୁ ତାଙ୍କ ଗୁଣଗ୍ରାମ ॥
ଧନେ ସେ କୁବେର ସମାନ । ଦାନୀପଣରେ ଦ୍ୱିତୀ କର୍ଣ୍ଣ ॥
ବୀରଙ୍କ ମଧେ ସେ ଅଗ୍ରଣୀ । ଧୀର ପଣରେ ସେ ଧରଣୀ ॥
ଅଶେଷ ବିଦ୍ୟାରେ ସେ ରଥୀ । ପଣ୍ଡିତ ପଣେ ବୃହସ୍ପତି ॥
ଲକ୍ଷେକ ଅଶ୍ୱ ନିରନ୍ତରେ । ବନ୍ଧା ଅଛଇ ତାର ଦ୍ୱାରେ ॥
ପଦାତି ବଳ ଅପ୍ରମିତେ । କହି ନୁହଇ ଏତେ ତେତେ ॥
ଦୁଃଖୀ ଦରିଦ୍ର ଜନଙ୍କର । କେବଳ ଅଟଇ ପିଅର ॥
ତୋଷଇ ଅନ୍ନ ବସ୍ତ୍ରଦାନେ । କୋମଳ ମଧୁର ବଚନେ ॥
ହରି ଭଜନେ ଅତି ତୋଷ । ହରଇ ରଜନୀ ଦିବସ ॥
ସତ୍ୟ ବଚନେ ଦୃଢ଼ ଅତି । ପତ୍ନୀର ନାମ ଚନ୍ଦ୍ରାବତୀ ॥
ଚତୁରୀ ବିବେକୀ ସୁନ୍ଦରୀ । ଯେସନେ ସ୍ୱର୍ଗ ଅପସରୀ ॥
ସ୍ୱାମୀ ସେବାରେ ଅତି ଦକ୍ଷ । ଅନ୍ୟନୋହିବେ କେହି ଲକ୍ଷ୍ୟ ॥
ତାହାର ଏକଇ ତନୟେ । ରୂପେ କନ୍ଦର୍ପ ଶୋଭାପ୍ରାୟେ ॥
ଏକ ଦୁହିତା ଶୋଭାବନୀ । ହେମାଙ୍ଗ ଚନ୍ଦ୍ରମାବଦନୀ ॥
ମାତା ପିତାରେ ଅତି ସ୍ନେହା । ନାମ ତାହାର ବିଷ୍ଣୁପ୍ରିୟା ॥
କୋମଳ ଅଙ୍ଗୀ ସୁକୁମାରୀ । କହିଲେ ଶୋଭା ତା ନ ସରି ॥
କଳା କୁଞ୍ଚିତ ଘନକେଶୀ । ଖଞ୍ଜନଗଞ୍ଜା ମୃଗଦୃଶୀ ॥
ଶ୍ରବଣଯୁଗ ସ୍ମରପାଶ । ନାସା ତା ତିଳ ସୁମନସ ॥
ଅଧର ସୁରଙ୍ଗ ସୁଷମ । ନବ ପଲ୍ଲବ ନୋହେ ସମ ॥

ମୁକୁତା ଦନ୍ତ ହୀରପନ୍ତି । ତାଳମ୍ବ ବଜ ପ୍ରାୟ ଜ୍ୟୋତି ॥
ଭ୍ରୂଲତା କନ୍ଦର୍ପ କୋଦଣ୍ଡ । ଖଣ୍ଡ ଚନ୍ଦ୍ରମା ବେନିଗଣ୍ଡ ॥
ମୁଖସୁନ୍ଦର ନୋହେ କହି । ମୁନି ଦେଖିଲେ ହେବେମୋହି
ସୁକୁତ ସୁବାହୁ ଯୁଗଳ । ଅତ ବସ୍ତାର ବକ୍ଷସ୍ଥଳ ॥
ସୁନ୍ଦର ପଣେ ଜଗଜ୍ଜିତା । ଶ୍ରବଣେ ଶୁଣେ ହରିକଥା ॥
ଶ୍ରୀହରି ଜନ୍ମରସ ଗୁଣ । ନିରତେ ପଠନ ଶ୍ରବଣ ॥
ସାଧୁ ବୈଷ୍ଣବ ସେବା ଅର୍ଥେ । ଧନ ସେ ପେଷଇ ଗୁପତେ ॥
ନିରତେ ସଦାବ୍ରତମାନ । ଦିଆଉଥାଏ ସ୍ଥାନ ସ୍ଥାନ ॥
ନିରତେ ହୋଇ ଶୁଚିମନ୍ତ । ବ୍ରତ କରଇ ଦୃଢ଼ ଚିତ୍ତ ॥
ଶ୍ରୀଜଗନ୍ନାଥଙ୍କ ଚରିତ । ବାର ମାସରେ ତେର ଯାତ ॥
ଯେତେବେଳରେ ଯେଉଁ ଶୋଭା । ବେଶ ବସନ ଆଦି ସେବା ॥
ଶ୍ରୀମହାପ୍ରସାଦ ମହିମା । ଯେ ପାଞ୍ଚକୋଶ ପରିକ୍ରମା ॥
ଶ୍ରୀଜଗମୋହନ ଚରିତ । ଯେବେ ଶୁଣଇ ଶ୍ରୁତିପଥ ॥
ମନେ ଆନନ୍ଦ ହୋଏ ଯେତେ । ତାହା କେ କହିବ ଯୁକତେ ॥
ହୃଦୟ ହୋଏ ଦ୍ରବୀଭୂତ । ଧ୍ୟାନେ ଚିନ୍ତଇ ଜଗନ୍ନାଥ ॥
ବଗ୍ରୁର କରୁଥାଇ ମନ । କେବେ ଦେଖିବ ଭଗବାନ ॥
ଦର୍ଶନେ ପୂର୍ବ ପାପ ତୁଟି । ଭବ ବନ୍ଧନ ଯିବ ଫିଟି ॥
ପୁଣି ବୋଲଇ ସ୍ତିରୀ ସ୍ଥିର । ସୁଭାଗ୍ୟ ହେବ କାହିଁ ମୋର ॥
ସ୍ୱପନେ ହେଲେ ଏକ ଦିନେ । ଦେଖିବ ମୋ ଚର୍ମ ନୟନେ ॥
ଏ କୃପା କରିବେ କି ହରି । ବୋଲି ନୟନୁ ବହେ ବାରି ॥
ଏମନ୍ତ ବେଳେ ଶୁଣ ମନ । ପ୍ରଭୁଙ୍କ ଘଠସୁନ୍ଦ୍ରମାନ ॥
ଯେ ସେବକମାନେ ଛନ୍ତି ଯେତେ । ପ୍ରଭୁଙ୍କ ପାରିଷଦ ମତେ ॥
ସବୁ ସେବକ ମଧ୍ୟେ ସାର । ଥିଲାଛି ମହାପାତ୍ର ଘର ॥
ତାଙ୍କ ଉପରବଂଶେ ଜାତ । ତା ନାମ ବନ୍ଧୁ ମହାପାତ୍ର ॥
ମନରେ ଧନ ଇଚ୍ଛା କଲା । ପ୍ରଭୁ ଶ୍ରୀମୁଖରେ ଜଣାଇଲା ॥

ମେଲାଣି ମାଗି ତହୁଁ ଚଳି । ଧନଟି ଅଟେ ଏତେ ଭଲି ॥
ଶ୍ରୀହରି ସେବାରୁ ଅନ୍ତର । ହୋଇ ଚଳିଲା ଦେଶାନ୍ତର ॥
ପଥରେ ରହି କେତେ ମାସ । ଜଯ୍ପୁ ନଗରେ ପରବେଶ ॥
ତହିଁ ରହିଲେ ବାସ କରି । ଉତ୍ତମ ଲୋକେ ଅନୁସରି ॥
ମହାପ୍ରସାଦମାନ ଦେଲେ । ଅନେକ ଧନ ସମ୍ପାଦିଲେ ॥
ତହିଁ ଶୁଣିଲେ ଧନ୍ୟ ଧନ୍ୟ । ହୋଇଲେ ସର୍ବଲୋକେ ମାନ୍ୟ
ଜୟସିଂହର ଯେ ଦୁହିତା । ପୂର୍ବେ କହିଛୁଁ ତାର କଥା ॥
ସେ ବିଷ୍ଣୁପ୍ରିୟାର ଚରିତ । ସଂସାରେ ଅତି ଅଲୌକିତ ॥
ନିରତେ କୃଷ୍ଣ କଥାମାନ । କରଇ ଶ୍ରବଣ ପଠନ ॥
ଦୁଃଖୀ ଦରିଦ୍ର ଜନଠାରେ । ଦୟା ତାହାଙ୍କଠାରୁ ସରେ ॥
ସେ ଯାହା ମାଗେ ତାହା ଦେଇ । କହଇ ବଚନ ବିନୟୀ ॥
ଅତି ବିଶ୍ୱାସ କରି ବୁଦ୍ଧି । ସାଧୁଙ୍କ ସେବା ନିରବଧି ॥
କରଣ ବଞ୍ଚୁଥାଇ ଦିନ । ଧନ୍ୟ ସେ ଯୁବତୀ ରତନ ॥
ଏମନ୍ତ ପ୍ରଶଂସା ବହୁତ । ଶୁଣି ସେ ମହାପାତ୍ର ଚିତ୍ତ ॥
ବିଚାର କଲେ ଅତି ତୋଷେ । କିଛିହିଁ ପ୍ରକାଶିବା ଆଶେ ॥
ପତ୍ର ଖଣ୍ଡିଏ ଯତ୍ନ କରି । ଲେଖିଲେ ପ୍ରଭୁ ନାମ ଧରି ॥
ଶ୍ରୀଜଗନ୍ନାଥଙ୍କ ନିମନ୍ତେ । ଯେ ଶ୍ରଦ୍ଧା ହେବ ତୁମ୍ଭ ଚିତ୍ତେ
ଦେଲେ ତା ଆମ୍ଭେ ଘେନିଯିବୁ । ପ୍ରଭୁ ଛାମୁରେ ନେଇ ଦେବୁ ॥
ଆମ୍ଭେ ଯେ ପାରିଷଦ ଲୋକ । ଏମନ୍ତ ଲେଖି ଦେଲେ ଲେଖ
ସେ ଲେଖା ପାଇ ସେ ସୁନ୍ଦରୀ । ହୃଦେ ଲଗାଇ ମାଥେ ଧରି ॥
ଚିଠାଭ ମୁଖେ ଚୁମ୍ବ ଦେଲା । ମୁଦ ଫିଟାଇ ପାଠକଲା ॥
ଆପଣେ ପଢ଼ୁ ପଢ଼ୁ ବାଳୀ । ନେତ୍ରୁ ଲୋତକ ଧାର ଗଳି ॥
ଶ୍ରୀହସ୍ତ ହେଲା ଥର ହର । କମ୍ପିଲା ସୁରଙ୍ଗ ଅଧର ॥
କଣ୍ଠ ହୋଇଲା ଗଦ ଗଦ । ଅଙ୍ଗେ ଜନମ ହେଲା ସ୍ୱେଦ ॥
ପୁଲକ ହେଲା ରୋମାବଳି । ବଚନ କହଇ ସେ ବାଳୀ ॥

ଦେହରୁ ବୁଦ୍ଧି ଜ୍ଞାନ ଗୁଡ଼ । ଭବ ସମୁଦ୍ରେ ଗଲା ବୁଡ଼ ॥
ନୟନ ବୁଜି କଲା ଧ୍ୟାନ । ଦେଖିଲା ପ୍ରଭୁ ଭଗବାନ ॥
ଯେଉଣେ ଗୃହିଁଲେ ତେଉଣେ ହରି । ଦିଶିଲେ ଶଙ୍ଖ ଚକ୍ରଧାରୀ ॥
ଫିଟିଲା ଜନ୍ମବନ୍ଧ ତାର । ମନରେ କଲାକ ବିଗ୍ଭର ॥
କି ବୁଦ୍ଧି ଏବେ କରିବଇଁ । ବିଷମ ଦୁଃଖେ ପଡ଼ିଲଇଁ ॥
କି ଦ୍ରବ୍ୟ ଦେବ ତାଙ୍କ ପାଶ । ତାଙ୍କୁ ଅପୂର୍ବ ଅବା କିସ ॥
ପରମଲକ୍ଷ୍ମୀ ଯା ଘରଣୀ । ପାଦେ ବସନ୍ତି ଅନୁକ୍ଷଣି ॥
ଯା ପରିଗ୍ରହ ଅଷ୍ଟନିଧି । ଯାହା'ର ଆଜ୍ଞାକାରୀ ବିଧି ॥
ସମସ୍ତ ରତ୍ନର ଆକର । ଯାହାର ନାମ ରତ୍ନାକର ॥
ତାଙ୍କୁ କି ରତ୍ନ ଦେବ ଅବା । ଏ କଥା ନ ଦିଶିବ ଶୋଭା ॥
ଯା ତହୁଁ ସଂସାର ସଞ୍ଚାର । ହେତୁ ବୋଲାଏ ବିଶ୍ୱମ୍ଭର ॥
ତାହାକୁ ଦେବ ଅବା କିସ । ଏଣୁ ହୋଇବ ବଡ଼ ହାସ୍ୟ ॥
କୌସ୍ତୁଭ ମଣି ଯା'ର ହାର । ଇତର ମଣି କେଉଁ ଛାର ॥
ଅମୂଲ୍ୟ ଅଗର ନନ୍ଦନ । ଯା'ହାର ପୂଜାକୁ ଇନ୍ଧନ ॥
ଯାର ବାହନ ଖଗରାଜ । ଆନ ଯାନରେ କିସ କାର୍ଯ୍ୟ ॥
ଯାର ଶୟନ ନାଗରାଯ୍ୟେ ସହସ୍ର ଫଣା ମଣି ଶୋହେ ॥
ଫଣାକେ ଜ୍ୟୋତି ଯେ ବିରାଜେ । କି କାର୍ଯ୍ୟ ତାର ଆନ ଶେଯେ ॥
ପାରିଜାତକ ଫୁଲମାଳା । ନିରତେ ଶୋହେ ଯାର ଗଳା ।
ଗଣା ହୋଇଲେ ଯୁଗଶତ । ମଳିନ ନୋହେ କଦାଚିତ ॥
ବ୍ରହ୍ମାଣ୍ଡ ମୋଦେ ଯାର ବାସ । ଅନ୍ୟ ଫୁଲେ ତା କାର୍ଯ୍ୟ କିସ ॥
ଯାର ନିବାସ ନୀଳାଚଳ । ଅମୂଲ୍ୟ ପରମ ମଙ୍ଗଳ ॥
ଜଗତ ଶତବାର ନଷ୍ଟ । ହେଲେ ନ ଟଳେ ଯାର ପୀଠ ॥
ଦର୍ଶନେ ପ୍ରାଣୀ ପାପ ହରେ । ଅନ୍ୟ କି ପୀଠ ଦେବ ତାରେ
ଯାହାର ଶସ୍ତ୍ର ସୁଦର୍ଶନ । କୋଟି ସୂର୍ଯ୍ୟର ତେଜସମ ॥
ଅଶେଷ ଯୁଗ ଗଲେ ବହି । ଅଭଙ୍ଗ ସୁରତନ ନୋହି ॥

ଆର୍ତ୍ତିର ଆର୍ତ୍ତ ଖଣ୍ଡିବାରେ । ସଂସାରେ ତାହାଠାରୁ ସରେ ॥
ଦର୍ଶନ ମାତ୍ରେ କୋଟି ସୁଖ । ଅନ୍ୟ ଶସ୍ତ୍ର କି ତାକୁ ଲକ୍ଷ୍ୟ ॥
ଗଙ୍ଗା ଯା ଚରଣ ଉଦକ । ଯହିଁ ଶରଣ ତିନିଲୋକ ॥
ତାକୁ ଅପୂର୍ବ ଅବା କିସ । ନାହିଁ ନୋହିବେ ଚତୁର୍ଦ୍ଦଶ ॥
ହେ ପ୍ରଭୁ ଶଙ୍ଖଚକ୍ରବାହୁ । ହୃଦେ ବସ୍ତୁର ଆଜ୍ଞା ହେଉ ॥
ଆଉ କି ଦ୍ରବ୍ୟଦେବ ତୋତେ । କିଛି ତ ଦିଶୁନାହିଁ ମୋତେ ॥
କେବଳ କଥାଏ ତୁମ୍ଭର । ହେଜି ପାଇଛି ଦାମୋଦର ॥
ଆବର କୁଳ କନ୍ୟାଗଣ । ନାଗରୀ ଚତୁରୀ ସିହାଣ ॥
ତୁମ୍ଭର ମନ ନେଲେ ହରି । ରଖିଲେ ଅତି ଗୋପ୍ୟକରି ॥
ଯେତେ ମାଗିଲ ମହାବାହୁ । ଲେଉଟି ନ ଦେଲେ ସେ ଆଉ ॥
କ୍ଷୀର ନୀରର ପ୍ରାୟେ ହେଲା । ମନରେ ମନ ମିଶିଗଲା ॥
ଖୋଜି ନ ପାଇ ବର୍ଣ୍ଣ ଚିହ୍ନ । କେବଳ ହେଲା ମହାଶୂନ୍ୟ ॥
ଆଉ ସକଳ ଦ୍ରବ୍ୟ ଅଛି । ତୋତେ ଅପୂର୍ବ ନାହିଁ କିଛି ॥
ମନ ମାନଙ୍କ ଲବ ଲେଶେ । ନାହିଁ ତୁମ୍ଭର ହୃଦଦେଶେ ॥
ଏହା ମୁଁ ଭଲେ ଅଛି ଜାଣି । ସକଳ ଶାସ୍ତ୍ର ମୁହିଁ ଶୁଣି ॥
ଏଣୁ ମୁଁ କଲି ମନଦତ୍ତ । ଆହୁ ମୁଁ ହେଲି ତୁମ୍ଭ ଭୃତ୍ୟ ॥
ପିଣ୍ଡ ମାନଙ୍କ ଏଥି ଥାଉ । ମନ ମୋ ରଖି ଆଜ୍ଞା ହେଉ ॥
କିସ କହିବ ଏ ଉତ୍ତରୁ । ତୁମ୍ଭେ ମୋ ବାଞ୍ଛା କଳ୍ପତରୁ ॥
ସକଳ ଜାଣ ଦେବ ସ୍ୱାମୀ । ଏଣୁ ବୋଲଇ ଅନ୍ତର୍ଯାମୀ ॥
ଏମନ୍ତ ବୋଲି ସେ ତୁରିତ । ପତ୍ରେ ଲେଖିଲା ମନଦତ୍ତ ॥
ଶ୍ଳୋକେକ ପତ୍ରେ ଲେଖେ ବାଳୀ । ମନେ ଚିନ୍ତିଲେ ବନମାଳୀ ॥
ଏକେ ତ ମୃଗମଦ କାଳ । ଝଲକୁଅଛି ବର୍ଣ୍ଣାବଳି ॥
ପ୍ରେମ ଆନନ୍ଦ ତହିଁ ଭରି । ମୁଦ ମୁଦିଲେ ଯତ୍ନ କରି ॥
ବୋଇଲେ ଶୁଣ ଆରେ ମନ । ତୁ ତ ଦୁଷ୍କର ସୂ ମହାଶୂନ୍ୟ ॥
ନିଶ୍ଚଳ ନୋହୁ କଦାଚତେ । ତେଣୁ ମାଗୁଛି ମୁହିଁ ଏତେ ॥

ଗୋବିନ୍ଦ ଚରଣେ ରହିବୁ । ନିଶ୍ଚଳ ହୋଇ ଏକା ଥିବୁ ॥
ତୋତେ କୋଟିଏ ନମସ୍କାର । ପୁଣି ମୋ ମହତ ନ ସାର ॥
ଏହି ସୁଦଶା ମୋରେ ହେଉ । ଲେଉଟି ନ ଆସିବୁ ଆଉ ॥
ଏମନ୍ତ ବୋଲି ପତ୍ର ଧରି । ଆନନ୍ଦେ ସଖୀକି ହକାରି ॥
ପତ୍ର ତାହାର ହସ୍ତେ ଦେଲେ । ତୁରିତେ ଯାଅ ତୁ ବୋଇଲେ ॥
ଶ୍ରୀହରି ସେବକର ହସ୍ତେ । ଏ ମୁଦ ଦେବୁ ତୁ ତୁରିତେ ॥
ବୋଲିବୁ ଏ ମୁଦ ନେଇଣ । ଯେ ପ୍ରଭୁ ବ୍ରହ୍ମାଣ୍ଡ କାରଣ ॥
ନୀଳାଦ୍ରି ନାଥ ପୀତବାସ । ଗ୍ରୀମୁରେ ଦେବଟି ଅବଶ୍ୟ ॥
ଏମନ୍ତ କହି ତାଙ୍କ ପାଶ । ସୁନାଆଁ ଦେଲ ଗୋଟି ଦଶ ॥
ଲେଉଟି ଆସିଲ ତୁରିତେ । ସେ ବସ୍ତୁ ପ୍ରିୟାର ଅଗ୍ରତେ ॥
କହିଲ ସକଳ ଚରିତ । ଶୁଣ ହୋ ମନ ନୃପନାଥ ॥
ଏଥିଅନ୍ତରେ କଥା ଯେତେ । ଶୁଣ କହିବ ବିଧିମତେ ॥
ଅଳପ ଦେଖିବାରୁ ଧନ । ସେ ମହାପାତ୍ରଙ୍କର ମନ ॥
ସନ୍ତୋଷ ନ ପାଇଣ ଚିତ୍ତେ । ଆଉ ସମ୍ବାଦ ଥିଲେ ଯେତେ ॥
ସକଳ ଧନ ଠୁଳ କରି । ସେ ପତ୍ର ମୁଦ ହସ୍ତେ ଧରି ॥
ଚଳି ସେ ଗଲେକ ତୁରିତେ । ବିଗୁର କରୁଥାନ୍ତି ଚିତ୍ତେ ॥
ସେ ଜୟ ସିଂହର ନନ୍ଦନୀ । ସର୍ବେ କହନ୍ତି ବଡ଼ ଦାନୀ ॥
ମୋତେ ସେ ନ କଲ ସନ୍ତୋଷ । ସୁନାଆଁ ଦେଲ ଗୋଟି ଦଶ ॥
କାମନା ପତ୍ରେ ମୁଦ ଫେଇ । କସ ବା ଦେଇଅଛି ସେହି ॥
ଏମନ୍ତ ବୋଲି ମୁଦ ଫେଇ । ଦେଖିଲେ କିଛି ଧନ ନାହିଁ ॥
ଶ୍ଳୋକ ଗୋଟିକି ପାଠ କଲେ । ଧରି ଭୂଇଁକୁ ପିଙ୍ଗି ଦେଲେ ॥
ତା ଭାବ ନ ଜାଣିଲେ ମନେ । କେବଳ ଲୋଭ କରି ମନେ ॥
ତହୁଁ ଚଳିଲେ ନିଜ ଦେଶ । କେତେକ ଦିନ କେତେ ମାସ ॥
କ୍ଷେତ୍ରରେ ହୋଇଲେ ପ୍ରବେଶ । ଦର୍ଶନ କଲେ ଜଗଦୀଶ ॥
ଶ୍ରୀମୁଖରେ ଦୁଃଖ ସୁଖ ଭାଳି । ନିଜ ଭବନେ ଗଲେ ଚଳି ॥

ଶୁଣ ସୁମନ ସେହୁ ଭାବ । ସେ ଅନ୍ତର୍ଯାମୀ ପଦ୍ମନାଭ ।
ବସ୍ତୁପ୍ରିୟାର ମନଦର୍ବ । ଭାବେ ବୁଝାଇ ଥିଲେ ଚର୍ବ ॥
ଯେତେବେଳେ ସେ ପଦ ଭୁରେ । ଫିଙ୍ଗିଣ ଦେଲେ ବସ୍ତ୍ରବରେ ॥
ତାହା ଜାଣିଣ ଜଗନ୍ନାଥେ । ଶ୍ରୀହସ୍ତ ବଢ଼ାଇ ତ୍ବରିତେ ॥
ଭକତବନ୍ଧୁ ଭାବଗ୍ରାହୀ । ମହିମା କେ ପାରିବ କହି ॥
ଅଶେଷ ବ୍ରହ୍ମାଣ୍ଡ ଯାହାର । ଆନନ୍ଦ ଲୀଳା ଖେଳଘର ॥
ଏ ସବୁ ତୁଚ୍ଛ ପ୍ରାୟ ମଣି । ତା ଭାବ ଭାବ ଚକ୍ରପାଣି ॥
ଯେସନେ ଅତି ହୀନଜନ । ପାଇଲେ ଅମୂଲ୍ୟ ରତନ ।
ଯେତେ ଆନନ୍ଦ ମନ ତାର । ତହୁଁ ଅଧିକ ଦାମୋଦର ॥
ଜନ୍ମରୁ ଅନ୍ଧ ହୋଇଥାଇ । ସେ ଯେସ୍ନେ ଦିବ୍ୟଚକ୍ଷୁ ପାଇ ॥
କି ଅବା ଶତେ ଜନ୍ମଯାଏ । ଯେବା ଅପୁତ୍ରୀ ହୋଇଥାଏ ॥
ପାଇଲେ ଉତ୍ତମ ନନ୍ଦନ । ଯେମନ୍ତେ ହୋଏ ତାର ଧନ ॥
ତହୁଁ ଆନନ୍ଦ ଗଲି ବଳି । ତେସନେ ହେଲେ ବନମାଳୀ ।
ଭକତ ଜନେ ଏଡ଼େ ଦୟା । ଏକଇ ଆତ୍ମା ଭିନ୍ନ କାୟା ॥
ସେ ବସ୍ତୁପ୍ରିୟା ମନଦର୍ବ । ପଦ ଘେନିଣ ଜଗନ୍ନାଥ ।
ଶ୍ରୀହସ୍ତେ ପାଟସୂତ୍ର ଧରି । ପୋଛିଲେ ଅତି ଯତ୍ନକରି ।
ପ୍ରେମରେ ଗଦଗଦ ହୋଇ । କଣ୍ଠେ ଭିଡ଼ିଲେ ଭାବଗ୍ରାହୀ ॥
କୌସ୍ତୁଭମଣିର ସଙ୍ଗରେ । ରଖିଲେ ହୃଦୟ ମଧରେ ॥
ଦେଖ ସୁଭାଗ୍ୟ ସେ ଯୁବତୀ । ହରିଲା ଗୋବିନ୍ଦର ମତି ॥
ଭୃତ୍ୟ ସାମନ୍ତ ଏହିପରି । ନାହିଁ ନା ଚତୁର୍ଦ୍ଦଶପୁରୀ ॥
ସେହି ରାତ୍ରିରେ ବଣ୍ଟାମୂର । ବିଜୟ ମହାପାତ୍ର ଘର ॥
ସ୍ୱପନମାର୍ଗେ ଆଜ୍ଞାଦେଲେ । ରେ ବତ୍ସ ଶୁଣ ତୁ ବୋଇଲେ ।
ତୁ ଗଲୁ ସେ ଜୟ ନଗର । ଧନ ଅର୍ଜ୍ଜନ ଆଶା ତୋର ॥
ତୋତେ ତା ମିଳିଲା ତୁ ନେଲୁ । ମୋ ଧନ ମୋତେ ତ ନ ଦେଲୁ
ସେ ବସ୍ତୁ ପ୍ରିୟା ଦେବା ଧନ । ସେ ମୋର ଅମୂଲ୍ୟ ରତନ ॥

ଇତର ପ୍ରାୟେ ତାହା ଧରି । ଫିଙ୍ଗି ଯେ ଦେଲୁ ଦୂରକରି ॥
ସେ ନୋହେ କାଗଜ ପତର । କେବଳ ଗର୍ଣ୍ଣ ଧନ ମୋର ॥
ତୁ ସିନା ଦେଲୁଟି ପକାଇ । ମୁଁ ତାହା ଗ୍ରହିବ କପାଇଁ ॥
ଯେମନ୍ତ୍ରେ ଅଇଲୁ ସେ ଲେଖ । ଗଳାରେ ବାନ୍ଧିଅଛୁ ଦେଖ ॥
ଏବେ ତୁ ଏମନ୍ତ କରିବୁ । ସୁନାପଦକ ଭିଆଇବୁ ॥
ସେ ଲେଖ ତଥିମଧ୍ୟେ ଦେଇ । ସୁବର୍ଣ୍ଣ ଶିକୁଳି ଲଗାଇ ॥
ମୋ କଣ୍ଠେ ଲମ୍ବାଇବୁ ଯେବେ । ତେବେ ତୁ ଥିବୁ ସର୍ବ ଶୁଭେ ॥
ନୋହିଲେ ଭଲ ନାହିଁ ତୋର । କହି ଚଳିଲେ ଦାମୋଦର ॥
ବିପ୍ର ଏମନ୍ତ ସ୍ୱପ୍ନ ପାଇ । ଉଠି ପ୍ରଭାତୁଁ ବେଗ ହୋଇ ॥
ସ୍ନାନ ଶଉଚ ଆଦି ହେଲେ । ପ୍ରଭୁଙ୍କ ଦର୍ଶନକୁ ଗଲେ ॥
ଗୃହିଁଲେ ଧୀର କରି ଦୃଷ୍ଟି । ହୃଦେ ପଡ଼ିଛି ଲେଖ ଗୋଟି ॥
ଦେଖି ହୋଇଲେ ଚମତ୍କାର । ବୋଇଲେ ନମୋ ଚକ୍ରଧର ॥
ଭୃତ୍ୟକୁ ଏତେ ସାହାବୋଲି । ମୁଁ ମୂଢ଼ ଜାଣି ତ ନ ଥିଲି ॥
ଏ ଅପରାଧ କ୍ଷମାକର । ତୁମ୍ଭେ ଯେ କରୁଣାସାଗର ॥
ସ୍ୱପ୍ନରେ ଆଜ୍ଞା ଦେଲେ ଯାହା । ଅବଶ୍ୟ କରିବି ମୁଁ ତାହା ॥
ଏମନ୍ତ ବୋଲି ଲେଖ ନେଲେ । ସୁନାପଦକ ଗଢ଼ାଇଲେ ॥
ସୁବର୍ଣ୍ଣ ଶିକୁଳି ଲଗାଇ । ଶ୍ରୀକଣ୍ଠେ ଲମ୍ବାଇଲେ ନେଇ ॥
ହୃଦ ପଦ୍ମରେ ପ୍ରଭୁ ରଖି । ଭକତବରେ ହେଲେ ସୁଖୀ ॥
ଶୁଣ ସୁମନ ହେତୁ କରି । ପ୍ରଭୁ ମହିମା ଏତେ ସରି ॥
ଭକତ ମହିମା ଏମନ୍ତ । କେ କରି ପାରିବ ତା ଅନ୍ତ ॥
ଏଣୁ ଭକତ ଭାଗ୍ୟବନ୍ତ । ଅଭିନ୍ନ ଏକ ଆତ୍ମା ସତ ॥
ଯେ ତାଙ୍କୁ ଭିନ୍ନ ଭିନ୍ନ କରେ । ସେ ବଡ଼ ପାପୀ ଏ ସଂସାରେ ॥
କହିଲି ଭଲେ ଥାଅ ଜାଣି । ହେ ମନ ସତ୍ୟ ଏହୁ ବାଣୀ ॥
ଏମନ୍ତ ପ୍ରଭୁ ସେବା ତେଜ । ଲୋଭେ ଯେ ଅନ୍ୟ ଦେବ ଭଜ ॥
ସକାମେ ନାନା ଇଚ୍ଛାକରେ । ସେ କାହିଁ ତରିବ ସଂସାରେ ॥



ମିରାବାଈ ଭଗବାନଙ୍କ ମାୟାରୂପ ଧରିବାକୁ ହାତ ବଢ଼ାଇଛି ।

ଭଣଇ ବିପ୍ର ରାମଦାସ । ମୋ ପ୍ରଭୁ କମଳାବିଳାସ ॥
ସାଧୁଜନଙ୍କ ଶ୍ରୀପଦ୍ମରେ । ମୋ ମନ ରହୁ ନିରନ୍ତରେ ॥
ଦେଖନ୍ତି ବୋଲନ୍ତି ଜଗତ । ବଡ଼ କୋମଳ ନବନୀତ ॥
ତା ଅଙ୍ଗେ ଅଗ୍ନି ତାପ ପାଇ । ତେବେ ଯେ ତରଳି ବହଇ ॥
ସାଧୁ ଯେ ପର ଦୁଃଖେ ଦୁଃଖୀ । ହୃଦୟ ନ ପାରନ୍ତି ରଖି ॥
ଆପଣେ ହୁଅନ୍ତି ଅନ୍ତର । ହୃଦୟ ଏମନ୍ତ କୋମଳ ॥
ଏଣୁ ସେ ସାଧୁ ଜନଙ୍କର । ହୃଦକୁ ମୋର ନମସ୍କାର ॥
ସୁଜନେ ଏହୁ ରସେ ରସ । ଏ ଭବ ସମୁଦ୍ରେ ନ ଭାସ ॥
ଏ ଦାର୍ଢ୍ୟଭକ୍ତି ରସାମୃତ । ଭକତ ଜନଙ୍କୁ ଏ ହିତ ॥
ଶୁଣନ୍ତେ ସର୍ବ ପାପ ହରେ । କୀର୍ତ୍ତନ କରିଲେ ନ ସରେ ॥
କହଇ ରାମଦାସ ଦ୍ୱିଜ । ଶ୍ରୀସୀତାରାମ ପଦାମ୍ବୁଜ ॥
ବିଶ୍ୱାସ ଅଟେ ମୂଳ ବୀଜ । ଦୀନ ରାମକୁ ଦେନି ଭଜ ॥

ଇତି ଶ୍ରୀଦାର୍ଢ୍ୟଭକ୍ତି ରସାମୃତେ ମନଚୈତନ୍ୟ ସମ୍ବାଦେ
ବୃଷ୍ଟିପ୍ରିୟା ଭକ୍ତିଭାବ ମନଦତ୍ତେ ନାମ
ଷଟ୍ଚତ୍ୱାରିଂଶୋଽଧ୍ୟାୟଃ ।

---

## ସପ୍ତଚତ୍ୱାରିଂଶ ଅଧ୍ୟାୟ
## ମିଶ୍ରବାଣୀ ସମ୍ବାଦ

ନମସ୍ତେ ଶ୍ରୀନନ୍ଦନନ୍ଦନ । ରାଧାବଲ୍ଲଭ ପ୍ରାଣଧନ ॥
ହରି ଚୈତନ୍ୟ ଶିରୋମଣି । କହଇ ସୁଧାସମ ବାଣୀ ॥
ଶୁଣ ହୋ ମନ ମହାରଥୀ । ଏ ବଡ଼ ଅଲୌକିକ କଥା ॥
ଏ କଳିଯୁଗର ଚରିତ । କହିବା ଶୁଣ ଆଚମ୍ବିତ ॥
ସେ ଜୟନଗର ନୃପତି । କହି ନୁହଇ ତାର କୀର୍ତ୍ତି ॥
ସୁବା ହିଁ ଜୟସିଂହ ତହିଁ । ମଞ୍ଚରେ କ୍ଷିତିବନ୍ଦ୍ର ସେହି ॥
ତାର ଭଗିନୀ ପୁଣ୍ୟକଥା । କହି ବସିଲେ ହେବ ପୋଥା ॥

ହେ ମନ ହୋଇ ଶୁଦ୍ଧମନା । ତା ଭଗ୍ନୀକଥା ଶୁଣ କନା ॥
ତାହାର ନାମ ମିତ୍ରବାଣ । ତା କଥା କଥନୀୟ ନୋହ ॥
ଅବଳାକୁଳ ଶିରୋମଣି । ସୁନ୍ଦରୀପଣେ ତାକୁ ଗଣି ॥
ଧନ୍ୟ ସେ ଯୁବତୀ ରତନ । କାମିନୀକୁଳେ ମୋକ୍ଷବାନ ॥
ସାହିତ୍ୟ ସଙ୍ଗୀତ ସର୍ଙ୍ଗିନୀ । ଶ୍ରୀକୃଷ୍ଣ ରସେ ରସକନୀ ॥
ସକଳ ଶାସ୍ତ୍ରେ ସେ ପଣ୍ଡିତା । ଜାଣଇ ପାପ ପୁଣ୍ୟକଥା ॥
ଦାନୀପଣରେ ସେହୁ ଜଣେ । ସେବଇ ସାଧୁଙ୍କ ଚରଣେ ॥
ବୟସ ଦ୍ୱାଦଶ କଶୋରୀ । ସକଳଜନ ମନୋହାରୀ ॥
ଏମନ୍ତ ସେ ବାଳକା କଥା । ଶୁଣ ହେ ମନ ମହାରଥୀ ॥
ଦିନେକ ଏକ ଚିତ୍ରକାର । ଚିତ୍ର ପଟେକ ଧରି କର ॥
ଗୋବନ୍ଦ ରୂପ ବର୍ଣ୍ଣେ ଚିତ୍ତ । କରଣ ଅତ୍ୟନ୍ତ ଲାବଣ୍ୟ ॥
ସେ ଚିତ୍ର ନ ଥିବ ସଂସାରେ । ଦେଖିଲେ ମନ ନେତ୍ର ହରେ ॥
କୋଟି କନ୍ଦର୍ପ ଶୋଭା ତାଳେ । ଲକ୍ଷ୍ୟ ନୋହିବ ପାଦତଳେ ॥
ନୀଳଜୀମୂତ କଳେବର । ରାଜୀବ ଲୋଚନ ସୁନ୍ଦର ॥
ବଙ୍କିମା ଚାହାଁଣି ସୁନ୍ଦର । ଭଙ୍ଗିମା ରଙ୍ଗିମା ଅଧର ॥
ତ୍ରିଭଙ୍ଗ ଛନ୍ଦେ ଛିଡ଼ା ହୋଇ । ବ୍ରହ୍ମାଣ୍ଡ ଶୋଭାରେ ଲୁଚଇ ॥
ମୁରଲୀ ଧରିବା ଚାତୁରୀ । ଯୁବା ପୁରୁଷ ଧୈର୍ଯ୍ୟହରି ॥
କିସ ଉପମା ଦେବା ତହିଁ । ଦର୍ଶନେ ଶିବ ହେବେ ମୋହି ॥
ଏମନ୍ତ ଚିତ୍ରପଟ ଗୋଟି । ମିତ୍ରବାଣଙ୍କ କଲା ଭେଟି ॥
ଦେଖି ଯୁବତୀ ହେଲା ମୋହି । ରହିଲା ଉନମତ୍ତ ହୋଇ ॥
ମନ ନୟନ ହେଲା ବନ୍ଦ । ହୃଦରେ ପଞ୍ଚଶର ବନ୍ଧ ॥
ବଦନୁ ନଇଲା ଉତ୍ତର । କମ୍ପିଲା ସୁରଙ୍ଗ ଅଧର ॥
କାମ ନବମ ଦଶା ଆସି । କାମିନୀ ହୃଦରେ ପ୍ରକାଶି ॥
ଶ୍ରୀକରେ ଚିତ୍ରପଟ ଧରି । ଦାସୀକି ପାଶକୁ ହକାରି ॥
ଦକ୍ଷିଣା ଦିଅ ବୋଲି ତାରେ । କନ୍ୟା ଚଳିଲା ଅନ୍ତପୁରେ ॥

ଏକାନ୍ତ ସ୍ଥାନେ ଯାଇ ବସି । ଆଗେ ରଖିଣ ରୂପରାଶି ॥
ମନରେ କଲାକ ବିଗୁର । ଏ ଯେ ସ୍ୱରୂପ ମନୋହର ॥
ମୋତେ ମିଳିବ ଏହିପର । ଏହା କି କରିବେ ଶ୍ରୀହରି ॥
ଏମନ୍ତ ବୋଲି ଚନ୍ଦ୍ରମୁଖେ । ଚୁମ୍ବନ ଦେଲା ଲକ୍ଷେ ଲକ୍ଷେ ॥
ହୃଦେ ଲଗାଇ ପ୍ରେମ ଭରେ । ବୁଡ଼ିଲା ଆନନ୍ଦ ସାଗରେ ॥
ଅନ୍ନ ଭୋଜନ ହେଲା ବିଷ । ଶୂନ୍ୟ ହୋଇଲା ଦଶଦିଶ ॥
ଯେତେଣେ ଗୃହିଁଲେ ତେତେଣେ ହରି । ଦିଶନ୍ତି ଚଉଦିଗେ ପୂରି ॥
କାମିନୀ ସେହିଁ ଭାବ ଚିନ୍ତି । ନ ଜାଣେ ପ୍ରେମେ ଦିବରାତି ॥
ତାହା ଜାଣିଲେ ଦେବସ୍ୱାମୀ । ଯେ ପ୍ରଭୁ ସର୍ବ ଅନ୍ତର୍ଯାମୀ ॥
ମନମୋହନ ବେଣୁଧର । ଯେ ପ୍ରଭୁ ହଟିଆ ନାଗର ॥
ମାୟା ଗୋପାଳ ରୂପ ହୋଇ । ଭକତ ଭାବେ ଭାବଗ୍ରାହୀ ॥
ବିଜୟ କଲେ ତା ଭୁବନ । ସେ ନାରୀ ଦେଖିଲା ନୟନ ॥
ଅତି ବାଳକ ରୂପଗୋଟି । ଶୋଭରେ ମୋହେ ନବସୃଷ୍ଟି ॥
ରଙ୍ଗ ଅଧରେ ମନ୍ଦ ହସି । ଅଶେଷ ପୀୟୂଷ ପ୍ରକାଶି ॥
ଚରଣେ ବାଜେଣି ନୂପୁର । କଟି ମେଖଳା ମନୋହର ॥
କରେ ମୁରଲୀଗୋଟି ଶୋଭା । ତ୍ରିଭଙ୍ଗ ଛନ୍ଦେ ହେଲେ ଉଭା ॥
ତାହା ଦେଖିଣ ସେ ସୁନ୍ଦରୀ । ହସ୍ତ ବଢ଼ାଇ ଗଲା ଧରି ॥
ଯେ ହରି ସର୍ବ ଶୂନ୍ୟମୟେ । ତାଙ୍କୁ କେ ଧରିବ ଉପାୟେ ॥
ନିଷ୍କାମ ପ୍ରେମ ଯାର ଥିବ । ସେ ବିନା ତାହାଙ୍କୁ ପାଇବ ॥
ଧାଇଁ ଧରନ୍ତେ ଶୁଭ୍ରକେଶୀ । ଶୂନ୍ୟରେ ଶୂନ୍ୟପ୍ରାୟେ ମିଶି ॥
ତାହା ଦେଖିଣ ସେ ତରୁଣୀ । ନିଜ ସ୍ୱାମୀର ପ୍ରାୟ ମଣି ॥
ନିଷ୍କାମ ଧର୍ମେ ମନ ପଶି । ଆପଣେ ବସିଲାକ ରୁଷି ॥
ଦେହ ସଂସାର ପାସୋରିଲା । ମରଣ ପଥ ଆଦୋରିଲା ॥
ଏ ଦେହ ଥାଉ ଅବା ଯାଉ । କି ପ୍ରୟୋଜନ ଅଛି ଆଉ ॥
ଏମନ୍ତ ବୋଲି ସେ ତରୁଣୀ । କରଟେ ଚରଇ ଧରଣୀ ॥

ନୟନ ଜଳେ କଲ ସ୍ନାନ । ବୋଇଲ ଯାଉ ଏ ଜୀବନ ॥
ଏ ଦେହ ସର୍ବସ୍ୱ ତାହାର । ମୋର ତ ନାହିଁ ଅଧିକାର ॥
ଏମନ୍ତ ବୋଲି ଦେହ ଗୋଟି । କମ୍ପି ଉଠିଲା ଦନ୍ତପାଟି ॥
ତା ହୃଦ ଜାଣିଲେ ଗୋବିନ୍ଦ । କାମିନୀ ଭାବେ ହେଲ ବନ୍ଧ ॥
ତତକ୍ଷଣେ କୋଳେ ଧରି ବସି । ତା ଅଙ୍ଗ ଦେଲେକ ଆଉଁଷି ॥
ବୋଇଲେ ତୁ ମୋର ଜୀବନ । କିପାଇଁ କରୁଅଛୁ ମାନ ॥
ଏବେ ମୁଁ ଆୟତ୍ତ ତୋହର । ତୋ ମନ ଯାହା ତାହା କର ॥
ଏମନ୍ତ ବୋଲି ଭଗବାନ । ତା ଗଣ୍ଡେ ଦେଲେ ଚୁମ୍ବଦାନ ॥
ଚିବୁକ ଧରଣ ଶ୍ରୀକର । ବୋଇଲେ ମାଗି ନେନ ବର ॥
ଆମ୍ଭେଟି ବୃନ୍ଦାବନେଶ୍ୱର । ଭକତଜନଙ୍କ ସୋଦର ॥
ତୋ ପ୍ରେମଭାବେ ହେଲୁ ବଶ । ଯେ ଇଚ୍ଛା ମାଗ ତୁ ଅବଶ୍ୟ ॥
ତା ଶୁଣି ଯୁବତୀ ରତନ । ତତକ୍ଷଣେ ଗ୍ରୀଡ଼ ମନ୍ଦ ମାନ ॥
ମସ୍ତକେ କରାଞ୍ଜଳି ଦେଇ । ଅନେକ କହିଲେ ବିନୟି ॥
ତୁ ଯେବେ ବରଦାତା ଅଛୁ । ଭକତ ଭାବେ ଯେବେ ଖଛୁ ॥
ଏ ବାକ୍ୟ ଯେବେ ସତ୍ୟ ତୋର । ତୁହି ହୋଇବୁ ମୋର ବର
ତା ଶୁଣି ବୋଇଲେ ଗୋବିନ୍ଦ । ମୁଁ ଯେ ଅନାଦି ଆଦିକନ୍ଦ ॥
ସଂସାର ମୋର ଖେଳଘର । ମୁଁ ନୋହେ କେଉଁଠାରେ ସ୍ଥିର
ମୋତେ ତୁ ପତି କରି ପାଇ । କି ସୁଖ ପାଇବୁ ରେ ସହି ॥
ଏମନ୍ତ କହି ମନେ ହସି । ତାହା ଜାଣିଲା ଶୁଭ୍ରକେଶୀ ॥
ଶ୍ରୀପାଦପଦ୍ମେ ଦେଇ ହସ୍ତ । ବୋଇଲା ଶୁଣ ପ୍ରାଣନାଥ ॥
ଆହୁଁ ମୁଁ କିଣା ଦାସୀ ତୋର । ତୋ ଇଚ୍ଛା ଯାହା ତାହା କର ॥
ନିଷ୍ଠେ ନିର୍ଦ୍ଦୟ ହେଲେମୋତେ । ଜୀବନ ହାରିବି ସାକ୍ଷାତେ ॥
ଦୟାଂ ତୋହର ହେଲେ ହେଉ । ଏଥେଁ ସଂଶୟ ନାହିଁ ଆଉ ॥
ସିଂହ ଘରଣୀ ଆନ ସ୍ଥିର । ସେବେ କରିବ ଏ ବର୍ବର ॥
ଏମନ୍ତ କହି ଆଲିଙ୍ଗନ । ମୁଖରେ ଦେଲାକ ଚୁମ୍ବନ ॥

ଦେଖ କାମିନୀ ଭାଗ୍ୟବଳ । ହରି ତା ଭାବେ ହେଲେ ଭୋଳ
ଅନେକ କରି କ୍ରୀଡ଼ାରସ । ଅନ୍ତର ହେଲେ ପୀତବାସ ॥
ମନ ତାହାର ପାଶେ ଥୋଇ । ମିଳିଲେ ବୃନ୍ଦାବନେ ଯାଇ ॥
ଦେଖ ସୁମନ ଭାଗ୍ୟ ତାର । ନାହିଁ ନ ଥିବ ଏ ସଂସାର ॥
ଗୋବିନ୍ଦ ଅଙ୍ଗ ସଙ୍ଗ ଭାବ । କୋଟିଏ ଜନ୍ମେ କେ ପାଇବ
ସେ ସଙ୍ଗ ପାଇ ମିର୍ବାଣ । ଆନନ୍ଦ କେ ପାରିବ କହି ॥
ଶୁଣ ସୁମନ ଏବେ ରସ । ଏମନ୍ତେ ନିଶି ହେଲା ଶେଷ ॥
ଗୋବିନ୍ଦ ଭାବ ମନେ ଗୁଣି । ପ୍ରଭାତୁ ଉଠିଲା ତରୁଣୀ ॥
ନବ ସୁରତ ଶ୍ରମଭରେ ବିଜୟ କଲେ ପ୍ରାଙ୍ଗଣରେ ॥
ଏମନ୍ତ ବେଳେ ମହାଦେଈ । ଆସି ପ୍ରବେଶ ହେଲେ ତହିଁ ॥
ଶ୍ରୀଅଙ୍ଗ କଲା ଅନୁମାନ । ଦେଖିଲା ରତି ଚିହ୍ନମାନ ॥
ମନରେ କଲାକ ବିଚାର । ମହତ ସରିଲା ଆମ୍ଭର ॥
କେଉଁ ପୁରୁଷ ସଙ୍ଗ ପାଇ । ବସିଛୁ ଅଶକତ ହୋଇ ॥
କେଶ ବସନ ଅସମ୍ଭାଳ । ପାଟଳ ଦିଶେ ଗଣ୍ଡସ୍ଥଳ ॥
ସିନ୍ଦୂର ଚିତା କପାଳର । ଏ ତ ଦିଶୁଛି ନାରଖାର ॥
ଅଞ୍ଜନରେଖା ନୟନର । କିପାଇଁ ଲଗିଛି ଅଧର ॥
ଚିବୁକେ ପୁଣି ଦନ୍ତଘାତ । ସର୍ବାଙ୍ଗେ କରଜର କ୍ଷତ ॥
ସ୍ତନଯୁଗଳେ ପତ୍ରାବଳି । ନାହିଁ ସେ ମୃଗମଦ କାଳି ॥
କେଉଁ ପୁରୁଷ ଏହା କଲା । ଜଳନ୍ତା ଅନଳେ ଝାସିଲା ॥
କି କର୍ମ କଲୁ ଏହୁ ବାଳୀ । ବଂଶେ ତ ଲଗାଇଲୁ କାଳି ॥
ଏମନ୍ତ କହି ଚଳିଗଲା । ସ୍ୱାମୀ ଛାମୁରେ ଜଣାଇଲା ॥
ଭଗ୍ନୀ ତୋ ହୋଇଲା ଦୂଷିତ । ଏ କଥା ବୁଝ ନରନାଥ ॥
ଦେଖି ଆଇଲି କର୍ମ ଯେତେ । ଭଲ ତ ଦିଶୁନାହିଁ ମୋତେ ॥
ଏହା ଶୁଣି ସେ ନରନାଥ । ଶିରେ କି ପଡ଼ିଲା ପର୍ବତ ॥
ତନୁ କମ୍ପିଲା ଥରହର । କମ୍ପିଲା ସୁରଙ୍ଗ ଅଧର ॥

ଛାଡ଼ି ନିଃଶ୍ୱାସ କରି ଜାତ । ପତ୍ନୀକି ବୋଲେ କହ ସତ ॥
ତା ଶୁଣି କହଇ ସୁନ୍ଦରୀ । ମୁଁ ତ ନୁହଇ ଅନ୍ୟାଗୃହୀ ॥
କହୁଅଛି ମିଛ ସତ କରି । ଏହା ନ ବୁଝ ଦଣ୍ଡଧାରୀ ॥
ସାକ୍ଷାତେ ରତି ରସ ରଙ୍ଗ । ଦେଖି ମୁଁ ଅଛିଲି ନନ୍ଦନ ॥
ତା ଶୁଣି ବୋଲେ ନୃପବର । ଗରଳ ଦେଇ ତାକୁ ମାର ॥
ନ ହେଉ କୁଳକୁ କଳଙ୍କ । ଲଜ୍ଜା ସମୁଦ୍ରୁ ମୋତେ ରଖ ॥
ଏମନ୍ତ ବୋଲି ବେଗକରି । ବିଶ୍ୱାସୀ ଦାସୀକି ହକାରି ॥
କାଳ ଗରଳ ଅଣାଇଲେ । ବ୍ରାହ୍ମଣୀ ହସ୍ତେ ନେଇ ଦେଲେ ॥
ବୋଇଲେ ନୃପତି ଆଦେଶ । ମିତ୍ରବାଞ୍ଛକୁ ଏହି ବିଷ ॥
ଭୋଜନ ସଙ୍ଗତରେ ଦେବ । ଯେବେହି ପ୍ରାଣେ ଭଲେ ଥିବ ॥
ଏ କଥା ହୋଇଲେ ପ୍ରକାଶ । ସମସ୍ତେ ପ୍ରାଣେ ହେବ ନାଶ ॥
ଏମନ୍ତ କହି ଗଲେ ଚଳି । ବ୍ରାହ୍ମଣୀ ମନେ ମନେ ଭାଳି ॥
ସ୍ତ୍ରୀହତ୍ୟା ଯେ ବଡ଼ ଦୋଷ । କେମନ୍ତେ ଦେବ ତାକୁ ବିଷ ॥
ନ ଦେଲେ ନୃପତି ମାରିବ । ଏହା ସେ ବିଧିଲା ଦଇବ ॥
ଏଣୁ ନ ଦେଲେ ତାକୁ ବିଷ । ନୋହିଲେ ପ୍ରାଣେ ହେବ ନାଶ ॥
ଏମନ୍ତ ପାଞ୍ଚି ବିଷ ଭରି । ରାଜା ରାଣୀଙ୍କି ଭୟକରି ॥
ଭୋଜନ ଦ୍ରବ୍ୟମାନଙ୍କରେ । ଭରିଲା ନାନାଦି ପ୍ରକାରେ ॥
ଗୋଦନ୍ତା ଦାରୁମୁଷି ଚୂରି । ମହୁରି ମହାନାଭ ଭରି ॥
କଞ୍ଚା ହେଙ୍ଗୁଳ ହରିତାଳ । ଯେ ବିଷ ଦ୍ରବ୍ୟରେ ପ୍ରବଳ ॥
ସମସ୍ତ ବାଟି ଏକ କରି । ରୋଟି ମିଠାଇ ସଙ୍ଗେ ଭରି ॥
ଯତନ କରି ତା ଥୋଇଲେ । ମିତ୍ରବାଞ୍ଛକୁ ଡକାଇଲେ ॥
ବେଗେ ମଣୋହି ଆସି କର । ବେଳ ଯେ ହେଉଛି ଉଛୁର ॥
ଶୁଣି ଆନନ୍ଦ ମିତ୍ରବାଞ୍ଛ । ସ୍ନାହାନ ଶୁଚିମନ୍ତ ହୋଇ ॥
ଭୋଜନ ମନ୍ଦିରକୁ ଗଲା । ଏକାନ୍ତ ସ୍ଥାନରେ ବସିଲା ॥
ଭୋଜନ ପରିଷନ୍ତେ ଆଣି । ଦେଖି ଚଳିଲେ ରାଜାରାଣୀ ॥

ସୁଦର୍ଶୀ ବସି ବୃନ୍ଦାସନେ । ସ୍ୱାମୀ ସ୍ୱରୂପ ଚନ୍ତି ମନେ ॥
ସେ ଦ୍ରବ୍ୟ କଲା ନିବେଦନ । ଆନନ୍ଦେ କଲାକ ଭୋଜନ ॥
ଗୋବନ୍ଦ କୃପାରୁ ସମସ୍ତ । ଦ୍ରବ୍ୟ ଯେ ହୋଇଲା ଅମୃତ ॥
କାଛୁହିଁ ନୋହିଲା ତାହାର । ଶୁଣ ହେ ମନ ନୃପବର ॥
ଏଥି ଉତ୍ତାରୁ ଦିନ ଶେଷ । ରଜନୀ ହୋଇଲା ପ୍ରବେଶ ॥
ବ୍ରାହ୍ମଣୀ ଚଳିଗଲା ଘରେ । କହିଲା ନୃପତି ଗ୍ରାମୁରେ ॥
ତେତେତିକ ବିଷ ଦେଲା ଖାଇ । କାଛୁ ନୋହିଲା ମିଗ୍‌ବାଣ୍ଡ ॥
ତା ଶୁଣି ରାଜା ଆଚମ୍ଭିତ । କ୍ରୋଧହିଁ ବଢ଼ିଲା ବହୁତ ॥
ଦାସୀ କି ହକାରିଲେ ପାଶ । କହିଲେ ଗୁପତ ବିଶ୍ୱାସ ॥
ରୁଣ୍ଡ ହୋଇବ ଦଶଜଣ । ସହିତେ ପଥର ଘେନିଣ ॥
ଗୁପତ ହୋଇ ରହେ ଯିବ । ସେ ମିଗ୍‌ବାଣ୍ଡ ଶୋଇଥିବ ॥
ତା ପରେ ଛେଚିବ ପଥର । ଯେମନ୍ତେ ଯିବ ପ୍ରାଣ ତାର ॥
ଏମନ୍ତ ନ କଲେ ଅବଶ୍ୟ । ପ୍ରାଣେ ସକଳ ଯିବ ନାଶ ॥
ରାଜା ଏମନ୍ତ ଆଜ୍ଞା ଦେଇ । ବୋଇଲେ ଯାଅ ବେଗ ହୋଇ ॥
ତା ଶୁଣି ଦାସୀଗଣ ଗଲେ । ଅଚଳ ଶିଳ ବହିନେଲେ ॥
ତହିଁ ନିଦ୍ରା ତା ମିଗ୍‌ବାଣ୍ଡ । ତହିଁ ପ୍ରବେଶ ହେଲେ ଯାଇ ॥
ଗୋବନ୍ଦ ପଦ୍ମପାଦେ ଚିତ୍ତ । ଦେଇ ନିଦ୍ରାରେ ବିମୋହିତ ॥
ଏମନ୍ତ ବେଳେ ସେ ପଥରେ । ନିଘାତେ ଛେଚିଲେ ତା ପରେ
ସେ ନାରୀ ଅଙ୍ଗେ ତେତେ ଶିଳ । ପଡ଼ିଲା ପରି ଫୁଲମାଳ ॥
ତୁଳାକୁ ଉଶ୍ୱାସ ହୋଇଲା । ଉପରେ ପାଷାଣ ପଡ଼ିଲା ॥
ପଳାଇଗଲେ ଦାସୀମାନେ । କହିଲେ ରାଜା ସନ୍ନିଧାନେ ॥
ଅଚଳ ଶିଳ ଘେନି ଗଲୁ । ମସ୍ତକ ଉପରେ ଛେଚିଲୁଁ ॥
ପ୍ରାଣ ହାରିଲା ସେ ସୁଦର୍ଶୀ । ଅଇଲୁ ସ୍ତ୍ରୀହତ୍ୟା କରି ॥
ତା ଶୁଣି ନୃପତି ଆନନ୍ଦ । ଏମନ୍ତ ବେଳେ ସେ ଗୋବିନ୍ଦ
ବିଜୟେ ମିଗ୍‌ବାଣ୍ଡ ପାଶ । ସେ ଅନ୍ତର୍ଯ୍ୟାମୀ ପୀତବାସ ॥

ଶ୍ରୀହସ୍ତ ବଢ଼ାଇଣ ଦେଲେ । ପଥର କାଢ଼ି ପକାଇଲେ ॥
ଶ୍ରୀଭୁଜ ଆହାଳଦ ପାଇ । ଉଠି ବସିଲ ମିଶ୍ରବାଈ ॥
ପାଶେ ଦେଖିଲ ପ୍ରାଣନାଥ । ସାଷ୍ଟାଙ୍ଗେ କଲ ଦଣ୍ଡବତ ॥
ଉଠି ଯୋଡ଼ହସ୍ତେ ବେନି କର । ପାଶରେ ଦେଖିଲ ପଥର ॥
ବୋଇଣ ଏ କି ଚମତ୍କାର । ସ୍ୱରୂପ କହ ପ୍ରାଣେଶ୍ୱର ॥
ମୁଁ ଯେବେ ଅପରାଧୀ ତୋର । ମୋ ମୁଣ୍ଡେ ଛେଚ ଏ ପଥର ॥
ଶୁଣି ଗୋବିନ୍ଦ ମନେ ହସି । ପ୍ରିୟାକୁ କୋଳେ ଧରି ବସି ॥
ସକଳ ବୁଝାଇ କହିଲେ । ସେଠାରେ ନିଶି ଶେଷ କଲେ
ଉଠିଣ ଯିବାବେଳେ ହରି । ସେ ନାରୀ ପାଦପଦ୍ମ ଧରି ॥
କହିଲ ବିନୟ କରିଣ । ବୋଇଲ ପ୍ରାଣଧନ ଶୁଣ ॥
ମୋ ସଙ୍ଗେ କଲ ପ୍ରେମ ରତି । ଲୋକେ ହୋଇଲ ଅପକୀର୍ତ୍ତି ॥
ତୁମ୍ଭେ ଯେ କଲ ଏତେ ସରି । କେମନ୍ତେ ଥିବ ଦେହ ଧରି ॥
ତୋ ପରି ପ୍ରଭୁ ପତି ପାଇ । କାହିଁରେ ନୋହିଲି ତ ହିଁ ॥
ଅବଶ୍ୟ ହାରିବି ଜୀବନ । ମୋତେ ପାଶୋର ଜନାର୍ଦ୍ଦନ
ଏମନ୍ତ ଶୁଣି ଦେବ ହରି ପ୍ରିୟାକୁ କୋଳାଗତ କରି ॥
ଶ୍ରୀମୁଖେ ଦେଲେକ ଚୁମ୍ବନ । ବୋଇଲେ ଶୁଣ ପ୍ରାଣଧନ ॥
ମୋ ପରି ସାହା ଥାଉଁ ଥାଉଁ । ତୋର କାହାକୁ ଭୟ ଆଉ ॥
କାଳି ତୁ ନ ବର୍ତ୍ତିବୁ ରାତ୍ରେ । କାଲି ତୁ ବୁଝିବୁ ସାକ୍ଷାତେ ॥
ଏମନ୍ତ କହି ଭଗବାନ । ତତକ୍ଷଣେ ହେଲେ ଅନ୍ତର୍ଦ୍ଧାନ ॥
ସ୍ୱପନେ ଜୟସିଂହ ପାଶେ । ରାତ୍ରେ ମିଳିଲେ ନିଦ୍ରାବଶେ ॥
ବୋଇଲେ ଶୁଣ ରେ ନରେନ୍ଦ୍ର । ଆମ୍ଭେଟି ବୃନ୍ଦାବନଚନ୍ଦ୍ର ॥
ସେ ମୋର ମିଶ୍ରବାଈ ପ୍ରିୟା । ତାର ମୋହର ଏକକାୟା ॥
ତୁ ମୂର୍ଖ ଗର୍ବ କରି ମନେ । ତାହାକୁ ଦଣ୍ଡୁଛୁ କେସନେ ॥
ଆମ୍ଭେ ଯାହାକୁ ସାହା ଥିବୁ । ତୁ ତାକୁ କି କରି ପାରିବୁ ॥
ଆପଣେ ଯିବା ଯିବୁ ନାଶ । ସ୍ୱରୂପ କହିଲୁ ତୋ ପାଶ ॥

ଯେବେ ଜୀବନେ ଆଶା ତୋର । ତା ପାଦପଦ୍ମେ ସେବା କର ॥
ତାକୁ ଖଟାଅ ଆମ୍ଭ ପାଶ । କହି ଚଳିଲେ ପୀତବାସ ॥
ରାଜା ଏମନ୍ତ ଆଜ୍ଞା ପାଇ । ଚମକି ଉଠିଣ ଧାଇଁଲଇ ॥
ପ୍ରଭାତୁ ଉଠିଣ ତୁରିତେ । ପତ୍ନୀକି ଘେନିଣ ସଙ୍ଗତେ ॥
ସେ ମିଗ୍ରବାଣ୍ଡି ପାଶେ ଗଲେ । ଭଗ୍ନୀକି ଅନାଇଣ ଦେଲେ ॥
ଦେଖିଲେ ନବଘନ ମୂର୍ତ୍ତି । ପୂର ତା ମଣ୍ଡୁଅଛି ଜ୍ୟୋତି ॥
ମନମୋହନ ବେଣୁଧର । କୋଟିକନ୍ଦର୍ପ ରୂପ ଯାର ॥
ବିଜୟ ପ୍ରଭୁ ସ୍ୱବଗ୍ରାହୀ । କୋଳେ ବସିଛି ମିଗ୍ରବାଣ୍ଡି ॥
ନୃପତି ଦେଖିଲେ ନୟନ । ହରି ହୋଇଲେ ଅନ୍ତର୍ଦ୍ଧାନ ॥
ତା ଦେଖି ରାଜାରାଣୀ ଭୋଳେ । ପଡ଼ିଲେ ଭଗ୍ନୀ ପାଦତଳେ ॥
ଉଠି କାକୁସ୍ତତର ହୋଇ । ଅନେକ କହିଲେ ବିନୟୀ ॥
ବୋଇଲେ ଦୋଷ କ୍ଷମାକର । ଆମ୍ଭେ ତୋ ଚରଣେ କିଙ୍କର ॥
ତୁ ଏଡ଼େ ପୁଣ୍ୟ ସ୍ତିରୀ ବୋଲି । ମୁଁ ମୂଢ଼ ଜାଣି ତ ନ ଥିଲି ॥
ଯେ ଅପରାଧ କଲି ତୋତେ । ଏ ସବୁ କ୍ଷମା କର ମୋତେ ॥
ତା ଶୁଣି ବୋଲେ ମିଗ୍ରବାଣ୍ଡି । ସ୍ୱାମୀକୁ ଆଣ ମୋର ଯାଇ ॥
ତା ପାଦ ପଦ୍ମେ ସେବା କର । ତୋ କୀର୍ତ୍ତି ମଣ୍ଡୁ ଏ ସଂସାର ॥
ତାହା ଶୁଣିଣ ନୃପରାଣ । ବିଜୟ କଲେ ତତକ୍ଷଣ ॥
ଅନେକ ସଜକରି ସୈନ୍ୟ । ଯହିଁ ବିଜେକ୍ସେ ଭଗବାନ ॥
ଦନ୍ତେ ତୃଣ ମାନ ଧରି । ଗଲେ ପଟୁକା ଆଦି ଭରି ॥
ମସ୍ତକେ କର ଅଛି ଯୋଡ଼ି । ଗୋବିନ୍ଦ ପାଦପଦ୍ମେ ପଡ଼ି ॥
ଅନେକ ସ୍ତୁତିବାକ୍ୟ କହି । ଉଠି ସମ୍ମୁଖରେ ଉଭା ହୋଇ ॥
ମଣ୍ଡିଣ ଦିବ୍ୟ ସୁଖାସନ । ବିଜେ କରାଇ ଭଗବାନ ॥
ଅନେକ ଉତ୍ସବାଦି କରି । ଚଳିଣ ଗଲେ ଦଣ୍ଡଧାରୀ ॥
ଆପଣା ଅନ୍ତଃପୁରଠାରେ । ତୋଳାଇ ଉତ୍ତମ ମନ୍ଦିରେ ॥
ଅମୂଲ୍ୟ ଦେଉଳ ଶୋଭନ । ଅଷ୍ଟରତନେ ସିଂହାସନ ।

କେ କହୁ ସେ ପୁର ଗୃହସ୍ଥ । ହୋଇଣ ସ୍ୱର୍ଗର ପ୍ରାପ୍ତ କର ॥
ଅନେକ ସାଧୁବୃନ୍ଦ ଘେନି । ପ୍ରତିଷ୍ଠା ବିଧାନ କରାଇ ॥
ହୋଇଣ ପରମ ଆନନ୍ଦ । ବିକେ କରାଇଲେ ଗୋବିନ୍ଦ ॥
ଅନେକ ଆକଟ କରାଇ । ତହିଁ ଖଟାଇ ମିରାବାଈ ॥
ଦେହ ଅନ୍ତରେ ସେହୁ ବାମା । ଏବେ ସେ ହୋଇଛୁ ପ୍ରତିମା ॥
ପ୍ରଭୁ ସଙ୍ଗତେ ପୂଜାପାଇ । ତା ଭାଗ୍ୟ କେ ପାରିବ କହି ॥
ଧନ୍ୟ ତା ବଂଶଲୋକ ଯେତେ । ହେବ କା ଭାଗ୍ୟ ଏ ଜଗତେ ॥
ଶୁଣ ହେ ମନ ନୃପନାଥ । ଏ କଳି ଯୁଗର ଚରିତ ॥
ଦେଖ ସେ ପ୍ରଭୁଙ୍କ ମହିମା । ଦେଖ ସେ ଭକତ ଗାରିମା ॥
ଏଣୁ ଭକତ ଭଗବାନ । କେବେ ନୁହନ୍ତି ଭିନ୍ନାଭିନ୍ନ ॥
ଭଣଇ ବିପ୍ର ରାମଦାସ । ମୋ ପ୍ରଭୁ କମଳାବିଳାସ ॥
ସାଧୁଜନଙ୍କ ଶ୍ରୀଚରଣେ । ମୋ ଚିତ୍ତ ରହୁ ଅନୁକ୍ଷଣେ ॥
ଏତିକ ଆଜ୍ଞା ହେଉ ମୋରେ । ମୁଁ ମହାପାପୀ ଏ ସଂସାରେ ॥

ଇତି ଶ୍ରୀଦାର୍ଢ୍ୟଭକ୍ତି ରସାମୃତେ ମନ ଚୈତନ୍ୟ
ସମ୍ବାଦେ ମିରାବାଈ ଦାର୍ଢ୍ୟଭାବ ବର୍ଣ୍ଣନେ
ନାମ ସପ୍ତଚତ୍ୱାରିଂଶୋଽଧ୍ୟାୟଃ ।

---

## ଅଷ୍ଟଚତ୍ୱାରିଂଶ ଅଧ୍ୟାୟ

## ଜ୍ଞାନାନନ୍ଦ ଦାସ ସମ୍ବାଦ

ନମଇଁ ପ୍ରଭୁ ଆଦିକନ୍ଦ । ନମୋ ନମସ୍ତେ ସାଧୁବୃନ୍ଦ ॥
ଏ ତୁମ୍ଭ ମହିମା ଅଶେଷ । ଏଣୁ ଶରଣ ରାମଦାସ ॥
ଏ ଦାର୍ଢ୍ୟଭକ୍ତି ରସ ଯେହୁ । ସମ୍ପୂର୍ଣ୍ଣ କର ଆଜ୍ଞା ହେଉ ॥
କୋଟିଏ କାହିଁରୁ ଅନ୍ତର । ମୋ ଛାର କେତେକ ମାତର ॥
ଯା ତୁମ୍ଭେ କହିବ ପ୍ରମାଣେ । ଲେଖିବା କଥା ମୁହିଁ ଜାଣେ ॥

ଶୁଣ ଚୈତନ୍ୟ ମହାବୀର । କହଇ ବଚନ ଗମ୍ଭୀର ॥
ଶୁଣ ସୁମନ ମହାଜ୍ଞାତା । ଏ ଦାର୍ଢ୍ୟଭକ୍ତ ରସ କଥା ॥
ଦକ୍ଷିଣ ଦେଶ ମଧ୍ୟେ ସାର । ଯେ ଗୋଦାବରୀ ନଦୀ ତୀର ॥
ଗ୍ରାମମାନଙ୍କେ ମୋକ୍ଷସ୍ଥାନ । ନାମ ଯେ ସୁବାହୁ ଶାସନ ॥
ଘର ତାହାର ସେ ଗ୍ରାମରେ । ସାର ଶ୍ରୀବୈଷ୍ଣବ ଜାତରେ ॥
ନାମ ତା ସୁଜ୍ଞାନୀ ଆଗୃହୀ । ଅତି ସୁନ୍ଦର ମହାତେଜ ॥
ଜାଣଇ ସର୍ବ ଶାସ୍ତ୍ରମାନ । କହଇ ମଧୁର ବଚନ ॥
ସକଳ ଜୀବେ ଦୟା ତାର । ଜାଣଇ ଅନିତ୍ୟ ସଂସାର ॥
ଯେତେକ ପୁତ୍ର ଦାରା ଧନ । ଏ ସର୍ବ ମାୟାର ବନ୍ଧନ ॥
କେହ୍ନ କାହାର ନୋହେ ସଙ୍ଗ । ଯେସନେ ଜଳଧି ତରଙ୍ଗ ॥
କେବଳ ଯେତେ ଦିନ ଯାଏ । ଦେହେ ସମର୍ଥପଣ ଥାଏ ॥
ଅରଜ ପାରୁଥାଇ ବିତ୍ତ । ସବୁରି ଉପରେ ସାମନ୍ତ ॥
ଯେବେ ହୁଅଇ ବଳ ହାନି । ତେବେ କେ ନ ପାରଇ ଚିହ୍ନି ॥
ଧନହିଁ ଅରଜ ନ ପାରି । ସମସ୍ତେ ହୁଅନ୍ତି ବଇରୀ ॥
କେବଳ ମିଥ୍ୟା ଲାଳସାରେ । ଜୀବନ ବନ୍ଦୀ ଏ ସଂସାରେ ॥
ଏମନ୍ତ ବୋଲି ତାର ଚିତ୍ତେ । ଶ୍ରୀରାମ ଭଜୁଥାଇ ନିତ୍ୟେ ॥
ଜୀବ ଆତ୍ମାର ମୋକ୍ଷଦ୍ୱାର । ଜାଣଇ ନାମ ଏକାକ୍ଷର ॥
ଆଉ ଯେତେକ ଧର୍ମ କର୍ମ । ଜୀବ ଆତ୍ମାର ସିନା ଭ୍ରମ ॥
ଯନ୍ତ୍ରଣା ପଥ ନୋହେ ଦୂର । କର୍ମ ଭୁଞ୍ଜିବା ମୂଳ ତାର ॥
କେବଳ ରାମନାମ ଗୋଟି । କର୍ମ ବନ୍ଧନ ପାରେ କାଟି ॥
ସାଧୁ ସଙ୍ଗେ ଯେ କରେ ଭାବ । ସେ ଯେ ନଦେଖେ ପୁଣି ଭବ ॥
ଅନ୍ୟାନ୍ୟ ଯେତେ କର୍ମମାନ । କେବଳ କର୍ମର ବନ୍ଧନ ॥
ଏମନ୍ତ ଜାଣି ତାର ମନେ । ନାମ ଭଜଇ ପ୍ରତିଦିନେ ॥
ଗୃହେ ଗୃହସ୍ଥ ହୋଇଥାଇ । ଗୃହେ ତା ମନ ନ ପଶଇ ॥
ପତ୍ନୀ ତା ଅତ୍ୟନ୍ତ ସୁନ୍ଦରୀ । ରମ୍ଭା ମେନକା ନୋହେ ସରି ॥

ନାମ ତାହାର ଚମ୍ପାବତୀ । ସ୍ୱାମୀ ସେବାରେ ଥାଇ ମତି ॥
ବେନି କୁମର ଏକ ଝିଅ । ଆବର ଛନ୍ତି ପିତା ମାତା ॥
ବନ୍ଧୁବାନ୍ଧବ ସହୋଦର । ଧନହିଁ ଅଛଇ ଅପାର ॥
ଏଥକୁ ନ କରେଣ ଆଶ । ଗ୍ରୁଡ଼ିଲ ଯେସନ୍ତେ ଛଡ଼ାପୁଷ୍ପ ॥
ବଇକୁଣ୍ଠପଦ ପ୍ରାପ୍ତ କରି । ସର୍ବ ବିଷୟ ପରିହରି ॥
ନିର୍ମୋହ ନିଷ୍କାମ ଯେ ଧର୍ମ । ବାଞ୍ଛିତ କଲା ଯଥା କର୍ମ ॥
ଗୋଧଡ଼ି ଧର୍ମ ଆଶ୍ରେ କରି । ଜ୍ଞାନ ଗୋଧଡ଼ି ଖୋଳ ଧରି ॥
ଅଶେଷ ତୀର୍ଥମାନ ଫେରି । ଅନେକ ସାଧୁସଙ୍ଗ କରି ॥
ଅନେକ ପ୍ରଭୁ ରୂପମାନ । ବୁଲି ସେ କଲା ଦରଶନ ॥
କେବଳ ଆତ୍ମରରେ ଥାଇ । ଯହିଁ ଯା ମିଳି ତାହା ଖାଇ ॥
କାହିଁ କରଇ ଉପବାସ । କାହିଁ ବା ଫଳ ମୂଳ ଗ୍ରାସ ॥
ଏଥକୁ ଶୋଚନା ନ କରି । କେବଳ ଭଜୁଥାଇ ହରି ॥
ଏମନ୍ତେ ଗଲା କେତେ ଦିନ । ବୁଲି ସକଳ ତୀର୍ଥମାନ ॥
ଅତି ଆନନ୍ଦ ହୋଇ ମାନେ । ପ୍ରବେଶ ହେଲା ବୃନ୍ଦାବନେ ॥
ଯହିଁ ବା ପୁଣ୍ୟସ୍ଥାନ ଯେତେ । ବୁଲି ଦେଖିଲା ବିଧିମତେ ॥
ଯମୁନା ନଦୀ ବଂଶୀବଟ । କଦମ୍ବ କାଳିନ୍ଦୀର ତଟ ॥
ଶ୍ରୀରାଧାକୁଣ୍ଡ ଶ୍ୟାମକୁଣ୍ଡ । ବୁଡ଼ାଇ ସ୍ଥାନେ ସ୍ଥାନେ ମୁଣ୍ଡ ॥
କେଳି କଦମ୍ବ କୁଞ୍ଜଲତା । ଯହିଁ ସେବନ୍ତି ଉଦ୍ଧବ ରେତା ॥
ରାସସ୍ଥଳୀ ଯେ ଆଦିକରି । ଲୋକେ ଯାଚନ୍ତି ମଧୁକରି ॥
ଦ୍ୱାଦଶ ବୃନ୍ଦାବନ ସୀମା । ସମସ୍ତ କରି ପରିକ୍ରମା ॥
ବୈଷ୍ଣବ ମଠ ଆଦି ଯେତେ । ବୁଲି ଦେଖିଲା ବୁଦ୍ଧିମତେ ॥
ଲେଉଟି ଯାଉ ବଂଶୀଧର । ଯେ ପ୍ରଭୁ ତ୍ରୈଲୋକ୍ୟଈଶ୍ୱର ॥
ମଦନମୋହନ ମୁରାରି । ଶ୍ୟାମସୁନ୍ଦର ଦଇତ୍ୟାରି ॥
ଜଗଜ୍ଜୀବନ ଦାଶରଥି । ରାଧାବଲ୍ଲଭ ପ୍ରାଣପତି ॥
ମହାମହିମା ମହାମେରୁ । ଭକତବାଞ୍ଛା କଳ୍ପତରୁ ॥

ତାହାଙ୍କୁ ଦରଶନ କଲେ । ଭିକ୍ଷାରଅର୍ଥେ ଚଳିଗଲେ ॥
ମାଗିଲେ ଭିକ୍ଷାପାତ୍ରଧରି । ଲୋକେ ଯାଚିଲେ ମଧୁକରି ॥
ଭକ୍ଷଣ କରୁ କରୁ ତୁଣ୍ଡେ । ତୁଣ୍ଡୁ କାଢ଼ଣ ଦ୍ୟନ୍ତ ଖଣ୍ଡେ ॥
ତା ଦେଖି ସେ ଜନଗୋଧଡ଼ି । ମନେ ପାଇଲେ ଲଜ୍ଜା ବଡ଼ି ॥
ବୋଇଲେ ଆରେ ନଷ୍ଟମାନେ । ଉଚ୍ଛିଷ୍ଟ ଯାଚୁଛ କେସନେ ॥
ଆମ୍ଭେ ଆଗୃହି ଶୁଦ୍ଧ କୁଳ । ନ ଛୁଉଁ ପରହସ୍ତ ଜଳ ॥
ଉଚ୍ଛିଷ୍ଟଭକ୍ଷିବୁଁ କେମନ୍ତେ । ଏହା ତ ଯାଚୁଅଛ ମୋତେ ॥
ନଷ୍ଟେ ଜାଣିଲ ଏ ଭୁବନ । ମଧ୍ୟରେ ଅଛ ଯେତେ ଜନ ॥
ସର୍ବେ ଅଜ୍ଞାନୀ ଦୁରାଚାରୀ । ସୁଦସ୍ୟା ନାହିଁ ବା ତୁମ୍ଭର ॥
ତା ଶୁଣି ବ୍ରଜବାସୀମାନେ । ଗୃହିଁଲେ କର୍କଶ ନୟନେ ॥
ବୋଇଲେ ଶୁଣ ହେ ଗୋଧଡ଼ି । ଆମ୍ଭହୁଁ ଆଗୃହି ତୁ ବଡ଼ି ॥
ଏ ବ୍ରଜ ଭୂମିର ମାହାତ୍ମ୍ୟ । ତୁ କି ଜାଣିମା ହେବୁ କ୍ଷମ ॥
ଯେ ତୋର ଜନ୍ମଦାତା ଗୁରୁ । ଆମ୍ଭର ଜନ୍ମ ଯାହାଠାରୁ ॥
ସେ ପୁଣି ଦେହଧାରୀ ହେବ । ଏ ବ୍ରଜଭୂମିକୁ ଆସିବ ॥
କପାଳେ କରପଦ୍ମ ଯୋଡ଼ି । ନଷ୍ଟେ ଚରଣ ତଳେ ପଡ଼ି ॥
ମାଗିଲେ ଭିକ୍ଷାପାତ୍ର ଧରି । କାହୁଁ ପାଇବେ ମଧୁକରୀ ॥
ତୁ ପୁଣି ଆସି ଏ ଭୁବନ । କହୁଛୁ ଆମ୍ଭର ବଧାନ ॥
ଜାଣିଲୁ ତୁ ଆଗୃହୀ ପୁଅ । ଏ ବ୍ରଜଭୂମି ଛାଡ଼ ଯାଅ ॥
ଏଥି ତୁ ଥିଲେ ହେବୁ ନାଶ । କ୍ଷୁଧାରେ ମରିବୁ ଅବଶ୍ୟ ॥
ତା ଶୁଣି ସେ ଜନଗୋଧଡ଼ି । ଶିରେ କି ବଜ୍ର ଆସି ପଡ଼ି ॥
ମନେ ପାଇଲେ ବଡ଼ ତାପ । ହୃଦରେ ଉଠଇ ସନ୍ତାପ ॥
ବୋଇଲେ ମରିବ ଅବଶ୍ୟ । ଏ ଭିକ୍ଷାପାତ୍ରେ କାର୍ଯ୍ୟ କିସ ॥
ଏମନ୍ତ ବୋଲି ଗଲେ ଉଠି । ପ୍ରଭୁ ସମ୍ମୁଖରେ ଯାଇ ଭେଟି ॥
ସାଷ୍ଟାଙ୍ଗେ ଦଣ୍ଡବତ ହୋଇ । ଉଠି କପାଳେ କର ଦେଇ ॥
ବୋଇଲେ ନମୋ ବଂଶୀପାଣି । ଅଶେଷ ବ୍ରହ୍ମାଣ୍ଡ କାରିଣୀ ॥

ଅଶେଷ ଜୀବର କରତା । ପ୍ରାଣୀଙ୍କ ଭକ୍ତି ମୁକ୍ତିଦାତା ॥
ସକଳଭୂତେ ବାସ ତୋର । ଜଗତ ତୋହର ଉଦର ॥
ସର୍ବବ୍ୟାପକ ଭଗବାନ । କେ ଜାଣେ ତୋର ବର୍ଣ୍ଣିଶେଷ ॥
କେବଳ ଏ ତୋର ସଂସାର । ପାଳିବା ଅର୍ଥେ ବିଶ୍ୱମ୍ଭର ॥
ଅନେକ ଅବତାର ହୋଇ । ଜଗତ ରଖୁ ଖବରାହୀ ॥
ମତ୍ସ୍ୟ କଚ୍ଛପ ଆଦିକରି । ବରାହ ଯେ ନରକେଶରୀ ॥
ବାମନ ପର୍ଶୁରାମ ରୂପ । ଶ୍ରୀରାମ ଶ୍ରୀକୃଷ୍ଣ ସ୍ୱରୂପ ॥
ବୌଦ୍ଧ କଲ୍କି ରୂପ ଧରି । ଜଗତେ ନାନା କ୍ରୀଡ଼ା କରି ॥
ଦୁଷ୍ଟ ନିବାରି ଶିଷ୍ଟ ପାଳୁ । ତୁ ନାଥ ପରମଦୟାଳୁ ॥
ତୋର ମହିମା ଗୁଣ ଯେତେ । କେ ଜାଣି ପାରିବ ଜଗତେ ॥
ବ୍ରହ୍ମା ଶଙ୍କର ପୁରନ୍ଦର । ନାଗେନ୍ଦ୍ର ଚନ୍ଦ୍ର ଦିବାକର ॥
ଶେଷ ଶାରଦା ଆଦିକରି । ଅନେକ ଯୁଗ ପଥ ହେରି ॥
ତୋ ମାୟା ନ ଜାଣି କଷ୍ଟେ । ଭ୍ରମୁ ଅଛନ୍ତି ଏ ଜଗତେ ॥
ମୁଁ ପୁଣି କେତେହେଁ ମାତର । ଜାଣିବି ମହିମା ତୁମ୍ଭର ॥
ନା ଜାଣି ଜଗତେ ଭ୍ରମୁଛି । ଏଣୁ ଅଜ୍ଞାନେ ମୁହିଁ ପୁଛି ॥
ତୁମ୍ଭେ ସଂସାର ଅନ୍ତ କରି । ବ୍ରହ୍ମ କ୍ଷତ୍ରିୟ ଆଦି ଗୃହି ॥
ଅପରେ ଯେତେ ଜାତି ଛନ୍ତି । ହେ ଯାହା କୁଳାଗ୍ରେରେ ଥାନ୍ତି ॥
ମୁହିଁ କି ଏଥିରୁ ବାହାର । ଏ କଥା ବୁଝ ବେଣୁଧର ॥
ଆଗୃସିକୁଳେ ଜନ୍ମ ଦେଲୁ । ଏବେ ଉଚ୍ଛିଷ୍ଟ ଭକ୍ଷ ବୋଲୁ ॥
ଏ କଥା ଅଟଇ କେମନ୍ତ । ସଂଶୟ ଛେଦ ଗୋପୀନାଥ ॥
ନୋହିଲେ ମରିବି ଅବଶ୍ୟ । ଲଗୁ ଏ ଜୀବହତ୍ୟା ଦୋଷ ॥
ଏମନ୍ତ କାଷ୍ଟୁ କରି ମନେ । ଶୋଇଲା ବିଭୂତି ଆସନେ ॥
ଚନ୍ତ୍ରିଣ ଉଗୋବିନ୍ଦ ପୟର । ଅନ୍ନ ଭୋଜନ କଲା ଦୂର ॥
କେଣିକ ପାଦ ନ ଗୃଲିଲ । ମରଣ ପଥ ଆବୋରିଲ ॥
ତାହା ଜାଣିଲେ ଦେବସ୍ୱାମୀ । ଯେ ପ୍ରଭୁ ସର୍ବ ଅନ୍ତର୍ଯ୍ୟାମୀ ॥

ଭକତ ଆତଙ୍କ କମ୍ପିତେ । ସନ୍ଧି ନ ପାରି କଦାଚତେ ॥
ରଜନୀ ଅଷ୍ଟ ଅର୍ଦ୍ଧ ହୋଇ । ସେହ୍ନ ସମୟେ ଭବଗ୍ରାହୀ ॥
ଶ୍ରୀବଇଷ୍ଣବ ରୂପ ଧରି । କେ କହୁ ଶୋଭାର ମାଧୁରୀ ॥
ଊର୍ଦ୍ଧ୍ୱ ପୁଣ୍ଡ୍ର ଯେ ଭାଲପଟ୍ଟ । ଶୁଭ୍ର ଦିଶଇ ଝଟ ଝଟ ॥
ମଧେ ହାରିଦ୍ର୍ୟ ଶିଖା ଶୋଭା । ଦିଶଇ ଯେସନ୍ତେ ହେମପ୍ରଭା ॥
ଶ୍ରୀଭୁଜେ ଶଙ୍ଖ ଚକ୍ର ଚିହ୍ନ । ଫୁଟି ଦିଶଇ ଭିନ୍ନ ଭିନ୍ନ ॥
ଗଳେ ପୁଷ୍କର ଜ୍ୟୋତିମାଳ । ହୃଦପଦ୍ମର ମଧେ ଲୁଳ ॥
କଟିରେ ଶୋହେ ପୀତାମ୍ବର । ବେଢ଼ାଇ ଦେଇ ଦାମୋଦର ॥
ପାଦରେ ସୁବର୍ଣ୍ଣ କଠାଉ । ଚଳନ୍ତେ ଦିଶେ ଦାଉ ଦାଉ ॥
ମଉଳ ପଟ୍ଟେ ଚୂଟି କରି । ପବନେ ଉଡ଼େ କେରି କେରି
ମହାତପସ୍ୱୀଜନ ପ୍ରାପ୍ୟ । ଅଙ୍ଗ ଦିଶଇ ଜ୍ୟୋତିର୍ମୟ ॥
ଏମନ୍ତ ବେଶେ ବନମାଳୀ । ଶ୍ରୀହସ୍ତେ ସୁବର୍ଣ୍ଣର ଥାଳୀ ॥
ତହିଁ ଗରମ ଚେଟି ଭରି । ଘୃତ ନବାତ ଅଷ୍ଟ ପୂରି ॥
ମୁଗ ତଉଣ ସଙ୍ଗେ ଦଧି । ଧରି ପ୍ରବେଶ ଦୟାନିଧି ॥
ସେ ଜ୍ଞାନାନନ୍ଦ ଦାସେ ଶୋଇ । ଅଛନ୍ତି କଷ୍ଟ ଚିନ୍ତା ନାହିଁ ॥
ଏମନ୍ତ ବେଳେ ଦେବ ହରି । ଡାକିଲେ ଡାକ ଗୋଠା ଚୂରି ॥
ଉଠ ହେ ଜ୍ଞାନାନନ୍ଦ ଦାସେ । କିମ୍ପା ଶୋଇଛ ଉପବାସେ ॥
ଆମ୍ଭେ ତୋହର କୁଳ ଇଷ୍ଟ । ଡାକୁଛୁଁ ବେଗ ହୋଇ ଉଠ ॥
ତା ଶୁଣି ଜ୍ଞାନାନନ୍ଦ ଦାସେ । ଉଠି ଚାହିଁଲେ ଚଉପାଶେ ॥
ଦେଖିଲେ ବଇଷ୍ଣବ ମୂର୍ତ୍ତି । ଉଠି ପ୍ରଣାମ କଲା ଧାତ ॥
କାକୁସ୍ଥ ହୋଇ ପଚାରନ୍ତି । କିମ୍ପା ବଜୟ ଅର୍ଦ୍ଧରାତ୍ରି ॥
ଶୁଣି ବୋଇଲେ ପୀତବାସ । ଏ ବୃନ୍ଦାବନେ ଆମ୍ଭ ବାସ ॥
ଶୁଣିଲୁ ଜ୍ଞାନାନନ୍ଦ ଦାସେ । ଚାରି ଦିନର ଉପବାସେ ॥
ଶୟନ କରିଣ ଅଛନ୍ତି । ଏଣୁ ବ୍ୟାକୁଳ ଆମ୍ଭ ମତି ॥
ଅଇଲୁ ଭକ୍ଷଜଳ ଧରି । ବସିଣ ଭୁଞ୍ଜ ବେଗ କରି ॥

ତୋ ମନେ ସଂଶୟ ନ କର । ଆମ୍ଭେ ଯେ ବୁଲଗୁଛୁ ତୋର ॥
ଏମନ୍ତ ବୋଲି ଝେଟି ଥାଳ । ଥୋଇ ଜାଳିଲେ ଦୀପାବଳ ॥
ତା ଦେଖି ଜ୍ଞାନାନନ୍ଦ ଦାସ । ମନରେ ହୋଇଣ ହରଷ ॥
ଚାହିଁଲେ ଶ୍ରୀକୃଷ୍ଣଙ୍କ ଚିହ୍ନ । ଆନନ୍ଦେ କଲେକ ଭୋଜନ ॥
ଉଠି ଶ ମୁଖ ହସ୍ତ ଧୋଇ । ବୋଇଲେ ଶୁଣିମା ଗୋସାଇଁ ॥
ଏ ପୁରେ ଉଚ୍ଛିଷ୍ଟ ଭୋଜନ । କରନ୍ତି ସର୍ବ ଲୋକମାନ ॥
ଏ କଥା ଅଟଇ କେମନ୍ତ । ଏଣେ ସନ୍ଦେହ ମୋର ଚିତ୍ତ ॥
ତାହା ଶୁଣିଣ ଆଦିକନ୍ଦ । ବୋଇଲେ ଶୁଣ ଜ୍ଞାନାନନ୍ଦ ॥
ଏ କ୍ଷେତ୍ର ମହାତ୍ମ ଯାହା । ଜାଣନ୍ତି ପାର୍ବତୀଙ୍କ ନାହା ॥
ଧାତାକୁ ନୁହଇ ଗୋଚର । ଅନ୍ୟ କହିବା ଶକ୍ତି କାର ॥
କାଲି ମୈଛିବ ବେଳେ ଆସ । ଫିଟିବ ଏଥିର ସନ୍ଦେଶ ॥
ଏମନ୍ତ ବୋଲି ବନମାଳୀ । ସୁବର୍ଣ୍ଣ ଥାଳି ଧରି ଚଳି ॥
ତହୁଁ ହୋଇଲେ ଅନ୍ତର୍ଦ୍ଧାନ । ଶୁଣ ହେ ସୁମନ ସଜନ ॥
ସେ ଯେ ଗୋଧଡ଼ି ମହାଜ୍ଞାନୀ । ପ୍ରଭୁଙ୍କୁ ନ ପାରିଲ ଚିହ୍ନି ॥
ଯା ମାୟା ଦେବେ ଅଗୋଚର । କାହୁଁ ଜାଣିବ ନର ଛାର ॥
ମନୁଷ୍ୟ ପ୍ରାୟେ ତାକୁ ମଣି । ଶୟନ କଲେକ ରଜନୀ ॥
ଭଜଣ ରାମ କୃଷ୍ଣ ହରି । ପ୍ରଭାତୁଁ ଉଠି ସ୍ନାନ ସାରି ॥
ମାଳା ତିଳକ ଆଦି ଯେତେ । ମଣ୍ଡି ହେଲେ ସେ ବିଧିମତେ ॥
ଶିରେ ଡୋରିଆ ଗଦି ଜାଣ । ଅଙ୍ଗେ ଗୋଧଡ଼ି ଆଭରଣ ॥
ହସ୍ତରେ ଦଣ୍ଡ କମଣ୍ଡଳ । ପ୍ରବେଶ ଗୋବିନ୍ଦଙ୍କ ଆଳ ॥
ତହିଁ ହେଉଛି ମହୋଛବ । କେ ତାହା ବଚନେ କହିବ ॥
ଅନେକ ସାଧୁବୃନ୍ଦ ଦାସ । ବିପ୍ର ବୈଷ୍ଣବ ଯେ ସନ୍ନ୍ୟାସ ॥
ଯୋଗୀ ଜଙ୍ଗମ ବ୍ରହ୍ମଚାରୀ । ଯେ ଦୁଃଖୀ ଦରିଦ୍ର ଭିକାରୀ ॥
ଅପରେ ଯେତେ ଜାତିମାନ । ସମସ୍ତେ କରନ୍ତି ଭୋଜନ ॥
ପ୍ରସାଦ ପରଷନ୍ତି ଆଣି । ଭୁଞ୍ଜନ୍ତି ପୁରୁଷ ତରୁଣୀ ॥

ଶ୍ରୀହସ୍ତେ ବେଣୁ ଗୋଟି ଧରି । ମଧ୍ୟେ ବଜାସ୍ତ୍ର ନରହରି ॥
ହୋଇ ଗୋପାଳ ବାଳମୂର୍ତ୍ତି । ସବୁ ଚରଣ୍ଟ କରୁଛନ୍ତି ॥
କେ କହ୍ନୁ ସେଠାରୁ ଆନନ୍ଦ । ତହିଁ ପ୍ରବେଶ ଜ୍ଞାନାନନ୍ଦ ॥
ସଭାକୁ ଅନାଇଣ ଦେଲେ । ଗୋବିନ୍ଦ ମାୟା ଭିଆଇଲେ ॥
ସର୍ବେ ଦିଶନ୍ତି ଚତୁର୍ଭୁଜ । ଶ୍ରୀକରେ ଶଙ୍ଖ ଚକ୍ର ତେଜ ॥
ନର ସ୍ୱରୂପ କେହି ନୋହେ । ସର୍ବେ ଦିଶନ୍ତି ବିଷ୍ଣୁ ପ୍ରାୟେ ॥
ଭୋଜନ କରୁଛନ୍ତି ବସି । ଏକୁ ଆରେକ ମିଶାମିଶି ॥
କେ କାହା କରେ ବୋଟି ଧରି । ଦେଇଅଛଇ ମୁଖେ ଭରି ॥
କାହାକୁ କେହ୍ନୁ ହସ୍ତ ପାତି । କେ କାହା ମୁଖରୁ ଛଡ଼ାନ୍ତି ॥
କେ କାହା ମୁଖେ ହସ୍ତ କରି । କହନ୍ତି ଦିଅ ମଧୁକେରି ॥
କେ ବୋଲେ ମୋରେଦୟା ବହ । ଅଧରାମୃତ କିଛି ଦିଅ ॥
କେ ବୋଲେ ନୁହସି ଦାରୁଣ । ମୋହର ଭାଗ୍ୟ କାହିଁ ପୁଣ ॥
ଏମନ୍ତ ଭାବ ଲଗିଅଛି । ତାହା ଦେଖନ୍ତି ଶିବାଦ୍ରି ॥
ଶ୍ରୀହସ୍ତ ପ୍ରସାଦ ବହନ । ବୁଲି ମାଗନ୍ତି ସ୍ଥାନ ସ୍ଥାନ ॥
ତାହା ଦେଖିଣ ସଭାଜନ । କହନ୍ତି ନାରଣ ବଚନ ॥
ଲୁଣ୍ଡିରୁ କାଢ଼ିଣ କାଞ୍ଚିତେ । ଦିଅନ୍ତି ଗୋବିନ୍ଦଙ୍କ ହସ୍ତେ ॥
ତାହା ପାଇଣ ଭବତ୍ରାହ୍ମୀ । ଆନନ୍ଦ କେ ପାରିବ କହି ॥
ଦେଖିଣ ସେ ଜ୍ଞାନଗୋଧଡ଼ି । କର ଯୁଗଳ ଶିରେ ଯୋଡ଼ି ॥
ବିଚାର କଲା ମନେ ତାର । ବୋଇଲା ଏ କି ଚମତ୍କାର ॥
ସର୍ବେ ଦିଶନ୍ତି ଚତୁର୍ଭୁଜ । କେବଳ ବିଷ୍ଣୁମୟ ତେଜ ॥
ମଧ୍ୟେ ବଜାସ୍ତ୍ର ବେଣୁଧର । ଦିଶନ୍ତି ମନୁଷ୍ୟ ଆକାର ॥
ଏ ନିଶ୍ଚେ ପ୍ରଭୁ ଗୋପୀନାଥ । ଆନର ନୋହେ ଏ ଚରିତ ॥
ମୋ ଗର୍ବ ଗଞ୍ଜନ ନିମନ୍ତେ । ଏ ଲୀଳା ଦେଖାଇଲେମୋତେ ॥
ମୁଁ ମୂଢ଼ ମନ୍ଦକୃତ୍ୟ କଲି । ପ୍ରଭୁ ମହିମା ନ ଜାଣିଲି ॥
ଟଙ୍କ ଯେ କଲି ମୋ'ର ମନେ । କେ ମୋତେ ରଖି ନିଭୁବନେ ॥

ଏମନ୍ତ ସ୍ତବ ସୂତ ଭଣି । ବୋଇଲେ ନମୋ ଚକ୍ରପାଣି ॥
ସକଳ ଜୀବେ ପଡ଼ଦାତା । ଏଣୁ ତୁ ସର୍ବଜନ ପିତା ॥
ଏଥୁଁ ମୁଁ ନୁହଇ ଅନ୍ତର । ମୋ ଅପରାଧ କ୍ଷମାକର ॥
ଏମନ୍ତ ବୋଲି ପାଦେ ପଡ଼ି । ଉଠି କପାଳେ କରଯୋଡ଼ି ॥
ବୋଇଲେ ଦାଅ ମଧୁକେଶ । ସବୁ ଜାଣିଲି ଦେବ ହରି ॥
ଏ ବୃନ୍ଦାବନ ମଧ୍ୟଗତେ । ଅଛନ୍ତି ଦେହ ଧରି ଯେତେ ॥
ମନୁଷ୍ୟ ଆଦି ପଶୁଗଣେ । କୀଟ ପତଙ୍ଗ ତରୁ ତୃଣେ ॥
ଏ ସର୍ବ ତୋହର ଶରୀର । ତୁ ଅଛୁ ଅନ୍ତର ବାହାର ॥
ଏଥେ ସନ୍ଦେହ କିଛି ନାହିଁ । ଏବେ ଜାଣିଲି ଭବଗ୍ରାହୀ ॥
ଏମନ୍ତ ବୋଲି ସ୍ତବଭରେ । ବେନି ନୟନୁ ନୀର ଝରେ ॥
ପ୍ରେମ ପୁଲକ ହେଲା କାୟେ । କଦମ୍ବ କୋରକ ପରାୟେ ॥
କଣ୍ଠ ହୋଇଲା ଗଦ ଗଦ । କାହିଁ ସ୍ଫୁରିଲା କେତେ ପଦ ॥
ଆନନ୍ଦେ କୃତ କୃତ୍ୟ କରି । ମାଗିଲେ ଦାଅ ମଧୁକେଶ ॥
ଅନାଇ ଦେଲେ ଆଦିକନ୍ଦ । ସ୍ତବେ ବୁଡ଼ିଲେ ଜ୍ଞାନାନନ୍ଦ ॥
ବୋଇଲେ ମସ୍ତକଲ ମୁହିଁ । ଶୁଣ ହେ ମନ ନୃପସାଇଁ ॥
ସେ ଦିନୁ ସେ ଜ୍ଞାନଗୋଧଡ଼ି । ନ ଗଲେ ବୃନ୍ଦାବନ ଛାଡ଼ି ॥
ମନ ବଚନ କର୍ତ୍ତବ୍ୟରେ । ପୂଜଣ ଗୋବିନ୍ଦ ପଦ୍ମରେ ॥
ତହିଁ ରହିଲେ କୁଟୀ କରି । ଭଜନ ଗୋଟି ମୂଳ କରି ॥
ଦେହାନ୍ତେ ପାଇଲେ କି ଗତି । ତାହା ଜାଣନ୍ତି ରାଧାପତି ॥
ମୁଁ ତାହା ନ ପାରଇ ଜାଣି । ଶୁଣ ଇନ୍ଦ୍ରଦ୍ୟୁମ୍ନ ଚୂଡ଼ାମଣି ॥
ଏ ଦାର୍ଢ୍ୟଭକ୍ତି ରସାମୃତ । କେବଳ ଶ୍ରବଣେ ଅମୃତ ॥
ଚରଣ ବପ୍ର ରାମଦାସ । ଯେ ପ୍ରଭୁ କମଳାବିଳାସ ॥
ଯେ ବୃନ୍ଦାବନ ଭକ୍ତବୃନ୍ଦ । ତାଙ୍କ ଚରଣ ଅରବିନ୍ଦ ॥
ମଧୁ ରସକୁ କରି ଆଶ । ମୋ ମନଭୃଙ୍ଗ କରୁ ଗ୍ରାସ ॥

ଇତି ଶ୍ରୀ ଦାର୍ଢ୍ୟଭକ୍ତି ରସାମୃତେ ମନ ଚୈତନ୍ୟ ସମ୍ବାଦେ
ଜ୍ଞାନାନନ୍ଦ ଦାସ କଥା ବର୍ଣ୍ଣନେ ନାମ
ଅଷ୍ଟଚତ୍ୱାରିଂଶୋଽଧ୍ୟାୟଃ ।

——

## ଊନପଞ୍ଚାଶତ୍ ଅଧ୍ୟାୟ
## ଆନନ୍ଦା ଶବର ସମ୍ବାଦ

ନମସ୍ତେ ପ୍ରଭୁ ରଘୁନାଥ । କାଣ୍ଡ କୋଦଣ୍ଡ ବେନିହସ୍ତ ॥
କୌଶଲ୍ୟା ଦେବୀଙ୍କ ନନ୍ଦନ । ଅଶେଷ ମୁନିଙ୍କ ବନ୍ଦନ ॥
ତେଣୁ ଶରଣ ବପ୍ର ରାମ । ପୂରାଅ ମୋର ମନସ୍କାମ ॥
ପୁଣି ଚୈତନ୍ୟ ମହାଜ୍ଞାତା । କହଇ ବିଷ୍ଣୁଭକ୍ତ କଥା ॥
ଶୁଣ ସୁମନ ଶୁଦ୍ଧଭାବେ । ମୁଁ ଯାହା କହୁଅଛି ଏବେ ॥
ଶ୍ରୀହରି ଭକ୍ତମାନଙ୍କର । ମହିମା ଅପାରୁଁ ଅପାର ॥
ଯେ ନର ଶ୍ରଦ୍ଧାଭାବେ ଶୁଣି । ସେ ତରେ ଭବ ତରଙ୍ଗିଣୀ ॥
ଦେଖ ସେ କାଳରେ ଶବର । ତଳମାଳରେ ତାର ଘର ॥
ନାମ ଆନନ୍ଦ କଉତୁକୀ । ନିରତେ ପତଙ୍ଗ ପାତକୀ ॥
ପୁତ୍ର ଦୁହିତା ତାର ନାହିଁ । ଏକା ସେ ପତି ପତ୍ନୀ ଦୁଇ ॥
କେବଳ ପକ୍ଷୀ ବେଣ୍ଟ କରେ । ସେ ଅଠାକାଣ୍ଡିଆ ନଳରେ ॥
ଜାଲ ପକାଇ ପାଶ ପାତି । ପକ୍ଷୀଙ୍କି ମାରୁଥାଇ ନିତି ॥
ସେ ପକ୍ଷୀମାଂସ ବିକି ଆଣି । ପ୍ରାଣ ପୋଷନ୍ତି ବେନିପ୍ରାଣୀ ॥
ଏମନ୍ତେ ବେନିଜଣ ଥାନ୍ତି । ପାତକ ବୋଲି ନାହିଁ ଭୀତି ॥
ଯେ ନିତ୍ୟେ ଜୀବହତ୍ୟା କରେ । ଅନ୍ୟ ପାପକୁ ସେ ନ ଡରେ ॥
ନ ଜାଣେ ଅନ୍ୟ କଥାମାନ । ଯେ ତୀର୍ଥ ବ୍ରତ ଦାନ ପୁଣ୍ୟ ॥
ଶ୍ରୀରାମ କୃଷ୍ଣ କଥାମାନ । ଦିନେ ଶୁଣିଲା ନାହିଁ କର୍ଣ୍ଣ ॥
ସାଧୁଙ୍କ ସଙ୍ଗ କରିବାର । ଭୁଲେହେଁ ମନ ନାହିଁ ତାର ॥
କେବଳ ଜୀବହତ୍ୟା କରେ । ବଞ୍ଚଇ କାଳ କ୍ଷେପଣରେ ॥

ଉତ୍ତର ଦେଶରେ ଭକତ । ବସ୍ତୁର କଲେ ତାଙ୍କ ଚତ୍ତ ॥
ବାରେ ମୁଁ କ୍ଷେତ୍ରବରେ ଯିବ । ପ୍ରଭୁଙ୍କୁ ଦର୍ଶନ କରିବ ॥
ଏମନ୍ତ ବିଚାରଣ ଚିତ୍ତେ । ଗମିଲେ କ୍ଷେତ୍ରର ନିମନ୍ତେ ॥
ଗ୍ରାମ ଗ୍ରାମକେ ରହି ରହି । ମିଳିଲେ ସେ ଗ୍ରାମରେ ଯାଇ ॥
ଆସି ପ୍ରବେଶ ହେଲେ ତହିଁ । ଶବର ଦ୍ୱାରେ ଉଭାହୋଇ ॥
ବିଚାର କଲେ ହୃଦୟରେ । ରାତ୍ରକ ବଞ୍ଚିବା ଏଠାରେ ॥
ଏମନ୍ତ ଭାବ ତହିଁ ବସି । ଆନନ୍ଦେ ରାମନାମ ଘୋଷି ॥
ତାହା ଶୁଣିଣ ସେ ଶବର । ମନ୍ଦିରୁ ହୋଇଲା ବାହାର ॥
ପାଶେ ପ୍ରବେଶ ହେଲା ଆସି । ପୁଚ୍ଛଇ ମନ୍ଦ ମନ୍ଦ ହସି ॥
କିଏ ବୈଷ୍ଣବ କେଉଁଠାରୁ । କିପାଁ ଅଇଲ ଏହି ପୁର ॥
କାହୁଁ ଅଇଲ ଯିବ କାହିଁ । ସ୍ୱରୂପ କହ ହେ ଗୋସାଇଁ ॥
ତା ଶୁଣି ବୋଲଇ ଅତିଥ । ଶୁଣ ଶବର କହୁଁ ସତ୍ୟ ॥
ଆମ୍ଭେ ଯେ ସଦା ତୀର୍ଥବାସୀ । ଯୋଗେ ମିଳିଲୁ ଏଥେ ଆସି ॥
ଦେଖିଣ ଦେଶକୁ ଗମନ । କରିବୁ ବିଚାରିଛୁ ମନ ॥
ଶ୍ରୀରାମଧାମ ଯାଏ ଯିବୁ । ପ୍ରଭୁଙ୍କୁ ଦର୍ଶନ କରିବୁ ॥
ତହିଁ ଉତ୍ତାରେ ରଘୁବୀର । ଯେଉଣେ ନେବେ ଇଚ୍ଛା ତାଙ୍କର ॥
ମୋହର ନୁହଇ ଆସ୍ତୃତ୍ର । ଶବର କହିଲୁଟି ସତ୍ୟ ॥
ତୋହର ନାମଗୋଟି କିସ । କେବଣ ଗୁରୁର ତୁ ଶିଷ୍ୟ ॥
ଜୀବିକା ଅଟେ କିସ ତୋର । କହ ତୋ ସ୍ୱରୂପ ଆଗର ॥
ତା ଶୁଣି ଶବର କହଇ । ଶୁଣ ହେ ବୈଷ୍ଣବ ଗୋସାଇଁ ॥
ନାମ ମୋ ପଚାରିଲ ଯାହା । କହୁଅଛି ମୁଁ ଶୁଣ ତାହା ॥
ଆନନ୍ଦା ନାମଗୋଟି ମୋର । ଦେଇ ଯେ ଅଛନ୍ତି ପିଅର ॥
ଜାତ ମୋ ଅଟଇ ଶବର । କେ ଜାଣେ ଗୁରୁବୋଲି ମୋର ॥
କିସ ହୁଅଇ ଗୁରୁ କଲେ । ଏହା ମୁଁ ନ ଜାଣଇ ଭଲେ ॥
ଏବେ ଗୋସାଇଁ ତା କହିବ । ଶୁଣିବି ଗୁରୁଶିଷ୍ୟ ଭାବ ॥

ଶୁଣି ଅତଥି କହେ ଧୀର । ଶୁଣ ରେ ଆନନ୍ଦା ଶବର ॥
ଯେବେ ତୁ କରନାହୁଁ ଗୁରୁ । କି ରୂପେ ତରିବୁ ସଂସାରୁ ॥
ଶ୍ରୀରାମ କୃଷ୍ଣ ମନ୍ତ୍ରବାଣୀ । ଯେବେ ଶ୍ରବଣେ ନାହୁଁ ଶୁଣି ।
ନିଶ୍ଚେ ନରକେ ଗତି ତୋର । ମୂଳ ହୋଇଲା ମନେ କର ॥
ତୋ ସଙ୍ଗେ ପ୍ରସଙ୍ଗ ହେବାର । ଉଚିତ ନୁହଇ ଆମ୍ଭର ॥
ଏମନ୍ତ କହି ପୋତି ମଥା । ରହିଲେ ନ କହିଣ କଥା ।
ତା ଶୁଣି ବୋଲଇ ଶବର । ଶୁଣ ଗୋସାଇଁ ମୋ ଉତ୍ତର ।
ମୁଁ ଯେବେ ଏତେ ପାପୀଜନ । ପବିତ୍ର କର ମୋ ଜୀବନ ।
ଶ୍ରୀରାମ ନାମ ମନ୍ତ୍ରସାର । ଶ୍ରବଣେ ଦିଅ କି ନା ମୋର ॥
ପାଇ ଶ୍ରୀଗୁରୁ ଉପଦେଶ । ପାତକ ମୋର ହେଉ ନାଶ ॥
ତୁମ୍ଭେ ତ ପର ଉପକାରେ । ନିରତେ ଭ୍ରମ ଏ ସଂସାରେ ।
ମୁଁ ତୁମ୍ଭ ଚରଣେ ଶରଣ । କର ମୋ ଜୀବ ପରିତ୍ରାଣ ।
ଏମନ୍ତ ବୋଲି ପାଦେ ପଡ଼ି । ଉଠି ମସ୍ତକେ କରଯୋଡ଼ି ॥
ବନସ୍ତ୍ରୀ କହିଲା ବହୁତ । ଶୁଣି ସନ୍ତୋଷ ସେ ଅତଥ ।
ଶୁଣ ହେ ମନ ମହୀପାଳ । ସାଧୁଙ୍କ ସଙ୍ଗେ ଏତେ ଫଳ ।
ଉଦେ ହୋଇଲେ ଦିନକର । ଯେସନେ ନାଶେ ତମ ଘୋର ॥
ଶରଦ ହୋଇଲେ ପ୍ରବେଶ । ଜଳୁ କଳୁଷ ଯେସନ୍ତେ ନାଶ ।
ଲାଗିଲେ ପରଶ ପଥର । ସୁବର୍ଣ୍ଣ ହୁଏ ଲୁହା ଗୁର ।
ବସନ୍ତକାଳ ଆଗମନେ । କାଷ୍ଠ ଚନ୍ଦନ ହୁଏ ଯେସନ୍ତେ ॥
ଯେସନେ ଦେଖ ନଦୀଜଳ । ଗଙ୍ଗା ସଙ୍ଗତେ ହେଲେ ମେଳ ।
ତକ୍ଷଣେ ଗଙ୍ଗା ହୁଏ ସେହି । ଭେଦ କରନ୍ତା କେହି ନାହିଁ ।
ଏଣୁ ସୁସଙ୍ଗ ଫଳ ଯେତେ । କେ କହି ପାରିବ ସାକ୍ଷାତେ ।
ତହୁଁ ଶବର ଗଲା ଚଳି । ନିଜ ମନ୍ଦିରେ ଯାଇ ମିଳି ।
କହିଲା ନିଜ ପତ୍ନୀ ପାଶ । ବୈଷ୍ଣବ ମନ୍ତ୍ର ଉପଦେଶ ।
ବୈଷ୍ଣବ ଜଣେ ଛତ୍ର ବସି । ଉତ୍ତମ ସାଧୁ ତୀର୍ଥବାସୀ ॥

ତାହାଙ୍କଠାରୁ ମନ୍ତ୍ର ସାର । ଘେନିବ ମନ ହେଲା ମୋର ॥
ଏମନ୍ତ କହି ନିଜପୁର । ଗୋମୟେ କରଣ ସଂସ୍କାର ॥
ନାନା ବର୍ଣ୍ଣରେ ଦେଇ ଝୋଟି । ପକାଇ ମୃଗଛାଲ ଗୋଟି ॥
ସୁସ୍ୱାଦୁ ଫଳ ମୂଳମାନ । ଯତନେ ଥୋଇଲା ସେ ସ୍ଥାନ ॥
ଅତିଥି ସତେ କରାଇଲା । ନେଇ ଆସନେ ବସାଇଲା ॥
କହିଲା ବିନୟ ବଚନ । ପବିତ୍ର କର ମୋ ଜୀବନ ॥
ତା ଶୁଣି କହନ୍ତି ଅତିଥି । ଶୁଣ ଶବର କହୁ ସତ୍ୟ ॥
ଆମ୍ଭେ ଯଦ୍ୟପି ନାମ ତୋତେ । ଦେବୁ ସ୍ୱରୂପ କହ ମୋତେ ॥
ଆମ୍ଭର ଆଜ୍ଞା ପାଳୁଥିବୁ । କେବେ ଅନ୍ୟଥା ନ କରିବୁ ॥
ଏ କଥା ସତ୍ୟ କରୁ ଯେବେ । ତୋ କର୍ଣ୍ଣେ ମନ୍ତ୍ର ଦେବୁ ତେବେ ॥
ତା ଶୁଣି ବୋଲଇ ଶବର । ଶୁଣ ଗୋସାଇଁ ସତ୍ୟ ମୋର ॥
ଯେ ଆମ୍ଭ କୁଳାଗୁରୁ କଥା । ଆମ୍ଭେ ତା ନ ଛାଡ଼ୁ ସର୍ବଥା ॥
ଏଥି ଉତ୍ତରେ କଥା ଯେହ୍ନ । ବହନ କର ଆଜ୍ଞା ହେଉ ॥
ଅମଳ କମଳନୟନ । ଚାହିଁଲେ ହରେ ପ୍ରାଣୀମନ ॥
ନାସିକା ଅତିହିଁ ରୁଚିର । ଧନ୍ୟ ସେ ସୁରଙ୍ଗ ଅଧର ॥
କଣ୍ଠେ କୌସ୍ତୁଭ ମଣି ସାଜେ । କାଣ୍ଡ କୋଦଣ୍ଡ ବେନି ଭୁଜେ ॥
ହେମ କିଙ୍କିଣି କଟିମାଝେ । ଚରଣେ ନୂପୁର ବିରାଜେ ॥
ରତ୍ନ କଟାଉ ଶ୍ରୀପଦ୍ମରେ । ଯହିଁ ଶରଣ ସୁରନରେ ॥
ଏମନ୍ତ ସ୍ୱରୂପ ଯେ ରାମ । ଲକ୍ଷ୍ୟ ନୁହଇ କୋଟି କାମ ॥
ତୁ ଏହି ରୂପେ ଧ୍ୟାନ କରି । ଭଜିବୁ ରାମ ନାମ ଧରି ॥
ଏମନ୍ତ କହି ଗୁରୁ ଗଲେ । ଶବର ଲେଉଟି ଅଇଲେ ॥
ଏ କଥା କରି ଗଣ୍ଠିଧନ । ପ୍ରବେଶ ତା ନିଜ ଭବନ ॥
ସ୍ନାନ ଶଉଚ ଆଦି ହୋଇ । ଭୋଜନ କରିବାକୁ ଯାଇ ॥
ବସି ସେ ରୂପ ଧ୍ୟାନ କରି । ଭୁଞ୍ଜିଲା ରାମନାମ ଧରି ॥
ଏହି ପ୍ରକାରେ ପ୍ରତିଦିନ । କରି ସେ ବଞ୍ଚୁଥାଇ ଦିନ ॥

ନ କରି ରାମ ରୂପ ଧ୍ୟାନ । ରାମ ନ ବୋଲି ଏକଦିନ ॥
ଭୁଣ୍ଡେ ତା ନ ଦିଅଇ ବାରି । ଏହା ସେ ଅଛୁ ମୂଳ କରି ॥
ଆମିଷ ଆଦି ଦ୍ରବ୍ୟମାନ । ଯାହା ସେ କରଇ ଭୋଜନ ॥
ଶ୍ରୀରାମ ନ ବୋଲି ଆହାର । ନ କରେ କେବେ ସେ ଶବର ॥
ଏମନ୍ତ ଗଲା କେତେ ଦିନ । ଶୁଣ ହେ ସୁମନ ରାଜନ ॥
ଦିନେକ ମୃଗଗୋଟି ମାରି । ତାହାର ମାଂସ ଆଣିକରି ॥
ଯତନେ କଲେକ ରନ୍ଧନ । ନାନାଦି ପ୍ରକାରେ ବ୍ୟଞ୍ଜନ ॥
ଭଜା ଶାକରାଦି ମଧୁର । ଆମ୍ବିଳ ପାଚିଲା ବେଶ୍ବର ॥
ଏମନ୍ତେ ନାନାବିଧ କରି । ସ୍ନାନାଦି କର୍ମମାନ ସାରି ॥
ଭୁଞ୍ଜିବା ନିମନ୍ତେ ଶବର । ବସିଲା ଆସନେ ତାହାର ॥
ପତ୍ନୀ ତା ପରଶିଲା ଆଣି । ବୋଇଲା ଶୁଣ ପ୍ରାଣମଣି ॥
ଯେବେ ଏତେକ ଖାଇଦେବ । ବଳିଷ୍ଠ ବୋଲି ଜଣାଯିବ ॥
ଶୁଣି ଶବର ତୋଷ ହୋଇ । ପ୍ରିୟାକୁ ଆଗରେ ବସାଇ ॥
ଅନେକ ପରିହାସ କଲା । ଗୁରୁଙ୍କ ଆଜ୍ଞା ପାସୋରିଲା ॥
ମାଂସ ଖଣ୍ଡେକ ହସ୍ତେ ଧରି । ନାମ ନ ବୋଲି ତୁଣ୍ଡେ ଭରି ॥
ଗିଳିବାବେଳେ ମନେ ତାର । ପଡ଼ିଲା ଗୁରୁ କହିବାର ॥
ବୋଇଲା ଧିକ ମୋ ଜୀବନ । ଗୁଡ଼ିଲି ଗୁରୁଦେବା ଜ୍ଞାନ ॥
ଏ ଦେହେ ପ୍ରୟୋଜନ କିସ । ଗୁଡ଼ିଲି ଜୀବନର ଆଶ ॥
ଏମନ୍ତ ବୋଲି ଦୁଃଖାନ୍ତରେ । ତଣ୍ଟି ଧଇଲା ବାମକରେ ॥
ଗର୍ଭିକୁ ଯିବ ବୋଲି କରି । ଭିଡ଼ି ଧଇଲା ଆଣ୍ଠୁ କରି ॥
ଭାର୍ଯ୍ୟାକୁ ବୋଇଲା ଲୋ ଶୁଣ । ଦାଢ଼ୁଆ କାଣ୍ଡପଟେ ଆଣ ॥
ଖଣ୍ଡା ବା କଟୁରି କୁରାଢ଼ି । ଯେ ତୋର ହସ୍ତେ ଯିବ ପଡ଼ି ॥
ଦହନ ଭେକ କରି ଆସି । ବିଳମ୍ବେ ନାହିଁ ଆଉଂଷଣ ॥
ମୁଁ ମୂଢ଼ ମନ୍ଦକୃତ୍ୟ କଲି । ଶ୍ରୀରାମ ନ ବୋଲି ଭୁଞ୍ଜିଲି ॥
ଆଣ୍ଠେ ମୁଁ ଧରିଅଛୁ ତଣ୍ଟି । କଣ୍ଠ ତଳରୁ ଦେବ କାଟି ॥

ସେ ମାଂସ କାଢ଼ି ପକାଇବ । ମୁଖ ଧୋଇଣ ଶୁଚି ହେବ ॥
ମନ୍ତ୍ର ଶ୍ରୀଗୁରୁ ଦେବା ଜ୍ଞାନ । ପୁଣି ମୁଁ କରିବ ଭୋଜନ ॥
ଶୁଣି ଯୁବତୀ ବୋଲେ ଥାଇ । ତୋତେ କାଏ ସେ କଲା ବାଇ ॥
ତଣ୍ଟି କାଟିଲେ ତୁ ମରିବୁ । ଏକ୍ଷଣି ଜୀବନ ହାରିବୁ ॥
ଏ ବୁଦ୍ଧି କେହ୍ନ ଦେଲା ତୋତେ । ଅନାଥ କରିବୁ କି ମୋତେ ॥
ଛାଡ଼ ତୁ ଏମନ୍ତ ସାହସ । ତୁଣ୍ଡୁ ପକାଇ ଦିଅ ମାଂସ ॥
ତା ଶୁଣି ବୋଲଇ ଶବର । ସେ ପୁଣି ନୁହଇ ବାହାର ॥
ମୀନର କଣ୍ଟା ପ୍ରାପ୍ତ ହୋଇ । ସେ ଗଳେ ଲାଗିଣ ଅଛଇ ॥
ତଣ୍ଟିକୁ କାଢ଼ି ଦେଲେ ହସ୍ତ । ଗର୍ଭକୁ ଯିବଟି ତୁରିତ ॥
ଶୁଣି ଯୁବତୀ ତକାପାଡ଼ । ବୋଲଇ ହସ୍ତ ନିଅ କାଢ଼ ॥
ଗର୍ଭକୁ ପଛେ ଯାଉ ମାଂସ । ନୋହିଲେ ମରିବୁ ଅବଶ୍ୟ ॥
ତୋ ପିଣ୍ଡୁ ଛାଡ଼ିଗଲେ ପ୍ରାଣ । ମୁଁ ବିଷ ଖାଇବ ପ୍ରମାଣ ॥
ଲାଗିଲ ସ୍ତ୍ରୀହତ୍ୟା ତୋତେ । ବୋଲି ଧଇଲା ବିଷ ହସ୍ତେ ॥
ତା ଦେଖି ବୋଲଇ ଶବର । ତୁ ପଛେ ନିଶ୍ଚେ ମଲେ ମର ॥
ଯାବତ ସୃଷ୍ଟି ପ୍ରଳେ ହେଲେ । ସତ୍ୟ ମୁଁ ନ ଲଙ୍ଘିବ ଛଳେ ॥
ନିଶାରେ ଉଦେ ଦିନକର । ଶୀତଳ ହେବ ବୈଶ୍ୱାନର ॥
ବୃକ୍ଷ ପର୍ବତ ଗତାଗତ । ସାଗର ଲଙ୍ଘିବ ଜଗତ ॥
କଳଙ୍କ ତେଜ ନିଶାକର । ମୁନିଏ ହେବେ ଅନ୍ୟାଚାର ॥
ସତୀଏ ନିଜ ପତି ଛାଡ଼ । ଅନ୍ୟ ପୁରୁଷ ସଙ୍ଗେ ପଡ଼ ॥
ଏ ଉତପାତମାନ ହେଲେ । ସତ୍ୟ ମୁଁ ନ ଲଙ୍ଘିବ ଛଳେ ॥
କରିବ ଗୁରୁଙ୍କ ବଚନ । ଯାଉ ବା ଥାଉ ଏ ଜୀବନ ॥
ଏଥେଁ ବିଚାର ନାହିଁ ମୋର । ତାହା ଜାଣନ୍ତି ରଘୁବୀର ॥
ଏମନ୍ତ ବୋଲି ଉଠିଗଲା । ପ୍ରଚଣ୍ଡ କାଣ୍ଡେକ ଆଣିଲା ॥
ଖୁରଧାରହୁଁ ଅଛି ଗାଢ଼ । କାଟନ୍ତେ ଛାଡ଼ିଯିବ ହାଡ଼ ॥
କଣ୍ଠରେ ବସାଇଲା ନେଇ । ତାହା ଜାଣିଲେ ରଘୁସାଇଁ ॥

ଆନନ୍ଦା ଶବର

ପୃଷ୍ଠା ୪୨୪-୪୨୫



ଭଗବାନ ଆନନ୍ଦା ଶବରକୁ ତାଙ୍କ ନିଜରୂପ ଦେଖାଉଛନ୍ତି ।

ଯେ ପ୍ରଭୁ ଭକତବତ୍ସଳ । ଭକତଭାବ ଯାର ମୂଳ ॥
ନାହିଁ ତା ଜାତ ଉଚ୍ଚନୀଚ । ନ ଥାଇ ଧର୍ମାଧର୍ମ ବାଚ୍ଛି ॥
ନିଷ୍କାମ ଭକ୍ତ ଏକା ଥିବ ସତ୍ୟରେ ଯାହା ଦୃଢ଼ ହେବ ॥
ସେ ତାଙ୍କ ମିତ୍ର ସମସର । ତାହାକୁ ଜଗିଥାନ୍ତି ହର ॥
ଏ କଥା ଅଟଇ ପ୍ରମାଣ । ସକଳ ଶାସ୍ତ୍ରେ ଏ ବଖାଣ ॥
ମାୟାରେ ବିପ୍ରରୂପ ହୋଇ ବିଜୟ କଲେ ଭବଗ୍ରାହୀ ॥
ଟେକି ବଦ୍ଧ୍ୟପ୍ରାୟ ଦିଶି । ଆକାଶୁ ପଡ଼ିଲେକ ଖସି ॥
ଶବର ଆଗେ ହେଲେ ଉଭା । କେ କହୁ ତାହାଙ୍କର ଶୋଭା ॥
ଅଳପ ମୃଦୁ ମୃଦୁ ହସି । କହନ୍ତି ପ୍ରଭୁ ବ୍ରହ୍ମଋଷି ॥
ଶୁଣରେ ଆନନ୍ଦା ଶବର । କପିଁ କାନ୍ଦୁଛି ପତ୍ନୀ ତୋର ॥
ତୁ ହସ୍ତେ କାଣ୍ଡପଟେ ଧର । କପିଁ ତଣ୍ଟିରେ ଅଛୁ ଭର ॥
ତୁ ଧିର ଗଲେ କା ନିମନ୍ତେ । ଫେଡ଼ଣ କହ ତୁହି ମୋତେ ॥
ତା ଶୁଣି ଶବରର ନାରୀ କାନ୍ଦଇ ବିପ୍ରପାଦ ଧରି ॥
କାହୁଁ ବିଜୟ କଲ କନା । ଜୀବନ ରଖ ମୋର ପିନା ॥
ପତି ମୋ କାନ୍ଦୁଅଛି ତଣ୍ଟି । ଛଡ଼ାଇ ନିଅ କାଣ୍ଡ ଗୋଟି ॥
ତା ଶୁଣି କହଇ ଶବର । କାଣ୍ଡ କେ ଛଡ଼ାଇବ ମୋର ॥
ମୋ ସତ୍ୟବ୍ରତ କଲେ ନାଶ । ଅଧର୍ମ ପାଇବ ଅବଶ୍ୟ ॥
ଗୁରୁ ମୋ ଦେବା ଉପଦେଶ । ଶ୍ରୀରାମ ସୁମର ଭୋଜନ ॥
କରିବୁ ବୋଲି ଆଜ୍ଞାଦେଲେ । ତାହା ମୁଁ ପାସୋରିଲି ଭଲେ ॥
ଦେଖ ମୋହର ମନ୍ଦକର୍ମ । ବିଧାତା ମୋତେ କଲା ଭ୍ରମ ॥
ଏଣୁ ମୁଁ ମରିବି ଅବଶ୍ୟ । ଏ ଦେହେ ପ୍ରୟୋଜନ କିସ ॥
ତା ଶୁଣି ବୋଲନ୍ତି ଶ୍ରୀହରି । ମଲେ ଅର୍ଜିବୁ କେଉଁ ଶିରୀ ॥
ଛାଡ଼ ଆଜକ ପାଉ କନା । କାଲି ଭଜନ କରୁ ପିନା ॥
ତା ଶୁଣି ବୋଲଇ ଶବର । ଭଲ କହିଲୁ ବିପ୍ରବର ॥
ଶ୍ରୀଗୁରୁ ଆଜ୍ଞା ଲଙ୍ଘି ମୁହିଁ । କେତେ କାଳହିଁ ବଞ୍ଚିବଇଁ ॥

ଅବଶ୍ୟ ଥରେ ତ ମରିବ । କପାଁ ନରକେ ସଞ୍ଚରିବ ॥
ଏଣୁ ନ ବୋଲ ମୋତେ କିଛି । ନିଶ୍ଚୟ ପ୍ରାଣ ଦେଉଅଛି ॥
ଏମନ୍ତ ବୋଲି କାଣ୍ଡ ଧରି । ତଣ୍ଟି କାଟନ୍ତେ ଆଶୁକରି ॥
ତା ଦେଖି ପ୍ରଭୁ ରଘୁନାଥ । ବେଗେ ଧଇଲେ ତାର ହସ୍ତ ॥
ବୋଇଲେ ତୁଟେ ଭକ୍ତମଣି । ଆମ୍ଭେ କୋଦଣ୍ଡ କାଣ୍ଡ ପାଣି ॥
ଆମ୍ଭେହିଁ ଜଗତ ଈଶ୍ୱର । ତୁ ମନେ ସନ୍ଦେହ ନ କର ॥
ତା ଦେଖି ବୋଲଇ ଶବର । ଦେଖାଅ ନିଜରୂପ ତୋର ॥
ଗୁରୁ କହିଲେ ଯେଉଁ ରୂପ । ଦେଖିଲେ ସେ ରାମ ସ୍ୱରୂପ ॥
ତେବେ ମୁଁ ପରତେ କରିବ । ନୋହିଲେ ଜୀବନ ହାରିବ ॥
ଶୁଣି ବୋଲନ୍ତି ଦେବରାଜ । ତୋହର ବେନି ଚକ୍ଷୁ ବୁଜ ॥
ଶୁଣି ଶବର ତୋଷମନ । ତକ୍ଷଣେ ବୁଜିଲା ନୟନ ॥
ଭକତ ଭାବେ ଦେବ ହରି । ତକ୍ଷଣେ ନିଜରୂପ ଧରି ॥
ଭକତ ଆଗେ ହେଲେ ଉଭା । କୋଟି କନ୍ଦର୍ପ ରୂପ ଶୋଭା ॥
କୋଟିଏ ଇନ୍ଦ୍ର ନୀଳମଣି । କାନ୍ତିକି ଯିବେ ନିଉଛାଣି ॥
ସୁଦୁର୍ବାଦଳ ନବଘନ । ଜିଣି ସୁନ୍ଦର ସୁବଦନ ॥
ଚନ୍ଦ୍ର ବଦନ ବିମ୍ବାଧର । ରାଜୀବ ଲୋଚନ ସୁନ୍ଦର ॥
ଅତି ବିସ୍ତାର ବକ୍ଷସ୍ଥଳ । ବର୍ତ୍ତୁଳ ସୁବାହୁ ଯୁଗଳ ॥
କାଣ୍ଡ କୋଦଣ୍ଡ ବେନି ଭୁଜେ । ଅଶେଷ ଦୁଷ୍ଟ ଦର୍ପ ଗଞ୍ଜେ ॥
କଣ୍ଠେ କୌସ୍ତୁଭମଣି ଲୋଳେ । ଶ୍ରୀବତ୍ସ ଚିହ୍ନ ହୃଦସ୍ଥଳେ ॥
ହେମ କଙ୍କଣ ବେନିକର । କଟିରେ ଶୋହେ ପୀତାମ୍ବର ॥
ହେମ ମେଖଳା ତଥି ସାଜେ । କୋଟିଏ ରବି ତେଜ ଗଞ୍ଜେ ॥
ଚରଣେ ନୂପୁର ଜଡାଉ । ତେଜେ ବିରାଜେ ଦାଉ ଦାଉ ॥
ସେ ପାଦପଦ୍ମ ଶୋଭାବନ । ଦିଶଇ ଅଷ୍ଟାଦଶ ଚିହ୍ନ ॥
ଅରୁଣ କୋକନଦ ଛବି । ଭକତ ସୁଖେ ଯାହା ଭାବି ॥
ଏମନ୍ତ ସ୍ୱରୂପ ଦର୍ଶନ । କରି ଶବର ତୋଷମନ ॥

# ଅଜାମିଳ ପଣ୍ଡା ଚରିତ

ପୃଷ୍ଠା ୪୨୭-୪୨୭



ଅଜାମିଳ ପଣ୍ଡା ଜଙ୍ଗଲରେ ଜଣେ ବାଟୋଇକୁ ମାରିବାକୁ ଯାଉଛି ।

ସର୍ବ ସଂଶୟ ଗଲା ଫିଟି । ଶବର ତାଙ୍କ ପାଦେ ଲୋଟି ॥
ଶ୍ରୀରାମ ବୋଲନ୍ତି ଶବର । ଉଠି ତୁ ମାଗି ନେନ ବର ॥
ତା ଶୁଣି ଶବର ଆନନ୍ଦ । ବୋଲଇ ନମୋ ଆଦିକନ୍ଦ ॥
କି ବର ମାଗିବ ଗୋସାଇଁ । ପ୍ରଭୁ ପଣକୁ ଲୁଚଯାଇ ॥
ସବୁ ମିଳିଲା ପ୍ରଭୁ ମୋତେ । କେବଳ କୃପା ରଖ ଚିତ୍ତେ ॥
ତା ଶୁଣି ପ୍ରଭୁ ରଘୁନାଥ । ବୋଇଲେ ଶୁଣସି ରେ ଭକ୍ତ ॥
ଜୀବନେ ସର୍ବସୁଖେ ଥାଅ । ମଲେ ବୈକୁଣ୍ଠେ ଠାବ ପାଅ ॥
ଏମନ୍ତ ଆଜ୍ଞା ତାକୁ ଦେଇ । ଅନ୍ତର ହେଲେ ଭବଗ୍ରାହୀ ॥
ଶୁଣ ସୁମନ ଏ ଚରିତ । ପ୍ରଭୁଙ୍କ ମହିମା ଏମନ୍ତ ॥
ନିଷ୍କାମଭକ୍ତ ଦୃଢ଼ ଯାର । ତା ବଶେ ବଶ ଦାମୋଦର ॥
କହଇ ବିପ୍ର ରାମଦାସ । ମୋ ପ୍ରଭୁ କମଳା ବିଳାସ ॥
ସେ ପାଦପଦ୍ମ ହୃଦେ ଭାବ । ଗୋଟିଏ ବାର ଲୁଚିଯିବ ॥
ସୁଜନେ ଏହି ରସେ ରସ । ଏ ଭବ ସମୁଦ୍ରେ ନ ଭାସ ॥
କିସ କହିବ ମୂର୍ଖ ନର । ଯେ ସାଧୁଜନଙ୍କୁ ଗୋଚର ॥
ହରିଭକତଜନ କଥା । ତାହାଙ୍କୁ ସତ୍ୟ ଏହୁ ପଥା ॥
ଏଣୁ ଅଧମ ରାମଦାସ । ସାଧୁ ଚରଣେ କଲା ଆଶ ॥

ଇତି ଶ୍ରୀଦାର୍ଢ୍ୟଭକ୍ତି ରସାମୃତେ ମନ ଚୈତନ୍ୟ ସମ୍ବାଦେ
ଆନନ୍ଦା ଶବର ଦାର୍ଢ୍ୟଭାବ ବର୍ଣ୍ଣନେ
ନାମ ଊନପଞ୍ଚାଶୋଽଧ୍ୟାୟଃ ।

———

## ପଞ୍ଚାଶ ଅଧ୍ୟାୟ
## ଅଜାମିଳ ପଣ୍ଡା ସମ୍ବାଦ

ନମସ୍ତେ ପ୍ରଭୁ ରାମଚନ୍ଦ୍ର । ଶ୍ରୀ ସୂର୍ଯ୍ୟବଂଶର ନରେନ୍ଦ୍ର ॥
ରଘୁବଂଶର ଚୂଡ଼ାମଣି । ଧରଣୀସୁତା ପ୍ରାଣମଣି ॥
କୌଶଲ୍ୟା ଗର୍ଭ ଅବତାର । ମହିମା ବେଦେ ଅଗୋଚର ॥

ଏଣୁ ଶରଣ ରାମଦାସ । ତୋର ମହିମା ତୁ ପ୍ରକାଶ ॥
ଏଥିଭକ୍ତିରେ ମନ ରାଜା । ଚୈତନ୍ୟ ପାଦେ କର ପୂଜା ॥
ବୋଇଲା ଶୁଣ ଶୁଦ୍ଧଚେତା । କହିଲ ଭକ୍ତବୃନ୍ଦ କଥା ॥
କୋଟିଏ ଜନ୍ମର କଲ୍ମଷ । ଶ୍ରବଣ ମାତ୍ରେ ଗଲା ନାଶ ॥
ଭକତଠାରେ ସେ ଶ୍ରୀବତ୍ସ । ହୁଅନ୍ତି ଏଡ଼େ ସାହାପକ୍ଷ ॥
ତା ଶୁଣି ମୋ ମନ ଆନନ୍ଦ । ହୋଇ ଗୁଡ଼ିଲା ଭବବନ୍ଧ ॥
ଏମନ୍ତ ଦୃଢ଼ଭକ୍ତି କରି । ଭକତବୃନ୍ଦ ଗଲେ ତରି ॥
ଯେ ଦୃଢ଼ କରି ନ ପାରିବ । କହ ସେ କିରୂପେ ତରିବ ॥
କେମନ୍ତେ ଭବୁ ହେବ ପାର । ନ ଯିବ ଜନନୀ ଜଠର ॥
ତାହା ଜାଣିଣ ଥିଲେ କହ । ଫିଟୁ ମୋ ମନର ସନ୍ଦେହ ॥
ଏମନ୍ତ ଶୁଣି ଚଇତନ । କହଇ ମଧୁର ବଚନ ॥
ଶୁଣ ସୁମନ ତତ୍ତ୍ୱଗାଥା । ତୁ ଯେ ପୁଚ୍ଛିଲୁ ଯେଉଁ କଥା ॥
ଏ ବିଷ୍ଣୁ ମାୟାରେ ଜଗତେ । ପ୍ରାଣୀ ଅଛନ୍ତି ଯହିଁ ଯେତେ ॥
ବିଦ୍ୟା ଅର୍ଥେ ରତ୍ନ ଜଡ଼ । ଲଗାଇ କଳ୍ପନା ଦୃଢ଼ ॥
କରନ୍ତି ଯେତେ ଯେତେ କର୍ମ । ଏ ସବୁ ମନର ଭରମ ॥
ଧନ କାମିନୀ ପୁତ୍ର ଆଶେ । ବଞ୍ଚନ୍ତି ରଜନୀ ଦିବସେ ॥
ଅତି ଆନନ୍ଦ ମନେ ଭାଳି । ଏହିଟି ଜୀବର ଶାଙ୍କୋଳି ॥
ଆପଣା ସୁଖେ ଯତ୍ନ କରି । କର ଚରଣ ବାନ୍ଧି ଧରି ॥
ନିଜ ନିସ୍ତାର ପଥ ଛାଡ଼ି । ମରନ୍ତି ଭବଜଳେ ବୁଡ଼ି ॥
ପ୍ରପଞ୍ଚଯାକ ଏହିମତେ । ଭ୍ରମୁଅଛନ୍ତି ଏ ଜଗତେ ॥
କେମନ୍ତେ ହେବ ପରିତ୍ରାଣ । ନାହିଁ ଏ ଜୀବର କାରଣ ॥
କେବଳ କଥା ଏକ ଅଛି । ଯେ ସାଧୁ ସଙ୍ଗେ ଦିନ ବଞ୍ଚି ॥
ତାହାଙ୍କ ମୁଖୁଁ ଶୁଣି ଜ୍ଞାନ । ଯେ ନାମ କରିବ ଭଜନ ॥
ଡ଼ିବ ଭବବନ୍ଧ ତାର । ନ ଦେଖି ଜନନୀ ଜଠର ॥
ଆଉ ନ ପିଏ ମାତୃସ୍ତନ୍ୟ । ହେ ମନ ହେତୁକରି ଚେନ ॥

ଏ ଜୀବ ହେବାକୁ ଉଦ୍ଧାର । କେବଳ ନାମ ମାତ୍ର ଦ୍ୱାର ॥
ତା ଶୁଣି ମନ ନୃପବର । ବୋଲେ କହିଲ ଚମତ୍କାର ॥
ନିରତେ ହୋଇଣ ଅଜ୍ଞାନ । ବିଷୟାକଡ଼େ ହୋଇ ଛନ୍ନ ॥
ନିଶି ଦିବସେ ଧନ ବାଞ୍ଛି । ନ କରି ପୁଣ୍ୟକର୍ମ କିଛି ॥
କାମିନୀ ସଙ୍ଗେ ହୋଇ ରତ । ନ ଥିବ ଦୟା ଧର୍ମ ଚିତ୍ତ ॥
କେବଳ ନାମମାତ୍ର ଧରି । ସଂସାରୁ ଯିବୁଟି କି ତରି ॥
ତା ଶୁଣି କହେ ଚଇତନ । ହେ ମନ ଶୁଣ ମୋ ବଚନ ॥
ନାମର ମହିମା ଅପାର । ନାମଟି ସଂସାରରେ ସାର ।
ନାମ ମହିମା ଏତେ ତେତେ । ବୋଲି କେ କହିବ ଜଗତେ ॥
ମୋ ଗୁରୁ କେତେକ ଗାରିମା । କହିବ ନାମର ମହିମା ॥
ସ୍କନ୍ଦପୁରାଣର ମଧ୍ୟରେ । ଯାହା ଶୁଣିଛୁ ଶ୍ରବଣରେ ॥
ତାହା କହୁଛି ଏବେ ଶୁଣ । ଥିଲା ଯେ ଏକଇ ବ୍ରାହ୍ମଣ ॥
ଯେ ମନ ହେତୁକରି ବୁଝ । ନାମ ତା ଅଜାମିଳ ଦ୍ୱିଜ ॥
ଯହୁଁ ହୋଇଲା ଯୁବାକାଳ । ଛାଡ଼ିଲା ଗୃହ ସଙ୍ଗ ମେଳ ॥
ବ୍ରାହ୍ମଣ କର୍ମ ଧର୍ମ ଛାଡ଼ି । ଅଧର୍ମ ମାର୍ଗେ ଯାଏ ପଡ଼ି ॥
ଶବରୀ ଏକ ଗୋଟି ଧରି । ବନେ ରହିଲା ଗୃହ କରି ॥
ଅତି ଆନନ୍ଦ ହୋଇ ଚିତ୍ତେ । ରହିଲା ସେ ନାରୀ ସଙ୍ଗତେ ॥
ଯାହା ବୋଲଇ ସେହି ନାରୀ । ସେ ଆଜ୍ଞା ଶିରୋଗତ କରି ॥
ସେନାହାମାଗେଯେତେବେଳେ । ଆଣି ଖଟାଏ ପାଦତଳେ ॥
ଗୋମାଂସ କୁକୁଟ ଘୁଷୁରି । ଭକ୍ଷଇ ସୁରା ସଙ୍ଗେ ଭରି ॥
ଘାଟ ଜଗିଣ ଖଣ୍ଡା ପିଟି । ଆଣଇ ପରଧନ ଲୁଟି ॥
ଯୋଗୀ ଜଙ୍ଗମ ବ୍ରହ୍ମଚାରୀ । ଏହାଙ୍କୁ ଦେଖିଲେ ପ୍ରହାରି ॥
ରାତ୍ରେ ପଶଇ ପର ଘରେ । ଚୋରି କରଇ ନିରନ୍ତରେ ॥
ପଥେ ପକାଏ ବୃକ୍ଷ କାଟି । କୂପ ଦେଖିଲେ ଭରେ ମାଟି ॥
ଦେଖିଲେ ଧର୍ମଶାଳାମାନ । ଅନଳେ କରଇ ଦହନ ॥

ଶିବାଳଙ୍କୁ ଦିଏ ଭଙ୍ଗି । ବସ୍ତ୍ର ପ୍ରତିମା ଦେଖି ଗଞ୍ଜି ॥
ଏକାନ୍ତେ ଦେଖି ପରନାରୀ । ବଳେ ରମଇ ତାକୁ ଧରି ॥
ନ ଜାଣେ ଏ ଜାତି ସେ ଜାତି । ପାତକ ବୋଲି ନାହିଁ ଭ୍ରାନ୍ତି ॥
ଇତ୍ୟାଦି ଆଉ ପାପ ଯେତେ । କିପାଁ ଡରିବ ତାକୁ ଚିତ୍ତେ ॥
ଏମନ୍ତେ ସେ ବନ୍ଧୁଚଣ୍ଡାଳ । ପାପ ଆଗ୍ରରେ ଗଲା କାଳ ॥
ଜାଣଇ ଏକା ପର ନାଶ । ସାଧୁଙ୍କ ଗୋଷ୍ଠୀ ତାକୁ ବିଷ ॥
ସ୍ୱପ୍ନେ ହିଁନେ ରାମକୃଷ୍ଣ ହରି । ବୋଲି ବଦନେ ତା ନ ଧରି ॥
ଏମନ୍ତେ ଗଲା କେତେ କାଳ । ଶୁଣ ହୋ ମନ ମହୀପାଳ ॥
ଚଣ୍ଡାଳୀ ସଙ୍ଗେ ହୋଇ ରତ । ତା ଗର୍ଭେ ପାଞ୍ଚପୁତ୍ର ଜାତ ॥
ତାହାଙ୍କ ନାମ ଦେଲା ଶୁଣ । ରାମ ଗୋବିନ୍ଦ ନାରାୟଣ ॥
କୃଷ୍ଣ କେଶବ ପାଞ୍ଚଭାଇ । ବୋଲି ସେ ନାମମାନ ଦେଇ ॥
ତାହାଙ୍କୁ ଦେଖି ଆନନ୍ଦରେ । ବଞ୍ଚଇ ରଜନୀ ବାସରେ ॥
ଏମନ୍ତ କେତେ ଦିନ ଗଲା । ଆସିଣ ମୃତ୍ୟୁକାଳ ହେଲା ॥
ତା ମୃତ୍ୟୁ ଦେଖିଣ ସାକ୍ଷାତେ । ଅସି ଭେଟିଲେ ଯମଦୂତେ ॥
ସମସ୍ତେ ହସ୍ତେ ଛନ୍ତି ଧରି । ଯେ କାଳପାଶ ଆଦି କରି ॥
ବେଢ଼ିଣ କରନ୍ତି ତର୍ଜନ । ଦେଖାଇ ମହାଭୟମାନ ॥
ପାଶ ଲଗାନ୍ତି ତାର ଗଳେ । ଡାକିଲା ପ୍ରାଣର ବିକଳେ ॥
ହେ ଜ୍ୟେଷ୍ଠପୁତ୍ର ନାରାୟଣ । ବେଗେ ତୁ ଆସରେ ଧାଇଁଣ ॥
ଏ ଦୁଷ୍ଟମାନେ କାହୁଁ ଆସି । ମୋ ଗଳେ ଲଗାଇଣ ଫାଶୀ ॥
ବାନ୍ଧିଣ ନେଉଛନ୍ତି ଧରି । ବେଗେ ଆସ ରେ ରାମ ହରି ॥
ତା ଶୁଣି ଯମଦୂତେ ହାସି । ମିଳିଲେ ବିଷ୍ଣୁଦୂତେ ଆସି ॥
ସଙ୍ଗତେ ଦେବରଥ ଘେନି । ବଜାଇ ଶଙ୍ଖ ଜୟ ଧ୍ୱନି ॥
ଜୟ ନିନାଦ ତୁଣ୍ଡେ କରି । ସେ ଅଜାମିଳ ଭୁଜ ଧରି ॥
ଆନନ୍ଦେ ହରିବୋଲ ଦେଇ । ରଥରେ ବସାଇଲେ ନେଇ ॥
ଯମଦୂତଙ୍କୁ କୃଷ୍ଣଦୂତେ । ଭର୍ତ୍ସନା କଲେ ନାନାମତେ ॥

ବୋଇଲେ ଶୁଣ ଆରେ ଦୂତେ । ସମୂଳେ ମଣିବ ସମସ୍ତେ ॥
ବିଷ୍ଣୁ ଭକତ ଗଲେ ପାଶ । ଲଗାଅ ଏତେକ ସାହସ ॥
ଏମନ୍ତ ବୋଲି ତାଙ୍କୁ ଧରି । ବିବିଧମତେ ମାଡ଼ ମାରି ॥
ବୋଇଲେ ପଳାଅରେ ବେଗେ । କହ ଭୁମ୍ଭର ସ୍ୱାମୀ ଆଗେ ॥
ସେଠାରୁ ଯମଦୂତେ ଡରି । ପଳାଇଗଲେ ବେଗ କରି ॥
ଏଣେ ଯେ ବିଷ୍ଣୁଦୂତମାନେ । ବସାଇଁ ତାହାକୁ ବିମାନେ ॥
ମୁଖରେ ଜୟ ଜୟ କରି । ଘେନିଣ ଗଲେ ବିଷ୍ଣୁପୁରୀ ॥
ବିଷ୍ଣୁ ଲୋକରେ ଗଣା ହୋଇ । ବସିଲା ବିଷ୍ଣୁପୁରେ ଯାଇ ॥
ଏମନ୍ତ ପାପୀକି ଏ ଗତି । ଦେଲେ ସେ ପ୍ରଭୁ ଦାଶରଥି ॥
ଶୁଣ ସୁମନ ଏକଚିତ୍ତେ । ନାମର ମହିମା ଏମନ୍ତେ ॥
ନାମଟି ସର୍ବ ସୁଖମୟ । ନାମଟି ଜଗତେ ଉଦୟ ॥
ନାମ ସକଳ ଘଟେ ବସେ । ଥାଇ ସେ କାହିଁରେ ନ ମିଶେ ॥
ନାମର ରୂପ ରେଖମାନ । ବେଦନା କରେ ଅନୁମାନ ॥
ସିଦ୍ଧ ଯୋଗୀନ୍ଦ୍ର ମୁନି ଯେତେ । ନାମର ମହିମା କହିଁତେ ॥
ନାମର ମହିମା ଅଶେଷ । ଶେଷ ଯେ ନ ଜାଣନ୍ତି ଲେଶ ॥
ବିବୁଧ ଆଦି ଆଖଣ୍ଡଳ । ଆବର ଦଶଦିଗପାଳ ॥
ରବି ଶଶାଙ୍କ ଆଦି ଯେତେ । ନାମର ମହିମା କହିଁତେ ॥
କାହୁଁ ଜାଣିବେ ସେହିମାନେ । ଅଦ୍ୟାପି ଅବୁଝନ୍ତି ମନେ ॥
ଦେଖ ଏ ଜଗତର ପିତା । ପୂର୍ଣ୍ଣ ସେ ସୃଷ୍ଟିର କରତା ॥
ନାମ ତାଙ୍କର ଅଟେ ବ୍ରହ୍ମା । ନ ଜାଣେ ସେ ନାମ ମହିମା ॥
ଅଦ୍ୟାପି ଭ୍ରମନ୍ତି ସଂସାରେ । ଜନ୍ମ ମରଣ ଲଭିବାରେ ॥
ନାମରୁ ଅର୍ଦ୍ଧେକ ଭୂଷଣ । ଭଜି ଅମର କଲେ ପିଣ୍ଡ ॥
କେବଳ ନାମରେ ବିଶ୍ୱାସ । କରନ୍ତି ଏକା ଦିଗବାସ ॥
ସେ ନାମାମୃତ ରସ ପିଇ । ରହିଲେ ମୃତ୍ୟୁଞ୍ଜୟ ହୋଇ ॥
ଜଗତେ ବୋଲନ୍ତି ଈଶ୍ୱର । ଏଣୁ ଜାଣନ୍ତି କାହିଁ ହର ॥

ଆଉ ଇତର ଜନ ଯେତେ । ସେ କାହିଁ ଜାଣିବେ କେତେ ॥
ସେ ରାମ ନାମାକ୍ଷର ଦୁଇ । ମହିମା ଅନ୍ତ ଯାର ନାହିଁ ॥
ଆକାଶ ବୋଲଏ ଅନନ୍ତ । ତାକୁ ବା କେ କରିଛି ଅନ୍ତ ॥
ଗଣା ହୋଇବ ସ୍ୱର୍ଗତାରା । ଆବର ବରଷାର ଧାରା ॥
ପୃଥ୍ୱୀରେ ରେଣୁ ଅଛି ଯେତେ । ସମୁଦ୍ର ଲହରୀ ସହିତେ ॥
ଏ ସର୍ବ ଅବା ଗଣା ହେବ । ନାମ ମହିମା କେ କହିବ ॥
ଏଣୁ ଏ ନାମ ଭଜ ନରେ । ଯେ ଜନ ଥିବ ଏ ସଂସାରେ ॥
ସେ ପ୍ରାଣୀ ତରିବେ ଅବଶ୍ୟ । ତାଙ୍କୁ ପାତକ ଗୁର କସ ॥
ନ ଥାଉ ତାର ଦାନ ପୁଣ୍ୟ । ନ କରୁ ତୀର୍ଥ ଜଳେ ସ୍ନାନ ॥
ଭରି ନ ଥାଉ ଯଶ କୀର୍ତ୍ତି । ବିଷୟ ରସେ ଥାଉ ମତି ॥
ନ କରୁ ହୋମ ଯଜ୍ଞମାନ । ନିରତେ ହେବ ନିଦ୍ରାହୀନ ॥
ଯହିଁ ବୋଲଇ ତହିଁ ଥାଉ । ଯେଣିକି ଇଚ୍ଛା ତେଣେ ଯାଉ
କେବଳ ନାମରେ ବିଶ୍ୱାସ । ଥିଲେ ସେ ତରିବ ଅବଶ୍ୟ ॥
ଏଥି ସନ୍ଦେହ ନାହିଁ ଜାଣ । ସକଳ ଶାସ୍ତ୍ରମୁଖେ ଶୁଣ ॥
ନାମଟି ଏଡ଼େ ତେଜୋମୟ । ତୁଳା ପର୍ବତେ ଅଗ୍ନି ପ୍ରାୟ ॥
କ୍ଷଣକେ କରେ ଭସ୍ମରାଶି । ଯେସନେ ପାପକୁଳଧ୍ୱଂସି ॥
ଉଦୟ ହେଲେ ଦିବାକର । ଯେସନ୍ତେ ନାଶଇ ତମ ଘୋର
ଯେସନେ ଶରଦର କାଳ । ଜଳ ବିନାଶେ ସର୍ବ ମଳ ॥
ତେସନ ନାମ ଉଚ୍ଚାରଣେ । ପାପ ପଳାନ୍ତି ଏଣେ ତେଣେ
ନିର୍ମଳ ହୁଏ ତାର ଅଙ୍ଗ । ସେ ହୁଏ ବିଷ୍ଣୁଲୋକେ ସଙ୍ଗ ॥
ଏଣୁ ଏ ରାମନାମ ବାଣୀ । ସେ ସର୍ବ ପୁରେ ଶିଖାମଣି ॥
କୋଟିଏ ଯଜ୍ଞ ଯେବେ କରି । ନାମ ଗୋଟିକୁ ନୋହେ ସରି
ମେରୁ ସମାନ ରତ୍ନମାନ । ବ୍ରାହ୍ମଣ ହସ୍ତେ ଦେବ ଦାନ ॥
ବସାଇ ଅନେକ ଶାସନ । ଭୂମିମଣ୍ଡଳ ଦେବ ଦାନ ॥
ଗୋଗୋଷ୍ଠ ଲକ୍ଷ ଲକ୍ଷ କରି । ସୁବର୍ଣ୍ଣ ଅଳଙ୍କାର ଭରି ॥

ଆବର ସୁବସ୍ତ୍ରା ସହିତେ । ଦାନହିଁ ଦେବ ଅପ୍ରମିତେ ॥
ଗଜ ତୁରଙ୍ଗ ଆଦି ଯେତେ । ବିପୁଳ ମନ୍ଦିର ସହିତେ ॥
ଦରିଦ୍ରେ ଦେବ ମିଷ୍ଟ ଅନ୍ନ । କୋଟି ଶଙ୍ଖ ଯାରେ ଦେବଦାନ ॥
ଗ୍ରୀଷ୍ମ କାଳେ ଜଳଛତ୍ର । ଚର୍ମପାଦୁକା ଅପ୍ରମିତ ॥
ଅନେକ ବ୍ୟାଧିବନ୍ତ ନର । ତାହାଙ୍କୁ କରି ଉପକାର ॥
ଅଣାଇ ବୈଦ୍ୟ ମଉଷଧି । ଭଲ କରାଉଥିବ ବ୍ୟାଧି ॥
ଏ ସର୍ବ ପୁଣ୍ୟ ତୂଳ କରି । ନାମ ଭଜନେ ନୋହେ ସରି ॥
ତରାଜୁ ଧରି ତୁଳକରି । ପଢ଼ିବ ରାମ ନାମାବଳୀ ॥
ଏମନ୍ତ ଶ୍ରୀରାମ ମହିମା । କେ ମୁଖେ କରିବ ଗାରିମା ॥
ଧନ୍ୟ ସେ ରାମନାମ ଗୋଟି । ଭବ ବନ୍ଧନ ପାରେ କାଟି ॥
ପ୍ରାଣୀଙ୍କ ଲଲାଟ ଲିଖନ । ଦଣ୍ଡକେ କରିପାରେ ଆନ ॥
ଯାହା ନୋହିବ ଏ ଜଗତେ । ସେ କରି ପାରିବ ସାକ୍ଷାତେ ॥
ଦେଖ ଏ ନିର୍ଜୀବନ୍ତ ପାଷାଣ । ଲାଗିବା ମାତ୍ରେ ଶ୍ରୀଚରଣ ॥
ତକ୍ଷଣେ ହୋଇଲା ସୁନ୍ଦରୀ । ଆନ କେ ପାରେ ଏହା କରି ॥
ଦେଖ ସେ ଆଜ୍ଞା ଅଲୌକିକ । ନାହିଁ ନୋହିବ ଏ ଜଗତ ॥
ପର୍ବତ କୋଟିଏ ସଂଖ୍ୟାରେ । ନେଇ ପକାନ୍ତେ ରତ୍ନାକରେ ॥
ଭାସିଲା ସୋଲଭେଲା ଯଥା । ଆଜକୁ ରହିଛି ସେ କଥା ॥
ଦେଖ ବିଧାତାଠାରୁ ବର । ପାଇ ଅମର ଦଶଶିର ॥
ବଧିଲେ ତାହାର ଜୀବନ । ଧାତା ଲିଖନ କରି ଆନ ॥
କାଳେ ସେ ଲଭିଲା ମରଣ । ଅମର କଲେ ବିଭୀଷଣ ॥
ମାର୍କଣ୍ଡେ ବ୍ରହ୍ମାପଦ ଦେଲେ । ବେଶ୍ୟାନାରୀଙ୍କି ସ୍ଵର୍ଗେ ନେଲେ ॥
ମନୁଷ୍ୟେ ଦେଲେ ଧାତା ପଦ । ସ୍ଵର୍ଗରେ ଇନ୍ଦ୍ର ପ୍ରହ୍ଲାଦ ॥
ସାଧ୍ଵୀ ନାରୀଙ୍କି ଦୋଷୀ । କଲେ ସେ ଜଳନ୍ଧର ନାରୀ ॥
ସପତ ସମୁଦ୍ରର ଜଳ । ନାରାଚ ଅଗ୍ରେ କଲେ ତୂଳ ॥
ଏମନ୍ତ ଯେହୁ କରିପାରେ । କିସ ଉପମା ଦେବି ତାରେ ॥

ସବୁର ଆତ୍ମା ଆତ୍ମାରାମ । ଆଉ କେ ଅଛି ତାର ସମ ॥
ଏଣୁ ସେ ନାମ ଆଶ୍ରେ ଯାର । ସଂସାରେ ଭୟ ନାହିଁ ତାର ॥
ନିଶ୍ଚେ ସେ ହେଲା ପରବାଣ । ହେ ମନ ସତ୍ୟ ବୋଲି ଜାଣ ॥
ଏଣୁ ସେ ନାମ ରତ୍ନ ଗୋଟି । ମନ ବସନେ ବାନ୍ଧ ଗଣ୍ଠି ॥
ହୃଦ ସମ୍ପୁଟ ମଧ୍ୟେ ଭର । ଦୃଢ଼ ଡ଼ାକୁଣୀ ତହିଁ କର ॥
ଜାଗ୍ରତେ ଯାଗ ସର୍ବକାଳେ । ପାସୋର ନ ଦିଅ ତୁ ତାଳେ ॥
ହେଲ ଜୀବକୁ କର ଦକା । ନିତହିଁ ଦେଖୁଥିବ ଏକା ॥
ସୁଚେତା ରଖ ଜଗୁଆଳ । କିସ କରିବ ମୃତ୍ୟୁକାଳ ॥
ଏହି ସେ ସର୍ବ ଧର୍ମ ସାର । ହେ ମନ ସନ୍ଦେହ ନ କର ॥
ସକଳ ବେଦଶାସ୍ତ୍ରେ ଶୁଣ । ଈଶ୍ୱରବାକ୍ୟ ଏ ପ୍ରମାଣ ॥
ନାରଦ ଆଦି ମୁନି ଯେତେ । ଯେ ବ୍ରହ୍ମଜ୍ଞାନୀଙ୍କ ସଙ୍ଗତେ ॥
ତାଙ୍କ ବଚନ ଏହି ସତ୍ୟ । ଶୁଣ ହେ ମନ ମହାତତ୍ତ୍ୱ ॥
କେବଳ ତୋର କୃପା ଥାଉ । କାହିଁହିଁ ଭୟ ନାହିଁ ଆଉ ॥
ହେ ମନ ଶୁଣ ଶୁଦ୍ଧଚିତ୍ତେ । ନାମର ମହିମା ଏମନ୍ତେ ॥
ସେ ରାମ ନାମ ଗୋଟି ମୋର । ନିରତେ ରହୁ କଣ୍ଠଦ୍ୱାର ॥
ସୁଜନେ ଏହି ରସେ ରସ । ନିରତେ ରାମ ନାମ ଘୋଷ ॥
ଏ ଭବବ୍ୟାଧିକି ଔଷଧି । ଜାଣ କେବଳ ଦୟାନିଧି ॥
ମୁକୁନ୍ଦ ମାଧବ ମୁରାରି । କୃଷ୍ଣ କେଶବ ଦଇତ୍ୟାରି ॥
ପରମାନନ୍ଦ ବାସୁଦେବ । ହରି ଗୋବିନ୍ଦ ପଦ୍ମନାଭ ॥
ଶ୍ରୀନାରାୟଣ ଚକ୍ରପାଣି । ଦାସବତ୍ସଳ ଦିନମଣି ॥
ଶ୍ରୀଜଗନ୍ନାଥ କୃପାସିନ୍ଧୁ । ଦାସବତ୍ସଳ ଦୀନବନ୍ଧୁ ॥
ବ୍ରଜମୋହନ ହୃଷୀକେଶ । ପୁରୁଷୋତ୍ତମ ପୀତବାସ ॥
ଅନନ୍ତ ଅଚ୍ୟୁତ ଶ୍ରୀଧର । ପଦ୍ମନୟନ ଗଦାଧର ॥
ନବୀନ ଦୁର୍ବାଦଳ ମୂର୍ତ୍ତି । ଶ୍ୟାମସୁନ୍ଦର ଦାଶରଥି ॥
ନନ୍ଦନନ୍ଦନ ବଂଶୀଧର । ରାଧାବଲ୍ଲଭ ପ୍ରାଣେଶ୍ୱର ॥

ଏ ଆଦ୍ୟ ନାମାବଳୀ ଯେତେ । ସୁଜନେ ଶାନ୍ତ ହୃଦଗତେ ।
ସଭ୍ୟର ପ୍ରଭୁ ସେ ଶ୍ରୀହରି । ସକଳ ଘଟେ ଛନ୍ତି ପୂରି ।
ସକଳ ଜୀବର କରତା । ସଭ୍ୟର ଗତି ମୁକ୍ତି ଦାତା ।
ଯେ ଶୁଭାଶୁଭ କର୍ମମାନ । କରତା ପ୍ରଭୁ ଭଗବାନ ।
ତା ବିନୁ ଆନ ନାହିଁ ଜଣେ । ଶରଣ ପଶ ସେ ଚରଣେ ।
ଭାବର ବନ୍ଧୁ ସେ ଗୋସାଇଁ । ଅଭାବ ଜନେ ଭେଟ ନାହିଁ ।
କହଇ ବିପ୍ର ରାମଦାସ । କେବଳ ମୂଳଟି ବିଶ୍ୱାସ ॥
ବିଶ୍ୱାସ ବିନା ଯେତେ କର୍ମ । ଜାଣ କେବଳ ବୃଥା ଶ୍ରମ ।
କିସ କହିବ ମୂର୍ଖ ଗ୍ୱାର । ସାଧୁଙ୍କୁ ସମସ୍ତ ଗୋଚର ।
ମୂର୍ଖ ଜନଙ୍କୁ ଏକା ଭୀତ । ନ ଗୁଣନ୍ତି ଜନ୍ତୁଙ୍କ ପ୍ରକୃତ ।
ଗୁଢ଼ ଦୁର୍ଲଭ ସ୍ଥାନମାନ । ଯହିଁ ଦେଖନ୍ତି ବିଷ୍ଣୁ ଚିହ୍ନ ।
ତହିଁ ଜପନ୍ତି ମୁନିବର । ତେଣୁ ମୂର୍ଖଙ୍କୁ ଏକା ଡର ॥
ଦେଖ ମକ୍ଷିକା ମନ୍ଦ ହୀନ । ତେଜିଲା କର୍ପୂର ଚନ୍ଦନ ।
ଦୁର୍ଗନ୍ଧ ଦେଖିଲେ ତା ପାଶେ । ଅତି ଆନନ୍ଦେ ତହିଁ ପଶେ ।
ଏମନ୍ତ ମୂର୍ଖଙ୍କର ଭାବ । କେ ତାହା ଅନ୍ୟଥା କରିବ ॥
ସାଧୁଙ୍କ ପଦକୁ ମୋହର । କୋଟିଏ ବାର ନମସ୍କାର ॥
ନାରନ୍ତେ ପର ଉପକାର । ଏଣୁ ମୋ ଦୋଷ କ୍ଷମାକର ॥
କହଇ ବିପ୍ର ରାମଦାସ । ଏ ଦାର୍ଢ୍ୟଭକ୍ତି କଥାରସ ॥
ଭବାବ୍ଧି ତରିବାର କାଳେ । ମୋତେ ଉଦ୍ଧର ନାଅ କୂଳେ ।
ମୁଁ ମୂଢ଼ ପତିତ ପାମର । ଦୁଷ୍ଟ ଦୁର୍ମତି ଦୁରାଚାର ॥
ଦାମ୍ଭିକ ନାସ୍ତିକ କପଟୀ । ନାରନ୍ତେ ବିଷୟୀ ଲମ୍ପଟୀ ॥
ନ ଜାଣେ ପାଠ ଶାସ୍ତ୍ରରୀତି । ହରି ଭଜନେ ନାହିଁ ମତି ॥
ନିଶିଦିବସ ଶୟନରେ । ନାରନ୍ତେ ଧନ ଇଚ୍ଛା କରେ ॥
କାମିନୀ ସଙ୍ଗେ ଚିତ୍ତ ଜଡ଼ । ତଳେହେଁ ନ ପାରଇ ଗୁଡ଼ ।
ସାଧୁଙ୍କ ସଙ୍ଗେ ନାହିଁ ମେଳ ॥ ଏମନ୍ତେ ବଞ୍ଚାଇଲି କାଳ ।

ଆସି ଘୋଟିଲା ଏବେ କାଳ । ଏଥୁ ଉଦ୍ଧର ଋଷୁବାଳ ॥
ତୁମ୍ଭେ ଯେ ପତିତପାବନ । ମୁଁ ଯେ ଅଟଇ ପାପୀଜନ ॥
ଏଣୁ ଭରସା ମୋର ଅଛି । ସଂସାରେ ଭୟ ନାହିଁ କିଛି ॥
ଶ୍ରୀଧର ମୃଦୁ ପଦ୍ମପାଦ । ତହିଁ ମୋ ମନ ଷଟପଦ ॥
ନିରତେ କରୁ ମଧୁପାନ । ଏ ଆଜ୍ଞା କର ଜନାର୍ଦ୍ଦନ ॥
ମୋ ଅପରାଧ କ୍ଷମାକର । ଚରଣେ ଶରଣ ତୁମ୍ଭର ॥
ଭଣଇ ବିପ୍ର ରାମଦାସ । ମୋହର ପ୍ରଭୁ ପୀତବାସ ॥
ସେ ପୀତବାସଙ୍କର ଗୁଣ । ଜାଣନ୍ତି ଏକା ସାଧୁଗଣ ॥
ସେ ସାଧୁଗଣ ପାଦଧୂଳି । ମଣ୍ଡନ ହେଉ ମୋ ମଉଳି ॥
ଏ ଦାର୍ଢ୍ୟଭକ୍ତି ରସାମୃତ । କେବଳ ଶ୍ରବଣେ ଅମୃତ ॥
ଶ୍ରୀ ଦିବ୍ୟସିଂହ ଦେବଙ୍କର । ସମ୍ପୂର୍ଣ୍ଣ ତେଇଶି ଅଙ୍କର ॥
ଆଷାଢ଼ଶୁକ୍ଳ ହରିବାସେ । ଶ୍ରୀମୁକ୍ତେଶ୍ୱରଙ୍କର ପାଶେ ॥
ସଦା ସମ୍ପୂର୍ଣ୍ଣ ଜୟ କରି । ରାମ ଚନ୍ଦ୍ରଇ ରାମହରି ॥
ମହୁରୀ ରାଜ୍ୟେ ମୋର ଗ୍ରାମ । ସେ ଗ୍ରାମେ ମୋହର ଆଶ୍ରମ ॥
ଶ୍ରୀଗୁରୁ ଗଦାଧର ଦାସ । ସେ ପାଦପଦ୍ମେ ମୋର ଆଶ ॥
ପିତା ମୋ ଲଛମନ ଦାସ । ମୁହିଁ ଅଟଇ ତାଙ୍କ ଶିଷ୍ୟ ॥
ନାହିଁ ମୋହର ବାଡ଼ ବୃତ୍ତି । ଭରସା ଲକ୍ଷ୍ମୀଦେବୀ ପତି ॥
ଆବର ସାଧୁଙ୍କ ଚରଣ । ସେ ମୋର ପରମ କାରଣ ॥
ଏ ଦୁଇ କୃପାରୁ ଟି ସତ । ହେଲା ଏ ଦାର୍ଢ୍ୟ ରସାମୃତ ॥
ପ୍ରଥମ ପ୍ରବନ୍ଧ ପଚିଶ । ଅଧ୍ୟାୟେ ହୋଇଥିଲା ଶେଷ ॥
ତହିଁ ବଡ଼ତ ସମ୍ବାଦର । ଉତ୍ତରୁ ସାଧୁମାନଙ୍କର ॥
କୃପାରୁ ପୁଣି ପଞ୍ଚବିଂଶ । ଅଧ୍ୟାୟ ଦାର୍ଢ୍ୟଭକ୍ତି ରସ ॥
ଦୁଇ ପ୍ରବନ୍ଧ ମିଶିବାରେ । ସମ୍ପୂର୍ଣ୍ଣ ପଞ୍ଚାଶ ଅଧ୍ୟାରେ ॥
ପଦ ପଦକେ ସୁଧାରସ । ସୁଜନେ କରନ୍ତୁ ଘୋଷ ॥
ଏଥେ ନିର୍ମଳ ଚିତ୍ତ ଯାର । କର୍ଣ୍ଣେ ସେ ଭବୁ ହେବ ପାର ॥

କହଇ ବିପ୍ର ରାମଦାସ । ମୋତେ ଜନ୍ଦର ପୀତବାସ ॥
ଜଞ୍ଜର କବାଟ ନ ଉଦ୍ଧର । ଭରସା ଅଛଇ ମୋହର ॥
ଇତି ଶ୍ରୀଦାର୍ଢ୍ୟଭକ୍ତିରସାମୃତେ ମନ ଚୈତନ୍ୟ ସମ୍ବାଦେ
ଅଜାମିଳ ପଣ୍ଡା ସ୍ୱର୍ଗଗମନେ ନାମ ପଞ୍ଚାଶତ୍ତମୋଽଧ୍ୟାୟଃ ।

---

## ଏକପଞ୍ଚାଶତ୍ ଅଧ୍ୟାୟ
## ଗରିବ ଦାସ ସମ୍ବାଦ

ନମଇଁ ପ୍ରଥମେ ଗଣପତି । ଫେଡ଼ ହେ ମୋହର ଦୁର୍ଗତି ॥
ମୁଁ ତୁମ୍ଭ ଚରଣେ ଶରଣ । ମୋ ବିଘ୍ନକର ବିନାଶନ ॥
ଶ୍ରୀଗୁରୁ ପାଦେ ନମସ୍କାର । ଦୟା କରିବେ ଚକ୍ରଧର ॥
ଶ୍ରୀନୀଳଗିରି ଜଗନ୍ନାଥ । ତୋ ପାଦେ ଲାଗୁ ମୋର ମାଥ ॥
ହେ ସାଧୁଜନେ କୃପା କର । ତୁମ୍ଭ ଦୟାରୁ ହେବି ପାର ॥
କୃପା କର ହେ ନରହରି । ଘଟ ଘଟରେ ଅଛ ପୂରି ॥
ମନ କହନ୍ତି ଚଇତନ । କହ ହେ ଭକ୍ତ କଥାମାନ ॥
ଭକ୍ତମାନଙ୍କ କଥା ସାର । କହି ପବିତ୍ର ମୋତେ କର ॥
କର୍ଣ୍ଣେ ମୋ ନୁହଇ ତୃପତ । କହିବ ଭକ୍ତଙ୍କ ଚରିତ ॥
ଚୈତନ୍ୟ କହେ ଶୁଣ ମନ । ଉତ୍ତରଖଣ୍ଡେ ପୁଣ୍ୟସ୍ଥାନ ॥
ଜୟନଗର ବୋଲି ନାମ । ସେ ଦେଶେ ଅଛେ ତାର ଧାମ ॥
ରଘୁବର ପାଣ୍ଡେ ତା ନାମ । ପଣ୍ଡିତ ପଣରେ ଉତ୍ତମ ॥
ସେ ବଡ଼ ଧନାଢ୍ୟ ଅଟଇ । ବହୁ କୁଟୁମ୍ବ ତାର ଥାଇ ॥
ପୁତ୍ରେକ ନାମ ତା ଗରିବ । ଶାନ୍ତ ସୁଶୀଳ ତାର ଭାବ ॥
ଦୟା ତା ଥାଇ ଜୀବଠାରେ । କ୍ରୋଧହିଁ ନ ଥାଇ ହୃଦରେ ॥
ହରି ମଣିଲ ସବୁଦେହେ । ଉଦାସେ ଦିନ କାଟିଥାଏ ॥
ନାମରେ ଅନୁକ୍ଷଣେ ରତ । ମନେ ଚିନ୍ତଇ ରଘୁନାଥ ॥
କଥାପୁରସେ ରତ ଥାଇ । ହୃଦୟେ ନାମକୁ ଚିନ୍ତଇ ॥

ଦିନେ ବୈରାଗ୍ୟ ହେଉ ଜାତ । ଘରୁ ବାହାର ସେ ତୁରିତ ॥
ବୈଷ୍ଣବ ଭେକ ଆଚରିଲେ । କର୍ଣ୍ଣେ କଣ୍ଠେ ମାଳା ଭରିଲେ ॥
ତିଳକ କରି ଲଲାଟରେ । ଶଙ୍ଖ ଚକ୍ରାଦି ହୃଦୟରେ ॥
ରାମ ଭଜନ ଅନୁକ୍ଷଣେ । ପ୍ରବେଶ ହୋଇଲେ କାନନେ ॥
ଏକ ବୃକ୍ଷର ତଳେ ରହି । ଶ୍ରୀରାମ ଭଜଣ ନାଚଇ ॥
ଶ୍ରୀରାମ ରୂପକୁ ହେଜିଲେ । ହୃଦୟ ମଧ୍ୟେ ସ୍ଥାନ ଦେଲେ ॥
ବୋଲନ୍ତି ନମୋ ରଘୁବୀର । ମହିମା ଅପାରୁ ଅପାର ॥
ମୁଁ ତ ଅଟଇ କର୍ମହୀନ । କିରୂପେ କରିବ ପୂଜନ ॥
ମାନସ ପ୍ରକାର ବିଧାନେ । ବେଶ କରଇ ମନେ ମନେ ॥
ନୀଳ ଜୀମୂତ ରୂପ ସାର । କନ୍ଦର୍ପ ଜିଣି ସେ ସୁନ୍ଦର ॥
କରେ କୋଦଣ୍ଡ କାଣ୍ଡ ଶୋହେ । ଶିରେ ମୁକୁଟ ଶୋଭାପାଏ ॥
ଷୟୁରେ ରତନ ଜଡ଼ାଉ । ହୀରା ପଦକ ଦାଉ ଦାଉ ॥
ବସାଇ ତାଙ୍କୁ ବୀର ବେଶେ । ଜାନକୀ ରଖାଇ ପାର୍ଶ୍ୱେ ॥
ଲକ୍ଷ୍ମଣ ବୀରଛନ୍ଦ ଧରି । ବାଙ୍କରେ ଠେକଣ ଭିଡ଼ି ॥
ଚାମର ଢାଳନ୍ତି ଭରତ । ଶତ୍ରୁଘ୍ନ ଆଲଟରେ ରତ ॥
ପାଦେ ସେବଇ ହନୁମନ୍ତ । ଚତୁର୍ଭୁଜ ମୂର୍ତ୍ତି ସୀତାକାନ୍ତ ॥
ପୀତବସନ ଆଭରଣ । ଶ୍ରୀକରେ ରତନ କଙ୍କଣ ॥
ଅଙ୍ଗୁଳିମାନଙ୍କେ ମୁଦ୍ରିକା । ନବରତ୍ନରେ ଯେ ଝଲକା ॥
ହୃଦରେ ରତନ ଭୂଷଣ । ଏମନ୍ତ ରୂପ କରି ଧ୍ୟାନ ॥
ନୃତ୍ୟ କରନ୍ତି ସମ୍ମୁଖରେ । ଆନନ୍ଦ ହୋଇଣ ମନରେ ॥
ହେ ପ୍ରଭୁ ମୋତେ କୃପା କର । ଏ ଭବସାଗରୁ ଉଦ୍ଧର ॥
ଦୟାସାଗର ରଘୁବୀର । ହୃଦେ ଦର୍ଶନ ଦେଲେ ତାର ॥
କୋଟି କନ୍ଦର୍ପ ରୂପ ଦେଖି । ପିଛୁଡ଼ି ନ ପାରଇ ଆଖି ॥
କୋଟିଏ ସୂର୍ଯ୍ୟ କି ବା ଉଦୟେ । ଦେଖି ନୟନୁ ଲୁହ ବହେ ॥
ନୟନ ଲୁହ ହୃଦଯାକ । ଭୂମିରେ ପଡ଼ଇ ଅନେକ ॥

ଆନନ୍ଦସାଗରେ ବୁଡ଼ିଲା । ଦେହରୁ ପ୍ରାଣ କି ଗ୍ରୁଡ଼ିଲା ॥
ଥପ୍ନ ନୁହଇ ତାର ଶତ୍ର । ପିଣ୍ଡ ହୋଇଲା ମୃତବତ ॥
ଏମନ୍ତ ଦେଖି ରଘୁନାଥ । କୋଳରେ ଧଇଲେ ତୁରିତ ॥
ପଦ୍ମକରରେ ଝାଡ଼ିଦେଲେ । ହେ ଭକ୍ତବର ମାଗ ବୋଲେ ॥
ତୁ ଅଟୁ ଭକତଶେଖର । ମନ ଇଚ୍ଛାରେ ମାଗ ବର ॥
ଗରିବ କହେ କାର୍ପଣ୍ୟରେ । ହେ ପ୍ରଭୁ କୃପା କର ମୋରେ ॥
ଚିନ୍ତା ମୁଁ କଲେ ମୋ ହୃଦରେ । ଦର୍ଶନ ଦେଉଥିବ ବାରେ ॥
ଭୂତ ଭବିଷ୍ୟ ବର୍ତ୍ତମାନ । ଚିନ୍ତିଲେ ଜାଣିବି ମୁଁ ପୁଣ ॥
ଇଚ୍ଛାରେ ମୃତ୍ୟୁ ହେବ ମୋର । ନାମ ଖ୍ୟାତ ହେବ ଅପାର ॥
ଯହିଁକି ମୁଁ ମନ କରିବି । ତକ୍ଷଣେ ସେଠାରେ ମିଳିବି ॥
ଏ ବର ଦିଅ ରଘୁବୀର । ତୋ ପାଦପଦ୍ମେ ଚିତ୍ତ ସ୍ଥିର ॥
ଶ୍ରୀମୁଖେ ଅସ୍ତୁ ଅସ୍ତୁ ବାଣୀ । ଆନନ୍ଦ ହୋଇ ପ୍ରଭୁ ଭଣି ॥
ଏମନ୍ତ ଶୁଣି ସେ ଭକତ । ସାଷ୍ଟାଙ୍ଗେ କଲା ଦଣ୍ଡବତ ॥
ପ୍ରଣାମ କଲା ବାରବାର । ଅଦୃଶ୍ୟ ହେଲେ ରଘୁବୀର ॥
ତହୁଁ ଭକତ ତତକାଳେ । ଶ୍ରୀ ବୃନ୍ଦାବନ ଚଳିଗଲେ ॥
କୃଷ୍ଣଚନ୍ଦ୍ରଙ୍କୁ ଦେଖି ଆଗେ । ଦ୍ୱାରକା ଗଲେ ସାଧୁ ସଙ୍ଗେ ॥
ଗୁପ୍ତାଧାମି ହୋଇ ଆବର । ମହିମା ଦେଖାଇ ସେଠାର ॥
ଅନେକ ସାଧୁ ବୃନ୍ଦ ସଙ୍ଗେ । ପ୍ରୟାଗ କାଶୀ ଗଲେ ରଙ୍ଗେ ॥
ସାଗର ସଙ୍ଗମରେ ହୋଇ । କୀର୍ତ୍ତି ରଖାଇ ତହୁଁ ଯାଇ ॥
ରାମନାଥ ଦର୍ଶନ କଲେ । ନୀଳାଦ୍ରି ପ୍ରବେଶ ହୋଇଲେ ॥
କ୍ଷେତ୍ରର ପରିକ୍ରମା କଲେ । ନୀଳାଦ୍ରିନାଥଙ୍କୁ ଦେଖିଲେ ॥
ନାତ ଦେଖିଣ ଜଗଦୀଶ । ବେଶ ଦେଖିଣ ହେଲେ ତୋଷ
ଆନନ୍ଦେ ବଦା ହୋଇ ଗଲେ । କାଠଯୋଡ଼ି କୂଳେ ମିଳିଲେ ॥
ସ୍ୱଭାବେ ଭାଦ୍ରବର ମାସ । ନଦୀ ପୂରିଛି ବେନି ପାଶ ॥
ପକାଇ ମୃଗଛାଲ ଜଳେ । ବସିଣ ନଦୀ ପାର ହେଲେ ॥

କଟକେ ପ୍ରବେଶ ହୋଇଲେ । ସାଧୁ ବୃନ୍ଦଙ୍କୁ ସଙ୍ଗ କଲେ ॥
ମହାନଦୀର କୂଳେ ରହି । ବାରବାଟି ନିକଟେ ଯାଇଁ ॥
ସେ ବାରବାଟି ପଶ୍ଚିମରେ । ଦେଉଳ ନିର୍ମାଣ ସେ କଲେ ॥
ଚତୁର୍ଦ୍ଧା ମୂର୍ତ୍ତି ସ୍ଥାପି ତହିଁ । ଦେଉଳ ପ୍ରତିଷ୍ଠା କରାଇ ॥
ଶ୍ରୀନୀଳଗିରି କୀର୍ତ୍ତିମାନ । ତହିଁ ଖଞ୍ଜିଲେ ପ୍ରତିଦିନ ॥
ଅବକାଶ ଯେ ଧୂପ ଆଦି । ଛତିଶ ଭୋଗ ଯେ ପ୍ରସିଦ୍ଧି ॥
କ୍ଷଣ କ୍ଷଣକେ ବେଶ କଲେ । ପ୍ରସାଦେ ସଦାବ୍ରତ ଦେଲେ ॥
ଛତିଶ ନିଯୋଗିମାନଙ୍କୁ । ଆଜ୍ଞା କରି ଦେଲେ ତାଙ୍କୁ ॥
ବାର ମାସରେ ତେର ଯାତ । ନିୟମେ କରନ୍ତି ସମସ୍ତ ॥
ନୌବତ ବଜାଇ ଗହଳେ । ବାଦ୍ୟ ବଜାଇ କୁତୁହଳେ ॥
ଦେଉଳ ଶିଖେ ଉଡ଼େ ନେତ । ଭକ୍ତଙ୍କୁ ରଖିବା ନିମିତ୍ତ ॥
କଂସାର କବାଟ ପକାଇ । ଖଞ୍ଜିଲେ ଗୃହଦ୍ୱାରେ ନେଇ ॥
ଘଣ୍ଟ ଯେ କରତାଳମାନ । ଶିଙ୍ଗା ବଜାଇ ଘନ ଘନ ॥
ସାନ୍ଧ୍ୟକାଳରେ ଶଙ୍ଖ ବାଦ୍ୟ । କେ କହୁ ସାଧୁଙ୍କ ଆନନ୍ଦ ॥
ଧର୍ମଶାଳାରେ ରହୁଥାନ୍ତି । ହରି ଶବ୍ଦରେ ଦିନ ନେଉନ୍ତି ॥
ଅନେକ ସାଧୁ ବୃନ୍ଦ ମିଳି । ଗହଳେ ହୁଅନ୍ତି ଦଳାଦଳି ॥
ଗରିବ ଦାସ ନିତ ନିତ । ସାଧୁଙ୍କ ଚରଣ କରନ୍ତି ॥
ପ୍ରେମ ଆନନ୍ଦେ ହୋଇ ଭୋଳା । ଏମନ୍ତି କେତେ ଦିନ ଗଲା ॥
ଶୁଣ ହେ ସୁମନ ସଜ୍ଜନ । ଅପୂର୍ବ ଅଛେ ଏ ଆଖ୍ୟାନ ॥
ବାରବାଟି ବୋଲନ୍ତି ଯେହୁ । ବାଦସା କଟକ ଅଛେ ସେହୁ ॥
ତହିଁରେ ଅଧିକ ଯବନ । ବଡ଼ ପ୍ରତାପୀ ଦୁଷ୍ଟମାନ ॥
ତାହାର ସୈନ୍ୟର ପ୍ରତାପେ । ଡରେ ଖଟନ୍ତି ପ୍ରଜାଲୋକେ ॥
ଉଦ୍ଦେ ଅନେକ ଲୋକ ଆସି । ଖଟିଣ ଥାନ୍ତି ଦିବା ନିଶି ॥
ବଡ଼ ପ୍ରତାପୀ ସେ ଯବନ । ପ୍ରଜାଙ୍କୁ ଯେସନ୍ତେ ଦ୍ୱିତୀ ଯମ ॥
ଅନ୍ୟାୟ ଦେଖିଲେ ଦଣ୍ଡଇ । ପୁଣ ପ୍ରାୟ କାନ ପାଳଇ ॥

ଏକ ଡଗର ତହିଁ ପୁଣ । ନବାବେ ଦେଲକ ସନ୍ଧାନ ॥
ଏଠାରେ ବଇଷ୍ଣବ ଜଣେ । ନାଗରି ଦିଏ ଉଚ୍ଛିଷ୍ଟାନେ ॥
ବହୁତ ନାଗାଙ୍କୁ ରଖିଣ । ଯୁଝିବ ଭୂମ୍ଭର ସଙ୍ଗେଣ ॥
ବଡ ଦେଉଳ କରି ଆର । ପାଟେରଶ୍ରୀ କରି ଉଜସାର ॥
କଂସା କବାଟ ଦ୍ୱାରେ କରି । ଧ୍ୱଜା ଉଡ଼ାଏ ସେ ନ ଡରି ॥
ଡଗର ବଚନ ଶୁଣିଣ । ଯବନ କ୍ରୋଧ କଲା ମନ ॥
ଆପଣା ଭକ୍ଷଦ୍ରବ୍ୟ ଆଣି । ପେଟରି ମଧ୍ୟେ ଭରି ପୁଣି ॥
ଯତନ କରି ସ୍ଥାନମାନ । ତହିଁରେ ମୁଦ ଦେଇ ପୁଣ ॥
ଡଗର କରେ ପେଷଦେଲା । ବୈଷ୍ଣବ ଭୁଞ୍ଜିବ ବୋଇଲା ॥
ଆମ୍ଭର ସମାନ ସେ ଯେବେ । ଖାଉ ଆମ୍ଭର ଦ୍ରବ୍ୟ ତେବେ ॥
ଡଗର ଶୁଣି ଘେନିଗଲା । ମହନ୍ତ ଦ୍ୱାରେ ଯାଇ ହେଲା ॥
ପାଦେ କଟାଉ ବେଢ ଧରି । ସେ ଦ୍ରବ୍ୟ ପରିକ୍ରମା କରି ॥
ବେଢ ଲଗାଇ ତିନିବାର । ବୋଇଲେ ଶୁଣ ରେ ଡଗର ॥
ନବାବ ଯାହା ଯେ ଦେଇଛି । ଭକ୍ଷଣ କରିବା କହୁଛି ॥
ଏବେ ତୁ ବାହୁଡ଼ାଇ ନିଅ । ଆମ୍ଭେ ଭକ୍ଷିଲୁ ବୋଲି କହ ॥
ଆମ୍ଭର ଅବଶେଷ ପାଉ । ଆମ୍ଭଠାରେ ଉପ୍ରୋଧ ନୋହୁ ॥
ଡଗର ତହୁଁ ବେଗେ ଗଲା । ନବାବେ ସମସ୍ତ କହିଲା ॥
ଶୁଣି ଯବନ କ୍ରୋଧଭରେ । ଫିଟାଇ ଦେଖିଲା ତହିଁରେ ॥
ସେ ଦ୍ରବ୍ୟମାନ ନାହିଁ କିଛି । ହାଡ଼ ଡପୁର ଗଜା ଅଛି ॥
ମନ ମଧ୍ୟରେ ଭୟ କଲା । ଆମ୍ଭେ ଦେଖିପିବୁ ବୋଇଲା ॥
ସେ ଯେ ଗରିବ ଦାସେ ତହିଁ । ମନେ ଚିନ୍ତନ୍ତି ଭାବଗ୍ରାହୀ ॥
ବୋଲେ ଏ ଦେହ ନ ରଖିବା । ସତ୍ୱରେ ସମାଧି ଘେନିବା ॥
ଦ୍ୱାର ସମ୍ମୁଖେ ଖାତ ଖୋଳି । ସମାଧି ଘେନିଲେ ନିରୋଳି ॥
ବହୁତ ସାଧୁଜନ ମିଳି । ହରି ଶବଦେ କରତାଳି ॥
ଦେଇଣ ବିଦା ହୋଇଗଲେ । ସମସ୍ତେ ହାହାକାର କଲେ ॥

ନବାବ ମନେ ମନେ ଡରି । ଦେଖିବା ଅର୍ଥେ ବେଳେକରି ॥
ଦେଖିଲା ସମାଧି ନୟନେ । କ୍ରୋଧେ ସେ କମ୍ପଇ ସଘନେ ॥
ବୋଲଇ କଣ୍ଠା ଏହା କଲା । ତା ଦ୍ରବ୍ୟ ଲୁଟି କରାଇଲା ॥
ଦେଉଳ ମଧ୍ୟେ କାଷ୍ଠ ଭରି । ପୋଡ଼ାଇ ଖଣ୍ଡ ଖଣ୍ଡ କରି ॥
ମନ୍ଦିର ତହୁଁ ଭାଙ୍ଗିଦେଲା । ମହଜିଦ ସେ ସ୍ଥାନେ କଲା ॥
ପୁଣି ଦୂତଙ୍କୁ ଆଜ୍ଞା ଦେଲା । ଗରିବ ଗଡ଼ ଲୁଟି ହେଲା ॥
ଆଉ ଅସାଧ ନାହିଁ ଗଡ଼ । ସାଧ ହୋଇଲେ ସାନବଡ଼ ॥
ଦେଖି ଗରିବ ଦାସ ରୋଷେ । ସମାଧି ତେଜି ଅବଶେଷେ ॥
ନିଶାରେ ବାଦସା ମନ୍ଦିରେ । ପ୍ରବେଶ ହେଲେ ଧୀରେଧୀରେ ॥
ବାଦସା ନିଦେ ଥିଲା ଶୋଇ । ବସିଲେ ଗ୍ରୀବପରେ ଯାଇ ॥
ବୋଇଲେ ଆରେ ଦୁରାଚାର । ଜୀବନ ନେବି ତୋହର ॥
ମୋର ସୁପଣ କଲୁ ନାଶ । ଦେଉଳ କରାଇଲୁ ଧ୍ୱଂସ ॥
ଏବେ ତହିଁର ପ୍ରତିଫଳ । ସମ୍ଭାଳ ପାଷାଣ୍ଡ ସମ୍ଭାଳ ॥
କ୍ଷଣକେ ବିନାଶିବି ତୋତେ । ଦୟା ଉପୁଜେ ମୋର ଚିତ୍ତେ ॥
ଯେବେ ଜୀବନେ ଅଛୁ ଆଶ । ନେଇ ତୁ ମୋର ଏହି ଭାଷ ॥
ଏଠାରେ ଦେଉଳ ମୋହର । କରିବ ଏ ନିଶ୍ଚୟ ମୋର ॥
ଦିଅ ତୁ ମୋତେ କିଛି ସ୍ଥାନ । ବୋଲି ହୋଇଲେ ଅନ୍ତର୍ଦ୍ଧାନ ॥
ବାଦସା ହୋଇ ଅତି ତ୍ରସ୍ତ । ଶେଯରୁ ଉଠିଲା ତୁରିତ ॥
ତମ୍ବାରେ ସନନ୍ଦ ଲେଖାଇ । ସାଧୁ ଶିଷ୍ୟଙ୍କୁ ଦେଲା ନେଇ ॥
ସେ ଲେଖା ପାଇ ଶିଷ୍ୟଗଣ । ମଠ ନିର୍ମାଣିଲେ ଆପଣ ॥
ପୂଜା ବାନ୍ଧିଲେ ଉପସାର । ସଦାବ୍ରତ ଖଞ୍ଜି ଆବର ॥
ରଘୁନାଥଙ୍କ ସେବା ପୂଷ୍ଟ । ସ୍ୱାମୀରେ ଖଞ୍ଜିଲେ ବିଶେଷ ॥
କିଛି ଦିନରେ ତହିଁ ପୁଣ । ଏକ ସ୍ତ୍ରୀ ଥିଏ ଚକ୍ଷୁହୀନ ॥
ବିଶ୍ୱାସେ ଅଧିଆ ପଡ଼ିଲା । ସେଠାରେ ଚକ୍ଷୁ ସେ ପାଇଲା ॥
ତହୁଁ ସେ ହୋଇଲା ବିଖ୍ୟାତ । ସେ ନଗରଲୋକେ ଦେଖି ତଥ୍ୟ ॥

ଅସୁନି କୃଷ୍ଣ ଲୋକମାନେ । ସେବା କରନ୍ତି ପ୍ରହ୍ଲାଦନେ ॥
ତାଙ୍କର ଗତି ମୁକ୍ତି ଆଉ । ଦେହ ଧାରି ଜାଣିବ କାହୁଁ ॥
ବ୍ରାହ୍ମଣ ଶୂଦ୍ରଜନ ଆର । ବିଶ୍ୱାସ ମୂଳ ସ୍ୱାମୀପର ॥
ଶୁଣିବା ହୋଇ ସାଧୁଜନ । ତତ୍ତ୍ୱରେ କର ହେ ଭଜନ ॥
ଗଜ ଯେ ତତ୍ତ୍ୱରେ ଭଜିଲା । ଗ୍ରାହ ମୁଖରୁ ଉଦ୍ଧରିଲା ॥
ହରିଙ୍କି ଦେଖିଲା ନୟନ । ଖଣ୍ଡିଲା ପୂର୍ବ ପାପମାନ ॥
ଭଣଇ ବିପ୍ର ରାମଦାସ । ମୋ ପ୍ରଭୁ କମଳାବିଳାସ ॥
ସାଧୁଜନଙ୍କ ପାଦଧୂଳି । ମଣ୍ଡନ ହେଉ ମୋ ମଉଳି ॥
ଭାଗମାଗେଁ ମୋ ଜନ୍ମ ନୋହୁ । ଏ କୃପା କର ମହାବାହୁ ॥
ଏ ଦାର୍ଢ୍ୟଗୀତ ଭକ୍ତିରସ । ପଦ ପଦକେ ସୁଧାରସ ॥

ଇତି ଶ୍ରୀ ଦାର୍ଢ୍ୟଭକ୍ତି ରସାମୃତେ ମନ ଚୈତନ୍ୟ ସମ୍ବାଦେ ରାଘବ ଦାସ ସ୍ୱାମୀ ଦାର୍ଢ୍ୟଭକ୍ତି ଚରିତ ବର୍ଣ୍ଣନେ ନାମ ଏକପଞ୍ଚାଶୋଽଧ୍ୟାୟଃ ।

---

## ଦ୍ୱିପଞ୍ଚାଶ ଅଧ୍ୟାୟ
## ଚନ୍ଦ୍ରଧ୍ୱଜ ସମ୍ବାଦ

ମନ ଉବାଚ

କହଇ ସେ ମନ ରାଜନ । ଚୈତନ୍ୟ କହ ଭକ୍ତଗୁଣ ॥
ମୋ କର୍ଣ୍ଣ ହୋଇବ ପବିତ୍ର । ଦୁର୍ବୁଦ୍ଧି ଛାଡ଼ିବ ଭିତର ॥
ଭକତ କଥାମୃତ ପାନ । କରି ପବିତ୍ର ହେଉ କର୍ଣ୍ଣ ॥
ଚୈତନ୍ୟ କହେ ମନ ଶୁଣ । ଚନ୍ଦ୍ରଧ୍ୱଜ ନାମେ ରାଜନ ॥
ଓଡ଼ିଶା ସାରଙ୍ଗ ଗଡ଼ର । ଷୋଳ ଯୋଜନ ରାଜ୍ୟ ତାର ॥
ରାଣୀ ନାମ କୁନ୍ଦନ ଦେଈ । ବିଦ୍ୟାଧର ପୁତ୍ର ଅଛଇ ॥
ରାଜା ଯେ ବିବେକ ସୁଶୀଳ । ଦୟାଭାବରେ ଅତି ଭୋଳ ॥
ଦେବା ପଦରେ ସେନ୍ତ ଜଣେ । ହରି ଭଜଇ ଅନୁକ୍ଷଣେ ॥

ହରି ଯେ ପିଣ୍ଡର କରତା । ହରି ଅଟନ୍ତି ମୋକ୍ଷଦାତା ॥
ଏହା ନ ଜାଣି ଦୁଷ୍ଟଜନ । ମନ୍ଦ ଭାବରେ ହୋନ୍ତି ଲୀନ ॥
ରାଜା ଯେ ପରଜାଙ୍କ ଚିତ୍ତ । ଭକ୍ତି ଭାବରେ ଅଛି ପୂତ ॥
ଜାଣିଲେ ବ୍ରହ୍ମାଣ୍ଡ ଗୋସାଇଁ । କରୁଣା କଲେ ତାଙ୍କଠାଇଁ ॥
ସେ ରାଜପୁତ୍ର ବିଦ୍ୟାଧର । ପାରିଧି କରେ ବନସ୍ତର ॥
ଦିନେ ଅନେକ ମୃଗମାରି । ଗୃହକୁ ଆଇଲା ସେ ଫେରି ॥
ତା ପିତା ଚନ୍ଦ୍ରଧ୍ୱଜ ଦେଖି । ପୁତ୍ରକୁ କହେ ହୋଇ ଦୁଃଖୀ ॥
ଦୁର୍ବୁଦ୍ଧି କଲୁ ରେ କୁମର । ଦ୍ରୋହୀ ହୋଇଲୁ ହରିଠାର ॥
ଜୀବରେ ତୋର ଦୟା ନାହିଁ । ବୃଥା ହେଉଛୁ ପାପଗ୍ରାହୀ ॥
ଶୁଣ ନନ୍ଦନ ମୋ ବଚନ । ନ ଚିହ୍ନୁ ନର ନାରାୟଣ ॥
ଅର୍କଙ୍କୁ ଗୁଡ଼ିଲୁରେ ପୁଣ । ଗରଗଡ଼ କଲୁ ଭୂଷଣ ॥
ତୁଳସୀଗଛ ତୁ ଗାଡ଼ିଲୁ । ଗଞ୍ଜାଇ ଗହକୁ ପାଳିଲୁ ॥
ଚମ୍ପା ଫୁଲମାଳ ଗୁଡ଼ିଲୁ । ଶିମୂଳି ଫୁଲ ମଣ୍ଡିହେଲୁ ॥
ଗଙ୍ଗାଜଳକୁ କଲା ଗୁଣ୍ଡୁ । କୂପ ଜଳରେ କଲା ବୁଡ଼ୁ ॥
ହରିଠାରେ ଦ୍ରୋହ କରିଣ । ତା ପାଦେ ନ ପଶୁ ଶରଣ ॥
ଗ୍ରାମ ଦେବତା ପୂଜାକରି । ବ୍ୟର୍ଥରେ ଦିନମାନ ହରି ॥
ମୋର କୁଳେ କଳଙ୍କ ଦେଉ । ଏହା ତୁ ନ କରିବୁ ଆଉ ॥
ଶ୍ରୀକୃଷ୍ଣଠାରେ ଭକ୍ତି କଲେ । ମଣ ରହିବ ମହୀତଳେ ॥
ତୋ ଜନ୍ମ ହୋଇବ ସୁଫଳ । ବଞ୍ଚିବୁ ତୁ ଯେ ଚିରକାଳ ॥
ଜୀବଠାରେ ତୁ ଦୟା କର । କୃପା କରିବେ ଚକ୍ରଧର ॥
ହରି ଭକତି କର ତୁହି । ସୁଭଗା ନାରୀ ପ୍ରାପ୍ତ ହୋଇ ॥
କାନ୍ତ ଚରଣେ ମନ ଥୋଇ । ଦିବସ ରଜନୀ ବଞ୍ଚଇ ॥
ହରି ଭଜନ କର ବାବୁ । ସଂସାର ଚେତା ଗ୍ରାଡ଼ ସବୁ ॥
ମିଥ୍ୟା ଏ ଅଟଇ ଶରୀର । ହରି ନାମଟି ଏକା ସାର ॥
ଏମନ୍ତ ବୋଧିଣ ରାଜନ । ଗଲେ ରାଣୀ ସଙ୍ଗେ ଭେଟିଣ ॥

ଯାଇଣ ପ୍ରବେଶ ନବର । ହରି ବାନ୍ଧିଲେ ମନ ତାର ॥
ମାୟାରେ ବିପ୍ରରୂପ ଧରି । ଏକଇ ଶିଷ୍ୟ ସଙ୍ଗେ କରି ॥
ରାଜେ ଭ୍ରମନ୍ତ ନରହରି । ଶୁଣିଲେ ଏକ ଗୃହକାରୀ ॥
ସମ୍ଭୋଗକାଳେ ନାରୀପ୍ରତି । କୌତୁକେ କହଇ ଯୁବତୀ ॥
ଶ୍ରଦ୍ଧାରେ ତୋ ମୁଖ ଦେଖିଲି । କୃଷ୍ଣ ଦର୍ଶନେ କିବା କଳି ॥
ରମଣେ ସନ୍ତୋଷ ମୋ ମନ । ଦେଖିଲି ଚକ୍ଷୁ କୃଷ୍ଣବର୍ଣ୍ଣ ॥
ଯାରେ ସୁମରି ଯୋଗୀଗଣ । ମୁକତ ହେଲେ ଦେହାନ୍ତେଣ ॥
ତୁମ୍ଭର ଗତ ସେହିରୂପେ । ସ୍ୱାମୀ କହେ ନାରୀ ସମୀପେ ॥
ରାଜେନ୍ଦ୍ର ବୁଲିଣ ମହାବାହୁ । ଏ ସବୁ କଥା ଶୁଣି ତହୁଁ ॥
ବୋଇଲେ ନଗ୍ରଲୋକେ ଧନ୍ୟ । ଜାଣିବା ରାଜାର କି ପୁଣ୍ୟ ॥
ବୃଦ୍ଧ ବ୍ରାହ୍ମଣ ରୂପ ହୋଇ । ଗମନ କଲେ ଭାବଗ୍ରାହୀ ॥
ସଭାରେ ଅଛି ରାଜା ବସି । ପ୍ରବେଶ ହେଲେ ବ୍ରହ୍ମରାଶି ॥
ରାଜାଙ୍କୁ କଲେ ସେ କଲ୍ୟାଣ । କୃଷ୍ଣ ଭକ୍ତରେ ଯାଉ ଦିନ ॥
ଚମକି ରାଜନ ଉଠିଲା । ବିନୟେ ଦଣ୍ଡବତ କଲା ॥
ସୁଧୀରେ ବୋଲଇ ବଚନ । ନମସ୍କାର ନୋହୁ କଲ୍ୟାଣ ॥
ଆଜ ସୁଭାଗ୍ୟ ବଡ଼ ମୋର । ପଦ୍ମର ପଡ଼ିଲା ମୋ ପୁର ॥
ଏତେକ କହି ଶୁଦ୍ଧ ନୀରେ । ପାଦ ଧୋଇଲା ଭକ୍ତି ଭରେ ॥
ସେ ପାଦ ଉଦକକୁ ନେଇ । ଅଙ୍ଗେ ବୋଳିଲା ତୋଷହୋଇ
ପୁଣି କେତେକ ପାନ କଲା । ଦିବ୍ୟ ଆସନେ ବସାଇଲା ॥
ବହୁତ କଲା ପୂଜା ମାନ୍ୟ । ସନ୍ତୋଷ ହେଲେ ନାରାୟଣ ॥
କ୍ଷଣେ ବିଶ୍ରାମ କଲେ ତହିଁ । ବିଦାୟ ହୋଇଲେ ଗୋସାଇଁ ॥
ସେ ରାଜା ରାଜ୍ୟରେ ମିଳିଲେ । ବେଦ ଗାୟନ ଆରମ୍ଭିଲେ ॥
ରାଜା ତା ଶ୍ରବଣେ ଶୁଣିଣ । ବୋଲଇ ଶୁଣ ହେ ବ୍ରାହ୍ମଣ ॥
କାହୁଁ ଅଇଲ ଶିଷ୍ୟ ସଙ୍ଗେ । ମୋ ଯଜ୍ଞଫଳ ହେଲା ଏବେ ॥
ତୁମ୍ଭର ଶୁଣିଲି ମୁଁ ବେଦ । ମୋ ମନ ହୋଇଲା ପ୍ରମୋଦ ॥

ମାୟା ନ କର କହ ସତ । କେବଣ କାରଣେ ଆଗତ ॥
ଯାହା ମାଗିବ ତା ଦେବଇଁ । ବେଗେଣ କହବା ଗୋସାଇଁ ॥
ସତ୍ୟ ସତ୍ୟ ମୋର ବଚନ । ଏହୁ ସମ୍ପଦେ କି କାରଣ ॥
ରାଜ୍ୟ ଭଣ୍ଡାର ପୁର ନାରୀ । ଶିର କମଳ ଆଦିକରି ॥
ତା ଶୁଣି କହିଲେ ବ୍ରାହ୍ମଣ । ଶୁଣ ହେ ନୃପତି ତୁ ପୁଣ ॥
ଧର୍ମ ନଗରେ ମୋର ଘର । ଏକଇ ପୁତ୍ର ଥିଲା ମୋର ॥
ତୋ ରାଜ୍ୟେ ଅଛି ବସ୍ତୁ କର । ଏକ ଦୁହିତା ଅଛି ତାର ॥
ତାହାର ବିଭା ଅର୍ଥେ ଜାଣ । ମୋର ପୁତ୍ରକୁ ଆଣନ୍ତେଣ ॥
ଆସନ୍ତେ ଅଗମ୍ୟ ବନସ୍ତେ । ବ୍ୟାଘ୍ରେକ ମିଳିଲା ତୁରିତେ ॥
ସେ ଦୁଷ୍ଟ ବଳେ ଝାମ୍ପି ଆସି । ମୋ ପୁତ୍ର ନେଲା ସେ ଆକର୍ଷି ॥
ତହିଁ ମୋ ପୁତ୍ର କଲା ରଡ଼ି । ବୋଇଲା ମୋତେ ଗଲା ଛାଡ଼ି ॥
ଏହି କଷଣୁ ରକ୍ଷା କର । ଦେଖି ରହିଲି ମୁଁ ଏଠାର ॥
ତା ଦେଖି ବୁଡ଼ିଲା ମୋ ଜ୍ଞାନ । କ୍ଷଣେ ମୁଁ ହୋଇଲି ମଉନ ॥
ଡାକ ବୋବାଳି ପୁଣି କଲି । ନୃସିଂହ ରକ୍ଷାକର ବୋଲି ॥
ବ୍ୟାଘ୍ରର ମୂର୍ତ୍ତି ଭୟଙ୍କର । ଦେଖି ନୋହିଲା ଭୟ ମୋର ॥
ତୁଚ୍ଛେ ମୁଁ ନାରାୟଣ ବୋଲି । ଜୀବନ ଆଶାକୁ ଛାଡ଼ିଲି ॥
ମିଳିଲି ସେ ବ୍ୟାଘ୍ର ପାଶରେ । ମୁଣ୍ଡ କଚାଡ଼ିଲି ଭୂମିରେ ॥
ତା ପାଦତଳେ ମୁଁ ପଡ଼ିଲି । ମୋତେ ପୁତ୍ର ଦିଅ ତୁ ବୋଲି ॥
ମନୁଷ୍ୟ ବଚନ ପ୍ରକାର । ମୋତେ ସେ କହିଲା ଉତ୍ତର ॥
ଶୁଣ ବ୍ରାହ୍ମଣ ମୋ ବଚନ । ତୋ ପୁତ୍ର ଅଟେ ମୋ ଭୋଜନ ॥
ରୋଗ ଯେ ବ୍ୟାଘ୍ର ସର୍ପାଘାତ । ଯମର ଅଟନ୍ତି ଏ ଦୂତ ॥
ଯାହାର ମୃତ୍ୟୁ ଯେଉଁଠାରେ । ବିଧାତା ଘଟାଏ ସଂସାରେ ॥
ଦୈର୍ଘଇ ଯେତେବେଳେ କାଳ । ଦାନ ପୁଣ୍ୟ କଲେ ନିଷ୍ଫଳ ॥
ଅବଶ୍ୟ ସେ ପ୍ରାଣୀ ମରଇ । ଧର୍ମ ଶାସ୍ତ୍ରରେ ଅଛି କହି ॥
ଶୁଣି ମୁଁ ଅନେକ କାନ୍ଦିଲି । ବହୁତ ବିନୟେ କହିଲି ॥

ଶୁଣ ତୁ ବ୍ୟାଘ୍ର ମୋ ଉତ୍ତର । କପଟ ନ ରଖି ମନର ॥
କେମନ୍ତେ ପୁତ୍ର ମୋ ବଞ୍ଚଇ । ତାହା ତୁ କହ ହେ ବୁଝାଇ ॥
ଯାହା ମୋତେ ସେହ୍ନ ବୋଇଲା । କହ୍ନିବା ନୁହଇ ସେ ଭଲା ॥
ଅତି କଠିନ କଥା ସେହ୍ନ । ରାଜନ କେହ୍ନେ କରିବଇଁ ॥
ବୋଲେ ନୃପତି ତତପର । ହେ ବିପ୍ର ବିଳମ୍ବ ନ କର ॥
ଅବଶ୍ୟ ସେ କଥା କରିବି । ତୋ ଲାଗି ଅଗ୍ନିରେ ଝାସିବି ॥
ବ୍ରାହ୍ମଣ ବୋଲଇ ରାଜନ । ସେ ଦୁଷ୍ଟ ଯା ବୋଇଲା ଶୁଣ ॥
ପୁତ୍ର ପାଲଟେ ସେହ୍ନ ପୁଣ । ଦକ୍ଷିଣା ମାଗୁଅଛି ଜାଣ ॥
ପୁତ୍ର ନାରୀ କରତେ ଚିରି । ସର୍ବାଙ୍ଗ ବେନିଫାଳ କରି ॥
ମନରେ ବିକଳ ନ ଥିବ । ଏମନ୍ତେ ଦକ୍ଷିଣାଙ୍ଗ ଦେବ ॥
ଏମନ୍ତେ ମାଂସ ଆଣିଦେବୁ । ତେବେ ତୋ ପୁତ୍ରକୁ ତୁ ନେବୁ
ବ୍ରାହ୍ମଣ ବୋଇଲେ ବଚନ । ପୂର୍ବର କଥା ଶୁଣ ପୁଣ ।
କର୍ଣ୍ଣ ବୋଲିଣ ଦାତା ଥିଲା । ପୁତ୍ର ମାରି ଭୋଜନ ଦେଲା ।
ବଳିରାଜାର ଦାତା ପଣ । ତ୍ରିପାଦ ଭୂମି ଦେଲା ଦାନ ।
ପୁରୁ ବୋଲିଣ ମହାରାଜେ । ମାଂସ କାଟିଣ ଦାନ ଦିଏ ॥
କପୋତ ପକ୍ଷୀକି ରଖିଲା । ପୁରାଣେ ତା କଥା ରହିଲା ॥
ଦାତାମାନଙ୍କର ପ୍ରସ୍ତାବ । ନିଜ ଶରୀରେ ନାହିଁ ଭାବ ॥
ପର ପାଇଁ ସେ ଦ୍ୟନ୍ତି ପ୍ରାଣ । ଶୁଣିମା ହେଉ ହେ ରାଜନ ।
ପୂର୍ବରେ ଥିଲେ ରାମଚନ୍ଦ୍ର । ଅଯୋଧ୍ୟା ଦେଶରେ ନରେନ୍ଦ୍ର ।
ବିପ୍ର ମଲା ପୁତ୍ର ଆଣିଲେ । ସତ୍ୟବନ୍ତ ଧର୍ମ ରଖିଲେ ॥
ଶ୍ରୀରାମ ପ୍ରାୟେ ତୋତେ ଜାଣି । ତୁ ମୋ ପୁତ୍ରକୁ ଦିଅ ଆଣି ॥
ରାଜନ ଶୁଣି ଏ ବଚନ । ବୋଇଲେ ଶୁଣ ହେ ବ୍ରାହ୍ମଣ ।
ଚିନ୍ତା ତୋ ମନରୁ ଉପେଖ । ତୋ ପୁତ୍ର ଆଣି ଦେବି ଦେଖ ॥
ମୋହର ଅର୍ଦ୍ଧ ଅଙ୍ଗ ଦେଲେ । ତୋ ପୁତ୍ର ବ୍ୟାଘ୍ର ଦେବ ଭଲେ ॥
ଏହା କହିଣ ସେ ରାଜନ । ପୁତ୍ର ପ୍ରଜାଙ୍କୁ ଡକାଇଣ ॥

ପୁତ୍ରକୁ ଅଭିଷେକ କଲେ । ଛତ୍ର ଧରାଇ ଖଣ୍ଡା ଦେଲେ ॥
ସୁଖପୀଢ଼େ ବସିଲେ ରାଜନ । ମାଳା ତିଳକ ଆଭରଣ ॥
ବ୍ରାହ୍ମଣମାନଙ୍କୁ ଡାକିଲେ । ମୋ ସତ ରଖ ହେ ବୋଇଲେ ॥
ବଢ଼ାଇ ଡାକିଲେ ବହୁତ । କହିଲେ ଯାବତ ବୃତ୍ତାନ୍ତ ॥
ବଢ଼ାଇ କରତ ଘେନିଣ । ଜଗ ହୋଇଲେ ପାଶେ ପୁଣ ॥
ନାରୀ ପୁତ୍ରକୁ ଡକାଇଲେ । କଲ୍ୟାଣ କରିବ ବୋଇଲେ ॥
ମୋହର ଅଙ୍ଗ କରତିବ । ଦକ୍ଷିଣ ଅଙ୍ଗ ବଢ଼େଇ ଦେବ ॥
ମୋ ମନ ମଧ୍ୟେ ଦୁଃଖ ନାହିଁ । ତେମନ୍ତ ବତ୍ସ ପୁତ୍ର ପାଇ ॥
ମୋ ସତ୍ୟ ଯେସନେ ରହିବ । ତେମନ୍ତ ତୁମ୍ଭେ କରିବ ॥
ସେହୁ ବ୍ରାହ୍ମଣ ପାଦ ଧୋଇ । ଆସନେ ବସାଇଲେ ନେଇ ॥
ଦୁଇ ଗଣ୍ଡ ଆଣ୍ଠେ ବନ୍ଧାଇ । ମାଳିକ ଡାକ ସବ କହି ॥
ବୋଇଲେ ତୁମ୍ଭେ ବଳବନ୍ତ । ଆଣ୍ଠେ ଧରିବ ମୋର ଗାତ୍ର ॥
ପୁତ୍ର ନାରୀ ଯେ ମୋତେ ଚିର । ଦକ୍ଷିଣ ଅଙ୍ଗ ତୋଳି ଧର ॥
ସେହି ବ୍ରାହ୍ମଣେ ଦେବେ ଦାନ । ତେବେ ମୋ ସଫଳ ଜୀବନ ॥
ରାଣୀ ବୋଇଲେ ହେ ରାଜନ । ତୁମ୍ଭର ଦେହ ନୋହୁ ଖୁଣ ॥
ମୋତେ ସେ ଦିଅ ତୁମ୍ଭେ ଦାନ । ତୁମ୍ଭର ଥାଉ ହେ ଜୀବନ ॥
ବ୍ରାହ୍ମଣ ମୋ ଶରୀର ନେଉ । ବ୍ୟାଘ୍ରକୁ ଶୀଘ୍ରେ ଯାଇ ଦେଉ ॥
ଯେ ନାରୀ ମରେ ସ୍ୱାମୀ ଆଗେ । ପାପ ବିନାଶି ବସେ ସ୍ୱର୍ଗେ ॥
ଏହା ଶୁଣିଣ ସେ ବ୍ରାହ୍ମଣ । ବୋଲଇ ଆଗୋ ରାଣୀ ଶୁଣ ॥
ଏ ମାଂସ ବ୍ୟାଘ୍ର ନ ଭକ୍ଷିବ । ମୋ ପୁତ୍ର କେବେହେଁ ନ ଦେବ ॥
ଏ ରାଜା ସତ୍ୟ ଭଗ୍ନ ହେବ । ହସିବେ ପ୍ରଜାଲୋକ ସବ ॥
ତା ଶୁଣି ପୁତ୍ର କହେ ତହୁଁ । ଦିଅ ହେ ମୋତେ ବ୍ୟାଘ୍ର ଖାଉ ॥
ପିତା ପୁତ୍ରରେ ନାହିଁ ଭେଦ । ଜାତ ହୋଇଛୁ ତାଙ୍କ ସ୍ୱେଦ ॥
ଶ୍ରୀରାମ ଥିଲେ ଯେ ପୂର୍ବେଣ । ପିତା ସତ୍ୟରେ ଗଲେ ବନ ॥
ପଶୁ କାନ୍ଦିଲେ ଋଷିଙ୍କର । ପିତାର ସତ୍ୟ କଲେ ସାର ॥



ବ୍ରାହ୍ମଣ ରାଜାଙ୍କ ଦୁଇ ଅଙ୍ଗକୁ ଯୋଡ଼ି ତାଙ୍କୁ ବଞ୍ଚାଇବାକୁ ଯାଉଛନ୍ତି

ଶୁଣିମା ହେଉ ହେ ବ୍ରାହ୍ମଣ । ପିତା ନିମନ୍ତେ ଯାଉ ପ୍ରାଣ ॥
ସଂସାରେ ରହୁ କୀର୍ତ୍ତି ମୋର । ପାଦେ ପଡ଼ୁଛି ମୁଁ ତୁମ୍ଭର ॥
ଏହା ଶୁଣିଣ ସେ ବ୍ରାହ୍ମଣ । ବୋଇଲେ ରାଜପୁତ୍ର ଶୁଣ ॥
ମାତା ସୁତ ଯେ କରତେଣ । କରନ୍ତୁ ରାଜା ଅଙ୍ଗ ପୁଣ ॥
ଦକ୍ଷିଣ ଅଙ୍ଗ ଯେବେ ଦେବ । ତେବେ ସେ ବ୍ୟାଘ୍ର ତା ଭକ୍ଷିବ
ତେବେ ପୁତ୍ରକୁ ଦେବ ସେହ୍ନ । ତୋ ହସ୍ତେ କରତରୁ ଦେହ୍ନି ॥
ଏମନ୍ତ ରାଜପୁତ୍ର ଶୁଣି । ଆପଣା ମନମଧ୍ୟେ ଗୁଣି ॥
ବୋଲେ ଏ ନିଶ୍ଚେ ନାରାୟଣ । ନୋହିଲେ ଦୟନ୍ତେ କି କଷଣ॥
ଚନ୍ଦ୍ରଧ୍ୱଜ ଆନନ୍ଦ ହୋଇ । କରତ ପୁତ୍ର ହସ୍ତେ ଦେଇ ॥
ପରମ ଆନନ୍ଦରେ ବୁଡ଼ି । ନାରୀକି ବୋଲେ ତଡ଼ବଡ଼ି ॥
ବିଳମ୍ବ ନ କର ଗୋ ଶୁଣ । ହୋଇବ ସତ୍ୟଭଗ୍ନ ଜାଣ ॥
ଏତେକ ସେ ରାଜା କହିଲ । ଗୁରୁ ନାମ ଉଚ୍ଚେ ରଟିଲ ॥
ରାମ ଗୋବିନ୍ଦ କୃଷ୍ଣ ହରି । ଅଚ୍ୟୁତ ଅନନ୍ତ ମୁରାରି ॥
ଶ୍ରୀମଧୁସୂଦନ ମୁକୁନ୍ଦ । ଆରତ ଖଣ୍ଡ ହେ ଗୋବିନ୍ଦ ॥
ଏହା ଶୁଣିଣ ଦେବଲୋକେ । ଆକାଶେ ଦେଖନ୍ତି ଉତ୍ସୁକେ ॥
ପ୍ରଜାଲୋକେ ଯେ ହାହା କଲେ । ବ୍ରାହ୍ମଣେ ହରି ଉଚ୍ଚାରିଲେ ॥
ମାତା ପୁତ୍ରଙ୍କର ଆନନ୍ଦ । ଭଜନ୍ତି ଶ୍ରୀରାମ ଗୋବିନ୍ଦ ॥
ରାଣୀ ବୋଲଇ ବିନୟରେ • । ପୁଣ ମୋ ବାଣୀ ବିପ୍ରବରେ ॥
ଭେଦ କରାଉଛ କାନ୍ତେଣ । ନୃସିଂହ ପରି ବିଦାରଣ ॥
ନୃସିଂହ ପରି ମୁଁ ଦାରୁଣ । ମୁଁ ଜାଣେ ତୁମ୍ଭେ ନାରାୟଣ ॥
ତା ଶୁଣି ନୃପତି ବୋଲଇ । ରାଣୀ ତୋ ଗୁଣ ଶୁଝି ନାହିଁ ॥
ଯେସନେ ରମଣର କାଳେ । ନଖ ଦନ୍ତଘାତ ବହିଲେ ॥
ସେ କାଳେ ଦୁଃଖ ନ ଲଗଇ । ତେତେକେ ନିର୍ଭୟ ହେଲୁ ତୁହି ॥
ଶୁଣିମା ହେଉ ମହାଦେଈ । ବେଗେ କରତ ମୋ ଦେହି ॥
ଚକ୍ରଧର କରିବେ ପାରି । ହରଣୀ ବିପଦୁ ଉଦ୍ଧାରି ॥

ଦ୍ରୌପଦୀ ଲଜ୍ଜା ନିବାରିଲେ । ଗଜକୁ ଆତଙ୍କୁ ରକ୍ଷିଲେ ॥
କୁମ୍ଭୀର ନାଶନ ଯେ ହରି । ସେ ହରି ମୋତେ ଯେ ଉଦ୍ଧାରି
ଏହା କହନ୍ତେ ସେ ମନର । ତାହା ଜାଣିଲେ ଚକ୍ରଧର ॥
ଏସନ ସମୟରେ ତହିଁ । ବେଗେ କରତ ଦେଲ ଦେହି ॥
ବାମ ଚକ୍ଷୁରୁ ଲୁହ ଝରି । ତା ଦେଖି ସ୍ତମ୍ଭୀଭୂତ ହରି ॥
ରାଜା ସେ ସତ୍ୟ ନ ରଖିଲ । ରାଜା ଶରୀର ଭ୍ରମ ହେଲ ॥
ଅସତ ହୋଇଲ ରାଜନ । ଦାନକୁ ଯୋଗ୍ୟ ନୋହେ ପୁଣ ॥
ଆଗମ ନିଗମ ଅଛଇ । କଳ୍ପନା ଦାନଯୋଗ୍ୟ ନୋହି ॥
ଏ ଦାନ ମୁହିଁ ନ ଘେନିବ । ଅପୁନ୍ନୀ ଦୋଷକୁ ଲଭିବ ॥
ଏତେ କହିଣ ଉଭା ହେଲେ । ମନ୍ଦେ ମନ୍ଦେ ଗମନ କଲେ ॥
ତହୁଁ ସେ ରାଣୀର ଉଦ୍‌ବେଗ । କନ୍ଦେ ଦେଖ ଦକ୍ଷିଣ ଅଙ୍ଗ ॥
ଆଗରେ ଓଗାଳିଲେ ଯାଇ । ଋଷି ତୁ ନ ଯାଅ ଗୋସାଇଁ ॥
ରାଜା ସତ୍ୟ କାର୍ଯ୍ୟ ନାଶିଣ । କିପାଁ କରୁଛ ବ୍ରାହ୍ମଣ ॥
ବ୍ରାହ୍ମଣ ବୋଲଇ ସେ ଭାବ । କଳ୍ପନା ଦାନ ନ ଘେନିବ ॥
ଆଗୋ ରାଣୀ ଶୁଣ ବଚନ । ରାଜା ଯେ କଲକ ରୋଦନ ॥
ରାଣୀ ବୋଲେ ଶୁଣିମା ହେଉ । ତାହା ଚରିତ ଏବେ ଏହୁ ॥
ବାମଅଙ୍ଗ ମନ ଭାବିଲ । ଦକ୍ଷିଣ ଅଙ୍ଗ ପୁଣ୍ୟ କଲ ॥
ବିପ୍ରର ଉପକାର ଯେଣୁ । ପୁଣ୍ୟ ପାଇବ ସେହୁ ତେଣୁ ॥
ବାମଅଙ୍ଗ ଗ୍ଲାର ମୁଁ ହେଲ । କାହିଁରେ ଯୋଗ୍ୟ ତ ନୋହିଲ
ଏମନ୍ତ ପ୍ରକାରେ ବାମାଙ୍ଗ । କାନ୍ଦିଲା ଦେଖ ତା ବରଙ୍ଗ ॥
ଏହା ଶୁଣି ହୃଷ୍ଟ ଶ୍ରୀହରି । ଧନ୍ୟ ଗୋ ରାଣୀ ତୁ ଚତୁରୀ ॥
ଏକନେ ବେନିଅଙ୍ଗ କରି । ଫୁଙ୍କିଲେ ସୁମନ୍ତ୍ର ଉଚ୍ଚାରି ॥
ଜୀବ ପାଇଣ ସେ ରାଜନ ଣାମ କରେ ପୁଣ ପୁଣ ॥
ନିଜ ରୂପ ଧରି ଶ୍ରୀହରି । ଗୃହି ଭୁଜରେ କୋଳକରି ॥
ପୁତ୍ରକୁ ଯେସନ୍ତେ ପିତା କୋଳ । ଆନନ୍ଦେ ହୋଇଲେ ବିହ୍ୱଳ ॥

ରାଜନ ଲୋଟଇ ଚରଣ । ବୋଲେ ମୋତେ କର ତାରଣ
ମୂର୍ଚ୍ଛି ସେ ସଂସାରେ ପତିତ । ମୋତେ ଉଦ୍ଧର ଲକ୍ଷ୍ମୀକାନ୍ତ ॥
ତୁମ୍ଭେ ନିର୍ଦ୍ଧନଙ୍କର ଧନ । ପତିତଜନ ଉଦ୍ଧାରଣ ॥
କୋଟି ବ୍ରହ୍ମାଣ୍ଡ ଯା ଉଦର । ଘଟେ ଘଟେ କର ବିହାର ॥
ସଂସାର ଖେଳଘର ପରି । ଏ ଘୋର ସଂସାରୁ ଉଦ୍ଧରି ॥
ତୁମ୍ଭେ ସେ ଅଟ ଜ୍ଞାନଦାତା । ତୁମ୍ଭେ ସେ ଦୁଃଖସୁଖ ଦାତା ॥
ମାତା ପିତା ଯେ ତୁମ୍ଭେ ଅଟ । ତେଣୁ ମୋ ମନମଧ୍ୟେ ଖଟ ॥
ଆଦି ଯେ ଅନ୍ତ ତୁମ୍ଭେ ଜାଣ । ତେଣୁ ସେ ଗରୁଡ଼ ବାହନ ॥
ଯେଣୁ ସେ ଅନନ୍ତ ମୂରତି । ନରକନାଶନ ଶ୍ରୀପତି ॥
ମୋର କୋଟିଏ ନମସ୍କାର । ଏ ଘୋର ସଂସାରୁ ଉଦ୍ଧର ॥
ଏଣୁ ଶରଣ ଶ୍ରୀପଦ୍ମରେ । ଜନମ ନୋହିବ ସଂସାରେ ॥
ହସି ନାରାୟଣ ପ୍ରସନ୍ନ । ସୁଧାରେ କହନ୍ତି ବଚନ ॥
ଧନ୍ୟ ରାଜନ ସତ୍ୟବାଦୀ । ମୁକତି ତୋହର ପ୍ରସିଦ୍ଧି ॥
ପରୀକ୍ଷା କଲି ବହୁତରେ । ସତ୍ୟଭଗ୍ନ ନୋହିଲ ତୋରେ ॥
ସ୍ୱଦେହେ ଦୁଃଖ ତୋର ତୋହୁ । ଅନ୍ତେ ବୈକୁଣ୍ଠ ପ୍ରାପ୍ତ ହେଉ ॥
ଏତେ କହିଣ ଅନ୍ତର୍ଦ୍ଧାନ । ହେଲେ ସେ ପ୍ରଭୁ ଭଗବାନ ॥
ଅନ୍ତେଣ ବୈକୁଣ୍ଠ ପ୍ରାପତି । ଶୁଣ ସୁଜନେ ହୃଷ୍ଟମତି ॥
ଏ ଦାର୍ଢ୍ୟ ଗୀତା ଯେ ଶୁଣନ୍ତି । ଅନ୍ତେ ଲଭନ୍ତି ମୋକ୍ଷଗତି ॥
ଗ୍ରହ ପୀଡ଼ାଦି ନ ବାଧଇ । ନିର୍ଦ୍ଧନ ଲୋକ ଧନ ପାଇ ॥
ଅପୁତ୍ରୀ ଜନ ପାଏ ପୁତ୍ର । କଷ୍ଟେ କାମଦେବ ପ୍ରାପତ ॥
ଭକ୍ତିରେ ଯେ ଜନ ଶ୍ରବଣ । ଯେ ଅବା କରନ୍ତି ଗାୟନ ॥
ବିଶ୍ୱାସ ମୂଳ ସାଧୁସେବା । ଧର୍ମର ମୂଳ ଦୟା ଥିବା ॥
ଯେ ପ୍ରଭୁ କଦମ୍ବମୂଳିଆ । ଯେ ପ୍ରଭୁ ମୟୂରଚୂଳିଆ ॥
ଗୁଞ୍ଜମାଳିରେ ଯେ ମଣ୍ଡିତ । ଅଧରେ ମୁରଲୀ ଶୋଭିତ ॥
ଭଣେ ବିପ୍ର ରାମ ସେ ପାଦେ । ମନ ମୋ ରହୁ ଅପ୍ରମାଦେ ॥

କୃପା କର ହେ ସାଧୁସନ୍ତ । ଅନୁବ୍ରତେ ରହୁ ମୋ ଚିତ୍ତ ॥
ଅସାର ଅଟେ ଏ ସଂସାର । ଏଥେ ହରିଭଜନ ସାର ॥
ନୀଳାଚଳରେ ଯେହୁ ସ୍ଥିତ । ତାଠାରେ ମୋ ମନ ଅର୍ପିତ ॥
ପଦ ପଦକେ ସୁଧାରସ । ସୁଜନେ ନିରନ୍ତରେ ଘୋଷ ॥
ଏଥେ ନିର୍ମଳ ଚିତ୍ତ ଯାର । ନିଶ୍ଚେ ସେ ଭବୁ ହୁଏ ପାର ॥

ଇତି ଶ୍ରୀଦାର୍ଢ୍ୟଭକ୍ତି ରସାମୃତେ ମନ ଚୈତନ୍ୟ ସମ୍ବାଦେ
ଚନ୍ଦ୍ରଧ୍ୱଜ ଦାର୍ଢ୍ୟଭକ୍ତି ବର୍ଣ୍ଣନେ ନାମ
ଦ୍ୱିପଞ୍ଚାଶୋଽଧ୍ୟାୟଃ ।

---

## ତ୍ରିପଞ୍ଚାଶତ୍ ଅଧ୍ୟାୟ

### ବଡ଼ବିପ୍ର ଓ ଛୋଟବିପ୍ର ସମ୍ବାଦ

ଚୈତନ୍ୟ ଉବାଚ

ପୁଣି କହଇ ଚଇତନ । ଶୁଣ ହେ ସୁମନ ରାଜନ ॥
ମିଥ୍ୟା ଅଟଇ ଧନ ଜନ । ସତ୍ୟ କେବଳ ଅଟେ ନାମ ॥
ଦୁର୍ଲ୍ଲଭ ଅଟେ ନରଦେହ । ଭକ୍ତିରେ ତୁଟେ ମାୟାମୋହ ॥
ସଂସାରେ ହରି ନାମ ସାର । ଭଜିଲେ ମିଳିବ ନିସ୍ତାର ॥
ତେଣୁ ବିଶ୍ୱାସ ଅଟେ ମୂଳ । ଯହିଁ ପ୍ରାପତ ଆତ୍ମମୂଳ ॥
ପରମାନନ୍ଦ ପୀତବାସ । ଭକ୍ତ ହୃଦୟେ କରେ ବାସ ॥
ସେ ପ୍ରଭୁ ସୁରଙ୍ଗ ପଦ୍ମରେ । ଭକତ ବାନ୍ଧେ ଭକ୍ତି ଡୋରେ ॥
ଭକ୍ତବତ୍ସଳ ନରହରି । ଭକତ ହେତେ ଦେହ ଧରି ॥
ଅଶେଷ ପ୍ରଭୁର ମହିମା । କେ କହିପାରେ ଗୁଣସୀମା ॥
ବିଦ୍ୟାନଗର ନାମେ ଗ୍ରାମ । ଥିଲେ ଯେ ଦୁଇ ଦ୍ୱିଜୋତ୍ତମ ॥
ଜ୍ୟେଷ୍ଠ ଯେ ବଡ଼ ବିପ୍ର ବୋଲି । କହନ୍ତି ଜନେ ସବେ ଭଲି ॥
ବେନିଏ ଅତି ଶାନ୍ତ ଧୀର । କୃଷ୍ଣ ଭକତ ସଦାଚାର ॥

ଏକଇଁ ଆତ୍ମା ବେନିଜଣ । କ୍ଷଣେ ନୁହନ୍ତି ଭିନ୍ନାଭିନ୍ନ ॥
ଶ୍ରେଷ୍ଠ ବିପ୍ରର ନାହିଁ କେହି । ଆବର ଦରିଦ୍ର ଅଟଇ ॥
ଲଗାଇ ଶରୀର ଜୀବତ । ସାଧଇ ପରସେବା ବ୍ରତ ॥
ବଡ଼ ବିପ୍ର ଯେ ସୁକୁଳୀନ । ବନ୍ଧୁକୁଟୁମ୍ବୀ ଧନବାନ ॥
ଅନେକ ଦାନ ପୁଣ୍ୟ କରେ । ଦୁଃଖୀର ଦୁଃଖ ସଦା ହରେ ॥
ଦୁହେଁ ବିପ୍ରର ଦିନେ କଲେ । ତୀର୍ଥ ଭ୍ରମଣେ ବାହାରିଲେ ।
ହୋଇଣ ଆନନ୍ଦିତ ମନ । ଭ୍ରମିଲେ ନାନା ତୀର୍ଥମାନ
ଗ୍ରାଇର ପ୍ରାପ୍ୟ ଅନୁସରି । ଶ୍ରେଷ୍ଠ ବିପ୍ର ଯେ ସେବା କରି ॥
ତାହାର ଭକ୍ତି ସେବା ପାଇ । ବଡ଼ ବିପ୍ର ଯେ ହେଲ ମୋହି ॥
ଏମନ୍ତେ ଭ୍ରମି ବେନିଜଣେ । ପ୍ରବେଶ ହେଲେ ବୃନ୍ଦାବନେ ॥
ଯହିଁ ଶ୍ରୀକୃଷ୍ଣ ବନମାଳୀ । କରିଣ ଥିଲେ ନାନାକେଳି ॥
ସେ କ୍ଷେତ୍ରରଜ ଦେହେବୋଳି । ଆନନ୍ଦେ ହେଲେ କୋଳାକୋଳି
କରି ଶ୍ରୀଗୋପାଳ ଦର୍ଶନ । ପବିତ୍ର କଲେ ନେତ୍ର ମନ ॥
ଭକ୍ତିରେ ହୋଇ ଗଦ ଗଦ । ସେବିଲେ ପ୍ରଭୁ ପଦ୍ମପାଦ ॥
ଭକ୍ଷିଣ ପ୍ରସାଦ ଆବର । ପବିତ୍ର କଲେ କଳେବର ॥
ଏମନ୍ତେ ତହିଁ କିଛିଦିନ । ରହିଲେ ବିପ୍ର ବେନିଜଣ ॥
ବଡ଼ ବିପ୍ର ଯେ ତୋଷ ମନେ । ଶ୍ରେଷ୍ଠ ବିପ୍ରଙ୍କୁ ଏକଦିନେ ॥
କହଇ ଆହେ ବିପ୍ରବର । ତୁମ୍ଭେ ଅଶେଷ ଗୁଣାଧାର ॥
ଜାଗ୍ରତ ରହି ରାତ୍ର ଦିନ । ସେବୁଛ ଦେଇ ପ୍ରାଣ ମନ ॥
ରଖିଛ ଋଣୀ କରି ମୋତେ । ଏ ଋଣୁ ତରିବି କେମନ୍ତେ ॥
ଏ ଋଣ ଯେବେ ନ ଶୁଝିବି । କୃତଘ୍ନ ସିନା ବୋଲାଇବି ॥
ଏଥିକି ମୋର ଏହି ମନ । କରିବି କନ୍ୟା ରତ୍ନ ଦାନ ॥
ରୂପବତୀ ଯେ ଗୁଣବତୀ । ସାକ୍ଷାତେ ଲକ୍ଷ୍ମୀ ସରସ୍ୱତୀ ॥
ସେ ସେବୁ ତୁମ୍ଭର ଚରଣ । ତେବେ ଶୁଝିବି ମୋର ଋଣ ॥
ଏ କଥା ଶ୍ରେଷ୍ଠ ବିପ୍ର ଶୁଣି । ରହିଲ ହୋଇ ଦଣ୍ଡେ ତୁନି ॥

ଧୀରେ କହିଲା ଏ ବଚନ । ତୁମ୍ଭେ କୁଳୀନ ଧନବାନ ॥
ଦରିଦ୍ର ବିପ୍ର ମୁଁ ଅଟଇ । ମୋର ତ ପୁଣି କେହି ନାହିଁ ॥
ମୋତେ କି କନ୍ୟା ବିଭାଦେବ । କାହିଁକି କହ ଅସମ୍ଭବ ॥
କହଇ ବଡବିପ୍ର ପୁଣ । ବୋଲେ ମୋ ନାହିଁ ପ୍ରୟୋଜନ ॥
ଧନ ସହିତେ କନ୍ୟା ଦେବ । ଧର୍ମହିଁ ରକ୍ଷା ମୁଁ କରିବ ॥
ତହୁଁ ସେ ଶ୍ରେଷ୍ଠବିପ୍ର ବୋଲେ । ପରତେ ଯିବ ସତ୍ୟ କଲେ ॥
ଏହି ଗୋପାଳ ସାକ୍ଷାତରେ । ଶୁଣିଣ ବଡ଼ବିପ୍ର ଧୀରେ ॥
ବୋଲେ ସେ ସତ୍ୟ ତିନିବାର । ସାକ୍ଷୀ ଏ ଗୋପାଳଠାକୁର ॥
ଏମନ୍ତେ ସତ୍ୟ ଦୁହେଁ କଲେ । ଶୁଭେ ଘରକୁ ଫେରିଗଲେ ॥
ଗତ ହୋଇଲା ଦିନ କେତେ । କହୁଁ ବିପ୍ର ଯେ ପଚରିତେ ॥
କନ୍ୟା ଦେବାକୁ କଲେ ପଣ । କିମ୍ପା ତା ମନକୁ ନଆଣ ॥
ବଡ଼ବିପ୍ର ଯେ ହସି ମନ୍ଦ । ହୋଇଲା ନାହିଁ ମୋର ଛନ୍ଦ ॥
ପୁତ୍ର ଭାରିଯା ବନ୍ଧୁଜନେ । କହିବ ଆଜ ନରିଜନେ ॥
ବାଦ କରିବେ ସେ ଜାଣଇ । ତହିଁକି ଡର ମୋର ନାହିଁ ॥
ଯାଅ ନିଶ୍ଚିନ୍ତେ ଘରେ ଥାଅ । ବିବାହ ଦେବ ନିଶ୍ଚେ ଯିଅ ॥
ଦିବସ ଶେଷ ରବି ଅସ୍ତ । ସନ୍ଧ୍ୟା ହୋଇଲା ଉପଗତ ॥
ଶୁଭିଲା ଦେଉଳେ କାହାଳୀ । ଶଙ୍ଖ ମର୍ଦ୍ଦଳ କରତାଳି ॥
ଘଣ୍ଟ ଭକତ ଗୀତନାଦ । ପବନ ହେଲା କର୍ଣ୍ଣହ୍ଲାଦ ॥
ଏମନ୍ତେ ଏକେ ଏକେ ଆସି । ବଡ଼ ବିପ୍ରର ପାଶେ ବସି ॥
ପୁତ୍ର ଭାରିଯା ସକୁଟୁମ୍ବ । ଶୁଣନ୍ତି ଭ୍ରମଣ ପ୍ରସ୍ତାବ ॥
କହଇ ବିପ୍ର ମନତୋଷେ । ଏହି ପ୍ରସଙ୍ଗ ଅବଶେଷେ ॥
ଶ୍ରେଷ୍ଠ ବିପ୍ରର ସାଧୁପଣ । ସେବି ତୋଷିବା ଆଦି ଗୁଣ ॥
କହିଲା ଧନ୍ୟ ଧନ୍ୟ ବାଣୀ । ସକଳେ ଶୁଣି ମୁଖେ ଭଣି ॥
ଏ କାଳେ ବିପ୍ର ଭଲ ବୁଝି । କହିଲା ଜଣାଇ ମରମ ॥
ସତ୍ୟେ ମୁଁ ହୋଇଛି ବନ୍ଧନ । କରିବି ତାକୁ କନ୍ୟାଦାନ ॥



ଭଗବାନ ସ୍ଥିର ହୋଇ ରହିଛନ୍ତି । ଗାଁ ଲୋକେ ଛୋଟ ବପ୍ର ସହ ଆସି ଦେଖୁଛନ୍ତି

ଶୁଣିମା ମାନେ ଏହୁକଥା । ସତେ କି କାଳସର୍ପ ମଥା ॥
ପାଦେ କେ ଅବା ଦେଲେ ଦଳ । କେମନ୍ତେ ଆରମ୍ଭିଲେ କଳ ॥
ସେଉଷ୍ଠା କୁଳଗୋତ୍ର ହୀନ । ଆବର ଅତି ଅକଞ୍ଚନ ॥
ଆମ୍ଭେ କୁଳୀନ ବଂଶଧର । ଅପାନେ ବନ୍ଧବ୍ଧ ବେଭର ॥
କେ ବୋଲେ ନୀଚକାତ ଅଂଶେ କେହୁ ନାହାନ୍ତି ତାର ବଂଶେ ॥
ଲୋକରେ ନିନ୍ଦା ପ୍ରକାଶିବ । ଆପଣା କୁଳ ଧ୍ୱଂସ ଯିବ ॥
ବପ୍ର ବୋଲଇ ତେବେ ମୁହିଁ । ସତ୍ୟ କେମନ୍ତେ ଲଙ୍ଘିବଇଁ ॥
ନରକେ ହେବ ମୋର ବାସ । ନିସ୍ତାର ପଥ ଆଉ କିସ ॥
ଭରସା କହେ କାଢ଼ ତାକୁ । ଭସାଇ ଦେବ ମୋ ଝିଅକୁ ॥
ପୁଣି ପ୍ରକାଶି ଗୁରୁ ରୋଷ । ବୋଲଇ ଖାଇବ ମୁଁ ବିଷ ॥
ମରିବ ଗଲେ ଛୁରୀ ମାରି । ତାହାକୁ ଦିଅ ନାହିଁ ବରି ॥
ବପ୍ର ଦେଖି ଏ ଉତପାତ । ହୋଇଲା ତାର ବୁଦ୍ଧି ହତ ॥
ଏ କାଳେ ଶ୍ରେଷ୍ଠବପ୍ର ଆସି । ଘର ମଧ୍ୟକୁ ଗଲା ପଶି ॥
ବଡ଼ବପ୍ରକୁ ପଗ୍ଗରିଲା । ବିବାହ ଦିନ କେବେ ହେଲା ॥
ତାହାକୁ ଦେଖି ବପ୍ରସୁତ । ଝିଙ୍ଗାସି କହିଲା ବହୁତ ॥
ବୋଇଲା ଦେଖ ଦୁଷ୍ଟପଣ । ପିତାଙ୍କୁ ଭଙ୍ଗ ଖୁଆଇଣ ॥
ଧନ ବସନ ହରି ନେଲା । ପଗଣେ ମାରି ବସିଥିଲା ॥
ଭୟରେ ସତ୍ୟ କଲେ ପିତା । ଦେବାକୁ ଆପଣା ଦୁହିତା ॥
ଏ ସତ୍ୟ ନିକି ପରମାଣ । ଆତଙ୍କକାଳ ବାକ୍ୟ ଜାଣ ॥
ସାହସ କେତେ ଏ ଛାର । ହେବ ଏ ମୋ ଭଉଣୀ ବର ॥
ଧାଇଁ ଆସୁଛି କଥା ଶୁଣି । ଏହାର ମୁଣ୍ଡ ଦେବ ହାଣି ॥
ଏ ଗୋଳ ଶୁଣି ପାଞ୍ଚ ସାତ । ହୋଇଲେ ଆସି ଉପଗତ ॥
ସର୍ବେ ବୋଇଲେ ରହ ରହ । ବୁଝିବା ଫେଡ଼ଣ ସନ୍ଦେହ ॥
ପୁଛିଲେ ଶ୍ରେଷ୍ଠବପ୍ର ସତ । କହ କେ ସାକ୍ଷୀ ଏଥିକି ତ ॥
କହନ୍ତି ଶ୍ରେଷ୍ଠବପ୍ର ଧୀରେ । ସାକ୍ଷୀ ମୋ ଅଛି ବ୍ରଜପୁରେ ॥

ଶ୍ରୀବୃନ୍ଦାବନ ପୀଠନାଥ । ଗୋପାଳ ଜାଣଇ ସମସ୍ତ ॥
ନିୟମ କର କହ ସବେ । ଅନ୍ୟାୟ ନ କରିବ ଯେବେ ॥
ତେବେ ପଞ୍ଚର ମତ ଘେନ । ଯିବ ସେ ଦେବତାଙ୍କୁ ଆଣି ॥
ସକଳେ ଶୁଣି ଘାଞ୍ଚି ମନେ । ପ୍ରତିମା ଆସିବ କେସନେ ॥
ଯେବେ ତା କନ୍ଧେ ମୁଣ୍ଡେ ବହି । ଆଣିବ ଗୋପାଳଙ୍କୁ ଏହି ॥
ସେ କି ମନୁଷ୍ୟ ପରି ଭାବ । କଥା କହିବ ଅସମ୍ଭବ ॥
ଏମନ୍ତେ ମନେ ବିଚାରିଲେ । ଆଣ ବୋଲିଣ ଆଜ୍ଞା ଦେଲେ
ଭଲ ଲୋକଙ୍କ ଆଜ୍ଞା ପାଳି ! ଶ୍ରେଷ୍ଠବିପ୍ର ଯେ ଗଲା ଚଳି ॥
ପ୍ରବେଶ ହେଲ ବୃନ୍ଦାବନେ । ଗୋପାଳ ଦେବ ସନ୍ନିଧାନେ ॥
ପ୍ରତିମା ଜ୍ଞାନ ତାର ନାହିଁ ! ଜାଣେ ସାକ୍ଷାତେ ଭବଗ୍ରାହୀ ॥
ସାକ୍ଷୀ ହୋଇଛୁ ବେନିଙ୍କର । ଅବଶ୍ୟ ଯିବ ଆମ୍ଭ ଘର ॥
ଏତେ ଆଗ୍ରହ ବଶ ଲାଗି । ନୁହଇ ଅଧରମ ଭାଗୀ ॥
ହୋଇବ ବଡ଼ବିପ୍ର ମୋର । ଏଥିକି ବଡ଼ ଭୟ ତାର ॥
ସାଧୁର ହୃଦୟ ଏଭଳି । ଅନ୍ୟ ଦୁଃଖେ ସେ ଯାଏ ଗଳି
ଏତେ ଜଳଣା ସେ କାରଣେ । ସାଧୁର ମନ ସାଧୁ ଜାଣେ ॥
ବଡ଼ବିପ୍ର ଯେ ଘରେ ଥିଲା । ଗୋପାଳେ ସ୍ତୁତି ଆରମ୍ଭିଲା ॥
ହେ ! ପ୍ରଭୁ ମୁଁ ତୁମ୍ଭ କିଙ୍କର । ସଙ୍କଟୁ ମୋତେ ରକ୍ଷାକର ॥
ବଞ୍ଚନ୍ତୁ ମୋର ପରିବାର । ସତ୍ୟୁଁ ଲଭଇ ମୁଁ ଉଦ୍ଧାର ॥
ଦୟାସାଗର ନରହରି । ସକଳ ତୁମ୍ଭେ ପାର କରି ॥
ତେଣେ ଗୋପାଳପାଦେ ପଡ଼ି । ଶ୍ରେଷ୍ଠବିପ୍ର ଯେ କର ଯୋଡ଼ି ॥
ବୋଇଲା ବିନୟ ବଚନ । ହେ ! ପ୍ରଭୁ ବିପଦଭଞ୍ଜନ ॥
ସର୍ବଜ୍ଞ ଅନ୍ତର୍ଯାମୀ ତୁହି । କିସ କହିବ ଅବା ମୁହିଁ ॥
ତୁ ସାକ୍ଷୀ ଥାଇ ଦେବ ଦେବ । ବ୍ରାହ୍ମଣ ସତ୍ୟଭ୍ରଷ୍ଟ ହେବ ॥
କାହାକୁ ଦେବ ଅପଯଶ । ଝଟିତ ଯିବା ପ୍ରଭୁ ଆସ ॥
ଶୁଣିଣ ବ୍ରାହ୍ମଣ କହିଲ । ପ୍ରସନ୍ନେ ମଦନ ଗୋପାଳ ॥

ସୁରଙ୍ଗ ଅଧରେ ପ୍ରକାଶ । କରଣ ମନ୍ଦ ମନ୍ଦ ହାସ ।
ବୋଇଲେ ବଚନ ଗମ୍ଭୀରେ । କି କଥା କହ ବିପ୍ର ମୋରେ ॥
ଶିଳା ପ୍ରତିମା ହୋଇ ମୁହିଁ । କେମନ୍ତେ ପଥ ଚାଲିବଇଁ ।
ବିପ୍ର ବୋଇଲା ମାୟାଧର । ମୋଠାରେ କପଟ ନ କର ॥
ପ୍ରତିମା ହୋଇ କି ପ୍ରକାରେ । ବଚନ ଭାଷୁ ସୁଗମ୍ଭୀରେ ।
ହସି ଭାଷିଲେ ଶ୍ରୀଗୋପାଳ । ସାକ୍ଷୀ ଦେବାକୁ ଯିବା ଚାଲ ।
ଆହାରେ ହାଣ୍ଡି ଏକ ଅନ୍ନ । ଭୋଗ କରିବୁ ପ୍ରତିଦିନ ॥
ଆମ୍ଭେ ତୋ ପଛେପଛେ ଯିବୁ । ତୁ ଫେରି ପଛେ ନ ଚାହିଁବୁ ।
ପଛେ ଚାହିଁବୁ ଯେବେ ତୁହି । ଆମ୍ଭେ ରହିବୁଁ ନିଶ୍ଚେ ତହିଁ ।
ନୂପୁର ଶବଦ ଆମ୍ଭର । ଶ୍ରବଣେ ଜାଣିବୁ ଯିବାର ॥
ବିପ୍ର ଏମନ୍ତ ବାଣୀ ଶୁଣି । ଉଠିଲା ହେଉ ପ୍ରଭୁ ଭଣି ।
ଚାଲିଲା ବେଗ ବେଗ ଆଗେ । ଗୋପାଳ ଚାଲେ ପଛ ଭାଗେ
ଏମନ୍ତେ ପଥ ଗଲେ ବହି । ଗ୍ରାମ ନିକଟେ ହେଲେ ଯାଇଁ ।
ନୂପୁର ରହେ, ଗଳି ଗଳି । ଭରତି ହୋଇ ପଥଧୂଳି ।
ଶବଦ ନ କଲା ନୂପୁର । ବିପ୍ର ସନ୍ଦେହ ଗୁରୁତର ॥
ପ୍ରଭୁ କି ଗଲେ ମୋତେ ଜଟି । ଭାବଣ ଚାହିଁଲା ପାଲଟି ॥
ହସିଣ ଗୋପାଳ ଯେ ତହିଁ , । ନିଶ୍ଚଳ ହୋଇଗଲେ ରହି ।
ଗ୍ରାମକୁ ଶ୍ରେଷ୍ଠବିପ୍ର ଗଲା । ସକଳ ସନ୍ଦେଶ କହିଲା ।
ହୋଇଲେ ଲୋକେ ଆଚମ୍ବିତ । ଧାଇଁଲେ ଦର୍ଶନେ ତୁରିତ ।
ତାହାଙ୍କ ମଧ୍ୟରେ ମହନ୍ତ । ଯେ ଯେତେ ଥିଲେ ଉପସ୍ଥିତ
ତାଙ୍କ ଆଗରେ ସାକ୍ଷୀମତେ । କହିଲେ ଗୋପାଳ ସାକ୍ଷାତେ
ଶୁଣ ସକଳ ସାଧୁ ନରେ । ସତ୍ୟ କରନ୍ତି ପ୍ରକୃତରେ ॥
ବଡ଼ବିପ୍ର ଯେ ଶୁଦ୍ଧମନେ । ଶ୍ରେଷ୍ଠବିପ୍ରକୁ କନ୍ୟାଦାନେ ।
ଏଥିରେ ସନ୍ଦେହ ନ କର । ବଧି ବହିବେ କନ୍ୟା ବର ॥
ଯେମନ୍ତେ ଅନ୍ତରୀକ୍ଷେ ବାଣୀ । ତେମନ୍ତ ଶୁଭିଲା କାହାଣୀ ।

ସକଳେ ଶୁଣିଲେ ଚକିତେ । ବୋଇଲେ ଧନ୍ୟ ଏ ଭକତେ
ବଡ଼ବିପ୍ରର କି ଆନନ୍ଦ । ମୁଖ କି ପୂର୍ଣ୍ଣିମାର ଚନ୍ଦ ॥
ବିବାହ ସମ୍ବାଦ ଭିଆଇ । ଶ୍ରେଷ୍ଠ ବିପ୍ରକୁ କନ୍ୟା ଦେଇ ॥
ମହା ଉତ୍ସବେ ହେଲ ମେଳ । ପୂଜିଲ ଠାକୁର ଗୋପାଳ ॥
ବିଦ୍ୟାନଗର କାଞ୍ଚିପୁର । ରାଜା ପାଇ ଏ ସମାଚାର ॥
ତୋଳାଇଦେଲା ଯେ ଦେଉଳ । ତହିଁରେ ରହିଲେ ଗୋପାଳ ॥
ସାକ୍ଷୀଗୋପାଳ ନାମ ବହି । ପବିତ୍ର କଲେ କାଞ୍ଚିଭୂଇଁ ॥
ଏମନ୍ତେ ଓଡ଼ିଶା ରାଜନ । ପୁରୁଷୋତ୍ତମ ଦେବ ଜାଣ ॥
ତା ସଙ୍ଗେ କାଞ୍ଚି ରାଜାଙ୍କର । ବିବାହ ହେଲ ଘୋରତର ॥
ଅତି ସୁନ୍ଦରୀ ଗୁଣବତୀ । ରାଜାର କନ୍ୟା ପଦ୍ମାବତୀ ॥
ପୁରୀ ରାଜାଙ୍କୁ ବିଭା ଦେଇ  ପୂର୍ବୁ ସେ କଥା ଥିଲା ହୋଇ ॥
ରଥ ସମୟେ କାଞ୍ଚିରାୟେ । ଶ୍ରୀକ୍ଷେତ୍ରେ କଲେକ ବିଜୟେ ॥
ଦେଖିଲେ ପୁରୀ ନରରାଣ  କରେ ଚଣ୍ଡାଳ ଆଚରଣ ॥
ସୁନାପହଁରା ଧରି କରେ । ଝାଡ଼ଇ ରଥ ଭକ୍ତିଭରେ ॥
ଏମନ୍ତ ଦେଖି କାଞ୍ଚିରାଜା । ତାହାଙ୍କୁ ଆପଣା ତନୁଜା ॥
ବିଭା ଦେବାକୁ ନାହିଁ କଲା । ଚଣ୍ଡାଳ ବୋଲି ଗାଳିଦେଲା ॥
ଏଥିରେ ଓଡ଼ିଶା ରାଜନ । କୋପରେ ଅନଳ ସମାନ ॥
ପ୍ରତିଜ୍ଞା କଲେ ଗୁରୁତର । ବଳେ ଆଣିବେ କନ୍ୟା ତାର ॥
ଚଣ୍ଡାଳେ କରିବେ ପ୍ରଦାନ । ତେବେ ଯିବ ଏ ଅପମାନ ॥
ରାଧାର ଆଜ୍ଞା ଶିରେ ଘେନି । ଧାଇଁଲେ ଓଡ଼ିଶା ସଇନି ॥
ଲାଗିଲା ମହା ରଣଗୋଳ । କାଞ୍ଚି ହୋଇଲା ଟଳମଳ ॥
ଜିଣିଲେ ଓଡ଼ିଶାର ପତି । ବଳେ ଘେନିଲେ ପଦ୍ମାବତୀ ॥
ଆଉରି ଇଷ୍ଟ ଗଣନାଥେ । ଗୋପାଳ ଆଣିଲେକ ସାଥେ ॥
ଭକ୍ତ ଗଣେଶ ନାମ ଦେଇ । ଶ୍ରୀମୂର୍ତ୍ତି ପଛେ ତାଙ୍କୁ ଥୋଇ ॥
ଗୋପାଳ ପାଇଁ ଏକ ଘର । ନିର୍ମାଣ କଲେ ଚମତ୍କାର ॥

ତ୍ରିପ ସତ୍ୟବାଦୀ ନାମ ଗ୍ରାମେ । ଶ୍ରୀକ୍ଷେତ୍ର ମଧ୍ୟର ସୁଷମେ ॥
ହେଲେ ସେ ମଦନଗୋପାଳ । ଦେବଙ୍କ ଅଧିଷ୍ଠାନ ସ୍ଥଳ ॥
ସାକ୍ଷୀଗୋପାଳ ଗୋପୀନାଥ । ନାମଟି ଜଗତେ ବିଖ୍ୟାତ ॥
ପରମ ସୁନ୍ଦର ସ୍ୱରୂପ । ତ୍ରୈଲୋକ୍ୟନାଥ ଦର୍ଶେ ରୂପ ॥
ଭକତ ନୟନ ଚକୋର । ନିର୍ମଳ ପୂର୍ଣ୍ଣ ସୁଧାକର ॥
ଆଶାୟୀ ଗୃତକ ନୀରଦ । ଆରତ ଭଞ୍ଜନ ଗୋବିନ୍ଦ ॥
ସ୍ୱୟଂ ମହିମା ମହାମନ୍ତ୍ର । ଭକତ ବାଞ୍ଛା କଳ୍ପତରୁ ॥
ଦର୍ଶନ ମାତକେ ମୁକତ । ଯାଚ ଦିଅନ୍ତି ବିଶ୍ୱପତି ॥
ଧନ୍ୟ ହେ ବେନି ବିପ୍ରବର । ତରିଲ ତାରିଲ ସଂସାର ॥
ବାନ୍ଧଣ ଦୃଢ଼ ଭକ୍ତି ଡୋରେ । ଟାଣି ଆଣିଲ ବିଶ୍ୱମୂରେ ॥
ଭକ୍ତବତ୍ସଳ ପ୍ରଭୁବାନା । ଜଡ଼ାଇ ଦେଲେ ଭବେ ସିନା ॥
କହଇ ରାମଦାସ ଗୁର । ତୁମ୍ଭପାଦେ ମୋ ନମସ୍କାର ॥
ତୁମ୍ଭେ ହୋଇ ମୋ ଶିକ୍ଷାଗୁରୁ । ତାର ଏ ଭବଜଳଧିରୁ ॥

ଶ୍ରୀକ୍ଷେତ୍ରବାସୀ ରାଣୀ

ଆବର ଚଇତନ କହେ । ଶୁଣିମା ହେଲ ମୁନିରାୟେ ॥
ଶ୍ରୀକ୍ଷେତ୍ରେ ରାଜା ରାଣୀ ଦିନେ । ଗଲେ ଗୋପାଳ ଦରଶନେ ॥
ଦେଖି ଶ୍ରୀଗୋପାଳ ମୂରତି । ଲବଣ୍ୟସିନ୍ଧୁ ତନୁ ଜ୍ୟୋତି ॥
ହୃଦରେ ଆନନ୍ଦ ତରଙ୍ଗ । ପୁଲକେ ମୂରିଲା ସର୍ବାଙ୍ଗ ॥
ସର୍ବାଙ୍ଗେ ମହାପ୍ରଭୁଙ୍କର । ଅଛଇ ନାନା ଅଳଙ୍କାର ॥
ନାସାରେ ନାହିଁ ଏକା ମୋତି । ଥିଲେ ସେ ଚମ୍ପି ଦିବ୍ୟଜ୍ୟୋତି ॥
ତ୍ରିଲୋକ ପାବନ ସୁନ୍ଦର । ପରାପ୍ରେ ଦିଶନ୍ତା ସୁନ୍ଦର ॥
ଥିଲା ଯେ ନାକେ ଆପଣାର । ବୃହତ ଗଜମୋତିବର ॥
ତାକୁ ଦେବାକୁ କଲା ଚିନ୍ତା । ନାସାରେ ଛିଦ୍ର ଯେତେବେଥାନ୍ତା ॥
ପିନ୍ଧାଇ ଦିଅନ୍ତି ଏବେ । ଏମନ୍ତ ଭାବିଲାକ ରାଣୀ ॥
ନିଶିରେ ଦେଖିଲା ସ୍ୱପନ । ସାକ୍ଷାତ ପରାପ୍ରେ ବିଧାନ ॥

କହୁଲେ ପ୍ରଭୁ ରଙ୍ଗାଧର । ଶିଶୁକାଳରେ ମାତା ମୋର ॥
ମୁଁ ଅପତ୍ୟାଣି ବୋଲି ଜାଣ । ବିନ୍ଧାଇ ମୋର ନାକ କାନ ॥
ପିନ୍ଧାଇଥିଲେ ମୋତି ନାକେ । ହଜିଲା ଯମୁନାର ପଙ୍କେ ॥
ଏବେ ତ ବଡ଼ ବାଞ୍ଛା ମୋର । ପିନ୍ଧିବି ତୁମ୍ଭ ମୋତିବର ॥
ଦେବାକୁ ଏମନ୍ତ ମୁକୁତା । ମନେ ନ ପାଅ ଯେବେ ବ୍ୟଥା ॥
ସକାଳୁ ଉଠି କି ସ୍ୱପନେ । ଦେଖିଲି ରାଣୀ ଭାବି ମନେ ॥
କେମନ୍ତେ ମନ କଥା ମୋର । ଜାଣିଲେ ଗୋପାଳ ଠାକୁର ॥
ମୁକ୍ତା ପିନ୍ଧାଇବାକୁ ଅଳି । କରି ମଦ୍ଧରେ ଗଲା ଚଳି ॥
ପ୍ରବେଶ ଗୋପାଳ ସମ୍ମୁଖରେ । କହିଲା କାନ୍ଦ କାନ୍ଦ ସ୍ୱରେ ॥
ବିନ୍ଧାଇ ତୋର ନାକ ମାତା । ପିନ୍ଧାଇଥିଲେ ସେ ମୁକୁତା ॥
ସେ ବିନ୍ଧ ଆଜଯାଏ ଅଛି । ମୋତି ତ ହଜିଣ ଯାଇଛି ॥
ଏବେ ରୁକ୍ମିଣୀ ତୋର ମାଏ । ନ ଦେଲେ ଆଉ ମୋତିଟିଏ ॥
ଅହା ମୋହର ଦୁଃଖୀଧନ । ମୋ ମୋତି ପିନ୍ଧିବାକୁ ମନ ॥
[illegible] କି ଅମୂଲ୍ୟ ମୁକୁତା । ଦେଲେ ହେବ ମୋ ମନବ୍ୟଥା ॥
ମୁକୁତା ଅବା କିବା ଧନ । ଦେଇ ପାରଇ ମୋ ଜୀବନ ॥
ସର୍ବ ସମ୍ପଦ କରି ତୁଳ । ସମର୍ପି ଦେବି ରେ ଗୋପାଳ ॥
ପତିତପାବନ ତୋ ଦାନା । ମୋଠାରେ ଦୟା କଲୁ ସିନା ॥
ପିନ୍ଧାଇଦେବି ଟେକ ମୁଖ । ଯାଉ ମୋ ନାସିକାର ଦୁଃଖ ॥
ବୋଲିଣ ଧଇଲା ମସ୍ତକ । ବଙ୍କାଇ ଦେଲେ ପ୍ରଭୁ ବେକ ॥
[illegible]କୁ ରହୁ ମୁଖ ଗୋଟି । ଲୁଟାଇ ଦେଲେ ଶୋଭାସୃଷ୍ଟି ॥
[illegible] ସେ ବଦନର ଗଢ । ପିନ୍ଧାଇ ଦେଲେ ରାଣୀ ମୋତି ॥
ଦେଖି ପ୍ରଭୁର ପଦ୍ମମୁଖ । ହରିଲା ସର୍ବ ପାପ ଦୁଃଖ ॥
ମା ପାଖେ ଯେସନେ ବାଳକ । ତଥା ସଳଖ ପ୍ରଭୁ ବେକ ॥
ହସି ଆନନ୍ଦେ ହେଲେ ଉଭ । ଆହା ଦିଶିଲା କେଡ଼େ ଶୋଭା ॥
କୃତାର୍ଥ ହୋଇଗଲେ ରାଣୀ । ଚକ୍ଷୁରୁ ବହିଗଲା ପାଣି ॥

ଉତ୍ସବ କଲ ସେ ଭୁବନେ । ପ୍ରମାଦେ ତୋଷି ସର୍ବଜନେ ॥
ଅଦ୍ୟାପି ରହିଛନ୍ତି ସେ ମୋହ । ଠାକୁରେ ଉତ୍ସବେ ପିନ୍ଧନ୍ତି ॥
ଲୀଳାମୟ ସେ ଗୋପୀନାଥ । କରନ୍ତି ଲୀଳା ଅପ୍ରମିତ ॥
ଜାଣି ରାଣୀର ଶୁଦ୍ଧମନ । କଲେ ତା ବାଞ୍ଛା ପରିପୂର୍ଣ୍ଣ ॥
ବାତ୍ସଲ୍ୟ ପ୍ରେମେ ହୋଇ ଭୋଳ । ମାଗି ପିନ୍ଧିଲେ ମୁକ୍ତାଫଳ ॥
ଯା ପାଦ ଲକ୍ଷ୍ମୀ ଠାକୁରାଣୀ । ସେବେ ତାଙ୍କୁ କ ଊଣା ପୁଣି ॥
ପ୍ରେମ ଅଧୀନ ଦଇତ୍ୟାରି । ପ୍ରେମରୁ ନ ପାରେ ବାହୁଡ଼ି ॥
ଧନ୍ୟ ତୁ ରାଣୀ ଜଗନ୍ମାତ । ତୋ ପାଦଧୂଳି ମୋର ମାଥ ॥
ପବନ ହେଉ ରାମଦାସ । କରୁଣାକର ପୀତବାସ ॥
ସଂସାର ମାୟାରେ ମୁଁ ପଡ଼ି । ପବନ ଭକ୍ତିପଥ ଛାଡ଼ି ॥
ଅନ୍ଧାରେ ହେଉଛି ଅଣ୍ଡାଳ । ପଥ ଦେଖାଅ ବନମାଳ ॥
ରଖାଅ ତୁମ୍ଭ ପାଦେ ମନ । ନିସ୍ତରୁ ଅକିଞ୍ଚନ ଜନ ॥

ଇତି ଶ୍ରୀଦାର୍ଢ୍ୟଭକ୍ତି ରସାମୃତେ ମନ ଚୈତନ୍ୟ ସମ୍ବାଦେ
ଶ୍ରେଷ୍ଠବପ୍ର ବଡ଼ବପ୍ର କ୍ଷେତ୍ରବାସୀରାଣୀ ଦାର୍ଢ୍ୟଭକ୍ତି
ବର୍ଣ୍ଣନେ ନାମ ତ୍ରିପଞ୍ଚାଶତଃଧ୍ୟାୟଃ ।

---

## ଚତୁଃପଞ୍ଚାଶତ୍ ଅଧ୍ୟାୟ
## ବିଲ୍ୱମଙ୍ଗଳ ସମ୍ବାଦ

ଚୈତନ୍ୟ ଉବାଚ

କହଇ ଚଇତନ ବାଣୀ । ଶୁଣ ସୁମନ ଦଣ୍ଡପାଣି ॥
ହରିର ଅନୁଗ୍ରହ ହେଲେ । ନିସ୍ତରେ ମହାପାପୀ ଭଲେ ॥
ସେ ଯେତେ ପାପୀ ଥାଏ ଜାଣ । ସେ ହୁଏ ତେତେ ପୁଣ୍ୟବାନ ॥
ରୋଗୀର ବ୍ୟାଧି ହେଲେ ହତ । ଯେମନ୍ତ ହୁଏ ବଳବନ୍ତ ॥
ଅପଥ୍ୟ ପାଶକୁ ନ ଯାଏ । ଚିର ଜୀବନ ସୁଖେ ରହେ ॥
କହିବା ଏକ ସାଧୁକଥା । ଅତି ପବନ ଗୁଣ ଗାଥା ॥

ଦକ୍ଷିଣେ ଏକ ବିପ୍ର ରହେ । ବିଲ୍ୱମଙ୍ଗଳ ନାମ ବହେ ॥
ଅଟଇ ଧର୍ମ ବିବର୍ଜିତ । ଅତି ଲମ୍ପଟ ବେଶ୍ୟାରତ ॥
ନଦୀଏ ଘରପାଖେ ତାର । ତା ଆରପାରେ ବେଶ୍ୟାଘର ॥
ନାମ ତାହାର ଚିନ୍ତାମଣି । ସୁନ୍ଦରୀ ସୃଷ୍ଟି ମଥାମଣି ॥
ଲମ୍ପଟ ମନ ବନ୍ଦୀବାସ । ଷୋଳ କି ସତର ବୟସ ॥
ସେଙ୍କଟି ବିଲ୍ୱମଙ୍ଗଳର । ଅମୂଲ୍ୟ କଣ୍ଠ ସୁନାହାର ॥
ତା ଘରେ ରଜନୀ ଦିବସ । ପଡ଼ି ଭୋଗଇ ରତିରସ ॥
ଦିନେ ତା ପିତୃଶ୍ରାଦ୍ଧ ଦିନ । ପଡ଼ିଲା ସକାଳୁ ବନ୍ଧନ ॥
ବେଶ୍ୟା ବୋଇଲା ଯାଅ ଘର । ପିତାଙ୍କ ଶ୍ରାଦ୍ଧକାର୍ଯ୍ୟ କର ॥
ବଢ଼େ ଯେ ବରଷା ପବନ । ଘରେ ରହିବ ଆଜଦିନ ॥
ଏମନ୍ତ କହି ବିଦା କଲା । ବ୍ରାହ୍ମଣ ଘରକୁ ଅଇଲା ॥
ସାରିଲେ ଶ୍ରାଦ୍ଧକର୍ମ ବିଧି । ବନ୍ଧୁ କୁଟୁମ୍ବ ଚରନ୍ତିଦ ॥
ଆସି ହୋଇଲା ସନ୍ଧ୍ୟାକାଳ । ହେଲା ଅନ୍ଧାର ବେଳ୍ମଁ ବେଳା ॥
ଯେମନ୍ତ ବଢ଼ିଲା ଅନ୍ଧାର । ତେମନ୍ତ ମଦନ ବିକାର ॥
ବିପ୍ର ହୃଦୟେ ଗଲା ଢୋଟି । କେ କହୁ ତାର ଛଟପଟି ॥
ଘନେ ବିଜୁଳି ଝଲାପରି । ମନରେ ବେଶ୍ୟା ଖେଳା କରି ॥
ଯେମନ୍ତେ ନାଚେ ବାଏ ଗାଏ । ହସି ନୟନ କୋଣେ ଚାହେଁ ॥
ରସାଇ ରସଇ ମିଶଇ । ମନ ପରାଣ ସନ୍ତୋଷଇ ॥
ଦିଶିଲା ତାହାହିଁ କେବଳ । ତନ୍ମୟ ଭାବେ ବିପ୍ର ଭୋଳ ॥
ରଜନୀ ଅର୍ଦ୍ଧ ଅନ୍ତ ହୋଇ । ଅନ୍ଧାରେ ପଥ ନ ଦିଶଇ ॥
ଝଞ୍ଜା ପବନ ପରବଳ । ଝମକି ବରଷଇ ଜଳ ॥
ବାତୁଳ ପ୍ରାୟ ବିପ୍ର ହୋଇ । ବାହାର ହେଲା ବେଶ୍ୟା ତହିଁ ॥
ନଦୀର ସ୍ରୋତ ଖରତର । ହୋଇଛି ବଡ଼ ଭୟଙ୍କର ॥
ବିପ୍ରର ବାହ୍ୟ ଜ୍ଞାନ ନାହିଁ । ନଈକି ପଡ଼ିଲା ସେ ତେଇଁ ॥
ବୁଡ଼ିଣ ଭାସିବା ବେଳରେ । ହାତେ ପଡ଼ିଲା ମୁରୁଦାରେ ॥

ସେ ସଡ଼ି ଫୁଲ ସୋପାନପର । ଭାସି ଯାଉଛି ଗନ୍ଧ ଭାର ॥
ଧଇଲ ତାହାକୁ କୁଣ୍ଢାଇ । ନଦୀକି ଗଲା ପାର ହୋଇ ॥
ନଦୀର ଆରପଟେ ଉଠି । ଧାଇଁଲ କାଦୁଅ ଚକଟି ॥
ବୁଲିଲ ଦୁଆର ଉଦ୍ଦେଶ୍ୟ ବେଶ୍ୟାର ଘର ଗୃହପାଟେଶ ॥
ପାଚେରୀ କାନ୍ଥ ତାକୁ ଦେହେ । ମୂଷାର ଗର୍ତ୍ତ ଏକ ରହେ ॥
ତହିଁରେ ମୁଖକୁ ପୂରାଇ । ସର୍ପେ ଓହଳି ଥିଲ ରହି ॥
ତାହାର ପୁଚ୍ଛ ଆଶ୍ରୟରେ । ଉଠୁ କ ପାଚେରୀ ଉପରେ ॥
ଯେମନ୍ତ ବସିଲାକ ଚଢ଼ି । ତେମନ୍ତ ପଡ଼ିଲ ସେ ଗଡ଼ି ॥
ପୃଥୁଳ ବପ୍ର କଳେବର । ଶବଦ ହେଲ ଭୟଙ୍କର ॥
ଉଠିଲ ବେଶ୍ୟା ଭୟ ପାଇ । ଦେଖିଲ ଆଲୁଅ ଲଗାଇ ॥
ବିପ୍ର ପଡ଼ିଛି ଅସ୍ତବ୍ୟସ୍ତେ । ନାହିଁ ତା ଜ୍ଞାନ ଯେ କାହିଁତେ ॥
ତାହାକୁ ଧରା ଧରି କରି । ଘରକୁ ନେଲେ ଜଣ ଚାରି ॥
ଦୁର୍ଗନ୍ଧେ ଫାଟିଯାଏ ନାକ । କାଦୁଅ ପଙ୍କ ଦେହଯାକ ॥
ଧୋଇ ପୋଛିଲେ ଯତ୍ନକରି । ଆଉଁଷି ଚେତନା ସଞ୍ଚାରି ॥
ଭର୍ତ୍ସନା କରି ଚିନ୍ତାମଣି । କହଇ ମର୍ମଭେଦୀ ବାଣୀ ॥
ଧିକ ତୁମ୍ଭର ବ୍ୟବହାର । ଧିକ ଯେ ବୁଦ୍ଧି ହିଁ ତୁମ୍ଭର ॥
ଯାହାର କରମ ଯେମନ୍ତ । ସେ ଫଳ ଲଭଇ ତେମନ୍ତ ॥
ଏଡ଼ିକି ମଦନ ବିକାର । ଦୁର୍ଗମେ ନଦୀ ହେଲ ପାର ॥
ମଲା କି ମନୁଷ୍ୟ ଏଡ଼େ ଜଡ଼ । ଧାଇଁ ଆସିଲ ଉଠି ପଡ଼ି ॥
ଦୁର୍ଗନ୍ଧ ଭୂତ ହେବ ବଶା । ତୁମ୍ଭଙ୍କୁ ନ ଗଲା ତା ଢଶା ॥
ନ ହେଲା କାଳସର୍ପ ଧରି । ଡେଇଁଲ ଅଲଙ୍ଘ୍ୟ ପାଚେରୀ ॥
ମୃତ୍ୟୁଁ ପଡ଼ିଲ ତଳେ ଗଡ଼ି । ଜୀବନ ଯାଇଥାନ୍ତା ଉଡ଼ି ॥
ମୁଁ ବେଶ୍ୟା ହୀନ ପାପ କୀଟ । ମହତ୍ତ୍ୱ ଏକ ଗୋଟେ ଯେତେ ॥
ମୋତେ ଛୁଇଁଲେ ପାପ ହୁଏ । ଗୁଇ ନ ମାଡ଼ନ୍ତି ସାଧୁଏଁ ॥
ମୋଠାରେ ଏଡ଼େ ଅନୁରାଗୀ । ହୋଇ ହୋଇଛ ପାପଭାଗୀ ॥

ଏ ସ୍ନେହ କତଅଂଶୁ ଅଂଶେ । ଯେବେ କରନ୍ତି ପୀତବାସେ ॥
ଚତୁର୍ବର୍ଗ ଯା ଚରଣରେ । ଲୁଟଇ ଧୂଳି ପରକାରେ ॥
ସବନ୍ଦ ହୁଅନ୍ତା ଜୀବନ । ଛେଦଣ ସଂସାର ବନ୍ଧନ ॥
ଲଭନ୍ତି ଇହ ପରକାଳେ । ପରମ ଗତିକି ନିଷ୍ଟଳେ ॥
ଚନ୍ଦ୍ରାମଣିର ଚନ୍ଦ୍ରାମଣି । ବାକ୍ୟକୁ ବିପ୍ର ଗୁଣି ଗୁଣି ॥
ନିଜ କୁକର୍ମେ ଅତିଶୟ । ଘୃଣାର ହୋଇଲା ଉଦୟ ॥
ଦଗଧ ହେଲା ଅନୁତାପେ । ମନେ ପକାଇ କୃତ ପାପେ ॥
ନରକଙ୍କେନ୍ତୁ ସେ ଯନ୍ତ୍ରଣା । ବଳଇ ନାହିଁ ସେ ତୁଳନା ॥
ଯେମନ୍ତ ଘୋର ଦାବାନଳେ । କି ଅବା ମହାସିନ୍ଧୁ ଜଳେ ॥
ପୋଡ଼ି କି ବୁଡ଼ି ମଲବେଳେ । ଆଶ୍ରୟ ଲୋଡନ୍ତି ବିକଳେ ॥
ତେମନ୍ତ ହୋଇ ଛଟପଟ । ବୋଇଲା ରଖ ବଇକୁଣ୍ଠ ॥
ପତିତପାବନ ଶ୍ରୀହରି । ପତିତେ ରଖ ଦୟା କରି ॥
ତାରିଛ ଯେତେ ପାପୀଜନେ । ସବୁନ୍ତି ବଳି ମୁହିଁ ଜଣେ ॥
ଏମନ୍ତେ ଶ୍ରୀହରି ଚିନ୍ତନେ । ବୈରାଗ୍ୟ ଉପୁଜିଲା ମନେ ॥
ରଜନୀ ହୋଇଲା ପ୍ରଭାତ । ଉଠିଲା ନବୀନ ଭକତ ॥
ଗୃହ ଭାରିଯା ପୁତ୍ର ମାତା । ପାସୋରି ସମସ୍ତଙ୍କ କଥା ॥
ଦୃଢ଼ ବୈରାଗ୍ୟ ହୃଦେ ଧରି । ଚଳିଲା ଶ୍ରୀହରି ସୁମରି ॥
ଗୃଳଇ ଅତି ବେଗେ ବେଗେ । ଦେଖିଲା ସାଧୁଏକ ଆଗେ ॥
ଭକ୍ତିରେ ତାଙ୍କୁ ଗୁରୁକଲା । ଶ୍ରୀକୃଷ୍ଣ ମନ୍ତ୍ର ଦୀକ୍ଷା ନେଲା ॥
ଲଗାଇ ମନ ଦେହ ପ୍ରାଣ । ସେବିଲା ଗୁରୁଙ୍କ ଚରଣ ॥
ଲଭିଲା ହରି ପ୍ରେମାମୃତ । ପାନେ ହୋଇଲା ଉନମତ୍ତ ॥
ଯେସନ୍ତେ ମଦ୍ୟପ ମଦ୍ୟ ପିଇ । ହସଇ କାନ୍ଦଇ ନାଚଇ ॥
କୃଷ୍ଣ ଦର୍ଶନେ ଉତ୍କଣ୍ଠିତେ । ଚଳିଲା ବୃନ୍ଦାବନ ପଥେ ॥
ଦିଗ ବିଦିଗ ନାହିଁ ଜ୍ଞାନ । କେବଳ କୃଷ୍ଣପାଦେ ଧ୍ୟାନ ॥
ପ୍ରବେଶ ପନ୍ଥେ ଗ୍ରାମାନ୍ତରେ । ବସିଲା ସରୋବର ତୀରେ ॥



କୃଷ୍ଣଙ୍କ ହାତକୁ ବିଲ୍ୱମଙ୍ଗଳ ଜାବୁଡ଼ି ଧରିଲେ ।

ଏମନ୍ତେ ପ୍ରେମେ ମତ୍ତ ହୋଇ । ରହିଲା ଦିନଗୁର ତହିଁ ॥
ତାହାଙ୍କୁ ଦେଖି ସାଧୁଭକ୍ତ । ପ୍ରେମରେ ହେଲେ ବିଗଳିତ ॥
ସ୍ନାନ ଯେ ସରୋବର ତୀରେ । ଅନେକ ନର ନାରୀ କରେ ॥
ଏକ ଯେ ବଣିକର ନାରୀ । ଯୁବତୀ ପରମାସୁନ୍ଦରୀ ॥
ସ୍ନାନ ସେ ସାରି ଯାଏ ଘରେ । ଦୃଷ୍ଟି ପଡ଼ିଲା ତା ଉପରେ ॥
ଏ କେ ତ ସୁନ୍ଦରୀ ବିଶେଷ । ଦୁଜେ ପିନ୍ଧିଛି ଓଦାବାସ ॥
ଜଡ଼ି ଯାଇଛି ଶାଢ଼ୀ ଗୋଟି । ଦିଶଇ ଦେହ ଶୋଭା ଫୁଟି ॥
ବିଲ୍ୱମଙ୍ଗଳ ଶୁଦ୍ଧଚିତ୍ତ । କାମ୍ପିତ ହେଲା ବିଗଳିତ ॥
ଜାଣି ମନର ଏ ପ୍ରକାର । ଜନ୍ମିଲା ବୋଲି ଯେ ବିକାର ॥
ବିକାର ପ୍ରତିକାର ପାଇଁ । ସେ ବଧୂ ପଛେ ପଛେ ଯାଇ ॥
ବଧୂ ପ୍ରବେଶ ଅନ୍ତଃପୁରେ । ସାଧୁ ବସିଲା ଅଗଣାରେ ॥
ଏକାଳେ ସେହି ନାରୀ ପତି । ଶୁଦ୍ଧଚରିତ ଶାନ୍ତମତି ॥
ସାଧୁର ପାଶେ ଉପସ୍ଥିତ । ହୋଇ ହୋଇଲା ଆନନ୍ଦିତ ॥
ବହୁତ ସ୍ତବ ସ୍ତୁତି କଲା । କି ଆଜ୍ଞା ହେଉଛି ବୋଇଲା ॥
ସାଧୁ ବୋଇଲା ମୋର କଥା । ରଖିଲେ କର ଏ ବ୍ୟବସ୍ଥା ॥
ତୋର ସୁନ୍ଦରୀ ଯୁବତୀକି । ଝଟତ ଆଣ ମୋ ନିକଟକୁ ॥
ବଣିକ ଚରିତ୍ର ବିଚିତ୍ର । ଅତ୍ୟନ୍ତ ବୈଷ୍ଣବଭକ୍ତ ॥
ବୈଷ୍ଣବର ପ୍ରୀତି ପାଇଁ । ସକଳ କରି ସେ ପାରଇ ॥
ଅନ୍ତଃପୁରକୁ ଚାଲିଗଲା । ସ୍ତ୍ରୀଙ୍କି ବିଭୂଷଣ କଲା ॥
ନିଜ ନାରୀକି ଆଣି ତୋଷେ । ସମର୍ପି ଦେଲା ସାଧୁ ପାଶେ ॥
ପାଦରୁ ଶିରଯାଏ ତାର । ଦେଖିଲେ ସାଧୁ ବାର ବାର ॥
ଚକ୍ଷୁକୁ ସମ୍ବୋଧନ କହି । ଆପଣା ମନକୁ ବୁଝାଇ ॥
ରେ ମୂଢ଼ ଚକ୍ଷୁ କିସ ଗୁହିଁ । ତୁ ପୁଣି ହେଲୁ କାମେ ମୋହି ॥
ରକତ ମାଂସ କ୍ଲେଦ ମଳ । ମୂତ୍ର ଦୁର୍ଗନ୍ଧମୟସ୍ଥଳ ॥
ଅଟଇ ଯିନା ଦେହ ଗୋଟି । ତାଙ୍କି ରହିଛି ଚର୍ମପଟି ॥

ଯେମନ୍ତ ଫଳ ମହାକାଳ । ଉପର କେବଳ ସୁଢ଼ଳ ।
ଆରେ ମନ୍ଦ କ୍ଷୁ ତୋର ଏଡ଼େ । ଏଥି ପାଇଁ କ ଲୋଭ ବଡ଼େ ॥
କରଣେ ଅସ୍ପୃଶ୍ୟ ସ୍ମରଣ । କୁହି ତ ଅଭକ୍ଷ୍ୟ ଗବସ ।
ଧିକ ଧିକରେ ତୋତେ ଦୃଷ୍ଟି । ଅସତ୍ୟ ଇନ୍ଦ୍ରିୟ ପାପିଷ୍ଠ ॥
ଯା ଫଳ ଦୁଃଖ ପରିଣାମେ । ପକାଇ ଇଚ୍ଛୁ ସେହି କାମେ ॥
ଏତେ ଝିଙ୍ଗାସି ଅନ୍ତେ ପୁଣି । ବୋଲଇ ଶୁଣରେ ରମଣୀ ॥
ଦଓଟି ଅତ ତୀକ୍ଷଣ ସୂନ । ଛୁଞ୍ଚ ମୋ ନିକଟକୁ ଆଣ ।
ଆଣିଲା ବେଗେ ନାରୀଜନ । ଦେଖିଣ ସାଧୁ ହେଲା ତୋଷ ॥
ବୋଇଲା ଏ ପାପ ନୟନେ । ଫୋଡ଼ି ଦିଅ ଏ ଛୁଞ୍ଚମୂନେ ॥
ଶୁଣି ସୁନ୍ଦରୀ ସ୍ତମ୍ଭୀଭୂତ । କହିଲା ବୋଇଲା ସାଧୁତ ॥
ଆଜ୍ଞା ଲଙ୍ଘନେ ଭୟ କରି । ନୟନେ ଦେଲା ଛୁଞ୍ଚମାରି ॥
ରକତ ଝର ଝର ବହେ । ଆନନ୍ଦେ ନାଚ ସାଧୁ କହେ ॥
ବଧି ବଧନ ଏଣୁ ମୂଳ । ମିଳେ କରମ ମତେ ଫଳ ॥
ବଣିକ ଆସି ଏହା ଦେଖି । ହୋଇଲ ଅତିଶୟ ଦୁଃଖୀ ।
ସାଧୁର ଆଜ୍ଞା ଅନୁସାରେ । ନେଲା ସେ ସରୋବର ତୀରେ ।
ଧୀରେ ଧୀରେ ଯେ ହସ୍ତ ଧରି । ଦେଖିଣ ଜନେ ଖେଦକରି ॥
କୃଷ୍ଣ ଦର୍ଶନ ବାଧା ଏତ । ଯେ ଦୃଢ଼ବ୍ରତ ଚକ୍ଷୁ ଫେଡ଼ି ॥
ସେ ଅନ୍ଧ ସାଧୁ ବୃନ୍ଦାବନେ । ଗମିଲା କୃଷ୍ଣ ଦରଶନେ ॥
ଯାର ପ୍ରବଳ ପ୍ରେମଦୃଷ୍ଟି । ତାର କ ଚର୍ମଚକ୍ଷୁ ତୁଷ୍ଟି ।
ଶ୍ରୀରାଧାକୃଷ୍ଣ ଲୀଳା ରୂପ । ଚିତ୍ତେ ଚିନ୍ତଣ ସାଧୁରୂପ ॥
କ୍ଷଣେ ହସଇ କ୍ଷଣେ କାନ୍ଦେ । ଗାଇ ନାଚଇ ନାନା ଛନ୍ଦେ ॥
କ୍ଷଣକେ ପୁଣି ତଳେ ପଡ଼େ । ହା ରାଧା କୃଷ୍ଣ ବୋଲି ଗଡ଼େ ॥
ମାଦକୀ ପ୍ରାୟେ ଅଥୟ ଚଳେ । ମଧୁରେ ଗାଏ ଅଶ୍ରୁ ଗଳେ ॥
ଶୁଣି ସେ ନାମାମୃତ ଗାନ । ଉଲ୍ଲସି ଉଠଇ ଭୁବନ ।
ଏମନ୍ତେ ଯାଇଁ ବୃନ୍ଦାବନେ । ବ୍ରହ୍ମକୁଣ୍ଡର ସନ୍ନିଧାନେ ॥

ବସି ଶ୍ରୀକୃଷ୍ଣ ପ୍ରାପ୍ତି ଆଶେ । ଅଟଳ ଭକତ ବିଶ୍ୱାସେ ॥
କରଇ ଧ୍ୟାନ ସଂକୀର୍ତ୍ତନ । ଆବର ବିରହେ ରୋଦନ ॥
ଭକ୍ତବତ୍ସଳ ସର୍ବଗ୍ରାହ୍ୟ । ଭକତ ଆକୁଳ ନ ସହ୍ୟ ॥
ସମ୍ମୁଖେ ହୋଇ ଉପସ୍ଥିତ । ବୋଇଲେ ମଧୁରେ ଏମନ୍ତ ॥
ଖରାରେ ବସି କାହିଁପାଇଁ । କ୍ଷୁଧାରେ ବପ୍ର ହୁଅ ଦହି ॥
ଆସ ଏ ଗଛ ତଳେ ବସ । ଅନ୍ନ ବ୍ୟଞ୍ଜନ କର ଗ୍ରାସ ॥
ବିଲ୍ୱମଙ୍ଗଳ କହେ ମୁହିଁ । ଅନ୍ଧ କାହାକୁହିଁ ନ ଦେଖଇ ॥
କେ ତୁମ୍ଭେ ସତ କର ଭାଷ । ତେବେ ମୁଁ ଯିବ ତୁମ୍ଭ ପାଶ ॥
ଗୋପଶିଶୁ ମୁଁ କୃଷ୍ଣ କହେ । ସେ ବୋଲେ ଅନ୍ନ ଦେଲା କିଏ
ପ୍ରତ୍ୟୁତ୍ତରେ ଗୋପୀନାଥ । ଦେଇଛି ଅନ୍ନ ବ୍ୟଞ୍ଜନ ତ ॥
ଅଙ୍ଗ ସୁବାସ ମନୋହର । ବଚନ କୋମଳ ମଧୁର ॥
ସାଧୁ ଜାଣିଲା ଅନୁଭବେ । ନିଶ୍ଚେ ଏ କୃଷ୍ଣ ବାସୁଦେବେ ॥
ଆନନ୍ଦେ ଉତ୍କଣ୍ଠିତ ହୋଇ । ଭଳଇ ଧରିବ କୁଣ୍ଢାଇ ॥
ବୋଲେ ଖାଇବ ଅନ୍ନ ଦିଅ । ତୁଇକ ହାତ ଧରି ନିଅ ॥
ଧର ବୋଲଣ ବାମହସ୍ତ । ତର୍ଜ୍ଜନୀ ବଢ଼ାଇ ଅଚ୍ୟୁତ ॥
ହସିବା ଆହା କି ସୁନ୍ଦର । ତୁଳାକୁ ତୁଚ୍ଛ ସୁଧାକର ॥
ସାଧୁ ବୋଲଇ ଅଛ କାହିଁ । ହାତ ତ ଧରି ପାରୁ ନାହିଁ ॥
ପୁଣ ବଢ଼ାଇ କୃଷ୍ଣ ହସ୍ତ । କାପଟି ଧଇଲା ସାଧୁ ତ ॥
ଯେମନ୍ତେ ବୁଡ଼ିମଲା ଲୋକେ । କୁଣ୍ଢାଇ ଧରନ୍ତି ଆରକେ ॥
ଦରିଦ୍ର ପରଶ ମଣିକି । ପାଇ ଧରଇ ଆଣ୍ଠେ ଯାକି ॥
ମହାକ୍ଷୁଧାର୍ତ୍ତୀ ସୁଧାପାନେ । ଲଭି ନ ଛାଡ଼େ କଦାଚନେ ॥
କୃଷ୍ଣ ବୋଇଲେ ଏ କି ଭଳ । ଛାଡ଼ ଘରକୁ ଯିବ ମୁହିଁ ॥
ସେ ବୋଲେ କେବେ ନ ଛାଡ଼ିବ । ହୃଦୟ ମଧ୍ୟରେ ରଖିବ ॥
ବହୁ କଷ୍ଟରେ ଲଭ ଧନ । ଛାଡ଼େ କି ଦରିଦ୍ର ପ୍ରଧାନ ॥
ପର କି ଦୁଃଖୀର ଯାତନା । ବୁଝେ ତେମନ୍ତ ତୁମ୍ଭେ ସିନା ॥

ସର୍ବାଂରେ ମରଦୁଃଖ ଯିବ । ନିଜର ହାନି ତ ନୋହିବ ॥
ଏମନ୍ତ ଦର୍ଶନ ମାତର । ଦେବାକୁ ଏତେ ଛନ୍ଦ ଧର ॥
ନ ଶୁଣି ସାଧୁ ନୀତ ବାଣୀ କୃଷ୍ଣ କରନ୍ତି ଝଣାଝଣି ॥
ଗୈର ଯେମନ୍ତେ ଧର୍ମଗିର । ନ ଶୁଣେ କାଞ୍ଚିତ ମାତର ॥
ସାଧୁ ଭକତ କୋପେ ଥର । ଆଣ୍ଠୁରେ ଧଇଲ ଆହୁର ॥
କୃଷ୍ଣ ବୋଇଲେ ଗ୍ରୁଡ଼ ଗ୍ରୁଡ଼ । ଭାଙ୍ଗିଗଲା ମୋ ହାତ ଗୋଡ଼ ॥
ଶୁଣିଣ ସାଧୁ ଚମକିଲା । ମୁଠା ହୁଗୁଳା କରିଦେଲା ॥
ହାତରୁ ଖସୁଡ଼ ପଳାଇ । ହସିଲେ କପଟୀ କହ୍ନାଇ ॥
ଭକୁଆ ହୋଇ ସାଧୁ ଋଷି । ହସ୍ତରୁ ସିନା ଗଲ ଖସି ॥
ସେ ପୁଣି ବଳେ ନୁହେ ଛଳେ । ପୌରୁଷ ନାହିଁ ଏଥେ ତଳେ ॥
ଦେଖିବା ଦେଖି ହେବୁ ମୋର । ପଳାଅ ଭଲ ମାୟାଧର ॥
ଯାଠାରେ ଯେତେକେ କରେ ଦୟା । ତାଠାରେ ତେତେକେ କୃଷ୍ଣମାୟା ॥
ଯେ ଯେତେ ଧରିବାକୁ ଯାଏ । ସେ ତେତେ ଦୂରକୁ ପଳାଏ ॥
ଗୃହ ନ ଛାଡ଼ିଲେ ପିଲାକୁ । ମାତା ଦେଖାଇ ଅଙ୍ଗୁଳିକୁ ॥
ଜୁଜୁ ବୋଲଇ ଧରଧର । ଗୃହେ ବାଳକ ଥର ଥର ॥
ତାହାଂରେ ବଡ଼େ ତା ଶକତ । ଏ ମାୟା ଜାଣ ସେହିମତ ॥
କୃଷ୍ଣ ହୋଇଣ ସ୍ନେହବଶ । ବୋଇଲେ ସଙ୍ଗେ ସଙ୍ଗେ ଆଣ ॥
ଗୃହନ୍ତି କୃଷ୍ଣ ଦୂରେ ଦୂରେ । ଅନ୍ଧ ଧାମଇ ଧରିବାରେ ॥
ଚୁମ୍ବକ ଆକର୍ଷଣ ଟାଣେ । ଯେମନ୍ତେ ଲୋହଖଣ୍ଡ ଚଳେ ॥
କରାଇ ତନ୍ତ୍ରତଳେ ସ୍ଥିତ । ଦେଲେ ବ୍ୟଞ୍ଜନ ଦୁଧଘୃତ ॥
କୃଷ୍ଣ ବୋଇଲେ ଗୋପସୁତେ । ଦେଖି ନାହାଁକ କେବେନେବେ ॥
ଦେଖି ହୋଇବ କିବା ଫଳ । ତାହାଂକ କରୁଛୁ କହାଳ ॥
ଅନ୍ଧ ବୋଲଇ ଗୁରୁତର । ସମ୍ବନ୍ଧ ତାଙ୍କ ତାହାଂ ମୋର ॥
ହସି ନିକଟେ ଯାଇ ଧାଇଁ । ପଛକୁ କୃଷ୍ଣ ଲୁଞ୍ଚିଯାଇ ॥
ଭକତ ସଙ୍ଗେ କଉତୁକ । କରନ୍ତି ପ୍ରଭୁ ପଦ୍ମମୁଖ ॥

ଅନ୍ଧ ହୃଦୟ ଯାଏ ଫାଟି । ହାତରୁ ନିଧି ହରାଇଛି
କହଇ କାନ୍ଦି କାନ୍ଦି ହୋଇ । ଦୁଷ୍ଟ ନିଷ୍ଠୁର ଅଟୁ ତୁହି ॥
ଦର୍ଶନ ଦେଲେ କିବା ସ୍ୱର । ଯିବଟି ଷଣ୍ଡ କି ତୋହର ॥
କାହିଁକି ମୋତେ ଏତେ କଷ୍ଟ । ଦେଇ କରୁଛ ଛଟପଟ ॥
ହେ ମହାବାହୁ କୃଷ୍ଣ ହରି । ତୋ ପାଦପଦ୍ମ ଆଶ୍ରା କରି ॥
ପାଇଲି ଅଶେଷ କଷଣ । ଦୟା ନ କଲ ଭଗବାନ ॥
ପତିତପାବନ ତୋ ନାମ । ପତିତତାରଣ ତୋ କାମ ॥
ଗଜ ଡାକିଲା ଅତି ଦୂରେ । ତାକୁ ତାରିଲୁ ଧାଡିକାରେ ॥
ପାଶରେ ଥାଇ ଏତେ ସ୍ୱର । ହେଉଛି ନ ଶୁଣ ମୁହାର ॥
ବ୍ୟାଧ ଜାଲରେ ଗର୍ଭିଣୀ । ଡାକିଲା ତାରିଲୁ ତତକ୍ଷଣି
ମୁଁ ମାୟା ମୋହଜାଲେ ପଡ଼ି । ନ ଶୁଣ ଡାକ ମଲେ ଗଡ଼ି
ଦେଉଛୁ ଅନ୍ଧକୁ ନୟନ । ମୁଁ ଅନ୍ଧ ହେଲି ହୀନମାନ
ପୁତ୍ରକୁ ନାରାୟଣ ଡାକୁ । ତାରିଲୁ ଅଜାମିଳଟାକୁ ॥
ମୁଁ ମନ ଚଇତନ ଦେଇ । ଡାକି ମରେ ନ ଶୁଣୁ ତୁହି ॥
ପ୍ରହ୍ଲାଦ ଧ୍ରୁବ ଆଦି କରି । ତରିଲେ ତୋର ନାମ ଧରି ॥
କି ଦେଖି କହ ମୋହପ୍ରତି । ଏତେ ତୋ ପକ୍ଷପାତ ରୀତି ॥
ନ ସହିବ ଏ ଅପମାନ । ମରିବ ରହି ଅନଶନ ॥
ହେଲେ ଏ ପାପ ଦେହ ନାଶ । ଘୋଷିବ ତୋର ଅପଯଶ ॥
ଏମନ୍ତ ଶୁଣି ମୃଦୁ ହସି । କୃଷ୍ଣ କୌତୁକେ ପୁଣି ଭଷି ॥
ଅତି କଲା ମୋ ଦେହ ମୁଖ । ଦେଖି ତୋ ହେବ କିବା ସୁଖ
ଯାଗ ଐଶ୍ୱର୍ଯ୍ୟ ଆଦି ବର । ଅଥବା ସ୍ୱର୍ଗ ଅଧିକାର ॥
ବିଲ୍ୱମଙ୍ଗଳ କହେ ଏତେ । ଭୁଲାଇ ଲୋଡ଼ୁ ପ୍ରଭୁ କେତେ
ତୋ ପାଦ ଧୂଳିଟି ସମ୍ପଦ । କି ଅବା ଇନ୍ଦ୍ର ବ୍ରହ୍ମ ପଦ ॥
ଭକ୍ତମୁକ୍ତ ତୋ ସେବାଦାସୀ । ତୁ ପ୍ରଭୁ ବଇକୁଣ୍ଠବାସୀ ॥
ମାଗୁଛି ଏତେ ମାତ୍ର କରି । ଫେରାଇ ଚକ୍ଷୁ ଦାନ କରି ॥

ମୋ ଆଗେ ବିରାଜ ଶ୍ରୀହରି । ତ୍ରିଭଙ୍ଗି ରୂପେ ବଂଶୀ ଧରି ॥
ଦେଖଇଁ ମୁଁ ମୋର ନୟନେ । ଆବର ହୃଦରେ ଚେତନେ ॥
ଏମନ୍ତ ଶୁଣି ଭବଗ୍ରାହୀ । ଅମୃତ ପାଦପାଦ୍ମ ନେଇ ॥
ଭକ୍ତ ନୟନେ ବୁଲାଇଲେ । ଲଭି ସେ ଦିବ୍ୟ ଚକ୍ଷୁ ଭଲେ ॥
ଯେମନ୍ତେ ଆଗେ ଦେଲା ଚାହିଁ । ଦେଖିଲା ଗୋପାଳ କହ୍ନାଇ ॥
ଆହା କି ଶୋଭା ରୂପରାଶି । ନିନ୍ଦେ ଅସଂଖ୍ୟ ପୂର୍ଣ୍ଣଶଶୀ ॥
ସୌନ୍ଦର୍ଯ୍ୟ ସାର ମହାମେରୁ । କୃପା ଜଳଧି କଳ୍ପତରୁ ॥
ଜ୍ଞାନ ହାରିଲା ଦେଖି ଡୋଳେ । ଅଷ୍ଟ ସାତ୍ତ୍ୱିକ ଦେହେ ଖେଳେ ॥
ସ୍ତମ୍ଭ ପ୍ରାୟେ ଉଷ୍ମ ହେଲା । ଦେହରୁ ଝାଳ ବହିଗଲା ॥
ରୋମାଞ୍ଚ ହେଲା ପରିପୂର୍ଣ୍ଣ । ସର୍ବାଙ୍ଗ ଦିଶିଲା ବିବର୍ଣ୍ଣ ॥
କମ୍ପ ହୋଇଲା ଥରହର । ନେତ୍ରୁ ଗଳିଲା ଅଶ୍ରୁଧାର ॥
ସ୍ତୁତି ଆରମ୍ଭି ରୁନ୍ଧିଗଲେ । ମୂର୍ଚ୍ଛିତ ପଡ଼ିଗଲା ତଳେ ॥
ଦେଖି ଏ ଦଶା ଭକତର । ସାଉଁଟି ଧଇଲେ ଶ୍ରୀଧର ॥
ପ୍ରଭୁଙ୍କ ଅଙ୍ଗ ସଙ୍ଗ ପାଇ । ଚେତନା ଲଭି ଦେଲା ଚାହିଁ ॥
କୁଣ୍ଢାଇ ଧରି ଭକ୍ତିଭରେ । ରୋଦନ କଲା ଉଚ୍ଚସ୍ୱରେ ॥
ସାନ୍ତ୍ୱନା କରି ଶିଶୀକାନ୍ତ । ଭୁଞ୍ଜାଇ ଦେଲେ ଦୁଧଭାତ ॥
ଭକ୍ତରେ ବାନ୍ଧଣ ଗୋବିନ୍ଦେ । ଦିନ ବଞ୍ଚିଲା ମହାନନ୍ଦେ ॥
ଲଭି ଶ୍ରୀହରି କୃପା ପୁଣି । ଏଁକାଳେ ବେଶ୍ୟା ଚିନ୍ତାମଣି ॥
ପରମ ବୈରାଗ୍ୟ ଉଦୟେ । ତେଜିଲା ସକଳ ବିଷୟେ ।
ସେଠାରେ ହେଲା ଉପସ୍ଥିତ । ବିଲ୍ୱମଙ୍ଗଳ ଆରମ୍ଭିତ ॥
ପଥଦରଶୀ ଗୁରୁମଣି । ପ୍ରମାଣ କଲା ଯୋଡ଼ପାଣି ॥
ଶ୍ରୀହରି ଦତ୍ତ ଅନ୍ନଦାନା । ମିଷ୍ଟାନ୍ନ ପକ୍ୱାନ୍ନ ଯେ ନାନା ॥
ବଢ଼ାଇ ଦେଲା ଖାଇବାକୁ । ଚିନ୍ତାମଣି ଯେ କହେ ତାଙ୍କୁ ॥
ଭୋଜନ ଅର୍ଥେ ଆସି ନାହିଁ । କି ଅବା ଅଛ ଧନ ପାଇ ॥
ଲଭିଣ କୃପା ଶ୍ରୀହରିର । ଭବ ସାଗରୁ ହେବ ପାର ॥

ଶରଣ ଏଥିକ ତୁମ୍ଭର । ଲଭିଲ ଦେଖାଅ ଶ୍ରୀଧର ॥
ଏଥିକ ପ୍ରେମ ବଶେ ଭଣି । ଢଳି ପଡ଼ିଲା ଚିନ୍ତାମଣି ॥
ବିଲ୍ୱମଙ୍ଗଳ ପ୍ରେମେ ତାର । ଦେଖିଣ ଆନନ୍ଦ ଅପାର ॥
ଆଶ୍ୱାସି ତାଙ୍କୁ କହେ ବାଣୀ । ଦୟା କରିବେ ଚକ୍ରପାଣି ॥
ଅବଶ୍ୟ ଦେବେ ଦରଶନ । ଚଞ୍ଚଳ ନ କର ତୁ ମନ ॥
ଏତେକ କହି ହରି ପାଶେ । ତୁରିତେ ଗଲ ପ୍ରେମବଶେ ॥
ଧରିଣ ଶ୍ରୀହରି ଚରଣ । କଷ୍ଟାଳି କଲ ନିବେଦନ ॥
ହସିଣ ପୁରୁଷ ଉତ୍ତମ । ପୂର୍ଣ୍ଣ କଲେ ତା ମନସ୍କାମ ॥
ଧନ୍ୟ ତୁମ୍ଭର ଅନୁରାଗ । ଧନ୍ୟ ନିର୍ମଳ ଭକ୍ତିଯୋଗ ॥
ଧନ୍ୟ ଜଗତେ ଦୁଇ ପ୍ରାଣୀ । ବିଲ୍ୱମଙ୍ଗଳ ଚିନ୍ତାମଣି ॥
ଦୁହେଁ ତ ମହାପାପୀ ଥିଲେ । ଦୁହେଁହିଁ ମହାସାଧୁ ହେଲେ ॥
ତରି ତରାଇ ପରସ୍ପରେ । ଯଶ ରଖିଲେ ମହୀପରେ ॥
ଯୁଗଳ ପାଦେ ନମସ୍କାର । ରାମ ଦାସକୁ କୃପା କର ॥
ହେ ପ୍ରଭୁ ତୁ ଯାକୁ ସଦୟ । ଜ୍ଞାନ ତା ହୃଦରୁ ଉଦୟ ॥
ଛିଣ୍ଡାଇ ମୋହ ମାୟା ପାଶ । କର ଶ୍ରୀପଦେ ସେବା ଦାସ ॥

ଇତି ଶ୍ରୀ ଦାର୍ଢ୍ୟଭକ୍ତି ରସାମୃତେ ମନ ଚୈତନ୍ୟ ସମ୍ବାଦେ
ବିଲ୍ୱମଙ୍ଗଳ ଚିନ୍ତାମଣି ଦାର୍ଢ୍ୟଭାବ ଚରିତ ବର୍ଣ୍ଣନେ ନାମ
ଚତୁଃପଞ୍ଚାଶତ୍ତମୋଽଧ୍ୟାୟଃ ।

———

## ପଞ୍ଚପଞ୍ଚାଶତ ଅଧ୍ୟାୟ
## ଜୟଦେବ ସମ୍ବାଦ

ଚୈତନ୍ୟ ଉବାଚ

କହଇ ଚୈତନ୍ୟ ଆବର । ଶୁଣ ଇନ୍ଦ୍ରିୟଗଣେଶ୍ୱର ॥
ଅଟଇ ପରମ ପବିତ୍ର । ଶ୍ରୀକୃଷ୍ଣ ଭକତ ଚରିତ ॥
ଶ୍ରବଣେ ନାନା ପାପ ଧ୍ୱଂସେ । ବିଷ୍ଣୁ ଭକତ ପରକାଶେ ॥

ଜନମ କେନ୍ଦୁବିଲ୍ୱ ଗ୍ରାମେ । ବ୍ରାହ୍ମଣ ଜୟଦେବ ନାମେ ॥
ମହା ପଣ୍ଡିତ ବିଷ୍ଣୁଭକ୍ତ । ଜିତଇନ୍ଦ୍ରିୟ ସୁବ୍ରତ ॥
ବିରକ୍ତ ନିଃସଙ୍ଗ ଉଦାସୀ । ଶ୍ରୀକ୍ଷେତ୍ରେ ପରବେଶ ଆସି ॥
ଏକ ବୃକ୍ଷର ତଳେ ଥାଇ । ଶ୍ରୀଜଗନ୍ନାଥଙ୍କୁ ସେବଇ ।
ପୂର୍ବେ ଯେ ଏକଇ ବ୍ରାହ୍ମଣ । ଥିଲା ସେ ଅପତ୍ୟ ବିହୀନ ।
ଶ୍ରୀଜଗନ୍ନାଥେ ସେବା କଲା । ମନେ ଏମନ୍ତ ମନାସିଲା ।
ପୁତ୍ର ବା କନ୍ୟା ହେଲେ ମୋର । ଦାସ ବା ଦାସୀର ପ୍ରକାର ॥
ସେବିବ ପ୍ରଭୁର ଚରଣ । ଏମନ୍ତେ ଗଲା କିଛୁଦିନ ॥
ଭାଗ୍ୟରେ କନ୍ୟାଏ ଜନ୍ମିଲା । ତା ଯୁବାକାଳ ଯହୁଁ ହେଲା ॥
ପ୍ରଭୁଙ୍କୁ କଲା ସମର୍ପଣ । ଆଜ୍ଞା ଦେଲେ ସେ ନାରାୟଣ ॥
ଦାସୀ ଏ ମୋର ଅଙ୍ଗୀକାର । ମାନ ଏମନ୍ତ ବିପ୍ରବର ॥
ମୋ ଦାସ ଏକ ଯେ ଉଦାସୀ । ବୃକ୍ଷର ତଳେ ଅଛି ବସି ॥
ଜୟଦେବଟି ନାମ ତାର । ତାକୁ ଏ କନ୍ୟା ଦାନ କର ॥
ଏ ଆଜ୍ଞାମତେ ବିପ୍ର ତୋଷେ । ଗଲା ଯେ ଜୟଦେବ ପାଶେ ॥
ପ୍ରଭୁର ଆଜ୍ଞା ଜଣାଇଲା । ଶୁଣି ସେ ସାଧୁ ଚମକିଲା ॥
ବୋଇଲା ଏମନ୍ତ ଆଜ୍ଞାକୁ । ବଳ ମୋ ନାହିଁ ପାଳିବାକୁ ॥
ବିପ୍ର କହଇ ପ୍ରଭୁ ଆଜ୍ଞା । କାହିଁକି କରୁଛ ଅବଜ୍ଞା ।
ସାଧୁ ବୋଲଇ ଅକାରଣ । କହାଳ କରୁଛ ବ୍ରାହ୍ମଣ ॥
ତା କ୍ଷେତ୍ର ଗ୍ରୁଡ଼ ପଛେ ଯିବ । ତ ଆଜ୍ଞା ପାଳି ନ ପାରିବ ॥
ତହୁଁ ବ୍ରାହ୍ମଣ ଚଡ଼କରି । କନ୍ୟାକୁ କହଇ ତଆରି ॥
ଏହି ତୋ ସ୍ୱାମୀଟି ନିଷ୍ଟୟ । ଏହାକୁ ଆଦରେଣ ରହ ॥
ଏମନ୍ତ କହି ବିପ୍ରଗଲା । କନ୍ୟା ଯେ ବସିଣ ରହିଲା ॥
ସାଧୁ ବୋଇଲା ଯାଅ ତୁହି । ମୋ ତହିଁ କିଛି କାର୍ଯ୍ୟ ନାହିଁ ॥
ସେ କନ୍ୟା ନାମ ପଦ୍ମାବତୀ । ପଦ୍ମିନୀ ଗୁଣବତୀ ସତୀ ।
କାନ୍ଦି କହିଲା ଜଗନ୍ନାଥ । ଆଜ୍ଞାରେ ସମର୍ପିଲେ ତାତ ॥



ଜୟଦେବ ଗାଧୋଇ ସାରି ଆସି ଦେଖନ୍ତି ଯେ ଭଗବାନ ଛଦ୍ମବେଶରେ ଆସି ଶ୍ଳୋକ ସଂପୂର୍ଣ୍ଣ କରି ଯାଇଛନ୍ତି ।

ତୁମ୍ଭେ ତ ବଲ୍ଲଭ ମୋହର । ଏ ଦେହ ପ୍ରାଣ ଅଧିକାରୀ ॥
ପକାଇ ଦେଲେ ପାଦେଠେଲି । ପଶିବ ଶିର ଦେଇ ପେଲି ॥
ଲଗାଇ ଦେହ ମନ ପ୍ରାଣ । ସେବିବ ତୁମ୍ଭର ଚରଣ ॥
ଶୁଣିଣ ସାଧୁ ବିଚାରଇ । ପ୍ରଭୁର ଆଜ୍ଞା ନ ଟଳଇ ॥
ସଙ୍ଗିନୀରୂପେ ଏ ରୂପସୀ । ହେଲ ଗଲାକୁ ମୋହଫାଶୀ ॥
ଯେ ଇଚ୍ଛା ଜଗନ୍ନାଥଙ୍କର । ତହିଁଙ୍କ ଆଜ୍ଞା କି ବିଚାର ॥
ଗୋଟିଏ କୁଟୀର ନିର୍ମାଣି । ତହିଁ ରହିଲ ସ୍ୱାମୀ ଘେନି ॥
ଶ୍ରୀରାଧା ମାଧବ ଠାକୁରେ । ଆଣି ସ୍ଥାପିଲ ସେହିଠାରେ ॥
ଶ୍ରୀପଦ ସେବିବା କାରଣ । ପଦ୍ମାକୁ କଲା ସମର୍ପଣ ॥
ପଦ୍ମା ଯେ ପଣ୍ଡିତା ସାଧବୀ ଯେମନ୍ତେ ଦେବ ଦେବହୂଦେବୀ
ଶ୍ରୀରାଧାମାଧବ ଦର୍ଶନେ ଭକ୍ତଶ୍ରୀ ଜନ୍ମିଲ ବର୍ଣ୍ଣନେ ॥
ରଚିଲ ଅପୂର୍ବ ପ୍ରବନ୍ଧ । ନାମ ଯା ଶ୍ରୀଗୀତଗୋବିନ୍ଦ ॥
ଶୁଣନ୍ତି ଆଜଯାଏ ନିତ୍ୟ । ତ୍ରିକାଳେ ଯାହା ଜଗନ୍ନାଥ ॥
ଦିନେ ସେ ଗ୍ରନ୍ଥର ରଚନା । ସମୟେ ଏମନ୍ତ ଘଟନା ॥
ଖଣ୍ଡିତା ରସ ବର୍ଣ୍ଣନରେ । ଶ୍ରୀକୃଷ୍ଣ ରାଧିକା ପଦରେ ॥
ପଡ଼ିଣ ଥିଲେ କାମଘୋଳେ । ଏକଥା ଜାଣନ୍ତି ସକଳେ ॥
ମାନ୍ୟ ଭକତ ଜୟଦେବ । ମନେ ଜନ୍ମିଲା ଶଙ୍କାଭାବ ॥
ହେଲେହେଁ ରାଧା ଜଗନ୍ନାଥ । ଜଗତ ପ୍ରଭୁ ଜଗନ୍ନାଥ ॥
ଅଧୀର ଲମ୍ପଟ ପରାୟେ । ପଡ଼ିଲେ ରମଣୀର ପାୟେ ॥
କେମନ୍ତେ ଲେଖିବ ଏ କଥା । ହୃଦକୁ ଲାଗଇ ମୋ ବ୍ୟଥା ॥
ପୋଥି ଲେଖନ ଥୋଇ ଭଳି । ସ୍ନାନକୁ ଗଲେ କବି ଚଳି ॥
ଏ କାଳେ ପ୍ରଭୁ ବିଶ୍ୱରୂପ । ଧରିଣ ଜୟଦେବ ରୂପ ॥
ମଠରେ ପ୍ରବେଶ ହୋଇଲେ । ଦେଖିଣ ତାଙ୍କୁ ପଦ୍ମ ବୋଲେ ॥
ସ୍ନାନକୁ ଯାଇଁ କର୍ତ୍ତା ପୁଣି । ଫେରିଲ ପ୍ରଭୁ ହସି ଭଣି ॥
ପଢ଼ିଲ ଗୀତ ପଦେ ମନେ । ଫେରିଲି ଲେଖିବା କାରଣେ ॥

ଧରଣ ଲେଖନ ଯେ ପୋଥି । ଲେଖିଲେ ତରତରେ ଅତି ॥
ଯେ ଝୁର ଗରଳ ଖଣ୍ଡନ । ଯେ ପଣ ଶିରସି ମଣ୍ଡନ ॥
ସେ ପଦପଲ୍ଲବ ଉଦାର । ଦେହି ଏମନ୍ତ ପଦସାର ॥
ଲେଖି ଗମିଲେ ଦେବଦେବ । ପ୍ରବେଶ ଆସି ଜୟଦେବ ॥
ତକତେ ପଦ୍ମାବତୀ ସତି । ସ୍ନାନକୁ ଯାଇ ଫେରି ଆସି ॥
ଲେଖି ଏଷଣି ପୁଣି ଗଲ । ଏତେ ଚଞ୍ଚଳ ଲେଉଟିଲ ॥
ଏଥେ ସନ୍ଦେହ ଗୁରୁତର । ନ ଜାଣେ ସ୍ୱାମୀ କେବା ମୋର ॥
ସୁବୁଦ୍ଧି ଜୟଦେବ ଶୁଣି । ପ୍ରଭୁର ମାୟା ବୋଲି ଜାଣି ॥
ଫିଟାଇ ଦେଖିଲେ ସେ ପୋଥି । ଝଟକେ ନବ ଲେଖା ଜ୍ୟୋତି ॥
ହୃଦରେ ଥୋଇ ସେହି ଗ୍ରନ୍ଥ । ନାଚିଲେ ହୋଇ ଉନମତ୍ତ ॥
ବୋଲି ନ ପାରେ ଗଦଗଦେ । ଦେହି ପଦ ଯେ କଣ୍ଠରୋଧେ ॥
ପୁଲକେ କମ୍ପେ ଘନ ଘନ । ଲୋତକେ ପୂରିତ ନୟନ ॥
ତନୁ ଯୁଗଳେ ହୋଇ ଭୋଳ । ପଦ୍ମାର ଚରଣକମଳ ॥
ଧରି ବୋଲିଲେ ତୁହି ଧନ୍ୟ । ସୁଫଳ ତୋହର ଜୀବନ ॥
ଦର୍ଶନ ନ ମିଳିଲା ମୋତେ । ସ୍ୱାମୀ ତୋ ଦେଖା ଦେଲେ ତୋତେ ॥
ଏମନ୍ତେ ଗ୍ରନ୍ଥ ସମାପନ । କଲେ ବ୍ୟାପିଲା ସେ ଭୁବନ ॥
ଶ୍ରବଣେ ଶୁଣି ବ୍ରଜବାସୀ । ହୃଦୟେ ହେଲା ପରକାଶି ॥
ଗୀତଗୋବିନ୍ଦ ନାମେ ପୁଣି । ଉତ୍କଳର ରାଜ ନୃପମଣି ॥
ସଭାପଣ୍ଡିତଗଣେ ଦେଇ । ବିଚାର କର ହୋ ବୋଇଲା ॥
ପଣ୍ଡିତେ ଦେଖି କହେ ହସି । ରାଜାର ଗ୍ରନ୍ଥକୁ ପ୍ରଶଂସି ॥
ଜୟଦେବର ବଚନରେ । ମିଷ୍ଟତା ନାହିଁ ବନ୍ଧୁସ୍ଥାନେ ॥
ତଥାପି ତାହା ପ୍ରଭୁଙ୍କର । ଅଟଇ ବଡ଼ ପ୍ରିୟତର ॥
ରାଜନ ଶୁଣି ଗ୍ରନ୍ଥ ଦୁଇ । ପ୍ରଭୁଙ୍କ ଗ୍ରାମରେ ଦେଲା ନେଇ ॥
ସାଧୁର ଗ୍ରନ୍ଥ ତତକାଳେ । ଧଇଲେ ପ୍ରଭୁ ହୃଦସ୍ଥଳେ ॥
ରାଜାର ଗ୍ରନ୍ଥ ପଦେ କ୍ଷେପି । ଦେଖି ନୃପତି ହେଲା ତାପି ॥

ଚଳିଲ ଅଭିମାନ ଖେଦେ । ଜୀବନ ହାର ସିନ୍ଧୁ ଜଳେ ॥
କାନ୍ଦିଲେ ପ୍ରଭୁ ଦୁଃଖଖେଦେ । ଭକତ ହୃଦୟ ବେଦନା ॥
ଶୁଭିଲ ଆକାଶ ବଚନ । ତୋ ଗ୍ରନ୍ଥ କଲି ମୁଁ ଗ୍ରହଣ ॥
ଦ୍ୱାଦଶ ସର୍ଗ ପରିମାଣ । ଜୟଦେବର ଗ୍ରନ୍ଥ ଜାଣ ॥
ବାର ସର୍ଗର ଆଦ୍ୟେ ତାର । ରହିବ ବାର ଶ୍ଳୋକ ତୋର ॥
ରାଜା ହୋଇଣ ଏଥେଁ ତୋଷ । ଗମିଲ ଆପଣା ଉଆସ ॥
ଦିନେ କପଟେ ଜୟଦେବ । ରୂପ ଧରିଣ ବାସୁଦେବ ॥
ପଦ୍ମାର ହସ୍ତପାକ ଅନ୍ନ । ଖାଇ ସନ୍ତୋଷ କଲେ ମନ ॥
ସେ ସାଧୁ ସାଧ୍ୱୀ ସଙ୍ଗତରେ । ନାନା କୌତୁକ ପ୍ରଭୁ କରେ ॥
ପ୍ରଭୁଙ୍କର ସେବାପାଇଁ ଧନ । ସାଧୁର ଏକା ପ୍ରୟୋଜନ ॥
ସାଧୁ ଯେ ଧନ ଘେନି ଦିନେ । ବଦେଶୁ ଆସେ ତୋଷ ମନେ ॥
ପଥରେ ଭେଟି ଦସ୍ୟୁଦଳ । ଛଡ଼ାଇ ଘେନିଲେ ସକଳ ॥
ଦସ୍ୟୁ ଜୀବନେ ମାରିବାକୁ । ବିନୟେ ସାଧୁ କହେ ତାଙ୍କୁ ॥
ସବୁ ତ ଧନ ମୋର ନେଲ । ଜୀବନେ ମାରି କିବା ଫଳ ॥
ଦସ୍ୟୁ ବୋଲନ୍ତି ଗ୍ରାମେ ଯାଇ । ଆମ୍ଭଙ୍କୁ ଦେବୁ ତୁ ଧରାଇ ॥
କେ ବୋଲେ ଜୀବନେ ନମାର । ଯା ହସ୍ତ ପାଦ କାଟିକର ॥
କୂପରେ ଦେବା ଯେ ପକାଇ । ତକ୍ଷଣେ ଦୁଷ୍ଟେ କଲେ ତାହିଁ ॥
ପକାଇ ଗଲେ ସାଧୁ ବନେ । କ୍ଷୋଭ ନୋହିଲା ଏ କଷଣେ ॥
ପଡ଼ି ସେ ବନମଧ୍ୟ କୂପେ । ମୁଖରେ କୃଷ୍ଣ କୃଷ୍ଣ ଜପେ ॥
ମୃଗୟା ଅର୍ଥେ ଏକ ନୃପ । ଯାଇ ଦେଖିଲ ସେହି କୂପ ॥
କୂପେ ବରିଜେ ସାଧୁବର । ସୂର୍ଯ୍ୟ ସମାନ ତେଜାକାର ॥
ମୁଖେ ରହିଇ ଅବିରାମ । କେବଳ କୃଷ୍ଣ କୃଷ୍ଣ ନାମ ॥
ସାଧୁଙ୍କୁ କୂପରୁ ଉଠାଇ । ଦେଖିଲ ହସ୍ତ ପଦ ନାହିଁ ॥
ପୃଚ୍ଛି ବୋଲଇ ସାଧୁ ଧୀରେ । ଏ ଦଶା କୃଷ୍ଣର ଇଚ୍ଛାରେ ॥
ପ୍ରଣମି ରାଜା ତୋଷମନେ । ବସାଇ ନେଲ ସୁଖାସନେ ॥

ଉତ୍ତମ ସ୍ଥାନେ ନିଜ ପୁରେ । ସାଧୁଙ୍କୁ ରଖିଲା ଆଦରେ ॥
ବୋଇଲା କିବା ବାଞ୍ଛା ତବ । କହ ହେ ପରମ ବୈଷ୍ଣବ ॥
କାହାଁନ୍ତି ବୈଷ୍ଣବ ପ୍ରଧାନ । ବୈଷ୍ଣବ ସେବାରେ ମୋ ମନ ॥
ଏମନ୍ତ ସାଧୁର ବଚନେ । ରାଜା ଲଗିଲା ଆୟୋଜନେ ॥
ଚର୍ବ୍ୟଚୋଷ୍ୟ ଯେ ଲେହ୍ୟପେୟ । ଭୋଜନ ଦେଲା ଅହରହ ॥
ଆସିଲେ ବୈଷ୍ଣବ ଅଶେଷ । ଭୋଜନେ ହେଲେ ଅତି ତୋଷ
ବୈଷ୍ଣବ ଦର୍ଶନ ଲାଳସେ । ସେହି ଦସ୍ୟୁଏ ଛଦ୍ମବେଶେ ॥
ଆସିଲେ ବଇଷ୍ଣବ ପରି । ରାଜାକୁ ପ୍ରବଞ୍ଚନା କରି ॥
ଚିହ୍ନିଣ ସାଧୁ ତାଙ୍କୁ ଗୃହେଁ । ଏମନ୍ତ ରୂପେ ଦେଲେ କହି ॥
ଏହି ଯେ ବଇଷ୍ଣବ ଦଳେ । ଚର୍ଚ୍ଚିବ ସ୍ୱାଙ୍କୁ ଅନ୍ୟ ଭଳେ ॥
ଏମନ୍ତ ସାଧୁ ପରସ୍ତାବେ । ରାଜା ସେବିଲା ଭକ୍ତିଭାବେ ॥
ଦେଖି ସାଧୁର ଆଚରଣ ଭୟେ କମ୍ପିଲେ ଦସ୍ୟୁଗଣ ॥
ଯା ହସ୍ତ ପଦ କାଟିଦେଇ । କୂପରେ ଥିଲେକ ପକାଇ ॥
ସେ ରାଜା ତୁଚ୍ଛ ଅଧିକାରୀ । ଏତେ ଆଦର କପାଁ କରି ॥
ରଖିଛି କରି କି କପଟ । କରିବେ ଦନେ ମୁଣ୍ଡକାଟ ॥
ଉଦ୍ଧୃତ ହେଲା ସ୍ନେହ ସେବା । ଖାଇବା ପିଇବା ଶୋଇବା ॥
ଯିବୁଁ କହିଲେ ରାଜା ବୋଲେ । ଯିବ ବାବାଜୀ ଆଜ୍ଞା ହେଲେ ॥
କମ୍ପିଲା ଶୁଣି କଳେବର । ବାବାଜୀ ନାମ ଚୋରଙ୍କର ॥
ନ ଯାଏ ସାଧୁ ପାଶେ ଡରେ । ପଳାଇଯିବା ବାଞ୍ଛା କରେ ॥
ରାଜା କହିଲେ ସାଧୁପାଶେ । ବୈଷ୍ଣବେ ଗଲେ ନିଜବାସେ ॥
ବାବାଜୀ ବୋଇଲେ ରାଜାଙ୍କୁ । ବହୁତ ଧନ ଦିଅ ତାଙ୍କୁ ॥
ସଙ୍ଗରେ ଦିଅ ଲୋକ ଗାଡ଼ି । ତାଙ୍କୁ ଆସନ୍ତୁ ଗୃହେ ଛାଡ଼ି ॥
ବାବାଜୀ ଆଜ୍ଞା ଶିରେ ଧରି । ବିଦାୟ ତାଙ୍କୁ ରାଜା କରି ॥
ଏମନ୍ତେ ଗଲେ ଦସ୍ୟୁମାନେ । ପଥେ କହିଲେ ଭୃତ୍ୟଗଣେ ॥
ଏବେ ତୁ ଫେରି ତୁମ୍ଭେ ଯାଅ । ଆମ୍ଭଙ୍କ ଆମ୍ଭ ଧନ ଦିଅ ॥

ରାଜାଙ୍କ ଗୃହ ଫିରୁଁ ଘରେ । ପଥୁ ଫେରିବୁଁ କି ପ୍ରକାରେ ॥
ଦସ୍ୟୁ ବୋଇଲେ ଏଥୁ ଯାଅ । ଘରେ ଛାଡ଼ିଲୁଁ ବୋଲି କହ ॥
ଭୃତ୍ୟେ ବୋଇଲେ ହେଲୁ ଫିରୁଁ । କହ କଥା ଏ ପଚାରିବୁଁ ॥
ଆସନ୍ତି ବୈଷ୍ଣବ ଅପାର । ନ ଯାନ୍ତି ଏତେକେ ଆଦର ॥
କି ଘେନି ଏ ମାନ୍ୟ ତୁମ୍ଭର । ଛଳି ବୋଲଇ ଜଣେ ଚୋର ॥
ତୁମ୍ଭ ରାଜାର ପାଶେ ଯେହ୍ନ । ଥୁଣ୍ଟା ବାବାଜୀ ଅଛି ରହ୍ନ ॥
ସେ ଏକେ ରାଜାର ଗୃହର । ଥିଲି ମୁଁ ଥିଲ ଜମାଦାର ॥
ଏକ ଦୋଷରେ ରାଜା ତାକୁ । କହିଲେ ପ୍ରାଣେ ମାରିବାକୁ ॥
ମୁଁ ଛେଦି ପଦ ହସ୍ତ ତାର । ଦୟାରେ କରିଦେଲି ଦୂର ॥
ସେଠାରୁ ଅଇଲି ପଳାଇ । ତୁମ୍ଭ ରାଜାକୁ ମିଛ କହି ॥
ହୋଇଲି ରାଜାର ମହନ୍ତ ମତେ ଦେଖି ସେ ହେଲା ଭୀତ
ନ ପକାଇବ ସେ ପ୍ରସ୍ତାବ । ତହିଁକି ଏତେ ଭକ୍ତିଭାବ ॥
ଆବର ପ୍ରାଣ ପାଇଥିଲି । ସେ ଉପକାରେ ଧନ ଦେଲା ॥
ଏମନ୍ତ ବଚନ ଶ୍ରବଣେ । ପ୍ରତେ ନ ଗଲେ ଭୃତ୍ୟଗଣେ ।
ଫାଟିଲା ଧରଣୀ ଏକାଳେ । ଦସ୍ୟୁ ସେ ପଡ଼ି ତହିଁ ମଲେ ॥
ଚକିତ ହେଲେ ଭୃତ୍ୟେ ଗୃହିଁ । ଭାବିଲେ ସାଧୁଦ୍ରୋହୀ ଏହି ॥
ଏ ଗୁରୁପାପେ ଥିଲେ ଜଡ଼ି ଦଇବ ଦଣ୍ଡ ଗଲା ପଡ଼ି ॥
ଘେନିଣ ଧନ ସେ ସମ୍ଭାର । ଚପଳେ ଗଲେ ପରିକର ॥
ରାଜାର ଛାମୁରେ ଜଣାଣ । କଲେ ସକଳ ବିବରଣ ॥
ଆଶ୍ଚର୍ଯ୍ୟ ରାଜା ଶୁଣି ହୋଇ । ପୁଚ୍ଛିଲା ବାବାଜୀଙ୍କ ଯାଇଁ ॥
ଯା କହିଥିଲେ ଦସ୍ୟୁଦଳ । ବାବାଜୀ କହିଲେ ସକଳ ॥
ଆବର ପୁଚ୍ଛିଲେ ରାଜନ । ଶତ୍ରୁଠାରେ ଏ ସଜ୍ଜନ୍ୟ ॥
କହ କାହିଁକି ପ୍ରକାଶିଲ । ପୁଣି ବହୁତ ଧନ ଦେଲ ॥
ବାବାଜୀ ବୋଇଲେ ରାଜନ । ନ କର ପରାପର ଜ୍ଞାନ ॥
ସନ୍ତୋଷ କଲେ ଲୋକମନ । ତହିଁ ସନ୍ତୋଷ ଭଗବାନ ॥

ଆଜ ଯେ ଦୁଷ୍ଟ ଅପକାରୀ । ତାକୁ ବନସ୍ତ ଭକ୍ତ କର ।
ସେବ କଲେ ତା ଉପକାର । ଲଜ୍ଜା ପାଏ ସେ ଗୁରୁତର ॥
ବଦଳି ଯାଏ ତା ସ୍ୱଭାବ । ଗ୍ରହେ ସେ ତାର ଧ୍ୱଂସାଭାବ ।
ଏଥେ ଯା ଶତ୍ରୁ ଦ୍ରବ ନୁହେଁ । ତାକୁ ବଧାତା ଦଣ୍ଡ ଦିଏ ॥
ଏମନ୍ତେ କନ୍ଧ ଗଦଗଦେ । କଅଁଳ ଗଲେ ହସ୍ତ ପଦେ ।
ସକଳେ ଆଚମ୍ବିତ ଅଛ । ଅସାଧୁ ସାଧୁର ଏ ଗଢ ॥
ସାଧୁ ଘରଣୀ ପଦ୍ମାବତୀ । ଶୁଣିଣ ରାଜନ ତୁଷ୍ଟଛି ॥
ଆଣିଲ ତାକୁ ନିଜ ପୁରେ । ରଖିଲ ରାଣୀ ସଙ୍ଗତରେ ।
ଏ କାଳେ ଆସିଲ ଖବର । ମରିଛୁ ଭାଇ ସେ ରାଣୀର ॥
ଭାଉଜ ଭାଇ ଚିତାନଳେ । ଜୀବନ ହାରିଛୁ ବିକଳେ ॥
ଶୁଣିଣ ରାଣୀ ମୁଣ୍ଡକୋଡ଼ । କାନ୍ଦଇ ଧରଣୀରେ ପଡ଼ ॥
ବୁଝାଇ କହେ ପଦ୍ମାବତୀ । ଏହି ତ ଜୀବନର ରୀତ ॥
ଲାଗିଛୁ ଜନମ ମରଣ । ଲୀଳା କରଇ ଭଗବାନ ॥
କି ହେବ ଯେତେ ଶୋକ କର । ଶୋକେ କେହି କି ଆସେ ଫେର
ଉଠିଲ ରାଣୀ ଶୋକ ତେଜ । ଭାଉଜ ଶୁଣି ହେଲ ଭଜ ॥
ପତିଭକତା ସତୀ ବୋଲି । ତୁ ସ୍ୱାମୀ ସଙ୍ଗେ ଗଲୁ ଚଳି ॥
କହଇ ପଦ୍ମାବତୀ ଶୁଣି । ସ୍ୱାମୀ ଭାରିଯା ଏକ ପ୍ରାଣୀ ।
ଦେହ ଦୁଇଟା ଭିନା ବହେ । ଏକ ପରାଣ ଦେନ ଦେହେଁ ।
ପୁରୁଷ ପିଣ୍ଡ ମୁଣ୍ଡ ସର । ନାରୀ ତା ପାଦ ଆଦି ପର ॥
ନାରୀ ବିଯୋଗେ ଅଧାପ୍ରାଣେ । ପୁରୁଷ ରହଇ ଜୀବନେ ॥
ପୁରୁଷ ବିଯୋଗରେ ନାରୀ । କ୍ଷଣେ କି ରହେ ପ୍ରାଣ ଧରି ॥
ପତିର ପ୍ରାଣ ଯିବା ସଙ୍ଗେ । ଅର୍ଦ୍ଧ ପ୍ରାଣ କି ରହେ ଅଙ୍ଗେ ॥
ପତି ଅନ୍ତେ ଯେ ଜୀବେ ରହି । ଚିତାନଳରେ ପ୍ରାଣ ଦେଇ ॥
ତହିଁ ନାହିଁ ତା ସତୀପଣ । ସେ ଲୋକେ ଦେଖା ଆଚରଣ
ଏ କଥା ଶୁଣି ରାଣୀମାନେ । ବଢ଼ିବା ଇଚ୍ଛା କଲେ ଦିନେ ॥

ରାଜା ବାବାଜୀ ବେଶ ଯାଇ । ଉପବନରେ ଥିଲେ ରହି ॥
ଘରକୁ ଆସନ୍ତେ ରାଜନ । ରାଣୀ କଲେକ ନିବେଦନ ॥
ପଦ୍ମାର ପତିଭକ୍ତି କଥା । ବଡ଼ିବା ପାଇଁ ଏ ବ୍ୟବସ୍ଥା ॥
ମିଛରେ ଆଜ ଗୋସାଇଁର । ପଠାଇ ମୃତ୍ୟୁ ସମାଚାର ॥
ଦେଖିବା ପଦ୍ମାର କି ହୁଏ । ଅନୁଚିତ ଏ ରାଜା କହେ ॥
ନ ମାନି ରାଣୀ ମରଣର । ପଠାଏ ମିଥ୍ୟା ସମାଚାର ॥
ଶୁଣିବାମାତ୍ରେ ପଦ୍ମାବତୀ । ନିର୍ଜୀବ ହୋଇ ଭଜେ ସ୍ଥିତ ॥
ହୋଇଲେ ରାଜା ରାଣୀ ଛନ୍ନ । ହିଙ୍ଗାସେ ବହୁତ ରାଜନ ॥
ଯାଇଁ ଗୋସାଇଁ ପାଦେ ପଡ଼ି । ଉଠି କହିଲ କରଯୋଡ଼ି ॥
ଜଣାଇ ସବୁ ସମାଚାର । ବୋଇଲ ଏ ପାପୁଁ ଉଦ୍ଧର ॥
ଶୁଣି ଗୋସାଇଁ ହସି କହେ । ଚିନ୍ତା ନ କର ନରନାହେ ॥
ଅଛି ଯେ ମୃତ୍ୟୁସଞ୍ଜୀବନୀ । ସେ କୃଷ୍ଣ ନାମ ମନ୍ତ୍ର ଶୁଣି ॥
ହୋଇବ ପରାଣ ସଞ୍ଚାର । ଏଥି ସନ୍ଦେହ ତୁ ନ କର ॥
ଏମନ୍ତ କହିଣ ଗୋସାଇଁ । ପ୍ରବେଶ ପଦ୍ମାପାଶେ ଯାଇ ॥
ଶୁଣାଉ ନାମ ମନ୍ତ୍ର ଗୋଟି । ପଦ୍ମା ଯେ ଚମକିଣ ଉଠି ॥
ପତିଙ୍କି ତୁହିଁ ବୋଲେ ଦେବ । ପ୍ରାଣ ଥାନ୍ତୁଁ କି ପିଣ୍ଡ ଯିବ ॥
ଯାବତ ରହିଥାଏ ଦେହୀ । ତାବତ ନ ଛାଡ଼ଇ ଛୁଇ ॥
ଦେଖି ସମସ୍ତେ ଚମତ୍କାର । ଭାବେ ଧନ୍ୟ ଏ ନାରୀବର ॥
ସାମାନ୍ୟ ରମଣୀ ଯେମନ୍ତ । ସାମାନ୍ୟ ପୁରୁଷେ ଆଶକ୍ତ ॥
ତେମନ୍ତ ନୁହେଁ ପଦ୍ମାବତୀ । କୃଷ୍ଣରୂପେ ସେ ଭଜେ ପତି ॥
ଏମନ୍ତ କିଛୁଦିନଠାରେ । ଜଣାଇ ରାଜାର ଗୋଚରେ ॥
ପଦ୍ମାବତୀ ଯେ ଜୟଦେବ । ଶ୍ରୀକ୍ଷେତ୍ରେ ଯାଇ କଲେ ଠାବ ॥
ତାହାଙ୍କ ଗୀତ ଗୋବିନ୍ଦର । ମହିମା ଜଗତେ ପ୍ରଚାର ॥
ଶ୍ରୀଗୀତଗୋବିନ୍ଦ ଶ୍ରବଣ । କରିଣ ଦେବ ନାରାୟଣ ॥
ହେଲେ ବିଶେଷ ପୁଲକିତ । ଦ୍ରବିଲା ନରନାରୀ ଚିତ୍ତ ॥

ପାଷଣ୍ଡ ବଷ୍ପସ୍ତ୍ରୀ ପାମର । ଶୁଣି ଦ୍ରବଲେ ଚରାଚର ॥
ଏକ ଯେ ମାଳୀର ଦୁହିତା । ଗାଇ ସେ ହୋଇ ପୁଲକିତା ॥
ତୋଳନ୍ତ କ୍ଷେତ୍ରୁ ବାଇଗଣ । ସେ ଗୀତ ଶୁଣି ନାରାୟଣ ॥
ସେ କନ୍ୟା ପଛେ ପଛେ ଚଳେ । ଶିଳା କଣ୍ଟକ ପଦେ ଗଲେ ॥
ଆବର କଣ୍ଟା ଲାଗି କରି । ବସ୍ତ୍ର ଓଢ଼ଣୀ ଯାଏ ଚିରି ॥
କଣ୍ଟା ସହିତେ ବାଇଗଣ । ପଟ୍ଟ ବସନେ ପଶ ପଶ ॥
ହୋଇଛୁ ଛିଣ୍ଡା ଭଗ୍ନ ବେଶ । ପ୍ରଭୁ ମନ୍ଦିରେ ପରବେଶ ॥
ଦେଖି ଚକିତ ପଣ୍ଡାଗଣ । ରାଜାରେ କଲେକ ଜଣାଣ ॥
ଆପଣ ରାଜା ସ୍ତୁତି କରି । ଯାଇଣ ଥିଲେ କାହିଁ ହରି ॥
ଟେକି ଏ ବଇକୁଣ୍ଠ ପୁରି । କି ଲାଗି ବନରେ ବିହରି ॥
ଆହା ଲାଗିଲ କି ବେଦନା । ଦେଲ କେ ଏଡ଼େ କଦର୍ଥନା ॥
ଏ ଭୃତ୍ୟ ଥାଉଁ ଥାଉଁ ରହି । ଆଜ୍ଞା ନ ଦେଲେ କାହିଁପାଇଁ ॥
ଆଜ୍ଞା ପାଇଲେ ଚନ୍ଦ୍ର ରବି । ଆଣି ଚରଣ ତଳେ ଦେବି ॥
ବ୍ରହ୍ମାଦି ଦେବ ଶେଷଦେବେ । ଧରି ଆଣିବି ଦେବଦେବେ ॥
ଶ୍ରୀପାଦପଦ୍ମ ପରସାଦେ । କାହାକୁ ନ ଡରେ ମୁଁ ବାଦେ ॥
ତବ ଆଜ୍ଞାରେ ଧରାସ୍ଥଳୀ । ମେରୁ ସହିତେ କରି ଧୂଳି ॥
ଉଡ଼ାଇ ଦେବି ଫୁଙ୍କି କରି । ସିନ୍ଧୁକୁ ସୁନା କୁମ୍ଭେ ଭରି ॥
ସୁରଙ୍ଗ କୋମଳ ଚରଣ । ଧୁଆଇବି ଦେଇ ମନ ପ୍ରାଣ ॥
ଆହା ମରଇ କାହିଁପାଇଁ । ଗଲ ପାଦରେ ଥିଲ ଯାଇ ॥
ନୃପତି ଭାସି ଅଶ୍ରୁଜଳେ । କହିଲ ଏମନ୍ତ ବାକଲେ ॥
ଆଦେଶ ଦେଲେ ଜଗନ୍ନାଥେ । ମାଳିଣୀ ବାଇଗଣ କ୍ଷେତେ ॥
ଶ୍ରୀ ଗୀତଗୋବିନ୍ଦ ପଢ଼ଇ । ଗଲି ମୁଁ ଶୁଣିବାକୁ ତହିଁ ॥
ଯାଇ ଲଭିଲି ଏ ଦଶାକୁ । ଯାଇଁଣ ଘେନି ଆସ ତାକୁ ॥
ଏମନ୍ତ ରାଜା ଆଜ୍ଞା ପାଇ । ଶିବିକା ଦେଲେ ପଠିଆଇ ॥
ଆଣିଲେ ମାଳିଣୀ କନ୍ୟାକୁ । କହିଲେ ତାକୁ ପଢ଼ିବାକୁ ॥

ପଢ଼ିଲି ସେ ଗୀତ ଗୋବିନ୍ଦ । ଶୁଣିଣ ପ୍ରଭୁ ମହାନନ୍ଦ ॥
ରହିଲି ଖଞ୍ଜା ଭୂମି ଖାଇ । ପଢ଼ିଲା ମାତ ମାତ ଯାଇ ॥
ଅଦ୍ୟାପି ତାର ବଂଶଧରେ । ଗୀତ ଗୋବିନ୍ଦ ପାଠ କରେ ॥
ସେ ଦିନୁ ନଗରେ ଘୋଷଣା । ଦେଇ ରାଜନ କଲା ଜଣା ॥
କୁତ୍ସିତ ସ୍ଥାନେ ବା ଗମନେ । ପଢ଼ିବେ ନାହିଁ କେହି ଜନେ ॥
ଏମନ୍ତେ ଏକ ଯେ ଯବନ । ଏକଥା କରିଣ ଶ୍ରବଣ ॥
ଗଲା ସେ ଘୋଡ଼ା ପରେ ଚଢ଼ି । ଗୀତଗୋବିନ୍ଦ ପଢ଼ି ପଢ଼ି ॥
ଶୁଣିବା ଆଶେ ପ୍ରଭୁ ରାୟେ । ତା ଘୋଡ଼ା ପଛେ ପଛେ ଯାଏ
ଯବନ କରେ ଦୃଷ୍ଟିପାତ । କାହିଁ ହିନ୍ଦୁର ଜଗନ୍ନାଥ ॥
ନ ଦେଖି ହୃଦେ ବିଚାରିଲା । ଯବନ ବୋଲି ନ ଆସିଲା ॥
ଏମନ୍ତ କାଳେ ଭବତ୍ରାହୀ । ସମ୍ମୁଖେ ଠିଆ ହେଲେ ଯାଇ
ଶ୍ୟାମଳ ସୁନ୍ଦର ମୂରତି । ଆହା କି ଅପୂରୁବ ଜ୍ୟୋତି ॥
ଚାହିଁବା ମାତ୍ରେ ବେନି ଡୋଳେ । ଅଶ୍ରୁ ପଡ଼ିଲା ଗଣ୍ଡ ତଳେ ॥
ହରିର ନାହିଁ ପରାପର । ଯବନ ଚଣ୍ଡାଳ ବିଚାର ॥
ଯେ ତାକୁ ଭଜେ ସେହି ପାଏ । ଭକ୍ତବତ୍ସଳ ଦେବରାୟେ ॥
ଜୟଦେବଙ୍କୁ ଏକଦିନେ । ଆଦେଶ ଦେଲେ ନାରାୟଣେ
ଦେମନ ତୋର ଠାକୁରଙ୍କୁ । ଯାଅ ତୁ ବୃନ୍ଦାବନଠାକୁ ॥
ଶୁଣି ସେ ମନେ ଚିନ୍ତାକରି । ଠାକୁରେ ଅତି ସ୍ଥୂଳ ଭାରି ॥
କେମନ୍ତେ ଅବା ନେବି ବହି । ରାଧାମାଧବ ଜାଣି କହି ॥
ମୂହିଁ ବହିବ ସୂକ୍ଷ୍ମ ଦେହ । ଝୁଲିରେ ପୂରାଇ ତୋ ନାଅ ॥
ଏମନ୍ତ ଶୁଣି କବିବର । ଝୁଲିରେ ପୂରାଇ ଠାକୁର ॥
ଯାଇ ଦେଖିଲା ବୃନ୍ଦାବନ । ପୁଲକ ଉଠେ ଘନ ଘନ ॥
କେଶୀଘାଟର ସନ୍ନିଧାନେ । ରହିଲା ପ୍ରେମାନନ୍ଦ ମନେ ॥
ରାଧାମାଧବ ରୂପ ଚାହିଁ । ସେ ଧନ୍ୟ ଦ୍ରବଭୂତ ହୋଇ ॥
ତୋଳାଇ ଦେଲାକ ମନ୍ଦିର । ତହିଁରେ ରହିଲେ ଠାକୁର ॥

ଦୁଷ୍ଟଅନ୍ତେ କବି ଅପ୍ରକଟ । ଠାକୁରେ ଜୟପୁର ରାଟ ॥
ଦେଖାଇ ଗଲା ନିଜ ରାଜ୍ୟେ । ଅଦ୍ୟାପି ସେଠାରେ ବିରାଜେ ॥
ରାଧାମାଧବ ମନୋହର । ସ୍ୱରୂପେ ତ୍ରୈଲୋକ୍ୟଠାକୁର ॥
ଶ୍ରୀମୁଖଚନ୍ଦ୍ରରୁ ଅଧିକ । ଶ୍ରୀଅଙ୍ଗେ ବିଜୁଳି ଝଟକ ॥
ଶ୍ରୀଜୟଦେବ କବିବର । ଭକତ କୀର୍ତ୍ତି ପୁଣ୍ୟଧର ॥
ଯା ଅନୁରୋଧେ ଗଙ୍ଗା ଆସି । ସ୍ୱଗ୍ରାମ ମଧ୍ୟରେ ବିଳସି ॥
କେନ୍ଦୁ ବିଲ୍ୱର ଯେ ଅଠର । କୋଶେ ଦୂରରେ ଥିଲା ଧାର
ତହିଁରେ ନିତ ସ୍ନାନ କରି । ଆସନ୍ତି ଜୟଦେବ ଫେରି ॥
ଦିନେକ କାର୍ଯ୍ୟାଦି ବଶରେ । ଯାଇ ନ ପାରି ଖେଦ ଭରେ ॥
ସାଧୁର ମନ ଗଙ୍ଗା ଜାଣି । ଆସିଲେ ତରଙ୍ଗାଇ ପାଣି ॥
ସାଧୁର ପାଶେ ପରବେଶି । ବୋଇଲେ ସ୍ନାନ କର ଆସି ॥
ତୁମ୍ଭ ପରଶ ଲଭିବାକୁ । ଅଇଲି ଧାଇଁ ମୁଁ ଏଠାକୁ ॥
ଯେ ଗଙ୍ଗା ତ୍ରିଲୋକପାବନ । ଶିରରେ ବହେ ତ୍ରିଲୋଚନ ॥
ସେହୁ ଗଙ୍ଗାର ହରିଦାସ । ଶ୍ରୀଅଙ୍ଗ ଛୁଇଁବାକୁ ଆଶ ॥
ଧନ୍ୟ ହେ କବିକୁଳେଶ୍ୱର । ଧନ୍ୟ ହେ ଭକତ ଶେଖର ॥
ତୁମ୍ଭ ଚରଣେ କରେ ଆଶ । ଏ ହୀନ ବିପ୍ର ରାମଦାସ ॥

ଇତି ଶ୍ରୀଦାର୍ଢ୍ୟଭକ୍ତି ରସାମୃତେ ଶ୍ରୀମନ ଚୈତନ୍ୟ ସମ୍ବାଦେ
ଶ୍ରୀଜୟଦେବ ଗୋସ୍ୱାମୀ ଦାର୍ଢ୍ୟଭକ୍ତି ଭାବ ବର୍ଣ୍ଣନେ
ନାମ ପଞ୍ଚପଞ୍ଚାଶତ୍ ଅଧ୍ୟାୟଃ ।

---

ମୁଦ୍ରାକର—ଶ୍ରୀଚନ୍ଦ୍ରାମଣି ମିଶ୍ର, ନବଜୀବନ ପ୍ରେସ୍, କଟକ-୨